

# ଉତ୍କଳ
# ଗାଉଁଲି ଗୀତ





ଚକ୍ରଧର ମହାପାତ୍ର











ଏ ସଂଗ୍ରହରେ କଳା କୁଶଳୀ ଉତ୍କଳର ପ୍ରକୃତ ପରିଚୟ ଦିଆଯାଇଅଛି ।

ଡକ୍ଟର ସୁନୀତି କୁମାର ଚଟ୍ଟର୍ଜୀ

ଏ ସଂଗ୍ରହ ଏକାନ୍ତ ଦୁଷ୍ପ୍ରାପ୍ୟ । ଏହା ଓଡ଼ିଆ ସାହିତ୍ୟର ଏକ ପ୍ରତିନିଧିମୂଳକ ମାଳା ସ୍ୱରୂପ ।

ପ୍ରଫେସର ଦେବେନ୍ଦ୍ର ସତ୍ୟାର୍ଥୀ

ଏ ଗୀତଗୁଡ଼ିକ ବଣର ମାଳତୀ । କାହାର ବଗିଚାରେ ତିଆରି କରା ହୋଇନାହିଁ । ବାବୁ ଚକ୍ରଧରଙ୍କର ଉଦ୍ୟମ ଅତୀବ ସାଧୁ ଓ ଶ୍ଳାଘ୍ୟ ।

ଡକ୍ଟର ପଣ୍ଡିତ ନୀଳକଣ୍ଠ ଦାସ

ଏ ପଲ୍ଲୀଗୀତିକାମାନ ଅତ୍ୟନ୍ତ ପ୍ରୀତିକର ଏବଂ ପ୍ରକାଶ ପାଇଁ ଉପଯୁକ୍ତ ।

ଡକ୍ଟର ପ୍ରାଣକୃଷ୍ଣ ପରିଜା

ମୁଁ ସ୍ଥିର ନିଶ୍ଚିତ ଯେ ଏହି ସଂଗ୍ରହ ପ୍ରକାଶିତ ହେଲେ ଓଡ଼ିଶାର ତାହା ଏକ ଗୌରବ ସ୍ତମ୍ଭ ହେବ ।

ଡକ୍ଟର ହରେକୃଷ୍ଣ ମହତାବ

ଅତିରଞ୍ଜନର ଭୟ ଆଦୌ ନ କରି ମୁଁ ଏହା କହୁଅଛି ଯେ ଭାରତର ମହାରାଷ୍ଟ୍ର ଭାଷାରେ ଶିବାଜୀଙ୍କର Ballad ଛଡ଼ା ଏପରି ମଧୁର ସୁନ୍ଦର ସାହିତ୍ୟ ଲୋକ ଲୋଚନ ସମ୍ମୁଖରେ ଆସିନାହିଁ ।

ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ

ଉତ୍କଳ ଗ୍ରାମ୍ୟ କବିତା ସଂଗ୍ରହ ଦିଗରେ କାର୍ଯ୍ୟ କରି ଶ୍ରୀଯୁକ୍ତ ଚକ୍ରଧର ବାବୁ ପ୍ରଶଂସାର୍ହ ହୋଇ ଅଛନ୍ତି ।

ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି

ଏତଦ୍ୱାରା ଜାତୀୟ ସାହିତ୍ୟର ଏକ ବିଶିଷ୍ଟ ଅଭାବ ଦୂର ହେଲା । ଏଗୁଡ଼ିକ ଅଦୂଷିତ ଏବଂ ମୌଳିକ ରଚନା ଅଟେ ।

ସୁସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ

ଏ ସଙ୍କଳନରେ ଏ ଜାତିର ଏ ସମାଜର ଯେଉଁ ନିଖୁଣ
ଖାଣ୍ଟି ଗୀତ ନୀତ ଓ ମନୋଭାବ ପ୍ରକଟିତ ହୋଇଛି ତାହା
ଅତ୍ୟନ୍ତ ଦୁର୍ଲ୍ଲଭ । ଶ୍ରୀମାନ୍ ଚକ୍ରଧର ଏ କ୍ଷେତ୍ରରେ ପ୍ରଥମ
ଉଦ୍ୟମ କରିଅଛନ୍ତି ।

ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜ

ଏହି ସରଳ ଗୀତ ଗୁଡ଼ିକ ଓଡ଼ିଆର ଖାଣ୍ଟି ଭାଷା ।
ଏଥିରେ ଓଡ଼ିଆ ଜାତୀୟ ଜୀବନର ଛବି ପ୍ରତିଫଳିତ
ହୋଇଥାଏ ।

ସ୍ୱର୍ଗତ ବାଳକୃଷ୍ଣ କର

ଚକ୍ରଧରଙ୍କ ସଂଗୃହୀତ ଏହି ଗୀତ ଗୁଡ଼ିକ ସାହିତ୍ୟରେ
ମୂଲ୍ୟବାନ୍ ।

ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର

ବାବୁ ଚକ୍ରଧର ଗ୍ରାମ୍ୟଜୀବନର ସରଳ ମଧୁର ଭାବସମ୍ପୃକ୍ତ
ପ୍ରାଚୀନ ଗ୍ରାମ୍ୟଗୀତ ଗୁଡ଼ିକ ବହୁ ଯତ୍ନ ଏବଂ
ଧୈର୍ଯ୍ୟର ସହିତ ଏଥିରେ ସଂଗ୍ରହ କରିଅଛନ୍ତି ।

ସ୍ୱର୍ଗତ ପଣ୍ଡିତ ଲିଙ୍ଗରାଜ ମିଶ୍ର

ପରମ ଶ୍ରଦ୍ଧାସ୍ପଦ ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ରଙ୍କର ଉତ୍କଳ
ଗାଉଁଲି ଗୀତ ଉତ୍କଳ ସାହିତ୍ୟ ଭଣ୍ଡାରର ଅପରୂପ ରତ୍ନ ।

ସ୍ୱର୍ଗତ ଶଶିଭୂଷଣ ରାୟ

ତୁମର ସଂଗୃହୀତ ଗ୍ରାମ୍ୟରଚନା ପରି ରଚନା ମୁଁ ହିନ୍ଦୀରେ
ଅଳ୍ପ ଦେଖିଛି ।

ସ୍ୱର୍ଗତା କୁନ୍ତଳା କୁମାରୀ ଦେବୀ

ଏ ସବୁ ରଚନା ପ୍ରତି ଦେଶରେ ନିଶ୍ଚୟ ଖୁବ୍ ଆଦର
ଅଛି । ଏ ସବୁ ଛପା ହେବା ନିଶ୍ଚୟ ଦରକାର ।

ସ୍ୱର୍ଗତ ଶାରଙ୍ଗଧର ଦାସ

ଜାତି ସ୍ୱାର୍ଥ ରକ୍ଷା ପାଇଁ, ଓଡ଼ିଆ ସାହିତ୍ୟର ସ୍ୱାର୍ଥ ରକ୍ଷା
ପାଇଁ ଏଗୁଡ଼ିକ ଅତ୍ୟନ୍ତ ପ୍ରୟୋଜନ ।

ସ୍ୱର୍ଗତ ଜଗବନ୍ଧୁ ସିଂହ

ଏ ସଂଗ୍ରହ ଅତ୍ୟନ୍ତ ପ୍ରୟୋଜନରେ ଆସିବ । କାରଣ
ଗ୍ରାମ୍ୟ ସଙ୍ଗୀତ ଲୋକର ଜାତୀୟ ଜୀବନକୁ ଚିହ୍ନିତ କରିଥାଏ ।

ସ୍ୱର୍ଗତ ଶ୍ୟାମଚରଣ ତ୍ରିପାଠୀ
ଶିକ୍ଷା ବିଭାଗୀୟ ଡିରେକ୍ଟର

ପ୍ରଚ୍ଛଦପଟ ମୁଦ୍ରଣ : ମନମୋହନ ପ୍ରେସ୍, କଟକ-୨

ଏ ଦେଶର ପ୍ରତି ଘରେ ଘରେ ଯେଉଁ ନିରକ୍ଷର ନାରୀଙ୍କ ଗୀତ, ଏହି ଜାତିକୁ ନିରନ୍ତର ଉଦ୍‌ବୁଦ୍ଧ କରି ରଖିଅଛି, ତାହା ଅତ୍ୟନ୍ତ ମଧୁର । ତେଣୁ ଆମ୍ଭମାନଙ୍କର ଗୃହେ ଗୃହେ ଦୈନନ୍ଦିନ ଜୀବନର ସୁଖ ଦୁଃଖ, ଜୟ ପରାଜୟ, ନୃତ୍ୟ-ଉତ୍ସବ ମଧ୍ୟରେ ସେହି ଅକୃତ୍ରିମ କାବ୍ୟର ଉପାଦାନ ଯଥେଷ୍ଟ ଥାଏ ବୋଲି ଆଶା କରିବା ଧୃଷ୍ଟତା ହେବ ନାହିଁ ।

ମୋର ବନ୍ଧୁ ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ର ଆମ୍ଭମାନଙ୍କର ସେ ଆଶାକୁ ସତ୍ୟ କରିଅଛନ୍ତି । ତାଙ୍କର ଓଡ଼ିଆ ପଲ୍ଲୀ କବିତାର ଅପୂର୍ବ ସଂଗ୍ରହ ଆଜି ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥିତ । × × × ×

ଶ୍ରୀଯୁକ୍ତ ମହାପାତ୍ରଙ୍କର ଏହି ସଂଗ୍ରହ ଆମ୍ଭମାନଙ୍କୁ ସେହି ସ୍ୱର୍ଣ୍ଣ ଯୁଗର ସ୍ମୃତି ଆଣିଦେଇଛି । ଏ ସଂଗ୍ରହ ପାଠକଲା ପରେ ପାଠକ ଜାଣି ପାରିବେ ପଲ୍ଲୀ ଜୀବନକୁ କବିତା କିପରି ଓତପ୍ରୋତ ଭାବରେ ଅନୁରଞ୍ଜିତ କରି ରଖିଥିଲା । ଲଘୁ ଛନ୍ଦାବଳୀ ମଧ୍ୟରେ ଏଥିରେ ଥିବା ଚିତ୍ରସବୁ କାହାଣୀମାନ ମୁକ୍ତାମାଳା ପରି ଫୁଟି ଉଠିଛି ।

ଏ ସବୁ ଅନାବିଳ ମାନବ ପ୍ରାଣର ପ୍ରକାଶ । ଏସବୁ ଦେଶର ସ୍ୱୟଂ ମୃତ୍ତିକା ଦେବୀର ଭାଷା । ଏଥିଯୋଗୁଁ ସବୁ ସାହିତ୍ୟରେ ଏହାର ଆଦର ବଢ଼ିଛି ।

ଏ ସଂଗ୍ରହ ତଥାପି ଅସମ୍ପୂର୍ଣ୍ଣ । ନିଜ ମାଟିର କଥା ନିଜ ଭାଷାରେ ଲେଖିବା ଲାଗି ଏବଂ ଉତ୍କଳ ସାହିତ୍ୟର ଶ୍ରୀବୃଦ୍ଧି ଲାଗି ଆହୁରି ଅଧିକ ସଂଗ୍ରହ ଆଶା କରାଯାଏ ।

**ଡକ୍ଟର ମାୟାଧର ମାନସିଂହ**

ପଲ୍ଲୀର ଓଡ଼ିଆ ଯେଉଁ ଭାଷା ବୁଝେ,
ତାହାହିଁ ଯଥାର୍ଥ ଓଡ଼ିଆ ଭାଷା ।

'ଗୋପବନ୍ଧୁ' ।

ପ୍ରକାଶିକା

ଶ୍ରୀମତୀ ସୁରମା ମହାନ୍ତ

ତେଲେଙ୍ଗାବଜାର

କଟକ

ଦ୍ୱିତୀୟ ସଂସ୍କରଣ

୧୯୭୧

ମୁଦ୍ରଣ

କଟକ ପବ୍ଲିଶିଂ ପ୍ରେସ୍

ବାଲୁବଜାର, କଟକ—୨

ମୂଲ୍ୟ—ପଇଁତିଶ ଟଙ୍କା ମାତ୍ର

# ଉତ୍କଳ ଗାଉଁଲି ଗୀତ

## ଅବତରଣିକା

### ୧ । ପରିଚୟ—

ଗ୍ରାମ୍ୟଶବ୍ଦ ସାଧାରଣତଃ ଗାଁ ଗହଳିରେ ଗାଉଁଲି ହୋଇ କଥିତ ହୋଇଥାଏ । ଗ୍ରାମର ଲୋକେ ସୃଷ୍ଟିକରୁଥିବା ସଙ୍ଗୀତମାନଙ୍କୁ ଏବଂ ଯାହାକୁ ସେମାନେ ଅହରହା ଢଣଯ୍ୟରେ ପ୍ରକୃତ ମର୍ମ ବୁଝି ବ୍ୟବହାର କରିଆସନ୍ତି ଏମନ୍ତକି ଯାହା ଗ୍ରାମାନ୍ତରବ୍ୟାପକ ତାହାହିଁ ଗାଉଁଲି ଗୀତ ।

ଏହି ଗାଉଁଲି ଗୀତମାନଙ୍କୁ ବର୍ତ୍ତମାନ 'ଲୋକଗୀତ' ନାମରେ ଆଖ୍ୟାତ କରାଯାଇଅଛି । କିନ୍ତୁ 'ଲୋକ' ଶବ୍ଦ ଏତେ ବ୍ୟାପକ ଯେ କେବଳ ଗ୍ରାମ୍ୟ ନରନାରୀଙ୍କ ପାଇଁ ତାହା ସୀମିତ ହୁଏନାହିଁ ।

ଲୋକର ଗୋଟିଏ ଅର୍ଥ ସାଧାରଣ ଜନସମାଜ ହୋଇପାରେ । କିନ୍ତୁ ଲୋକ କହିଲେ ସାଧାରଣତଃ ସମଗ୍ର ଭୁବନକୁ ବୁଝାଇଥାଏ । ଏମନ୍ତକି ସପ୍ତଲୋକ, ଯଥା—

ଭୂର୍ଭୁବଃ ସ୍ୱର୍ମହ ଶ୍ଚୈବ ଜନଶ୍ଚ ତପ ଏବ ଚ
ସତ୍ୟଲୋକଶ୍ଚ ସପ୍ତୈତେ ଲୋକା ସ୍ତୁ ପରିକୀର୍ତ୍ତିତା ।

ଲୋକାନ୍ତର କହିଲେ ସେଥିରୁ ଲୋକର ଅର୍ଥ ସହଜରେ ହୃଦୟଙ୍ଗମ ହୋଇଥାଏ । ଲୋକନାଥ, ଲୋକମାତା ଶବ୍ଦରେ ଲୋକ ସମଗ୍ର ଜନସମାଜକୁ ଯେନ ନଷ୍ଟପୂ ସିଦ୍ଧାନ୍ତ ହୋଇଅଛି । ଇଂରେଜି ଭାଷାରେ Folk ଶବ୍ଦର ଅର୍ଥ People in general । ମନୁଷ୍ୟଗଣ ବା ଲୋକଗଣ ମଧ୍ୟରେ ସମଗ୍ର ଜନସମାଜ ଅନ୍ତର୍ଗତ ଅଛନ୍ତି । କିନ୍ତୁ ଧରଣୀରେ ଅତୀତରୁ ପୌର ଓ ଗ୍ରାମ୍ୟ ଏପରି ଦୁଇଟି ସ୍ୱାତନ୍ତ୍ର୍ୟ ରହି ଆସିଅଛି । ପୌର ସାହିତ୍ୟ ଲିପିବଦ୍ଧ ହେଉଥିଲା, ଗ୍ରାମ୍ୟ ସାହିତ୍ୟ ମୁଖେ ମୁଖେ ରଚିତ ହୋଇ ପୌରସାହିତ୍ୟ ସହିତ କେବେ ମିଶି ଯାଉଥିଲା ତ କେବେ ଲୁପ୍ତ ହୋଇ ଯାଉଥିଲା । ଅଳଙ୍କାର ପ୍ରଧାନ ଥିଲା—ପୌର, ରସ ପ୍ରଧାନ ଥିଲା—ଗ୍ରାମ୍ୟ । ଗ୍ରାମ୍ୟସାହିତ୍ୟ ଥିଲା ସ୍ୱାଭାବିକ ଏବଂ ପ୍ରାୟଶଃ କାରୁଣ୍ୟ ମଧ୍ୟରୁ ହିଁ ସେ ଲଭିଥିଲା ଜନ୍ମ । ତା ପରେ ଅନ୍ୟାନ୍ୟ ସମସ୍ୟା ସହିତ ସେ ସମ୍ପୃକ୍ତି ବେଳେ ବେଳେ ଲାଭ କରୁଥିଲା ।

ବେଦର ସୂକ୍ତମାନ ଅନୁଷ୍ଠିତ ହେଉଛି ସରଳ ପ୍ରାଣର ଆଶା ଆକାଙ୍କ୍ଷାରୁ ଉଚ୍ଚରିତହୋଇ ଶ୍ରୁତ ହୋଇଥିଲା । ଶୁଣି ମନେ ରଖିଥିଲେ ପରମ୍ପରା ଧରି ଋଷିଙ୍କର ବଂଶଧରଗଣ । ଏସବୁ ପୌର ନ ଥିଲା—ଥିଲା ଗ୍ରାମ୍ୟ । କାରଣ ପୌର, ଅଭିଜାତ, ସଂସ୍କୃତ ଭାବ ସେତେବେଳେ ମନୁଷ୍ୟ ମନକୁ ସ୍ପର୍ଶ କରି ନ ଥିଲା ।

ଲୋକ୍ ବୃତ୍ତାନ୍ତ ନଷ୍ଟାତାଃ, ଲୋକ ବୃତ୍ତି କୁଶଳାଃ ଏବଂ ଲୋକା ସମସ୍ତା ସୁଖୀନୋ ଭବନ୍ତୁ, ଅଥବା ଲୋକାପବାଦୋ ବଳବାନ୍ମତୋମେ । ଏହି ସବୁର ଲୋକ ଶବ୍ଦ କେବଳ ଗ୍ରାମ୍ୟ ଜନତାକୁ ଲକ୍ଷ୍ୟକରି କୁହାଯାଇନାହିଁ । ଅଥବା ବର୍ତ୍ତମାନର ଲୋକସଭା ଗ୍ରାମ୍ୟଲୋକଙ୍କ ସଭା ନୁହେଁ, ସମସ୍ତ ଜନ ସମାଜର ସଭା । ଏଠାରେ ସମଗ୍ର ଜନତାକୁ ଲୋକ ଅର୍ଥରେ ଗ୍ରହଣ କରାଯାଇଅଛି । କିନ୍ତୁ ମୁଖ୍ୟତଃ ଲୋକ କହିଲେ ସର୍ବସାଧାରଣ ଜନତା ବୋଲି ଆମେ ବୁଝି ଆସିଅଛୁଁ । ଆମ ଗ୍ରାମ୍ୟ କବିତା ସମ୍ପଦରେ ଅଛି—

'ଲୋକେ ପଚାରିଲେ କି ବୋଲି କହିବ ଲୋ ମୁଁ ଗାଁ ମଣ୍ଡଳମ ଝିଅ' ।

ଏଠି 'ଲୋକେ' ସାଧାରଣ ଅସାଧାରଣ ସମସ୍ତ ଜନସମାଜ ଅର୍ଥରେ ଅଭିପ୍ରେତ ଅଟେ । ତେଣୁ ଗ୍ରାମ୍ୟ ସାହିତ୍ୟକୁ ଲୋକ-ସାହିତ୍ୟ କହିବା ଏହି କାରଣରୁ ଅସମୀଚୀନ ହେଉଅଛି । କିନ୍ତୁ 'ଗ୍ରାମ୍ୟ ବା ଗାଉଁଲି ସାହିତ୍ୟ' ବା 'ପଲ୍ଲିସାହିତ୍ୟ' ନାମକରଣ ସବୁ ଦଗରୁ ନିରାପଦ ଅଟେ ।

'ଜନାକୀର୍ଣ୍ଣଂ ମନ୍ୟେ ହୁତବହ ପରୀତଂ ଗୃହମିବ'

ଏଠି ଜନାକୀର୍ଣ୍ଣ ଅର୍ଥ—ଲୋକସଙ୍କୁଳ । ତେବେ ପୌରଜନଙ୍କୁ ମଧ୍ୟ ଲୋକ କୁହାଯାଇଛି । ତେଣୁ ସାଧାରଣ ଲୋକ, ଅସାଧାରଣ ଲୋକ, ଅଥବା ଭଦ୍ରଲୋକ, ଗ୍ରାମ୍ୟ ଲୋକ ହିଁ ସାଧାରଣ ମୀମାଂସା । ଏସବୁ କାରଣରୁ ଗାଉଁଲି ଗୀତ ବୋଲି ଗ୍ରାମ୍ୟ ପ୍ରଚଳିତ ଗୀତମାନଙ୍କୁ କହିଲେ ସବୁଠୁ ସୁବିଧାଜନକ ହେବ । ତେଣୁ ଗ୍ରନ୍ଥର ନାମ—'ଉତ୍କଳ ଗାଉଁଲି ଗୀତ' ରଖାଯାଇଛି । ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜ ତାଙ୍କର ଟଗଡମାଳୀ ଆଲୋଚନାରେ ଏସବୁକୁ ମଧ୍ୟ ଗାଉଁଲି ଗୀତ ବୋଲି ବାରମ୍ବାର ଉଲ୍ଲେଖ କରିଅଛନ୍ତି ।

## ୨ । ଗ୍ରାମ୍ୟ ସାହିତ୍ୟ—

ଲୋପାତତ୍ତ୍ୱ ଉପରେ ବିଚାର କରି ଦେଖିଲେ—ଯେଉଁ ସବୁ ରଚନା ନିଜର ସ୍ୱାତନ୍ତ୍ର୍ୟ ଚିରକାଳ ଅକ୍ଷୁଣ୍ଣ ରଖି ରହିଅଛି ଏବଂ ସାର୍ବଜନୀନ ହୋଇ ପାରିନାହିଁ ସେହି ମାନ ହିଁ ଗ୍ରାମ୍ୟସାହିତ୍ୟ । ତେଣୁ ନିରନ୍ତର ସାର୍ବଜନୀନତା ହରାଇବା ଫଳରେ ଏହି ସାହିତ୍ୟର ଭାଷା ଅକୃତ୍ରିମ । ତେଣୁ ଏହି ସାହିତ୍ୟ ଏବଂ ଏହାର

ସୀମାବଦ୍ଧ ସଭ୍ୟତା ଏକାନ୍ତ ସୃଷ୍ଟ ଏବଂ ବିଶୁଦ୍ଧ ହେବା ସ୍ୱାଭାବିକ । କିନ୍ତୁ ଜୀବନ ଏବଂ ଶକ୍ତିର ଅଭାବରେ ଏହା ବିଶାଳ ଏବଂ ବିସ୍ତୃତ ନୁହେଁ । ନିରନ୍ତର ସ୍ୱାଧୀନତା ରକ୍ଷା କରିବାକୁ ଯାଇ ଏହି ଭାଷା ଏବଂ ଭାବ ଏକେ ବନ୍ଦୀଭାବରେ ଥାଏ ଯେ ଗୃହ କୋଣର ବନ୍ଦୀ ସୁନ୍ଦରୀ ନାରୀ ପରି, ଅରଣ୍ୟର ମାଳତୀ ପରି କେଉଁଠି ଫୁଟି କେଉଁଠି ଝଡ଼ିଯାଏ । ତେଣୁ ଏ ଗୀତମାନ ଅଳଙ୍କାର ବର୍ଜିତ । ଏସବୁ ସ୍ୱୟଂ ମାଟିର ଭାଷା । କାହା ବଗିଚାରେ ଛିଅର କସ୍ତ ଫୁଲ ନୁହେଁ ।

ଏ କବିତାମାନ ପକ୍ଷୀର ଗାନ ପରି ମୁକ୍ତ । ସେଥିରେ କପଟତାର ଆବରଣ ନାହିଁ । ବ୍ୟାକରଣର କଠୋର ଶାସନ ନାହିଁ । ସରସ୍ୱତୀ କୂଳର ଅଦମ ଅର୍ଘକୁଣ୍ଡରୁ ନିଃସୃତ ଋକ୍ ଝଙ୍କାର ଅବା । ଏମାନ ଅମ୍ବା ଫାଟି ଫୁଟି ଉଠେ । କୋଇଲି ଗଛ ଡାଳରେ ବୋବାଏ । ସେଠି ବୀଣାର ସାଧନା ନ ଥାଏ । କିନ୍ତୁ ତାହାର ମୂର୍ଚ୍ଛନାରେ ଚରାଚର ମୋହିତ ହୁଏ । ସେଇଠି ସ୍ୱରର ମୂଳପିଣ୍ଡ ନିହିତ ଥାଏ । ତେଣୁ ଗ୍ରାମ୍ୟଭାଷା ଭାଷାର ମୂଳପିଣ୍ଡ । ସେ ସମସ୍ତ ସାହିତ୍ୟର ମୂଳଦୁଆ । ସେହି ସ୍ୱାତନ୍ତ୍ର୍ୟରୁ ସେହି ଗ୍ରାମ୍ୟ ଭାବରୁ ସବୁ ସଂସ୍କୃତିର ଜନ୍ମ । ସବୁ ସଭ୍ୟତାର ସେ ଜନନୀ ।

ଏଠି ପ୍ରଶ୍ନ ଆସେ ଏହି ରକ୍ଷଣଶୀଳତାର ଭିତ୍ତି ଯୋଗୁଁ ଭାଷାଶିଳ୍ପ ବିପଦ୍‌ଗ୍ରସ୍ତ ହୁଏ କି ? ଗ୍ରାମ୍ୟ ସାହିତ୍ୟ ସାର୍ବଜନୀନ ନ ହୋଇ ପାରିବାରୁ ଭାଷା ଅନୁନ୍ନତ ବିବେଚିତ ହୁଏ କି ? ନୁହେଁ । ଯେଉଁ ଅଂଶ ସାର୍ବଜନୀନତା ହରାଏ ତାହାହିଁ ଗ୍ରାମ୍ୟ । ଗ୍ରାମ୍ୟ ସାହିତ୍ୟ ନିରନ୍ତର ବିଶୁଦ୍ଧ ନ ରହିଲେ ପୌର ସାହିତ୍ୟ ଏକାନ୍ତ ଅବ୍ୟବସ୍ଥିତ ହୋଇ କୃତ୍ରିମ ହେଉ ହେଉ ଦିନେ ଲୋପ ହୋଇଯାଏ । ତେଣୁ ମୂଳବୀଜ ସ୍ୱରୂପ ଗ୍ରାମ୍ୟ ସାହିତ୍ୟର ସେତିକିବେଳେ ପ୍ରୟୋଜନୀୟତା ଆସେ ।

ଉଦାହରଣ ସ୍ୱରୂପ ଉତ୍କଳରେ ମଧ୍ୟ, ରାଧାନାଥ ଯେଉଁ କୃତ୍ରିମ ଛାଞ୍ଚରେ ସଂସ୍କୃତ ଅନୁକରଣରେ ସାହିତ୍ୟର ପ୍ରବୃତ୍ତି କରି ଯାଇଛନ୍ତି, ହୁଏତ ଫକୀରମୋହନ ଜନ୍ମ ନ ଥିଲେ, ଓଡ଼ିଆ ଭାଷା କଣ ଥିଲା, ଆମର ଜାଣିବାର ସୁଯୋଗ ନ ଥାନ୍ତା । ଏମନ୍ତ କି ମଧ୍ୟ, ରାଧାନାଥଙ୍କ ସାହିତ୍ୟ ପଢ଼ିବା ଯୋଗୁଁ କେତେବର୍ଷ ପରେ ଆମର ଓଡ଼ିଆ ଭାଷା ଆପେ ଆପେ ମୃତ୍ୟୁ ଲାଭ କରିଥାନ୍ତା ।

"ପହିଲ୍ ପାଳି ବୋଉ ଦେଲ୍ଲ ପଠେଇ
ସାଙ୍ଗରେ ଯାଇଥିଲେ ସାନ କକେଇ"—ରଚନାଟିକୁ ଆମର ଅତି ନିକଟବର୍ତ୍ତୀ ବଙ୍ଗ ଭାଷାନ୍ତର କରିବାକୁ କିପରି ସୁଗମ ନୁହେଁ ଦେଖାଯାଉ । ପହିଲ୍‌ପାଳି ଯାହାବିଧି ବଙ୍ଗରେ ନାହିଁ । ବର କନ୍ୟାକୁ ବିବାହ କରି ସଙ୍ଗେ ସଙ୍ଗେ ଦ୍ୱିତୀୟ ଦିନ ବା ତୃତୀୟ ଦିନ ସାଥିରେ ନେଇଯାଏ । ଦଶମଙ୍ଗଳା ପରେ ବଧୂ

ପିତୃ ସ୍ୱଜନକୁ ଲେଖୁଛି ଅସି ପୁଣି 'ଫେରି' ଯାହା ଶ୍ୱଶୁର ଘରକୁ କରିଥାଏ ତାହାହିଁ ସେମାନଙ୍କର ଆମ ଦେଶର 'ପହିଲି ପାଳି' ଯାହା ପରି ହୋଇଥାଏ । ଏହି ଯାହାକୁ ତାଙ୍କ ଦେଶରେ ଦ୍ୱିରାଗମନ କହିଥାନ୍ତି । ଯାହା ଆମ ଉତ୍କଳରେ 'ଦୋଅଡ଼ ପାଳି' କହିଥାନ୍ତି । ସୁତରାଂ ଆମର ପହିଲି ପାଳିକୁ ବଙ୍ଗଳାରେ ଅନୁବାଦ କଲେ 'ପ୍ରଥମ ବାର' କହିବାକୁ ହେବ ।

ତେଣୁ ପୂର୍ବ ଅନୁବାଦରେ ପ୍ରକାଶିତ ହେବ—

"ପ୍ରଥମ ବାର ଜମନେ ମାଅ । ଅପନି ପାଠାଇଅ ଦିଅଛିଲେନ
ଆମାର ସାଥେ ଛୋଟ କାକା ଗିଅଛିଲେନ ।"

କିନ୍ତୁ ଜଣେ ଆଧୁନିକ କବିଙ୍କ ଏକ କବିତାଂଶ—

"ଭାଦର ନୀଳାକାଶ ବାଦଲ ରଖେ ଅଛି ଘୋଡ଼ାଇ''ର ରୂପାନ୍ତର ବଙ୍ଗ ଭାଷାରେ କି ସହଜ ଦେଖାଯାଉ—

'ଭାଦର ନୀଳାକାଶ ବାଦଲ ଘଟେ ଅଛି ଢାକିଅ'

ଏହି କୃତ୍ରିମ ପନ୍ଥାରେ ପ୍ରଭାବିତ ହୋଇ ଭାଷା ସମାଧି ଘେନିବା ବେଳେ ସ୍ୱତନ୍ତ୍ରତା ରକ୍ଷା କରି ରହିଥିବା ଗାଉଁଲି ସାହିତ୍ୟ ପୁଣି ଜାତୀୟତା ଫେରାଇ ଆଣେ । ତେଣୁ ଏମାନ ଗୃହସ୍ଥର ଗନ୍ତାଘରର ଗୁପ୍ତ ପେଡ଼ିରେ ଥିବା ବସ୍ତ୍ରାଳଙ୍କାର ପୂରୁଷର ମଣିମୁକ୍ତା ହୀରା ମାଣିକ ସହିତ ସମାନ ଅଟେ ।

ଭାଷାର ଇତିହାସ ରଚନା କରିବାକୁ ଯିବାବେଳେ ଆମକୁ ଗାଉଁଲି ଗୀତ ଏବଂ ଗାଉଁଲି ଗଳ୍ପମାନ ପରମ ସହାୟକ ହୋଇଥାନ୍ତି । କେବଳ ଭାଷାର ନୁହେଁ, ଆମ କବିତାମାନଙ୍କର ଛନ୍ଦର ଇତିହାସ, ଆମ ଜାତିର ସାମାଜିକ ଅଗ୍ରଗତିର ମୂଳ ସମସ୍ୟାମାନ ନିର୍ଦ୍ଧାରଣ କରିବାରେ, ମୋଟରେ ଆମ ଜାତିକୁ ଚିହ୍ନିବାରେ ଗାଉଁଲି ସାହିତ୍ୟହିଁ ଆମକୁ ଭାଷା ରାଜ୍ୟରେ ବହୁତ ବିବର୍ତ୍ତନର ମୂଳ ବୋଲି ପରିଚୟ ଦେଇଥାଏ ।

ରାଜନୈତିକ ପରାଧୀନତା, ଯୁଗ ଯୁଗ ଧରି ସାମାଜିକ ସଙ୍କୋଚ ହେତୁ ଆମର ରକ୍ଷଣଶୀଳତା ଅଥବା ଆମର ନିଜତ୍ୱ ଏକପ୍ରକାର ଅଜ୍ଞାତ ଅନୁକରଣ-ଶୀଳତାରେ ପର୍ଯ୍ୟବସିତ ହେବାବେଳେ ଗାଉଁଲି ସାହିତ୍ୟର ସ୍ୱଚ୍ଛନ୍ଦ ପ୍ରକାଶ ଆମକୁ ଆତ୍ମରକ୍ଷାର ପ୍ରବୃତ୍ତି ଦାନ କରିବା ସ୍ୱାଭାବିକ । କିନ୍ତୁ ସେ ଦୃଷ୍ଟିରେ ଗ୍ରାମ୍ୟ ସାହିତ୍ୟକୁ ଗ୍ରହଣ କରାଯାଇ ନାହିଁ, ଅଥବା ସେପରି ଆଦର୍ଶ ଅଦ୍ୟାବଧି କେହି ଜନସମାଜ ସମ୍ମୁଖରେ ଥୋଇ ପାରି ନାହାନ୍ତି ।

ସେ ଉଦ୍ୟମରେ ଉତ୍କଳର ବରପୁତ୍ର ଦୁଇଜଣଙ୍କୁ କେବଳ ଦେଖିବାକୁ ମିଳେ । ଜଣେ ଓଡ଼ିଆ ଭାଷା ଓ ଛନ୍ଦ ସମ୍ବନ୍ଧୀୟ ମୌଳିକ କେତୋଟି ପ୍ରବନ୍ଧ ପ୍ରଣେତା ସୁପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ । ଦ୍ୱିତୀୟ ଭାଷାତତ୍ତ୍ୱବିତ୍

ଗବେଷକ ପଣ୍ଡିତବର ଗୋପୀନାଥ ନନ୍ଦ ଶର୍ମା ଏବଂ ଅପର୍ଣ୍ଣା ପଣ୍ଡାଙ୍କର ଉଗତମ ଲୀ ତାତ୍ପର୍ଯ୍ୟ ହିଁ ଯେତିକ ଦିଗ୍‌ଦର୍ଶନ କରାଇଥାଏ । ସେମାନେ ଓଡ଼ିଆ ଭାଷାର ଗୌରବ ସ୍ୱାତନ୍ତ୍ର୍ୟ ଅତି ସନ୍ତର୍ପଣରେ ଅନ୍ୱେଷଣ ଏବଂ ଆଲୋଚନା ଯେତିକ କରିପାରିଅଛନ୍ତି ।

ଅନନ୍ତର ଉତ୍କଳମଣି ଗୋପବନ୍ଧୁ ଏବଂ ତାଙ୍କର ସହଯୋଗୀମାନଙ୍କ ମଧ୍ୟରେ ପଣ୍ଡିତ ନୀଳକଣ୍ଠ ଏବଂ ପଣ୍ଡିତ ଗୋଦାବରୀଶ ନିଜ ନିଜ ରଚନାରେ ଓଡ଼ିଆ ଭାଷାର ଅକୃତ୍ରିମ ପ୍ରୟୋଗ ପ୍ରତି କେତେକାଂଶରେ ଜାଗ୍ରତ ଥିଲେ ବୋଲି ସ୍ୱୀକାର କରିବାକୁ ହେବ । ତା ଛଡ଼ା ଭାଷାକୋଷ ଲେଖକ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସଙ୍କଳ୍ପ ଏବଂ ରଚନା ଏ ଦିଗରେ ବିଶେଷ ସ୍ମରଣୀୟ ହୋଇ ରହିଅଛି । ସେହି କାରଣରୁ ବର୍ତ୍ତମାନର କେତେକ ଲେଖକ ମଧ୍ୟ, ରାଧାନାଥଙ୍କ ସାହିତ୍ୟ ପାଠକରି ପଣ୍ଡିତ ହୋଇଥିଲେ ହେଁ ସେମାନଙ୍କ ରଚନାରେ ଗାଉଁଲି ଭାଷା ଓ ସାହିତ୍ୟ ପ୍ରତି ଶ୍ରଦ୍ଧା ଏବଂ ଯତ୍ପରୋନାସ୍ତି ସମ୍ମାନ ଦାନ କରିଅଛନ୍ତି । ତେଣୁ ଗାଉଁଲି ସାହିତ୍ୟ ସଂଗ୍ରହର ପରିସର ଯେତେ ବଢ଼େ ସେତେ ମଙ୍ଗଳଦାୟକ ଏହା ଲୋକମତ ହୋଇଗଲାଣି ।

## ୩ । ଗାଉଁଲି ଗୀତର ଜନ୍ମ—

ଗ୍ରାମ୍ୟ ଜନତା କୋଟି କୋଟି ସ୍ଥଳେ ପୌରଜନତା ମୁଷ୍ଟିମେୟ ଅଟନ୍ତି । ପୌର ସାହିତ୍ୟ ଦେଶର ଶାସନଗୋଷ୍ଠି ମଧ୍ୟରେ ଏବଂ ଶିକ୍ଷିତ ଗୋଷ୍ଠି ମଧ୍ୟରେ ପ୍ରଚଳିତ ଏବଂ ସଯତ୍ନ ରକ୍ଷିତ । କାରଣ ସେଥିପାଇଁ କାଳି ଅଛି—କଲମ ଅଛି । ଲେଖନ ଅଛି—ତାଳପତ୍ର ଅଛି, ମନ୍ଦିର ଅଛି—ପ୍ରାସାଦ ଅଛି । କିନ୍ତୁ କୋଟିକୋଟି ଗ୍ରାମ୍ୟ ନରନାରୀର ଆଶା ଆକାଙ୍କ୍ଷା, ସୁଖ ଦୁଃଖ, ବାଦବୋବାଳି—ହୁଳହୁଳି ଯେବେ ଯେଉଁ ସାହିତ୍ୟ ସଙ୍ଗୀତ ଫୁଟି ଉଠେ ତାର ଆଧାର ନ ଥିଲା ବା ଏବେ ମଧ୍ୟ ନାହିଁ । ସ୍ମୃତି ତାର ବାହକ—ସ୍ମୃତିରୁ ଯେପରି ଶ୍ରୁତି ହେଲା । ଆଦିମ ଯୁଗରେ ମନୁଷ୍ୟର ଯେଉଁ ଶ୍ରୁତିଧର କ୍ଷମତା ଥିଲା, ତାହା କ୍ରମଶଃ ଲୁପ୍ତ ହୋଇ ଆସିବାରୁ ଅତି ପୁରୁଣା ଗାଉଁଲିଗୀତମାନ ବିସ୍ମୃତି ଗର୍ଭରେ ଲୀନ ହୋଇଗଲା । ଲକ୍ଷ ଲକ୍ଷ ନୁହେଁ—କୋଟି କୋଟି ଗୃହୁଁ ଗୃହୁଁ ହଜିଗଲା । ଇଂରାଜୀ ଶିକ୍ଷାଫଳରେ କାହାର ପ୍ରାଣ ମଧ୍ୟରୁ ଏ କବିତାମାନ ନିଗାଡ଼ି ପୋଛି ବାହାର କରି ଦିଆଗଲା । ଏପରି ଏବେ ହୋଇଛି ଜଣେ ବୁଢ଼ୀ ଜନନୀ ଏକ ଅତି ମଧୁର କବିତା ଯାହା ଶୁଣି ଶୁଣି ସେ ମୁଖସ୍ଥ ରଖିଥିଲେ, ତାଙ୍କର ସ୍ନେହମୟୀ ବଧୂକୁ ଘରେ ବହିସାରି ଜଣେ ଇଂରେଜୀ ପଢ଼ୁଆ ଯୁବକର ପରିହାସରେ ଭୁଲିଛନ୍ତି ବା ଏକାବେଳେ ଭୁଲି ଯାଇଛନ୍ତି । ଫଳରେ ଗ୍ରାମ୍ୟ ସ୍ୱାଧୀନ ସ୍ୱଚ୍ଛନ୍ଦ ବିଳାସ ଭୂମିରେ ବିଦେଶୀ ପ୍ରଭାବ ବିଦେଶୀ-ଭାଷା-ଶିକ୍ଷା ବିଳକ୍ଷଣ ବୃଦ୍ଧି କରିଛି । ତଥାପି ଏତେ ସତ୍ତ୍ୱେ ଯେତେ

ଲୁପ୍ତ ହେଲେହେଁ ପୁଣି ସହସ୍ର ସହସ୍ର ବର୍ଷ ରହିଛି । ସେ ସବୁ ଜପର ମନୁଷ୍ୟ ମୁଖରୁ ଉଦ୍ଗାରରେ ପ୍ରକାଶିତ ହୋଇଥିଲେ ତା ଭାବିବାକୁ ଚମତ୍କାର ଲାଗେ । ମୁକ ହଳିଆ ଦଳେ ଦୂରବର୍ତ୍ତୀ ବିଲରେ ହଳ କରୁ କରୁ ତୃଷାରେ ଅଧୀର ହୋଇ ଜନ୍ଦ ଜଳ ଗହ୍ୱର ଯାହା ତାକୁ ଅକାଶବ୍ୟାପୀ ଦେଖାଯାଉଛି—ସେଇଠି ତାର ମନର ପରିତୃପ୍ତି ପାଇଁ, ଶ୍ରମର ଲଘୁତା ପାଇଁ, ଗୀତ ଗାଇଛି । ତାର କେଉଁ କବିତାରେ ଗଭୀର କ୍ଷୋଭ ଫୁଟିଛି ତ, କେଉଁ ରଚନାରେ ମନର ପ୍ରଫୁଲ୍ଲତା ଫୁଟି ଦେଖା ଦେଇଛି । ଧାନ ଗଛ ମେଲିଲା ବେଳେ, ବଢ଼ୁଥିବା ବଛବେଳେ, ଧାନ କଟାବେଳେ ତାର ଆନନ୍ଦ ଦେଖେ କିଏ ? ହଳିଆ-ଗୀତମାନ କୃଷକ ଭୁଣ୍ଡରୁ ଏହିପରି ସ୍ୱରରେ ଦଳେ ଜନ୍ମ ଲଭିଚାଲି ଏ ଭୁଣ୍ଡରୁ ସେ ଭୁଣ୍ଡକୁ ଗଡ଼ିକରି ଗୁଞ୍ଜିଛି । କୃଷକ ସେ ସବୁ ଚିରକାଳ ଗାଇ ଗାଇ ଗ୍ରାମ ପଦା ବିଲ ଦଣ୍ଡାକୁ ଏବେ ମଧ୍ୟ ଆନନ୍ଦ ମୁଖର କରି ରଖିଅଛି ।

ସୁକୋମଳା ଗ୍ରାମ୍ୟବଧୂ ଦୁଃଖ ଯନ୍ତ୍ରଣାରେ ଦଳେ ବାଡ଼ପାଖ ଯୋଡ଼ିକୁଲକୁ ଦପହର ଖରାରେ ଗୃହଯାଉଛି । ଯନ୍ତ୍ରଣାରୁ ଅଶ୍ୱସ୍ତି ପାଇବାକୁ ସେ କର୍ଜ୍ଜନ ଭୂମିରେ ଯାଉ ଯାଉ ପ୍ରଥମେ ଶୁଣିଛି—କୋଇଲିର ମଧୁର ସ୍ୱନ । ବଧୂର ଅନ୍ତଃସ୍ଥରେ ତାର ଅନ୍ତରରେ ଏକ ସ୍ୱାଚ୍ଛନ୍ଦ୍ୟ ପ୍ରକଟିତ ହୋଇଛି । ଏତିକିବେଳେ 'ହଳଦିବସନ୍ତ' ଡାକ ଦେଇଛି ମଧୁର ଧ୍ୱନିରେ 'କୃଷ୍ଣ କୋକୋ ଦିହା' । ଯଶୋଦା କୃଷ୍ଣକୁ ହଳଦି ଲଗାଇ ଦେବାବେଳେ ଡକିବାକୁ ଡାକୁ ଡାକୁ ସେଇ ଚଢ଼େଇଟି ପାଖରେ ଯାଇ ବସିବାରୁ କୃଷ୍ଣଙ୍କର ଅଳ ଅଙ୍ଗ ଲାଗି ଯାଇଥିଲା । ଯଶୋଦା କହୁଥିଲେ—'କେତେ ମୋର ଉପକାର କଲୁ' ? ଯୁ। କହି ସ୍ନେହରେ କୃଷ୍ଣଙ୍କୁ ଲଗାଇ ଦେଉଥିବା ହଳଦୀ ତା ଦେହରେ ମାଖିଦେଇଥିଲେ ବୋଲି ବଧୂଟି ଶୁଣି ଅଛି ।

ବଧୂର ଆଖିରେ ଯଶୋଦା, କୃଷ୍ଣ, ଆଉ କଣ ଆଉ କଣ କେତେ କଣ ନାଚ ଉଠିଛି । ଦୂର ବନରୁ ଚମ୍ପା ପୁଷ୍ପ ଏବଂ ଚହଟିଆ ଚଢ଼େଇର ଚହ ଚହ ମହମହ ଡାକ ତାକୁ ବିହ୍ୱଳିତ କରି ଦେଉଛି । ଏସବୁ ମଧୁର ଧ୍ୱନି ମଧୁର ସ୍ୱପ୍ନ ଭିତରେ ଥାଇ ବଧୂଟି ଗାଇଛି କବିତାରେ ତାର ଅନୁଭବମାନ । କରୁଣରସ ଅବା ମୂର୍ତ୍ତି ଧରିଛି ସେ କବିତାରେ । ନିସର୍ଗ ପ୍ରକୃତିର କୋକିଳ ପଞ୍ଚମ ସାଥିକୁ ସେ ଅବା ମଧୁର ମୁରଲୀର ବିଦଗ୍ଧ ଧ୍ୱନି । ନାହିଁ ଛନ୍ଦ—ନାହିଁ ଅଲଙ୍କାର । ମାଧୁରୀରଭରା ସେ ସ୍ୱନରେ ନାରୀର ଯୁଗଯୁଗାନ୍ତବ୍ୟାପୀ ପୀଡ଼ାର ଅନୁଭୂତି ପ୍ରଥମ-କରି ବିଶ୍ୱଜଗତରେ ପ୍ରକାଶିତ ହୋଇଅଛି ଅବା ?

'ଶାଗ କାଟିବି ବୋଲି ପଶିବି ଥୋଇ
ମନ ନିକଳ ହେଲା ପଡ଼ିଲି ଶୋଇ ଲୋ ।

ହାତରୁ ଖଣ୍ଡା ମୁଅଁ ଆଣନ୍ତ ବୁଣି
ବୋଇଲ ତୋର ସ୍ୱର ଅସିଛୁ ଅଣି ଦେ' ।
ହା ହା, ମୋ ପ୍ରତି କ ଲଜ୍ଜା ? କ ଅପମାନ ?'

ପୁନଶ୍ଚ

'ଘଷିଦେବାକୁ ଗଲେ ସେ ଇଟାନ୍ତ ଗୋଳ
ଅରକ୍ଷିତ ଟୋକୀ ମୋର ଚୁଅନ୍ତା ଗୋଡ଼ ଯେ
ଫିଙ୍ଗି ଯେ ଫୋପାଡ଼ କ୍ୟନ୍ତ ପତ୍ରୁଣ୍ଡ ଚୁଲ
କବାଟ ଯେ କଲ ଦ୍ୟନ୍ତ ଅନ୍ଧାର ଘର ଯେ ।
ପତ୍ରୁଣ୍ଡରେ ଠିଅ ହୋଇ ବୁହାଏ ଲୁହ
ବୋଉ ନନା କଲେ ଇଅ ସହୁଣ୍ଡ ଦହ ଯେ ।'

ଅହା, ଏ କାରୁଣ୍ୟ ପଥର ତରଳାଇ ଦଏ । ଯେଉଁ ମହାକବମାନେ ନାରୀ କେବଳ ରତପ୍ରୀତର ଇସ୍ତ ବୋଲି ଦେଖନ୍ତ, ସେମାନେ ଏଇଠି ହାର ମାନନ୍ତ । କେବଳ ବାଲ୍ମୀକଙ୍କ ଜନକକେମାର ପୃଷ୍ଠିଭୁତ କାରୁଣ୍ୟ ଅବା ଅକ୍ଷତରେ ସେଇ କୋଡ଼କୁଲରେ ଫୁଟି ଉଠେ ।

ଘୋର ଗ୍ରୀଷ୍ମରେ ଶିଶୁ କାଠ ଅଣସର ଗୁଡ୍ଡୁଲରେ ବ୍ୟଥିତ ହୋଇ ଉଠେ । ମେଘ ଦନେ ଦେଖାଦଏ । କନ୍ତୁ ବର୍ଷେ ନାହିଁ । ଶିଶୁ ଅନାଇଁ ଅନାଇଁ ତାର ଅଖିରୁ ପାଣି ମରେ । ଦନେ ହଠାତ୍ ଟୁପୁ ଟୁପୁ ହୋଇ ବର୍ଷା ଧରଣୀ-ପୃଷ୍ଠରେ ପଡ଼େ ତ ଦେଖ ଶିଶୁର ଉନ୍ମାଦନା ! ଗ୍ରାମ ଦାଣ୍ଡରେ ଟୁପୁ ଟୁପୁ ବର୍ଷା ତଳେ ନାଚକୁ ହଜାଇ ଦେଇ ଶିଶୁ ତୁଣ୍ଡରୁ କବତା ଫୁଟେ—

'ମେଘ ବରଷିଲ ଟୁପୁରୁ ଟାପେରେ
କେଶୁର ମାଇଲ ଗଜା
ସୋନପୁରରେ ଟମକ ବାଜଇ
ଲେଉଟି ଅଇଲେ ରଜା ।'

ରଜାଙ୍କ ସାଥିରେ କସ୍ତେ ତାର ବାପ ଲେଉଟି ଅସିଥିବ । ସାର ଓଡ଼ିଆ ଜାତର ଶିଶୁ ବର୍ଷାଦନ ଉପଗତ ହେବାରୁ ଅଶା କର ବସେ, 'ତାର ସାର ପିତା କଣସ୍ତ ଏଥର ଲେଉଟି ଅସିବେ ।'

ଗାଉଁଲ ଗୀତମାନ ଏହିପର ରଚତ ହୁଏ । ଶୋକରୁ ଶ୍ଳୋକର ଉଦ୍ଭବ ପର ଏ କବତାମାନଙ୍କରୁ ଅଧିକାଂଶ କରୁଣରସାଶ୍ରିତ ଅଟେ । ଅନନ୍ଦରେ ବାଦ୍ୟ ବଜାଇ ଯେଉଁ କବତା ଗ୍ରାମ ପଥରେ ଗାଉଁଲ ଲୋକେ ଗାଇଥାନ୍ତ, ସେଥିରେ ମଧ୍ୟ କାରୁଣ୍ୟ ନ ଥିଲେ ତାହା ଜନପ୍ରିୟ ହୁଏ ନାହିଁ । ଗ୍ରାମ୍ୟ ସଙ୍ଗୀତମାନ ସ୍ୱରତର ଯେଉଁଠି ଜନ୍ମ ଲଭଥାଉ ସେ ସମସ୍ତ ଗୋଟିଏ ଜନ୍ତା, ଗୋଟିଏ ଅଶା

ମଧ୍ୟରେ ନକ୍ସ ଥିବାର ଜଣାଯାଏ । ବଙ୍ଗ ଭାଷାରେ—'ବଷ୍ଟି ପଡ଼େ ଟାପୁର୍ ଟୁପୁର୍' ଯେଉଁ ଚିନ୍ତାରୁ ସମ୍ଭୂତ, ଓଡ଼ିଆରେ—'ମେଘ ବରଷିଲ ଟୁପୁରୁ ଟାପେରେ' ପ୍ରାୟ ସେହି ଚିନ୍ତାରୁ ସମ୍ଭୂତ । କେବଳ ଜୀବନଧାରଣର ପାର୍ଥକ୍ୟ ଯୋଗ ମନୋଭାବ ଯେତିକି ପୃଥକ୍ ଜଣାଯାଏ । ଏମନ୍ତ କି ଧରଣୀର ଏହି ସଙ୍ଗୀତମାନଙ୍କୁ ଯେଉଁମାନେ ଏକାଠି ଦୃଷ୍ଟିପଥକୁ ଆଣି ପାରିଅଛନ୍ତି ସେମାନେ ଏହି ସଙ୍ଗୀତମାନଙ୍କରେ ଗୋଟିଏ ଆଶା ଓ ଚିନ୍ତା ଲକ୍ଷ୍ୟ କରି ବସୁଧା ଯେ ଏକ କୁଟୁମ୍ବ ଏଥିରେ ନିଃସନ୍ଦେହ ହୋଇ ପାରିଛନ୍ତି ।

## ୪ । କପର ଏ ସବୁ ଗାନ କରାଯାଏ—

ଏହି କବିତାମାନ ଅଧିକାଂଶ ବ୍ୟକ୍ତିଗତ ଭାବରେ ପଠିତ ହୁଏ । କେତେକ ମଧ୍ୟ ସମଷ୍ଟିଗତ ଭାବରେ ପଠିତ ହୋଇଥାଏ । ନାରୀ ଭୁଣ୍ଡରେ ଦ୍ୱିପ୍ରହର ବେଳେ ଢିଙ୍କିଶାଳରେ ଝିଅବୋହୂଙ୍କ ସମକ୍ଷରେ ମାଆ ଗାଇଥାନ୍ତି ତ, କେବେ ପାହାନ୍ତା ବେଳେ, ସଞ୍ଜବେଳେ ଶିଶୁର ଅନନ୍ଦ ପାଇଁ ମଧ୍ୟ ବୋଲିଥାନ୍ତି । ଜୀବନର ଦୈନନ୍ଦିନ ଘଟଣା ଯୋଗ ଏ ସଙ୍ଗୀତମାନ ଏପରି ଫୁଟିଉଠେ ଯେପରି ପଲ୍ଲିର ଭିତର ବାହାର ଚଳଦଗକୁ ଅମ ସଙ୍ଗୀତ ଅବୋରି ବସିଥାଏ ।

କଣୋଗମାନେ ମେଳ ହୋଇ ନାନା ଘଟଣାରେ ଯେଉଁ ଗାନ କରନ୍ତି ଅଥବା ପାଏକମାନେ ଲଢ଼ୁଇ ଘୋଷଣାରେ ଯେଉଁ ଦାଣ୍ଡୁଆଳ ସଙ୍ଗୀତ ଗାନ-କରି ପଥେ ପଥେ ମହୋତ୍ସବ କରନ୍ତି, ନୃତ୍ୟରେ ଯେଉଁ ସବୁ ଗୀତରେ ପାଳ ଧରାଯାଏ; ବୋହୂ, ବ୍ରତ, ଦେଉ, ନାଉଳ ଅବରେ ଯେଉଁ ଗୀତମାନ ଗ୍ରାମ୍ୟ-ବଧୂମାନେ ଏକତ୍ରିତ ହୋଇ ଗାନ କରିଥାନ୍ତି, ଏମନ୍ତ କି ଯାତ୍ରା ଉତ୍ସବ ଅବରେ ପଲ୍ଲିର ବାଦ୍ୟଯନ୍ତ୍ର ସାହାଯ୍ୟରେ ଯେଉଁସବୁ ଗୀତ ବୋଲା ହୋଇଥାଏ,ସେ ସମସ୍ତ ମିଳିତ କଣ୍ଠରେ ଗୀତ ହୋଇଥାଏ । ଚନ୍ଦନଗ୍ରାମରେ ଘଣ୍ଟ ବଜାଇ ଗ୍ରାମ୍ୟଲୋକେ ଗାଇ ଗଲନ୍ତି ବଜ୍ରକଣ୍ଠରେ—

> 'ଚନ୍ଦନ ଗଛରେ ଚଢ଼ୁଚି ଚୁଅଚନ୍ଦନ ବାସ
> ଅହା ପ୍ରାଣନାଥ ବୋଲିଣ ଘରେ ଛାଡ଼େ ନିଃଶ୍ୱାସ ।'

ସୁତରାଂ ଗାଉଁଲି ଗୀତମାନ କେଉଁ ବ୍ୟକ୍ତିଙ୍କ ଆଶା ଅକାଂକ୍ଷା ଭିତ୍ତି ପରିଜନଙ୍କ ଯୋଗ ଯେପରି ରଚିତ, ସେପରି ମଧ୍ୟ ପଠିତ ହୁଏ । ବ୍ୟଷ୍ଟି ଓ ସମଷ୍ଟି ମଧ୍ୟରେ ସେପରି ମଧ୍ୟ ଅଦ୍ଭୁତ ହୋଇଥାଏ ।

## ୫ । କବିତାର ରଚକ—

ଏଥିର ଅଧିକାଂଶ କବିତା ନାରୀ ରଚନାର ପରିଚୟ ଦିଏ । ଝିଅବୋହୂଙ୍କ ସୁଖ-ଦୁଃଖ, ହୁଳହୁଳି କାନ୍ଦଣା, କଣୋଗଙ୍କ ମେଳ ଗୀତିକା, କନ୍ଦନାଗୀତି,

ଗାଁ ପିଲଙ୍କ ଗୀତକୁ, ଚଗଡ଼ମାନଙ୍କର ଅଧିକାଂଶ, ଗାଆଣିମଙ୍ଗଳବୋଲି ମାନ କେବଳ ନାରୀ ରଚନା ବୋଲି ବିଶ୍ୱାସ ଅଛି ।

ପଲ୍ଲୀନାରୀ ଏବେ ମଧ୍ୟ ଯନ୍ତ୍ରଣାରେ ଅସ୍ଥିର ହୋଇ ସ୍ୱର ଧରି ଯେଉଁ କ୍ରନ୍ଦନ ଆବୃତ୍ତି କରେ ତାହା ଯାନ୍ତ୍ରିକ ବ୍ୟବସ୍ଥାରେ ଗ୍ରହଣ କରାଗଲେ ସ୍ପଷ୍ଟ ଜଣାଯାନ୍ତା ଯେ ଗୋଟିଏ ମୂର୍ଖ ସ୍ତ୍ରୀ ତାର ଅନୁଭୂତିମାନ କି ଯୁକ୍ତିଯୁକ୍ତ ଏବଂ ରସବନ୍ତ ଭାବରେ ବଖାଣି ପାରିଅଛି । ତେଣୁ ପୂର୍ବୋକ୍ତ କବିତାମାନ ସ୍ତ୍ରୀଜାତିର ରଚନା କହିବା ଅଯୁକ୍ତିଯୁକ୍ତ ହୁଏ ନାହିଁ । ଅନ୍ୟାନ୍ୟ କବିତାମାନ କୃଷକ, ପାଏକ ଇତ୍ୟାଦି ନାନା ଜାତିର ପୁରୁଷ ତୁଣ୍ଡରୁ ରଚିତ ହୋଇଥାଏ ।

ଏହା ବ୍ୟତୀତ ପୌର ସାହିତ୍ୟିକ ଅନେକେ ଗାଉଁଲି ଭାଷାରେ କେତେକ କବିତା ପ୍ରସଙ୍ଗ କ୍ରମେ ରଚନା କରିଥାନ୍ତି । ବେଳେ ବେଳେ ଗ୍ରାମ୍ୟ ଜନତାର ହୁଏତ ସେଥିରେ ଶ୍ରୁତିସୁଖ ଅଛି । କବିତାର ମାଧୁରୀରେ ଆକୃଷ୍ଟ ହୁଏତ ସେ ଶୁଣିବା ମାତ୍ରେ ତୁରନ୍ତ ତାହା ଆପଣେଇ ନେଇଯାଏ । ଏପରି ଅନେକ କବିତା କେବଳ ପୁରୁଷ ନୁହେଁ, ଗ୍ରାମେ ଗ୍ରାମେ ନାରୀ ତୁଣ୍ଡରୁ ମଧ୍ୟ ଶୁଣାଯାଇଥାଏ । ଜଣେ ନୁହେଁ, ଶତ ଶତ ନାରୀ ଗାଇଥାନ୍ତି—"ଭଣେ ବଳରାମ ଦାସ ଯେ ପଶିଲି ଶରଣ ।" ତେଣୁ ଏପରି ପୋଥି ଗୀତମାନ ଗାଉଁଲି ଗୀତ ସଂଗ୍ରହ ମଧ୍ୟରେ ସ୍ଥାନ ଦିଆଯିବା ଅସଙ୍ଗତ ମନେ ହୁଏ ନାହିଁ ।

## ୬ । ଉତ୍କଳ ଗାଉଁଲି ଗୀତ ସଂଗ୍ରହର ଇତିହାସ—

ଉତ୍କଳ ଗାଉଁଲି ଗୀତ ସଂଗ୍ରହର ଇତିହାସ ବେଶୀ ଦିନର ନୁହେଁ । ଯେଉଁମାନେ ବହୁତ ପୂର୍ବରୁ ବୋଲି କହିବେ, ସେମାନେ ଜାଣିବା ଉଚିତ ଯେ, ସେତେବେଳେ ଗାଉଁଲି ଗୀତ ନାମ ପର୍ଯ୍ୟନ୍ତ ଜନସମାଜରେ ଚର୍ଚ୍ଚା ନ ଥିଲା । କେବଳ ପ୍ରବଚନମାନଙ୍କୁ ଚଗଡ଼ମାଳ ଭାବରେ କେହି କେହି ସଂଗ୍ରହ କରିଥିଲେ ମାତ୍ର । ଉକ୍ତ ଚଗଡ଼ମାଳୀ ସଂଗ୍ରହକୁ ଗାଉଁଲି ଗୀତର ଆଦିମ ଇତିହାସ କହିଲେ ସତ୍ୟର ଅପଳାପ ହେବ । କାରଣ ଭାରତୀୟ ଗ୍ରାମ୍ୟ ଗୀତ ସଂଗ୍ରାହକ ପ୍ରଫେସର ଦେବେନ୍ଦ୍ର ସତ୍ୟାର୍ଥୀ ୧୯୩୩ ରେ କଟକ ଆସିବା ବେଳେ ଗାଉଁଲି ଗୀତର ଧାରଣା ପୌରଜନମାନଙ୍କ ମଧ୍ୟରେ ପ୍ରାୟ ନ ଥିଲା । କେବଳ ଜଣେ ମାତ୍ର ପୌର ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ କେତେକ ଚଗଡ଼ମାଳୀ ପ୍ରକାଶ କରି ଗାଉଁଲି ଗୀତ ସଂଗ୍ରହ କରିବାକୁ ପ୍ରସ୍ତାବ ମାତ୍ର କରିଥିଲେ । ଏମନ୍ତ କି ଗାଉଁଲି ଗୀତରୁ ସେ ପର୍ଯ୍ୟନ୍ତ ଚଗଡ଼ମାଳ ବ୍ୟତୀତ ଅନ୍ୟ ପ୍ରକାର ପଦଟିଏ ମଧ୍ୟ ସଂଗୃହୀତ ହୋଇ କେଉଁ କାଗଜରେ ପ୍ରକାଶିତ ହୋଇ ନ ଥିଲା । ସତ୍ୟାର୍ଥୀ ବନ୍ଧୁ ସାହିତ୍ୟିକଙ୍କୁ ଭେଟି ନିରାଶ ହୋଇଥିଲେ । ସେ ସ୍ୱର୍ଗତ ପ୍ରହରାଜଙ୍କୁ ବିଶେଷ କରି ଏ ସଂପର୍କରେ

ସାହାଯ୍ୟ କରିବାକୁ ବାଧ୍ୟ କରିବାରୁ ପୁଚ୍ଛ୍ୟ ପ୍ରଶଂସକ ତାଙ୍କୁ ମୋତେ ଅନୁସନ୍ଧାନ କରିବାକୁ ଉପଦେଶ ଦେଇଥିଲେ ।

ସତ୍ୟାର୍ଥୀଙ୍କୁ ଗୋଏନ୍ଦା ବିଭାଗୀୟ ବୋଲି ସେତେବେଳେ ଶିକ୍ଷିତମାନେ ଆଶଙ୍କା କରୁଥିବାରୁ ମୋର ନାମଧାମ ତାଙ୍କ ଟିପ୍‌ପଣୀରୁ ଜାଣିପାରି ମୋର ବନ୍ଧୁମାନେ ମୁଁ କେଉଁଠି ଅଛି ବୋଲି ଠିକଣା ନ ଦେଇ ଠକୁଥିଲେ । ସ୍ୱର୍ଗତ ବାଳକୃଷ୍ଣ କରଙ୍କ ଉପସ୍ଥିତିରେ ତାଙ୍କର ସେତେବେଳର ଏକ ପୁସ୍ତକାଳୟ ସମକ୍ଷରେ ଶ୍ରୀଯୁକ୍ତ କର ମୋର ପରିଚୟ ଦେବା ମାତ୍ରେ ସତ୍ୟାର୍ଥୀ ମୋତେ ହଠାତ୍ ଆଲିଙ୍ଗନ କରିବା ଦେଖି ମୋର ଅନେକ ବନ୍ଧୁ ଭୟ ବିହ୍ୱଳ ହୋଇଥିଲେ । କାରଣ ମୁଁ ୧୯୨୮ ଏବଂ ୧୯୩୧ ଏ ଦୁଇବର୍ଷ ଦିଲ୍ଲୀରେ ରହିଥିଲି । ଏମନ୍ତ କି ଭାରତ ବଡ଼ ବଡ଼ ସହରକୁ ଯାତାୟାତ କରୁଥିଲି । ତେଣୁ ଏପରି ସନ୍ଦେହ ଆସିବା ସ୍ୱାଭାବିକ ଥିଲା । ତା ପରେ ସେ ମୋତେ ଏକାନ୍ତ ବାଧ୍ୟ କରି କଳିକତା ବାଙ୍ଗାବଜାର ମୁଣ୍ଡରେ ଥିବା ବିନୋଦବିହାରୀ ଧର୍ମଶାଳାକୁ ନେଇ ଆସିଥିଲେ । ସେଠି ତାଙ୍କର ସ୍ତ୍ରୀ ମଧ୍ୟ ଥିଲେ । ମୋର ଏପରି ଦୁର୍ଦ୍ଦଶାରେ ମୋର ବନ୍ଧୁଗଣ ମୋତେ ସତ୍ୟାର୍ଥୀଙ୍କ ଅଲକ୍ଷରେ ମଧ୍ୟ ଗୋଡ଼ାଇ ଥିଲେ । ମୁଁ ବିନୋଦବିହାରୀ ଧର୍ମଶାଳାରେ ବସି ମୋର ଜନନୀ ମୋତେ ଶୈଶବରେ ଯେଉଁ ସବୁ ସଂଗୀତ ଗାଇ ମୁଗ୍ଧ କରୁଥିଲେ, ତାହା ସବୁ ସ୍ୱରଧରି ଗାଇବାର ଶୁଣି ଏବଂ ସତ୍ୟାର୍ଥୀ ଦାଂପତି ସେ ସବୁ ଅତି ଆଗ୍ରହରେ ଲେଖି ନେଉଥିବା ଦେଖି ମୋର ବନ୍ଧୁମାନେ ସନ୍ଦେହ ଦୂର କରିଥିଲେ ।

ସତ୍ୟାର୍ଥୀ ଯେଉଁ ମାସକ କାଳରେ ଥିଲେ ପ୍ରତ୍ୟହ ମୋ ବସାକୁ ଆସି ମୋତେ ଚକ୍ରଧର ନ ଡାକି ଉଜ୍ଜ୍ୱଳଧର ବୋଲି ବାରମ୍ବାର ଡାକୁଥିଲେ । ଏହାପରେ ଶ୍ରୀଯୁକ୍ତ ନବକିଶୋର ଦାସ ତାଙ୍କୁ କେତୋଟି ଗାନ୍ଧିଲି ଗୀତ ଦେଇ ଥିବାର ସେ ବାରମ୍ବାର କହୁଥିଲେ । ମଡର୍ଣ୍ଣ ରିଭ୍ୟୁ, ବିଶ୍ୱମିତ୍ର, ଏସିଆ ଆଦି କାଗଜରେ ସତ୍ୟାର୍ଥୀଙ୍କ ପ୍ରବନ୍ଧମାନ ପ୍ରକାଶିତ ହେବାରୁ ମୁଁ ତତ୍କାଳୀନ 'ସହକାର' ମାସିକ ସାହିତ୍ୟରେ ତହିଁର ଅନୁବାଦ ସ୍ୱର୍ଗତ ବାଳକୃଷ୍ଣ କରଙ୍କ ଅନୁରୋଧରେ ସର୍ବ ପ୍ରଥମେ କେତୋଟି ରଚନା ପ୍ରକାଶିତ କରିଥିଲି । ଫଳରେ ସେତେବେଳେ ରେଭେନ୍‌ସା କଲେଜରେ ପଢୁଥିବା ଛାତ୍ରମାନଙ୍କ ମଧ୍ୟରୁ କେତେଜଣ ଏକାନ୍ତ ପସନ୍ଦ କରି ମୋତେ ଅଭିନନ୍ଦିତ କରିବା ସଙ୍ଗେ ସଙ୍ଗେ ବନ୍ଧୁଭାବରେ ଗ୍ରହଣ କରିଥିଲେ ।

ସେମାନଙ୍କର ଏପରି ଅବାଞ୍ଛିତ ଅଯାଚିତ ସମାଦର ଦେଖି ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି । ତନ୍ମଧ୍ୟରେ ଦୁଇ ତିନିଜଣ ସ୍ପଷ୍ଟ ମନେପଡ଼ୁଛନ୍ତି—ଜଣେ ସ୍ୱର୍ଗତ ବରେଣ୍ୟ ଭଗବତୀଚରଣ ପାଣିଗ୍ରାହୀ ଏବଂ ବର୍ତ୍ତମାନର ସୁସାହିତ୍ୟିକ କବି ମାୟାଧରଙ୍କ



**ଶ୍ରୀମତୀ କନକମଞ୍ଜରୀ**

( ଏହ ଗ୍ରାମ୍ୟବଧୂ ଜଣକ ମାଟିବାଡ଼ରେ କାଠି ଖଣ୍ଡେକରେ ଗାଉଁଲି ଗୀତ ସର୍ବପ୍ରଥମ କର ଲେଖିଥିଲେ । )

ମାନସିଂହ ଅନ୍ୟତମ ଅଟନ୍ତି । ବିଶେଷତଃ ମୋର ଶୈଶବର ବନ୍ଧୁ ପରମାନନ୍ଦ ରଥ ଏମ୍. ଏ. ସେମାନଙ୍କୁ ମୋର ସନ୍ଧାନ ଦାନ କରିଥିବା କଥା ପରେ ଜାଣି ପାରିଥିଲି ।

ଏହାପରେ ଅତିଶୟ ଭାବରେ ଗାଉଁଲି ଗୀତମାନ ସଂଗ୍ରହ କରିହେଲା । ମୋର ସ୍ତ୍ରୀ ଶ୍ରୀମତୀ କନକମଞ୍ଜରୀ ମୋର ସଂଗ୍ରହରେ ବିଶେଷ ସାହାଯ୍ୟ କଲେ । ପ୍ରଥମେ ମୋର ଜନନୀ ଶୌରୀ ଦେବୀଙ୍କ କଣ୍ଠ ସଞ୍ଚିତ ସଙ୍ଗୀତମାନଙ୍କର ମୂଳପଦ-ମାନ ସେ କାଠି ଖଣ୍ଡିକରେ ମାଟିକାଢ଼ରେ ଅତି ସତର୍କତାର ସହିତ ଲେଖି ସେହି ସବୁ ପରେ ପୁରୁଣା କରିସାରି କାଗଜ କଲମକୁ ଉଠାଇଲେ । ମୁନସ୍ଥ ଗ୍ରାମରେ ଥିବା ବୁଢ଼ୀ, ବୋଉ ଏବଂ କନ୍ୟାମାନଙ୍କ ଠାରୁ ଅତି କଷ୍ଟରେ ଅନେକ ପଦ ସଂଗ୍ରହ କଲେ । ଯେଉଁମାନେ ଏ ସଂଗ୍ରହରେ ଯୋଗଦେଲେ ତନ୍ମଧ୍ୟରେ କିଏ ତାଳଚେର, ପୁରୀ, ବାଣପୁର, ନୂଆଗଡ଼ ଆଦି ଅଞ୍ଚଳରୁ ଥିଲେ ତ କିଏ ଅଠଗଡ଼, ଟିଗିରିଆ, ଢେଙ୍କାନାଳ, ରଣପୁର ଯାଇ ବାପଘରକୁ ଫେରିଥିଲେ । ତେଣୁ ବହୁ ଅଞ୍ଚଳର କବିତା ଗୋଟିଏ ସ୍ଥାନରୁ ସହଜରେ ସଂଗ୍ରହ ହୋଇ ପାରିଥିଲା ।

ଏହାପରେ ଶିଳ୍ପ କାର୍ଯ୍ୟବ୍ୟପଦେଶରେ ଅନେକ ବୁଲି ଯାଇ ବିଭିନ୍ନ ସ୍ଥାନରୁ ଅନେକ କବିତା ସଂଗ୍ରହ କରିଥିଲି । ମୁଁ ବିଭିନ୍ନ ଅଞ୍ଚଳ ବୁଲି କୃଷକ ଗୀତ, ଚଗଡମାଳୀ, ସମର ବୋଲି, ନୃତ୍ୟଗୀତ, ଯାନାଜତ୍ର ଗୀତ ଆଦି ସଂଗ୍ରହ କରିଥିଲି । ନରସିଂହପୁରର 'ଅଞ୍ଚଳ ପ୍ରବାହିଣୀ ସଂଘ' ନାମରେ ତତ୍କାଳୀନ ଏକ ଜାତୀୟ ଯୁବ ଅନୁଷ୍ଠାନ ଜରିଆରେ ପୁରସ୍କାର ଦେଇ କେତେକ କୃଷକକବିତା ମୁଁ ଲାଭ କରିଥିଲି ।

ଏହାପରେ ମୁଁ ଏବଂ ମୋର ସ୍ତ୍ରୀଙ୍କର ଏ ସଂଗ୍ରହ କାର୍ଯ୍ୟ ଜୀବନର ବ୍ରତ ହୋଇ ଯାଇଥିଲା । ବାଟେ ଘାଟେ ଯେଉଁଠୁ ମିଳିଲା ସେଠି ମଧ୍ୟ ଲେଖା ଚାଲିଥିଲା ।

୧୯୩୪ ରେ 'ଉତ୍କଳ ସାହିତ୍ୟ ସମାଜ'ରେ ମୁଁ ଗାଉଁଲି ଗୀତ ଚର୍ଚ୍ଚା କରିଥିଲି । ଜନବହୁଳତା ଏତେ ହୋଇଥିଲା ଯେ ମୁଁ ହତଭମ୍ବ ହୋଇ ଯାଇଥିଲି । ମୋର ଏହି ସଂଗ୍ରହ ଏବଂ ପ୍ରବନ୍ଧ ପାଠରେ ମୁଗ୍ଧ ହୋଇ ମୋତେ ପ୍ରସିଦ୍ଧ ନାଟ୍ୟକାର ଶ୍ରୀ ଅଶ୍ୱିନୀକୁମାର ଘୋଷ ଏମ୍. ଏ. କୁଣ୍ଢାଇ ଧରି କହି ଥିଲେ—'ତୁମେ ଆଜ କେତେବର୍ଷ ତଳୁ ଦେଖା ଦେଇଥିଲେ ମୋର ଯେଉଁ ଟିକିକ ଅପବାଦ ଲଗା ହେବା ରହିଗଲା, ମୁଁ ସେଥିରୁ ନିସ୍ତୃତି ପାଇଥାନ୍ତି ।'

ଏମନ୍ତକି ସ୍ୱର୍ଗତ ରାଜକବି ରାଧାମୋହନ ରାଜେନ୍ଦ୍ର ଦେବ ମୋର ଏହି କୃତିତ୍ୱରେ ମୁଗ୍ଧ ହୋଇ ତାଙ୍କର ଏକ ବିଶ୍ୱକୋଷ ରଚନାରେ ନିଯୁକ୍ତ ପରଓ୍ୱାନା ଦେଇ ଡାକିଥିଲେ । ଅବଶ୍ୟ ମୁଁ ନାନା କାରଣରୁ ମୋର ବ୍ୟକ୍ତିଗତ ଅସୁବିଧାରୁ ଯୋଗ ଦେଇ ପାରି ନ ଥିଲି । ଉକ୍ତ ସାହିତ୍ୟ ସଭା ଭାଙ୍ଗିବା ପରେ

ମୁଁ ଅକସ୍ମାତ୍ ବହୁ ସାହିତ୍ୟିକ ବନ୍ଧୁ ଲାଭ କରିଥିଲି । ତାହାହିଁ ମୋ ଜୀବନର ଏକ ସ୍ମରଣୀୟ ସ୍ମୃତି ହୋଇଥିଲା । ବର୍ତ୍ତମାନର ବହୁ ପ୍ରବୀଣ ସାହିତ୍ୟିକ ମୋତେ ଲେଖିଥିଲେ—'ଅପେକ୍ଷା କରନ୍ତୁ, ଦେଶ ଦିନେ ତାର ମୂଲ୍ୟ ବୁଝିବ' ।

ଏହାପରେ ଆମ୍ଭେମାନେ ପାଣ୍ଡୁଲିପିଟିକୁ ଗଢିଥିଲୁଁ ଏବଂ ଉକ୍ତ ପାଣ୍ଡୁଲିପିଟି ହଜାର ପୃଷ୍ଠାର ହୋଇଥିଲା । ଏହି ପାଣ୍ଡୁଲିପିଟି ସେତେବେଳେ ଅଠ ଭାଗରେ ବିଭକ୍ତ କରାଯାଇଥିଲା । କିନ୍ତୁ ପରିଶିଷ୍ଟରେ ସମର ବୋଲି, ଚାଦଣା, ଗାଥଣି-ମଙ୍ଗଳ ବୋଲି, ଯାହା ଉତ୍ସବ ଗୀତ ଓ ନୃତ୍ୟଗୀତ ଆଦିରୁ ଅଳ୍ପ ଅଳ୍ପ ପଦ ରଖା ଯାଇଥିଲା । କାରଣ ସେତେବେଳକୁ ସେ ସବୁ ଯଥାସମ୍ଭବ ସଂଗ୍ରହ ହୋଇ ପାରି ନ ଥିଲା ।

୧୯୬୮ରେ ମୁଁ ଏବଂ ମୋର ସ୍ତ୍ରୀ ଉଭୟେ ସାହିତ୍ୟପ୍ରେମିମାନଙ୍କର ଏବଂ ସରକାରୀ ଦୃଷ୍ଟି ଆକର୍ଷଣ ଲାଗି ପୁଣି ରାମଚନ୍ଦ୍ର ଭବନରେ ମନସ୍ୱୀ ବ୍ରଜସୁନ୍ଦର ଦାସଙ୍କ ସଭାପତିତ୍ୱରେ 'ସଙ୍ଗୀତ ସମାଜ'ଦ୍ୱାରା ଏକ ସଭାରେ ଗାଉଁଲି ଗୀତର ମର୍ଯ୍ୟାଦା ବ୍ୟାଖ୍ୟା କରିଥିଲୁଁ । ଗାଉଁଲି ଗୀତମାନ ଉକ୍ତ ସଭାରେ ଅଧ୍ୟାପକ ଲକ୍ଷ୍ମୀଧରଙ୍କ କନ୍ୟା ସ୍ନେହମୟୀ, ଅଧ୍ୟାପକ ଅଭିବଲ୍ଲଭଙ୍କ କନ୍ୟା ବୀଣାପାଣି ଏବଂ ଶ୍ରୀ ଭାସ୍କର ଭୂୟାଁଙ୍କ କନ୍ୟା ବାସନ୍ତୀଙ୍କ ଦ୍ୱାରା ତତ୍କାଳୀନ ଓସ୍ତାଦମାନଙ୍କ ସାହାଯ୍ୟରେ ଏକାନ୍ତ ଚିତ୍ତାକର୍ଷକ ଭାବରେ ଗାନ କରାଯାଇଥିଲା ।

ଶ୍ରୀଯୁକ୍ତ ଯଦୁମଣି ମଙ୍ଗରାଜ ତାଙ୍କର ଜ୍ୱାଳାମୟୀ କଣ୍ଠରେ ସେଠାରେ କହିଥିଲେ—"ତାଙ୍କ ଅବାଧରେ ଜାତୀୟ ଗଭର୍ଣ୍ଣମେଣ୍ଟ ହୋଇଥିଲେ ଏ ସଂଗ୍ରହର ପ୍ରକାଶ ଲାଗି ଏମନ୍ତକି ଅଧିକ ଗୀତ ସଂଗ୍ରହ ଲାଗି ହଜାର ହଜାର ମୁଦ୍ରା ଦାନ କରି ପାରନ୍ତା । କିନ୍ତୁ ଏ ଅମୂଲ୍ୟ ସମ୍ପଦ ନଷ୍ଟ ହୋଇ ଯାଉଅଛି । ତେଣୁ ସର୍ବସାଧାରଣ ଏ ସଂଗ୍ରାହକଙ୍କ ପ୍ରତି ଦୃଷ୍ଟି ଫେରାନ୍ତୁ ।"

ଏହି ସମୟରେ ମୋର ସଂଗୃହୀତ ପାଣ୍ଡୁଲିପି ଉପରେ ସମଗ୍ର ଉତ୍କଳର ପ୍ରାୟ ଅଧିକାଂଶ ସାହିତ୍ୟିକ ଉଚ୍ଛ୍ୱସିତ ପ୍ରଶଂସାପତ୍ରମାନ ଦାନ କରିଥିଲେ । ଉକ୍ତ ସଂଗ୍ରହର କେତେକ କବିତାର ଇଂରେଜୀ ଅନୁବାଦ ପାଠକରି ଶ୍ରୀମତୀ ସରୋଜିନୀ ନାଇଡୁ, କବିବର ରବୀନ୍ଦ୍ରନାଥ, ପଣ୍ଡିତ ଜବାହରଲାଲ ଆଦି ବିଶ୍ୱବିଖ୍ୟାତ ପଣ୍ଡିତମାନେ ମଧ୍ୟ ପ୍ରଶଂସା ବାଣୀ ଶୁଣାଇଥିଲେ ।

ଶିକ୍ଷା ବିଭାଗୀୟ ଉଚ୍ଚକର୍ତ୍ତା ପାଣ୍ଡୁଲିପିଟିକୁ ନେଇ ତାହା 'ଉତ୍କଳ ସାହିତ୍ୟ ସମାଜ' ଜରିଅରେ ପରୀକ୍ଷା କରାଇ ପ୍ରକାଶିତ କରିବେ ବୋଲି ମତ ଦେଇଥିଲେ । କିନ୍ତୁ ସେ ପ୍ରସ୍ତାବ କାଗଜରେ ହିଁ ରହିଗଲା ।

ହିନ୍ଦି, ଇଂରେଜି, ଓଡ଼ିଆ ଅକ୍ଷରର ଚୁମ୍ବକ ବହି ଖଣ୍ଡିଏ କେନ୍ଦୁଝରର ଶ୍ରୀମତୀ ରାଣୀଙ୍କ ଯୋଗୁଁ କେବଳ ପ୍ରକାଶିତ ହେଲା । ଏହାପରେ କେତେ ସୁଯୋଗ ଆସିଲା ।

କିନ୍ତୁ କୌଣସିଟି କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ୧୯୪୬ରେ ସରକାରୀ ଧନ-ସତ୍ସାମାନ୍ୟ ଲାଭକରି ମୋ ନିଜ ଖର୍ଚ୍ଚରେ ମୋର ପରିକଳ୍ପନାନୁଯାୟୀ ମୁଁ ଗାଉଁଲିଗୀତ ପ୍ରଥମ ଖଣ୍ଡ 'ବୋହୂଙ୍କ ସୁଖଦୁଃଖ ଗୀତିକା' ପ୍ରକାଶିତ କଲି । କିନ୍ତୁ ବିଶାଳ ପାଣ୍ଡୁଲିପି ଏଣେ ବଢ଼ି ଚାଲିଥାଏ । କ୍ରମେ କ୍ରମେ ୧୨ ଖଣ୍ଡରେ ତାହା ବିଭକ୍ତ ହୋଇଗଲା । ସ୍ୱାସ୍ଥ୍ୟର ଅସ୍ଥିରତା ପୁଣି ସଙ୍ଗ୍ରାହକ ଏକ ଗଡ଼ଜାତବାସିନ୍ଦା ଥିବାରୁ ଗୋଟିଏ ଅତି ବ୍ୟାପକ ଅତି ପ୍ରୟୋଜନୀୟ ସଂଗ୍ରହ ଏ ପର୍ଯ୍ୟନ୍ତ ଲୁଚି ରହିଗଲା । ଅବଶ୍ୟ ଏହାପରେ ଡକ୍ଟର ଶ୍ରୀ କୁଞ୍ଜବିହାରୀ ଦାଶ ଗୋଟିଏ ସଂକଳନ ପ୍ରକାଶିତ କରି ଏହି ସାହିତ୍ୟର ମର୍ଯ୍ୟାଦା ବୃଦ୍ଧି ଯୋଗୁଁ ଅଭିନନ୍ଦିତ ହୋଇଅଛନ୍ତି ।

## ୭ । ସଂକଳନର ପରିଚୟ—

ମୋର ଏହି ସଂକଳନ ଉତ୍କଳର ଏକ ଅତି ପୁରାତନ ଅତି ଆବଶ୍ୟକୀୟ ସଂକଳନ ଅଟେ । ଏହା ପ୍ରକାଶିତ ହେବାପରେ ପଲ୍ଲିଗୀତର ପ୍ରକୃତ ସ୍ୱରୂପ କଣ ତାହା ଜନସମାଜ ଏବଂ ପୌରଗଣ ଅନୁଭବ କରିବେ । ମୋର ସଂକଳନ 'ସମର ବୋଲି' ଗୋଟିଏ ଅତ୍ୟାବଶ୍ୟକୀୟ ସଂଗ୍ରହ ଅଟେ । ଉକ୍ତ କବିତାମାନ ନିଜ ସୌରଭରେ ଦୀପ୍ତିମନ୍ତ ଅଟନ୍ତି । ଏପାଏ ଗାଅଣିମାନଙ୍କର 'ମଙ୍ଗଳ-ଗୀତିକା' ଯାହା ବିବାହ ବ୍ରତ ଆଦିରେ ଗାନ କରାଯାଏ, ତାହା ମୋ ବ୍ୟତୀତ କେହି ସଂଗ୍ରହ କରି ପାରିନାହାନ୍ତି । ସେ ଯାହାହେଉ ଏସବୁ ସହିତ ମୋର ସଂଗ୍ରହ ବୈଜ୍ଞାନିକ ଭାବରେ ଦ୍ୱାଦଶ ଭାଗରେ ବିଭକ୍ତ ହୋଇଅଛି ।

ଯଥା—ଝିଅବୋହୂଙ୍କ ସୁଖଦୁଃଖ ଗୀତିକା, ହୁଳହୁଳି କାନ୍ଦଣା, ଗାଅଣି ମଙ୍ଗଳ ବୋଲି, କିଶୋରୀଙ୍କ ମେଳ ଗୀତିକା, ଗାଁ ପିଲାଙ୍କ ଗୀତିକା, ଗ୍ରାମ୍ୟ ବନ୍ଦନା ଗୀତି, ଚଂଡମାଳୀ ବଚନ ପଦ, କୃଷକବୋଲି, ସମର ବୋଲି, ନୃତ୍ୟ-ଗୀତିକା, ଯାନୀଉତ୍ସବ ଗୀତିକା ଏବଂ ପକ୍ଷୀଶିଷ୍ଟିକୁ ଏପରି ଶୃଙ୍ଖଳାବଦ୍ଧ ଭାବରେ ସୁସଜ୍ଜିତ କରି ରଖାଯାଇଛି—ଯାହା ଉତ୍କଳୀୟ ପଲ୍ଲୀର ଅତୀତର ମହାନ୍ ସାକ୍ଷ୍ୟପାଇଁ ଏକ କଳ୍ପବୃକ୍ଷ ସ୍ୱରୂପ ହେବ । ଓଡ଼ିଆଜାତି ଓ ସମାଜର ନିଖୁଣ ଖାଣ୍ଟି ରୀତି ନୀତି, ମନୋଭାବ ଜାଣିବାକୁ ଏହି ସଂଗ୍ରହ ହିଁ ଏକମାତ୍ର ସମର୍ଥ ଗ୍ରନ୍ଥ ଅଟେ ।

ଅନ୍ୟ ଏକ ସଂଗ୍ରହରେ ଆମେ ଯେଉଁ ଗାଉଁଲି ଗଳ୍ପମାନ ଦେଇଅଛୁ ତାହା ଅତି ପୁରାତନ ତାଳପତ୍ର ପୋଥିମାନଙ୍କରୁ ସଂଗୃହୀତ ହୋଇଅଛି । ଓଡ଼ିଆ ଭାଷାରେ ଗଦ୍ୟ ରଚନାର ଇତିହାସ ପାଇଁ ସେମାନେ ପ୍ରକୃଷ୍ଟ ସାକ୍ଷ୍ୟହିଁ ପ୍ରଦାନ କରିପାରିବେ । 'ନାଗୁଲିଚଇଁଟି କଥା', 'ଧାନମାଣିକା କଥା', 'ରାଜକନ୍ୟା କଥା', 'ଦଣ୍ଡପୁଜାବିଧି' ଆଦି ବହୁଗଳ୍ପରୁ ପୁରାତନ ଗଦ୍ୟ ପ୍ରୟୋଗ ପ୍ରଣାଳୀ ଆମେ ସହଜରେ ଧାରଣା କରିପାରିବା । ସେ ପ୍ରସଙ୍ଗ ଆଲୋଚନାର ଏହା କ୍ଷେତ୍ର

ନାହିଁ । ତଥାପି 'ପଦ୍ମମାଳୀ' ପ୍ରଥମ ଓଡ଼ିଆ ଗଦ୍ୟ କି ବହୁ ଅତୀତରୁ ଓଡ଼ିଆରେ ଗଦ୍ୟ ରଚନା ରହିଥିଲା, ଆମ ୨ୟ ସଂଗ୍ରହ ପ୍ରକାଶିତ ହେବାପରେ ତାହା ପ୍ରମାଣିତ ହୋଇଯିବ । ବର୍ତ୍ତମାନ ସଂଗୃହୀତ କବିତାମାନଙ୍କ ସମ୍ବନ୍ଧରେ କିଛି ଆଲୋଚନା କରି ସେ ସବୁର ପରିଚୟ ଲାଭ କରିବା ।

## ୮ । ଝିଅ ବୋହୂଙ୍କ ସୁଖ ଦୁଃଖ ଗୀତିକା ( ପ୍ରଥମ ଖଣ୍ଡ )—

ଏହା ମୋ ସଂଗ୍ରହର ପ୍ରଥମ ଖଣ୍ଡ ଗାଥା କବିତା ଅଟେ । ଏ ବିଭାଗରେ ଝିଅଙ୍କ ଜୀବନ ଯେଉଁ ଗୃହଗୋଷ୍ଠି କବିତା ରହିଅଛି ସେପରି କରୁଣ ଗାଥା ଆମର କୌଣସି ସାହିତ୍ୟରେ ଅଦ୍ୟାବଧି କଳ୍ପନା କରାଯାଇ ନାହିଁ । କାରଣ ଆମର ସାହିତ୍ୟମାନ ଏକାନ୍ତ ପ୍ରେମମୂଳକ । ସେଥିରେ ସାଧାରଣ ଜୀବନର ଦୁଃଖକାହାଣୀ ଚିତ୍ରିତ ହୋଇ ନ ଥାଏ । ଝିଅ ପହିଲପାଳି ଯିବାବେଳେ ସାନ ଭଉଜ ଅଥବା ସ୍ୱଜନମାନ ସାଥିରେ ଛାଡ଼ିଯିବା, ବାପା ମାଆ ଶୋକରେ ଅଧୀର ହେବା, ପଡ଼ୋଶୀ ଲୁହ ପୋଛି ଦେବା, ଜ୍ଞାତି କୁଟୁମ୍ବ ଗ୍ରାମବାସୀ ସମସ୍ତେ ସବୁପ୍ରକାର ସହାନୁଭୂତି କରିବା, କନ୍ୟାର ଭାଇଙ୍କ ସଦୁପଦେଶ ଦେବା ଏବଂ ସାଙ୍ଗ ସାଥିମାନେ ଝୁରିହେବା ଘଟଣା ଏତେ କରୁଣ ରସାଶ୍ରିତ କବି କେହି ଲେଖି ନାହାନ୍ତି । ଏ ସବୁ ପଢ଼ୁ ପଢ଼ୁ ଆମ୍ଭର କାଠିନ୍ୟ ତରଳିଯାଏ । ପଶୁ ମଣିଷ ହୋଇଉଠେ ।

ବୋହୂଙ୍କ ବିଭାଗୀୟ କବିତାମାନ ପଢ଼ୁ ପଢ଼ୁ ଚକ୍ଷୁ ଲୋତକରେ ପୂରିଉଠେ । ଏ ଦେଶର ଘରେ ଘରେ ବାଳିକାବଧୂମାନେ ଯେଉଁ ଅକଥନୀୟ ଅତ୍ୟାଚାର ଭୋଗିଥାନ୍ତି, ଏହାହିଁ ତାର ପ୍ରକୃଷ୍ଟ କାବ୍ୟ ଅଟେ । ଏକଥା ନିଶ୍ଚିତ ସତ୍ୟ ଯେ ଏପରି ଅନୁପମ ସହଜ ନିରଳଙ୍କାର ଭାଷାରେ ଲିଖିତ କବିତା କେବେ ହେଲେ କାଳ କ୍ରମରେ ଶୁଣାଯାଇ ନ ଥାଏ । କୋମଳପ୍ରାଣା ବଧୂ ପ୍ରତି ଅତ୍ୟାଚାର ଏବେ ମଧ୍ୟ ଏକ ଭାରତୀୟ ସମସ୍ୟା । ତେଣୁ ଏ ସବୁ ଜୀବନ ଅମର ଲକ୍ଷିତ ହେବାର କୌଣସି କାରଣ ନାହିଁ । କିନ୍ତୁ ନାରୀଅତ୍ୟାଚାରର ଯୁଗଯୁଗାନ୍ତ-ବ୍ୟାପୀ ଶୋକାକୁଳିତ ଅନୁଭୂତିମାନ ଏହି କବିତାମାନଙ୍କରେ ଯେପରି ମୂର୍ତ୍ତିଧରି ଅବା ପ୍ରକଟିତ ହୋଇଅଛି ।

ଏତଦ୍‌ବ୍ୟତୀତ ପୁରାଣ କାହାଣୀରେ ରାମଚନ୍ଦ୍ରଙ୍କ ଅଭିଷେକର ଶୋକପ୍ରଦ ଚିତ୍ର, ମିଥିଳାରାଣୀଙ୍କ କନ୍ୟା ବିଦାୟର ଦୁଃଖ ଏବଂ କଳିଙ୍ଗ ଜେମା ମୁକ୍ତା ଦେଈ ଗୌଡ଼ଦେଶର ରାଣୀ ହୋଇ କିପରି ନିର୍ଯ୍ୟାତନା ଭୋଗି ଥିଲେ ତାର କରୁଣ କାହାଣୀ ଅତି ନିପୁଣ ଭାବରେ ବର୍ଣ୍ଣିତ ହୋଇଅଛି ଏବଂ ତାହାର ପ୍ରତିପଦମାନ ଏବେ ଘରେ ଘରେ ପ୍ରତିଧ୍ୱନିତ ହେଉଅଛି ।

ଏହି ସଂଗ୍ରହରେ ଥିବା 'ସତୀ ଯାତ୍ରା'ର କରୁଣ ଚିତ୍ର ପରି ଚିତ୍ର ଅନ୍ୟ ପରବର୍ତ୍ତୀ ସଂଗ୍ରହରେ ମିଳିବାର ଅବକାଶ ନାହିଁ । ମନେ ହୁଏ ଏହି ସତୀ ଯାତ୍ରାହିଁ ପରବର୍ତ୍ତୀ ଜହର ବ୍ରତର ଉଦ୍ଭାବକ ହୋଇ ନାରୀର ସତୀତ୍ୱ ଦୁର୍ବର୍ଷ ଧର୍ଷଣରୁ ରକ୍ଷା କରି ପାରୁଥିଲା । ଅଗ୍ନିପ୍ରବେଶ ପ୍ରଥା ନାରୀ ଏହା ଫଳରେ ନିର୍ଭୀକ ହେଉଥିଲା ।

କେତକ୍ଷଣରେ ଅପି ତାଙ୍କୁ ପ୍ରବୋଧି କହିଲେ
କାହା କଥା ମହାସତୀ ମନେ ନ ଧରିଲେ ।
ଅଗ୍ନିକୁଣ୍ଡ ପାଖେ ନାରୀ ଉଭାହେଲେ ଯାଇ
କୂଳଦୀପ କାଢ଼ି ତାର ପୁତ୍ର ହସ୍ତେ ଦେଇ ।

ଓଡ଼ିଆ ସାହିତ୍ୟରେ ଏହି ଗୋଟିକ କବିତାର ମୂଲ୍ୟ ମଧ୍ୟ ନିରୂପଣ କରିଯାଇ ପାରେ ନାହିଁ । ସତୀ ଯାତ୍ରା ଅଭିନ ବଳରେ କଣ୍ଠିତ ଥିଲେହେଁ— 'ପତ୍ୟୁପ୍ରେମାହି ନାରୀଣାଂ ପରଂ ସୌଭାଗ୍ୟ ମୁଚ୍ୟତେ'—ଉତ୍କଳର ଅତୀତ ଏଥିପ୍ରତି କେତେଦୂର ଅବହିତ ଥିଲା ତାହା ଏଥିରୁହିଁ ପ୍ରମାଣିତ ହେବ ।

ଏହି ବନ୍ଦୀଗୀତି ସଂଗ୍ରହରେ ରୂପସୀ ବଧୂ ମଧ୍ୟ ଶାଶୁ ନଣନ୍ଦମାନଙ୍କ ଅତ୍ୟାଚାର ବିରୁଦ୍ଧରେ ଅଭିଯାନ ଚଳାଇଥିବାର ଦୃଷ୍ଟାନ୍ତ ଦେଖାଯାଏ ।

ଯେଉଁଠି ଜଣେ ରୂପସୀ କାତର ଭାବେ କାନ୍ଦି କହେ—
'ଚଉତା ଉପରେ ନାହିଁ ନଣନ୍ଦ ଶାଢ଼ୀ
ତା ଦେଖି ବୋଉ ମତେ ପକାନ୍ତି ଝାଡ଼ି ଲୋ ।
ପେଡ଼ିରେ ରଙ୍ଗଲୁଗା ଖଣ୍ଡିଏ ନାହିଁ
ପିନ୍ଧିଲା ଲୁଗା ଖଣ୍ଡି ନେଲେ ଛଡ଼ାଇ ଲୋ
ବୁଢ଼ୀକାଳେ ଲୋ ମୋର ଅସୁଖ ଭର
ବୁଡ଼ି ନ ମଲୁ ତୁଲେ ବାଡ଼ିରେ ଯୋଡ଼ ଲୋ ।'

ଅନ୍ୟତ୍ର

'ହସିଲେ ବୋଲନ୍ତି ଖୁଣ୍ଡ ଦାନ୍ତ ଦେଖାଣୀ
କାନ୍ଦିଲେ ବୋଲନ୍ତି ଖୁଣ୍ଡ କାଏ ମଣ୍ଡଣୀ
ଉଠିଲେ ବୋଲନ୍ତି ଖୁମ୍ବ ଡେଙ୍ଗ ହୋଇଛି
ଶୋଇଲେ ବୋଲନ୍ତି ଖୁଣ୍ଡ ଡିଙ୍କି ପଡ଼ିଛି ।'

ସେଇଠି ସୁରସ୍ତ ସୁଅଗି ଅନ୍ୟଜଣେ ରୁପସୀ ଶାଶୁ ନଣନ୍ଦଙ୍କୁ ଧମକ ଦେଇ କହେ ।

'......ମାଇବ ବୋଲୁଚ
କେଉଁ ଅପରାଧ କଲି
ବଡ଼ଘର ବୋଲି ଟଙ୍କାସୁନା ଯାକ
ଯାଇ ପଞ୍ଜଶାରେ ଦେଲି ?
...... ଇନ୍ଦେ ନୁହଁ ଯେବେ
ପୁଅଙ୍କ ଶପଥ ତୋତେ
ତୁ ନ ଯୋଗାଇ ମୋ ମନକୁ ଲୋ
ମୁଁ ନ ଯୋଗାଏ ତୋତେ ।'

ତେଣୁ ବାଧ୍ୟହୋଇ......ଶାଶୁ ବୁଢ଼ୀ ଅତ୍ୟାଗୃରରୁ ବିରତ ହୋଇ କହେ

'ମୁଣ୍ଡେ ହାତ ଦେଇ ବୋଲେ ବୁଢ଼ୀ
ମୋତେ ତ ମରଣ ନାହିଁ
ବନ୍ଧୁ କୁଟୁମ୍ବ ମୋ ଗାଉଁ ଗାଉଁ ମଲେ
ପଲେଇ ପକ୍ଷିବ କାହିଁ' ?

ଏସବୁ ଛେଦରେ ରୁପସୀ ଗର୍ବିଣୀ ବଧୂ ନିଜର ସ୍ୱାମୀକୁ ଜବରଦସ୍ତି ଆପଣେଇ ନେଇ ପରମେଶ୍ୱ ଦୁଷ୍ଟ ଅତ୍ୟାଗୃରରୁ ରକ୍ଷାପାଇଯାଏ । ବର୍ତ୍ତିମାନ ସମାଜରେ ଏପରି ବଧୂ ଅଧିକ ମାତ୍ରାରେ ଦେଖା ଦେଲେଣି । ତେଣୁ 'ଯେବେ ଶାଶୁ ମରିବାର ସତ, ଦେଖିଲେ ବାନ୍ଧବ ନେତ' ପ୍ରବଚନଟି ଇତିହାସ ହୋଇଗଲାଣି ଏବଂ ତେଣୁ ସମାଜର କେତେକାଂଶରେ ପରସ୍ପର ପ୍ରତି ସ୍ନେହ ଭାବ ଦେଖାଦେଲାଣି ।

ଏଠାରେ ଗୋଟିଏ ସମସ୍ୟା ଲକ୍ଷ୍ୟ କରିବାର କଥା ଯେ ଗାଁ ଗହଳରେ ଯେତେ କବିତା ଜନ୍ମଲାଭ କରେ ସେ ସମସ୍ତ ମଣି ମୁକ୍ତା ନୁହନ୍ତି । ଯେଉଁ କବିତାମାନ ନିଜ ସଦ୍ଗୁଣରେ, ମାଧୁର୍ଯ୍ୟରେ, ଭାଷାର ମନୋରମ ଭଙ୍ଗିରେ ବିଶାଳ ଜନ ସମାଜର ହୃଦୟକୁ ମୋହିତ କରିପାରିଛନ୍ତି, ଯାହା 'ଯୁଗ ଯୁଗ ଧରି ମନରୁ ଲିଭିଯାଇ ନାହିଁ, ଗ୍ରାମରୁ ଗ୍ରାମାନ୍ତର ବ୍ୟାପି ପାରିଛି, ସେହି ମାନଙ୍କୁ ପ୍ରକୃତ କବିତା ବୋଲି ବିବେଚିତ ହେବା ସମୀଚୀନ ଅଟେ ।

ବାଣପୁରର ଦୁଲଣି ଗ୍ରାମରେ କେଉଁ କାଳେ କେଉଁ ରୁପବତୀ ବାଳିକା କଣ୍ଠରୁ ଫୁଟିଥିଲା—

'ଅଧା ବାଟରୁ ବୋଲୁ ମୋ ନନା ଗଲେ
ଝିଅ ପାଉଚି, ବୋଲି ମେଲଣି ଦେଲେ ଲେ ।

ନନାଙ୍କ ମୂର୍ତ୍ତିକୁଂଯେ ଗୃହିଲ ମୃହି
ନନା ଧରମ ଧର ପାରନ୍ତ ନାହିଁ ଯେ ।
ଘଗଣ୍ଣରଙ୍କ ମାଙ୍ଗୀ ସେଠାରେ ଥିଲ,
ନନାଙ୍କ ଅର୍ଘ ଲବ୍ଧ ଗୋହଣ ଦେଲ ଚଲେ' ।

ପୁନଶ୍ଚ ବାଣପୁର ଭଗବତୀ ମନ୍ଦର ଦେଖ ଯାଇଥିବା କେଉଁ ପଲ୍ଲୀଗ୍ରାମର ବଧବା କଣ୍ଠରୁ ଶୁଣିଥିଲ—

'ତଳେଇ ତୋହର ଥିଲେ
ସମଧି ଅଇଲ ଚହଲ ବଲେ ଯେ ମୋ ଜୀବନ
ପାଣି ପିଢ଼ା ନେଇ ଦେଲେ, ମୋ ଜୀବନ ।

କେଳବାପା ନାହାକ ତଳେଇ ଧନ ବାର ବୁଝିଇଲେ, ଦଦେଇ ବଣିଆଁ ତଳେଇ ଅଳଙ୍କାର ଗଢ଼େଇଲେ, ତୋଷଣୀ ପିଲବାକୁ ତଳେଇ ନେଇ ଦେଠେଇ ହାତକୁ ଟେକେଇ ଦେଲେ, ଖୁଙ୍ଖ ବେକକୁ ଶନ ମାଳୀ ଦେଲେ, ଗଉଡ ପିଉସୀ ଖାଲି କାନ୍ଦିଲେ, ମଉଳା କଳାକୁମ୍ଭ ଶାଢ଼ୀ ଦେଲେ, ସାଇ ପଡ଼ଶାଏ ଫରୁଆ ପାନଅଁ ଦେଲେ । ଗାଁର ଗୋଟିଏ କେମା ପଦଘରକୁ ଯିବ । ଗ୍ରାମର ସମସ୍ତ ମାଆମାନଙ୍କା ବୁଢ଼େଇ ହୋଇ ପଡ଼ିଲ ଅବା ।

ଏଣେ ବଧବା ଜନନୀଙ୍କ ତୁଣ୍ଡରୁ ଶୁଣିଲ—

ନୟନେ କଜଳ ଦେଇ
ଅଷ୍ଟ ଅଳଙ୍କାର ଖଞ୍ଜିଲ ନେଇ ଯେ ମୋ ଜୀବନ
ତୋହର ତ ବାପୁ ନାହିଁ ।

ସବୁ ସୌଭାଗ୍ୟ ସ୍ଵଣି ସ୍ଵଣି ହୋଇ ଭାସି ଆସିଲ । ପରଂପରା ବଧି ଅନୁସାରେ ଜେମାକୁ ଅଷ୍ଟ ଅଳଙ୍କାରରେ ଭୂଷିତ କର ଦଆଗଲ । ତାର ସୀମନ୍ତରେ, କର୍ଣ୍ଣରେ, ଗ୍ରୀବାରେ, ବାହୁରେ, ହସ୍ତରେ, ଅଙ୍ଗୁଳରେ, କଟୀରେ, ପଦରେ ରତ୍ନ ଭୂଷଣମାନ ଝଟକ ଉଠିଲ । ଏଠି ନଗର ଏବଂ ପଲ୍ଲୀ ଭେଦର କୌଣସି ପାର୍ଥକ୍ୟ ରହିଲ ନାହିଁ । କାରଣ ହସ୍ତୁତରେ ଅଷ୍ଟ ଅଳଙ୍କାର—

ଚୂଡ଼ାମଣିଃ ଶିରୋରତ୍ନଂ, କୁଣ୍ଡଳଂ କର୍ଣ୍ଣ ବେଷ୍ଟନଂ
ଗ୍ରୈବେୟକଂ କଣ୍ଠଭୂଷା, କଟକୋ ବଳୟୋ ସ୍ତ୍ରିୟାଂ
କେୟୂର ମଙ୍ଗଦଂ ତୁଲ୍ୟେ, ଅଙ୍ଗୁଲୀୟକ ମୂର୍ମିକା
ସ୍ତ୍ରୀକଟ୍ୟାଂ ମେଖଳା କାଞ୍ଚି, ମଞ୍ଜୀରେ ନୂପୁରେ ସ୍ତ୍ରିୟାଂ—

ବୋଲି ବର୍ଣ୍ଣିତ ହୋଇଅଛି । ଅତୀତର ସାମାଜିକ ଅଗ୍ରୁର ବଗୃର ଭେଦ ଏସବୁ ଗାଥା ଏପରି ସୁନ୍ଦର ପ୍ରମାଣ ଦେଇଥାଏ । ହଁ, ସବୁ ସୌଭାଗ୍ୟ ପୂର ଉଠିଥିଲେ ହେଁ କନ୍ୟାର ପିତା ଜୀବିତ ନ ଥିବାରୁ ଜନନୀ ଚେତେଇ

ହେଲେ—ଏତେ ଥିଲେ ଓ ହେଲେ କଣ୍ ହେବ ବୁ ତ ବାପ ହେଉଣ୍ଡି । ତୋର କ ସୁଖ ଅଛୁ ? ତହୁଁ ତାହା ଶୁଣି କନ୍ୟାର ଚକ୍ଷୁରୁ ଲୋତକ ଧାର ଏତେ ଆନନ୍ଦ ମଧ୍ୟରେ ବହିଗଲା । ଏଇ ପିତା, ଏଇ ମାତା, ଏଇ କନ୍ୟା, ଏଇ ଜାତି, ଏଇ କୁଟୁମ୍ବ, ଏଇ ଗ୍ରାମ, ଗାନ୍ଧୀ ଖୋଜୁଥିଲେ, ଅଜ ବଡଲୋକ ଖୋଜୁଛନ୍ତି । ବିଶ୍ୱଜଗତ ଖୋଜି ହେଉଛି ।

ପଯୁରେ ଅଲତା ଦେଇ
ଲେଉଟିଯିବି ମୁହିଁ ଲୁ ଗୃହିଁଲ ମୁହିଁ ଲେ ମୋ ଜୀବନ
ଯାଉଛୁ ଲୋତକ ବୋହି ।

ଏହି ମନୋରମ କବିତାମାନ ଙ୍କ ସହକରେ ବାଣପୁରରୁ କଦ୍ୟାଗଡ଼, ସେଠୁ ନରସିଂହପୁର, ସେଠୁ ଅନୁଗୁଳ, ସେଠୁ ବଣେଇ, ସେଠୁ ମୟୂରଭଞ୍ଜ ସେଠୁ ଖରଶୁଆଁ, ଝଡ଼େଇକଳା, ସିଂହଭୂମି ଭିତ୍ତ ରୁ ଗୃଲିଯାଏ ଅଥବା ପାରିକୁଦ ବୁଲି ବ୍ରହ୍ମପୁର, ପାରଳା, ଟିକଲି ଯାଏ ଯାଇ କଳାହାଣ୍ଡି, ସମ୍ବଲପୁର, ବସ୍ତର ଭିତରକୁ ଗୃଲିଯାଏ, ତାର ଇତିହାସ ଏବେ ମଧ୍ୟ ଆଲୋଚିତ ହେବାର ସୁଯୋଗ ଅସି ନାହିଁ ।

ପୁନଶ୍ଚ ସେ କାଳର ସ୍ୱଳ୍ପ ମାଗତା ସରଳ, ଅକ୍ଲିଷ୍ଟ ପଦ ଯୋଜନାରେ ଯେତେବେଳେ ଗ୍ରାମପଥ କୋକିଳର କୁହୁତାନ ଧରି ମୁଗ୍ଧ ମାଧୁର୍ଯ୍ୟରେ ପୁରିଉଠେ, ପରମାସୁନ୍ଦରୀ ବଧୂ ନଣନ୍ଦକୁ ପରଘରକୁ ଯିବାବେଳେ ଉପଦେଶ ଦେଇ କହନ୍ତି—

ବୋହୂ ବୋଲେ ନଣନ୍ଦେ,
ମୁଁ ଯେ କହିବ ପଦେ
ଟହ ଟହ ନ ହସିବ ଗୁରୁସ୍ତ ଆଗେ ।
ସେ ଯେ ଦଅର ଭାବ,
ଖେଳହାତେ ମାରିବ
ସେ କଥାକୁ କେମା କେବେ ରୋଷ ନୋହିବ ।
ସେ ଯେ ଶାଶୁ ଶଶୁର,
ତାଙ୍କୁ କରିବ ମୋର
ତାଙ୍କୁ ମୋର ବଲେ କେମା କରିବ ଘର ।
ସାଇ ପଡ଼ଶା ଲୋକେ,
ସେ ଯେ କହନ୍ତି ଥୋକେ
ସବୁ ସହି ନେବ କେମା ଗଜ ପଲଙ୍କେ ।

ଏବଂ ଜେମା ତାର ସାଥିସ୍ତ୍ରୀଙ୍କୁ ବିଦାୟ ଦେବାକୁ ଯାଇ କହେ—

ଆହା ଲକ୍ଷି ବାଳୁଡ଼ି,
ମୁଁ ତ ଯାଉଛି ଛାଡ଼ି
ମନରେ ପକାଉ ଥିବ, ଘଡ଼ିକି ଘଡ଼ି ।
ଆହା ସଙ୍ଗାତ ସଙ୍ଗି,
ଦୟା ଥିବାଟି ରଙ୍ଗି
ନୟନୁ ନ ରହେ ନୀର ତୁମକୁ ଦେଖି ।

ଏ ମନୋରମ କବିତାର ତୁଳନା କାହିଁ ? ଏହା ଯେପରି ସ୍ୱତଃ ପ୍ରକାଶିତ । ଏଥିରୁ କେହି ପଦଯୋଡ଼ି ଗଢ଼ି ନାହିଁ । ଏଥିରୁ ପ୍ରାଣ ଫାଟି ଫୁଟି ଉଠିଛି । ତେଣୁ ଏ ଆଲୋଚନାରେ ବାରମ୍ବାର କହିବାକୁ ଇଚ୍ଛା ହୁଏ ଯେ—ଯେଉଁଥିରୁ କବିତାମାନ ଯୁକ୍ତିଯୁକ୍ତ ମନୋରମ ପଦ ବିନ୍ୟାସରେ ସ୍ୱାଭାବିକ ଭାବରେ ରଚିତ, କଣ୍ଠିତ ହୋଇଅଛି, ଯାହାର ସ୍ୱଚ୍ଛନ୍ଦ ଗତି ଗୋଟିଏ କ୍ଷୁଦ୍ର ଗ୍ରାମରୁ ସହସ୍ର ସହସ୍ର ଗ୍ରାମକୁ ବ୍ୟାପି ଯାଇଛି, ସେହିମାନହିଁ ପଲ୍ଲୀଗୀତିକା ଏବଂ ତାହାହିଁ ସଂଗ୍ରହ ଉପଯୋଗୀ ଅଟେ ।

## ୯ । ହୁଳହୁଳି କାନ୍ଦଣା—(ଦ୍ୱିତୀୟ ଖଣ୍ଡ)

ଏ ଦେଶର ଗ୍ରାମ୍ୟ ନାରୀର କାନ୍ଦଣା ଅସଭ୍ୟ ମନୋବୃତ୍ତିର ପରିଚାୟକ ବୋଲି ଅନେକେ କହିଥାନ୍ତି । କିନ୍ତୁ ସଭ୍ୟ ହେଉ ଅସଭ୍ୟ ହେଉ ଗଭୀର ଦୁଃଖ ଉପୁଜିଲେ ଯେ କେହି ନାରୀ ବା ନର ସ୍ୱତଃ କାନ୍ଦି ଥାଏ । ତାର କାନ୍ଦଣାରେ ସେ ନାନା ଦୁଃଖର ଇତିହାସ କହିଯାଏ । ସେ ଅବାରିତ ଆର୍ତ୍ତନାଦ ଅନୁଭବୀହିଁ ଜାଣେ । ଏ କାନ୍ଦଣା କାନ୍ଦବୋବାଳି ଓ ହୁଳହୁଳି ଅର୍ଥାତ୍ ମୃତ୍ୟୁ ଓ ବିଚ୍ଛେଦ ଦୁଇଟି ଘଟଣାରୁ ଜନ୍ମିଥାଏ । ଗ୍ରାମ୍ୟ ନାରୀ ତ ସହଜେ ଅତି ନିରୀହା ଏବଂ କୋମଳହୃଦୟା । କିନ୍ତୁ ନିଷ୍ଠୁର ପୌର ପୁରୁଷ ସେହି ମଧ୍ୟ ଅନେକ କ୍ଷେତ୍ରରେ କାନ୍ଦି କାନ୍ଦି ବାହୁନି ବାହୁନି ଗୀତ ଗାଇ ଉଠେ । ରାମାୟଣରେ ପୁତ୍ରକୁ ବନବାସିତ କରି ଅତି ଶ୍ରେଷ୍ଠତମ ନାଗରିକ ଦଶରଥଙ୍କ ବିଳାପ, ଭାଗୀରଥୀ ତଟ କାନନରେ ସର୍ବ ସଦ୍‌ଗୁଣବତୀ ବିଶ୍ୱ ଜଗତର ମାନନୀୟା ଜନକନନ୍ଦିନୀ ସୀତାଙ୍କର ବିଳାପ, ଏମନ୍ତ କି ଭାଗବତରେ କୃଷ୍ଣଙ୍କୁ ହରାଇ ଯଶୋଦା ଏବଂ ଗୋପୀମାନଙ୍କର ବିଳାପ ଏହି ବିଚ୍ଛେଦ କ୍ରନ୍ଦନ ଶ୍ରେଣୀର ନୁହେଁ କି ? ଇନ୍ଦୁମତୀଙ୍କୁ ହରାଇ ଅଜଙ୍କର ବିଳାପ, କାଳିଦାସଙ୍କ କବିତ୍ୱରେ ଜଗତ ପ୍ରସିଦ୍ଧ ରତି-ବିଳାପ ମୃତ୍ୟୁ ଘେନି କଣ୍ଠିତ ହୋଇଅଛି । ତେଣୁ କାନ୍ଦଣା କେବେ ଅସଭ୍ୟ ମନୋବୃତ୍ତିର ପରିଚାୟକ ହୋଇ ନ ପାରେ ।

କୁଳପତି କଣ୍ୱ ପାଳିତା କନ୍ୟାକୁ ବିଦାୟ ଦେବାକୁ ଯାଇ କହିଛନ୍ତି—
ଅନ୍ତର୍ବାଷ୍ପ ଭରୋପରୋଧି ଗଦଗଂ ଚିନ୍ତାଜଡ଼ଂ ଦର୍ଶନଂ । କ୍ରନ୍ଦନର ଚିହ୍ନ ସେଥିରେ ଅଙ୍କିତ ହୋଇଅଛି । ତେଣୁ କନ୍ୟାର ଶାଶୁଘରକୁ ଯିବାବେଳର କାନ୍ଦଣା ସମୟ ଉପଯୋଗୀ ହୋଇଥାଏ ।

ଏ ସଂଗ୍ରହରେ କେବଳ ଶୁଭକାର୍ଯ୍ୟର କାନ୍ଦଣା ଦିଆଯାଇଛି । ଆମର ଜଙ୍ଗଲରେ ସୁଖକୁ ହୁଳହୁଳି, ଦୁଃଖକୁ କାନ୍ଦବୋବାଳି ବୋଲି କୁହାଯାଇଥାଏ । ତେଣୁ ଏ ବିଭାଗ ହୁଳହୁଳି କାନ୍ଦଣା ଭାବରେ ଅଭିହିତ ହୋଇଅଛି । ଯେଉଁ କ୍ରନ୍ଦନ ବେଳେ ପରିବାରର ସାତ ଅହ୍ୟନାରୀ ମୁଖବାଦ୍ୟ ହୁଳହୁଳି ପକାନ୍ତି ଏବଂ ଶୁଭ ଶଙ୍ଖଧ୍ୱନି କରିଥାନ୍ତି ତାହାହିଁ ହୁଳହୁଳି କାନ୍ଦଣା । ମୃତ୍ୟୁ ଘଟଣାରେ ବିଧବା ନାରୀର କ୍ରନ୍ଦନ, ପୁତ୍ରହରା ମାତାର କ୍ରନ୍ଦନ ମଧ୍ୟ ପଦ୍ୟ ଆକାରରେ ଶୁଣାଯାଇଥାଏ । କିନ୍ତୁ ତାହା ଯେପରି ଉଦ୍ଭବ ହୁଏ, ସେପରି ମଧ୍ୟ ଲୁପ୍ତ ହୋଇଥାଏ । ଶୁଭକାର୍ଯ୍ୟର ଏହି କାନ୍ଦଣାମାନ ଏକ ତୁଣ୍ଡରୁ ଆନ ତୁଣ୍ଡକୁ ନିରନ୍ତର ଗତି କରିଥାଏ । ବ୍ରାହ୍ମଣ, କରଣ, କ୍ଷତ୍ରିୟ, ବୈଶ୍ୟ, ଖଣ୍ଡାୟତ, କୃଷକ ଆଦି ନାନା ବର୍ଣ୍ଣର ବ୍ୟକ୍ତିଙ୍କ ଗୃହରେ କନ୍ୟାମାନେ ଶ୍ୱଶୁରାଳୟକୁ ଯିବାବେଳେ ନାନା ଦୃଷ୍ଟାନ୍ତ ଦେଇ ବିଚ୍ଛେଦ ଦୁଃଖରେ ଅଭିଭୂତ ହୋଇ କ୍ରନ୍ଦନ କରିଥାନ୍ତି । ସେ ସବୁକୁ ଏହି ସଂଗ୍ରହରେ ସ୍ୱତନ୍ତ୍ର ସ୍ୱତନ୍ତ୍ର ଭାବରେ ରଖାଯାଇଅଛି । ଏମନ୍ତ କି କରଣ କ୍ଷତ୍ରିୟ ଆଦିଙ୍କ ଘରେ ବିବାହ ସମୟରେ କନ୍ୟା ଶ୍ୱଶୁର ଗୃହକୁ ବିଦାୟ ହେଉଥିବାରୁ ବିବାହ ଅନୁଷ୍ଠାନର ବିଭିନ୍ନ ଘଟଣାରେ କନ୍ୟା ଯେପରି ବାହୁନି କାନ୍ଦିଥାଏ, ତାହା ଏ ସଂଗ୍ରହରେ କୁଳବଧୂମାନଙ୍କ ଠାରୁ ସଂଗ୍ରହ କରିଯାଇ ଦିଆଯାଇଅଛି । ସେହି ବଧୂମାନେ ତାଙ୍କ ତୁଣ୍ଡରେ ଥିବା ଗୀତମାନ ହାତରେ ଲେଖି ଯୋଗାଇ ଦେଇଅଛନ୍ତି ।

ଏହି କାନ୍ଦଣାମାନ କେବଳ ପୁଣି ବାହୁନିବାରେ ବା ଶ୍ୱଶୁର ଘରର ନିର୍ଯ୍ୟାତନା ସ୍ମରଣ କରିବା ଲକ୍ଷ୍ୟରେ ରଚିତ ନୁହେଁ । ଏକ ସ୍ଥାନରେ ଦୀର୍ଘ ଦିବସ ଅତି ସ୍ନେହ ମମତା ମଧ୍ୟରେ ଲାଳିତପାଳିତ ହୋଇ ଏକ ଏକାନ୍ତ ଅପରିଚିତ ଗୃହକୁ ଓ ଅପରିଚିତ ବ୍ୟକ୍ତିଙ୍କ ସମ୍ପର୍କକୁ ଯିବାବେଳେ ଯେଉଁ ଖେଦ ସ୍ୱତଃ ଫୁଟିଉଠେ, ତାହା ଅଳ୍ପ ମଧୁର ସୁନ୍ଦର ସାହିତ୍ୟ ନୁହେ । ପିତୃଭୂମି ପ୍ରତି ଅଧିକ ଆକର୍ଷଣ ଥାଇ ତାକୁ ତ୍ୟାଗ କରି ଯାଉଥିବାରୁ ବ୍ୟଥିତ ହୋଇ କନ୍ୟା କଣ୍ଠରୁ ଶୁଭେ—

ଚକୁଳି ପିଠା ତ ଅଣଲେଉଟା, ହେ ନୁଆବୋହୂ
ଆଉ କି ଦେଖିବି ଜନମ ବୋଠା, ହେ ନୁଆବୋହୂ ।
ଆକାଶ କଇଁଅ ଚନ୍ଦକା ମାଛ, ହେ ନୁଆବୋହୂ
କାହିଁକି ପାଞ୍ଚିବି ଅପାଞ୍ଚ ପାଞ୍ଚ, ହେ ନୁଆବୋହୂ ।

ସମାଜର ଦୁର୍ବଳତା ଯୋଗୁଁ- ବୁଢ଼ାବରରେ ବିବାହ ହୋଇ ଯୁବତୀ କ୍ରନ୍ଦନ କରେ ।

ମୋହର ଯେମନ୍ତ ନିଶ୍ୱାସ ଥିବ, ବୋଉ ହଲେ
ଝିଙ୍କା ବାଉବୋଣ୍ଡ ଅଙ୍ଗାର ହେବ, ବୋଉ ହଲେ ।
ଦାନ୍ତ ନାହିଁ ବୁଢ଼ା ପାକୁଆ ପାଟି, ବୋଉ ହଲେ
କେଉଁରେ ବସିଛ ଅଣ୍ଟି ଚଗ୍ରିଟି, ବୋଉ ହଲେ ।
ଚର୍ମ ଶିଙ୍ଗରେ ପାଚିଛି ବେଲ, ବୋଉ ହଲେ
ତୋତେ ଲାଜ ନାହିଁ ଯାହା
ବୁଢ଼ା ମୁଣ୍ଡେ ନେଇ ଝଣ୍ଟେଲ ଫୁଲ, ବୋଉ ହଲେ ।

ଅନ୍ୟର ଅନୁଭୂତିରୁ ଶ୍ୱଶୁର ଘରେ ଯନ୍ତ୍ରଣା ଭାଳେ ମିଳିବ ଏହି ଅଶଙ୍କାରେ—

କାକତା ଯେମନ୍ତ ବନେ ଝୁରଇ, ହେ ବାପା
କୁମ୍ଭୀ ତେମନ୍ତ ଝୁରି ମରିବି, ହେ ବାପା ।
ଶାଳଗ୍ରାମ ଖାଞ୍ଚ କାଟିଲା ପରି, ହେ ବାପା
ମତେ ତ କାଟିବେ ସେହି ସେପରି, ହେ ବାପା ।
ଦାନ୍ତୁ ସିନା ସହେ କଟକି ଧାର, ଲେ ମୋ ବୋଉ
ଦୂର କି ସହିବ କରତ ଖର, ଲେ ମୋ ବୋଉ ।
ଧୀର ପାଣି ଧାର ପଥର କାଟେ, ଲେ ମୋ ବୋଉ
ବାଅ ପାଣି ସିନା ମୁହିଁକୁ ଛଟେ, ଲେ ମୋ ବୋଉ ।

ଗରିବ ହରିଜନ କନ୍ୟାର ସନ୍ତେହ କଣ୍ଠରେ ଶୁଭେ—

ବାଡ଼ ପଛ ଅଡ଼େ ଜଳାଙ୍ଗି ଲଟି, ମୋହ ମାମୁଁ
ଭୁକା ଚୁଡ଼ା ଖାଇ ମାଡ଼ଇ ଚଣ୍ଡି, ମୋହ ମାମୁଁ ।
ଦୂର ଦୂର ବନ୍ଧୁ ଜମେଇ ଥିଲ, ମୋହ ମାମୁଁ
ପାଖ ପାଖ ବନ୍ଧୁ ଫେରେଇ ଦେଲ, ମୋହ ମାମୁଁ ।
ବାଡ଼ପଛ ଅଡ଼େ ଗଞ୍ଜେଇ ଘୁଅ, ମୋହ ମାମୁଁ
କ୍ୱାଇଁ କରଅଛ ମାଙ୍କଡ଼ ଝୁଅ, ମୋହ ମାମୁଁ ।
ହାତୀ ମଙ୍ଗେ ନାହିଁ ହାତୀଶାଳକୁ, ମୋହ ମାଅ
ମୁହିଁ ମଙ୍ଗେ ନାହିଁ ରଙ୍କାଶାଳକୁ, ମୋହ ମାଅ ।
ନୂଆ ବନ୍ଧ ପାଣି ବଡ଼ ଉଠାଣି, ମୋହ ମାଅ
କେମନ୍ତେ କାଢ଼ିବି ଯୋଡ଼ାର ପାଣି, ମୋହ ମାଅ ।

ବ୍ରାହ୍ମଣ କନ୍ୟାର କାନ୍ଦଣା—

ଥିବ ଥିବ ପାଣି ପଥର କାଟେ, ହେ ଭଉଜ
ଥିବ ଥିବ କଥା କଳଙ୍କ ଫୁଟେ, ହେ ଭଉଜ ।
ପିଣ୍ଡା ଦାଣ୍ଡେ ବାଟ ଚାଲି ନ ଥିଲି, ହେ ଭଉଜ
ଝଣ୍ଡା ଦାଣ୍ଡେ ବାଟ ଚାଲିବି କେଭି, ହେ ଭଉଜ ।

ଖଣ୍ଡାୟତ କନ୍ୟାର କାନ୍ଦଣା—

କୁଆଁର ପୁନିଅଁ ଜହ୍ନ ଉଦ, ମୋ ମାଆରାଣୀ
ମୋ ପେଇଁ ବାଅ ପାଞ୍ଚିଲେ ମନ୍ଦ, ମୋ ମାଆରାଣୀ ।
ମାଣେ ନ ହିଁ ଜମି ବାଟିଏ ଗୃହ, ମୋ ମାଆରାଣୀ
କଣେ ନ ହିଁ ଜହ୍ନ ତେଙ୍ଗା ଜଅଷ, ମୋ ମାଆରାଣୀ ।
ମୁହଁରେ ଭାଷିବେ କୋଇଲି ବାଣୀ, ମୋ ମାଆରାଣୀ
ପଛରେ ସିଞ୍ଚିବେ ଗୋବର ପାଣି, ମୋ ମାଆରାଣୀ ।

ମାତୃସ୍ନେହରେ ଏକାନ୍ତ ଅଧୀର କନ୍ୟାର କାନ୍ଦଣା—

ବଣପକ୍ଷୀ ଭଳି ବଢ଼େଇ ଥିଲୁ, ଲୋ ମୋ ବୋଉ
କେଉଁ କାଳ ଜାଣି ଉଡ଼େଇ ଦେଲୁ, ଲୋ ମୋ ବୋଉ ।
ପକ୍ଷୀ ଉଡ଼ିଗଲେ ପଞ୍ଜୁରି ତୁଚ୍ଛା, ଲୋ ମୋ ବୋଉ
ମୋତେ ଛାଡ଼ିଦେଲୁ ତୋ କୋଠା ତୁଚ୍ଛା, ଲୋ ମୋ ବୋଉ ।

ଏସବୁ ଘଟଣା ଏପରି ଅନୁପମ, ସରସ ଏବଂ ଜୀବନ୍ତ ଯେ ଏସବୁ ଶୁଣିଲେ ନିଷ୍ଠୁର ପ୍ରାଣ ରସାଳ ହୋଇ ଉଠେ । ଏ ସବୁ ତାଙ୍କୁ ନିବିଡ଼ ସ୍ନେହ ମମତାରେ ବାନ୍ଧି ପକାଏ । ବଗିଚାର ଫୁଲଗୁଡ଼ିକ ଯେମିତି ଜନମନ ମୁଗ୍ଧ କରିଥାଏ, ପଲ୍ଲୀର ଗୃହ କୋଣରେ କନ୍ୟାର ସୁକୋମଳ ମାଧୁରୀ ସେହିପରି ସମସ୍ତ ପରିବାରର ଅଦୂଷିତ ଆକର୍ଷଣକୁ କେନ୍ଦ୍ର କରି ରହିଥାଏ । ପାଞ୍ଚ ଜଣ ପ୍ରାଜ୍ଞ ବୁଦ୍ଧିଜୀବୀ ମନୀଷୀ ନିଜର ପ୍ରତିଭା ବଳରେ ଗୃହର ନିଷ୍ଠୁରତା ଯେଉଁଠି ଦୂର କରି ପାରନ୍ତି ନାହିଁ, ସେଇଠି ଗୋଟିଏ ମାତ୍ର ରୂପବତୀ ବାଳିକାର ମଧୁବୋଳା ପଦେ କଥାରେ ଏବଂ ତାର ଅଶ୍ରୁଭବ କୋମଳ ଛନଛନ ନିକ୍କଣ ଗୃହାଣିରେ ତାହା ମୁହୂର୍ତ୍ତିକେ ଦୂର ହୋଇଯାଏ । ଏପରି ପ୍ରମାଣ ଭୂରି ଭୂରି ରହିଅଛି । ତେଣୁ ପଲ୍ଲୀକନ୍ୟାର ସରଳ ଅନାବିଲ ପ୍ରାଣର ଏହି କ୍ରନ୍ଦନମାନ ତାଙ୍କୁ ମମତା ରସରେ ପରିପୂର୍ଣ୍ଣ କରିଦିଏ ।

ଏହି ରୋଦନମାନ ହାହାକାର ନୁହେଁ, ଏହା ଜଣେ ଜଣକୁ ଛାଡ଼ିଯିବାର, ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ଯୋଗୁଁ ପୂର୍ବ ମମତାରେ ଅଧୀର ହେବାର ଅତ୍ୟନ୍ତ କାରୁଣ୍ୟ ମାତ୍ର ।

କାହା କାହା ମତ ଯେ—ଭାରତର କୌଣସି ଦୁର୍ଦ୍ଦଶାଗ୍ରସ୍ତ ସମୟରେ ଏ କାହାଣୀମାନ ରଚିତ ହୋଇଥାଏ । କିନ୍ତୁ ଉକ୍ତ ମତ ପୂର୍ବୋକ୍ତ କାରଣରୁ ସ୍ୱତଃ ବଦଳିଯାଏ । ଏମାନ ମାନବିକ ସଭ୍ୟତାର ଏକ ଏକ ସୁନ୍ଦର ସନ୍ଦର୍ଭ । ଦୁଷ୍ପ୍ରାପ୍ୟ ଅକୃତ୍ରିମ ଗାଥା । ପ୍ରାକୃତିକ କୁସୁମ ଯେପରି ନିଷ୍ଠୁର ଧରଣୀର ମାୟା ବଢ଼ାଏ, ଏହା ସେହିପରି ଜାତିର ନିଷ୍ଠୁରତା ଲୋପ କରି ସ୍ନେହ ଆଦର ମଧ୍ୟରେ ଶତ ଶତ ଶତ୍ରରେ ମାନବିକତା ସଂସ୍କୃତ କରିଥାଏ । ଏମାନଙ୍କ ପରିବାର ମଧ୍ୟରେ ନିଷ୍କଳଙ୍କ ପ୍ରୀତିର ବୃଦ୍ଧି ପାଇଁ ଏ କାହାଣୀମାନ ନିରନ୍ତର ଯେଉଁପରି ଉପାଦାନ ଯୋଗାଇ ଥାଏ ସେପରି ସମଗ୍ର ପରିବାର, କୁଟୁମ୍ବ, ଜାତି, ଗ୍ରାମକୁ ଏକୀଭୂତ କରିଦିଏ ।

## ୧୦। ଗାଆଣି ମଙ୍ଗଳ ବୋଲ—(ତୃତୀୟ ଖଣ୍ଡ)

ଉପନୟନ, ବିବାହ, କର୍ଣ୍ଣବେଧ ଆଦିରେ ଅତି ପୂର୍ବକାଳରୁ ଏମନ୍ତ କି ବୈଦିକ ଯୁଗରୁ ମଙ୍ଗଳ ଗାଥାମାନ ଗାନ କରାଯାଉଥିଲା । ଆମର ଏବେ ଯେଉଁ ହିନ୍ଦୁ ବିବାହ ବ୍ରତ ଆଦି ବିଧିବିଧାନ ସମାଜରେ ପ୍ରଚଳିତ ଅଛି, ସେଥିରେ ଯେଉଁ ଋକ୍‌ମାନ ଗୀତ ହୁଏ ତାହାହିଁ ମଙ୍ଗଳ ବୋଲ ଅଟେ । ବୀଜ ବପନରେ, ଯାହା ଅନୁକୂଳରେ, ଶିଶୁ ଜନ୍ମ ଦିନରେ ବେଦର ଋକ୍‌ମାନ ମଙ୍ଗଳ ଉଦ୍ଦେଶ୍ୟରେ ବୈଦିକଯୁଗରୁ ଗୀତ ହେଉଥିଲା । ଅନନ୍ତର ପରବର୍ତ୍ତୀ ବିଭିନ୍ନ ଭାଷାରେ ତାର ପ୍ରଭାବ ଦେଇ ସଙ୍ଗୀତମାନ ସଂଗୃହୀତ ହେଲା । ଏହି ସଙ୍ଗୀତମାନଙ୍କର ପ୍ରାଚୀନ ଗ୍ରନ୍ଥ ପରବର୍ତ୍ତୀ ଭାଷାମାନଙ୍କରେ ବିଶେଷରେ ଓଡ଼ିଆ ଭାଷାରେ କିଛି ଥିଲା, ତାହା ବର୍ତ୍ତମାନ କହି ହେବ ନାହିଁ । କାରଣ ଗ୍ରାମ୍ୟ ଜନସମାଜରେ ଯେଉଁ ଗୀତମାନ ଗ୍ରାମର ଆତ୍ମୀୟ ବଧୂ, କନ୍ୟା, ଜନନୀ, ଭଗିନୀମାନେ ସାତ ଜଣ ମିଶି ସେ କାଳେ ମିଳିତ କଣ୍ଠରେ ପ୍ରତି ଶୁଭାନୁଷ୍ଠାନ ବେଳେ ଗାନ କରୁଥିଲେ ତାହାର କ୍ଷୀଣସତ୍ତ୍ୱ ଏବେ କେଉଁଠି ହେଲେ ନାହିଁ ।

ଦିନ ଅସିଲା ସେ ସ୍ୱର୍ଣ୍ଣଯୁଗ କେଉଁଆଡ଼େ ଚାଲିଗଲା । ଆନନ୍ଦ ସଙ୍ଗୀତ ମୁଖର ଅନ୍ତଃପୁର ମଧ୍ୟରେ ନିରନ୍ତର ଶୋକର ବାତ୍ୟା ବହି ଗଲା । ନାନା ବୈଦେଶିକ ଜାତିର ପରାଧୀନତା ଫଳରେ ଜାତିର ପ୍ରାଣରୁ ସେ କବିତ୍ୱ, ସେ ମାଧୁର୍ଯ୍ୟ ସେ ମନୋହର ସଙ୍ଗୀତର ଆନନ୍ଦ ରସ ସମ୍ପୂର୍ଣ୍ଣରୂପେ ଶୁଷ୍କ ହୋଇଗଲା । ଲକ୍ଷ ଲକ୍ଷ ଗ୍ରାମ ଅନ୍ଧକାର ମଧ୍ୟରେ ଚାପିହୋଇ ରହି କବିତା ଏବଂ ସଙ୍ଗୀତର ଚର୍ଚ୍ଚା ଛାଡ଼ିଦେଲା । ଏପରି ନିଷ୍ଠୁର ଦୁଃଖର ଇତିହାସ ଧରଣୀରେ ଆଉ କେବେ କେଉଁ ଜାତିର ଭାଗ୍ୟକୁ ସ୍ପର୍ଶ କରିଥିଲା, ଜଣାଯାଏ ନାହିଁ ।

ବର୍ଷେ ନୁହେଁ, ପାଞ୍ଚବର୍ଷ ନୁହେଁ, ପାଞ୍ଚଶତ ବର୍ଷ କାଳ ନାନା ଅତ୍ୟାଚାର ଫଳରେ ସ୍ତ୍ରୀ ନାରୀ ଗୃହକୋଣରେ ବନ୍ଦିନୀ ରହି ଘର ଦ୍ୱାରକୁ ମଧ୍ୟ ଲୁଚାଇ ଦେଇ ଚୁ, ଚୁ ରେ ଠାରିଲା । ଏ ହୃଦୟବିଦାରକ କାହାଣୀର ଇତିହାସ

ଏବେ ମଧ୍ୟ ଲେଖା ହୋଇନାହିଁ । ଧରଣୀରେ ଏପରି କେଉଁ ଜାତି ଅଛି କିଏ କହି ପାରିବ ଯେ ସେ ଅର୍ଦ୍ଧ ସହସ୍ର ବର୍ଷ ବିଦେଶୀ ପ୍ରଭାବକୁ ସମ୍ପୂର୍ଣ୍ଣ ଏଡ଼ାଇଦେଇ ରହି ପାରିଥିଲା ? ସେ ସ୍ୱାଧୀନତା ପାଇବା ଆଶାରେ ବଞ୍ଚି ରହିବାକୁ ଦୋଳପୂର୍ଣ୍ଣମୀ ଯାଏ ପରର ଅଧୀନ ହୋଇଥିଲା । କର୍ମଦୋଷରୁ ପରାଧୀନ ଥିବା କେଉଁ ଜାତିର ଏପରି ସ୍ୱାଧୀନ ପିପାସା ଥିବାର ନଜର ନାହିଁ । ଅଶୋକଙ୍କ ସହିତ ଯୁଦ୍ଧ କରି ଅବନତ ପଦ ଲାଭ କରିଥିବା କଳିଙ୍ଗବାସୀଙ୍କ ଇତିହାସ ଚର୍ଚ୍ଚା କରିଥିବା ଲୋକେ, ହୋଏନସାଂଙ୍କ କଳିଙ୍ଗ ଭ୍ରମଣର ବୃତ୍ତାନ୍ତ ପଢ଼ୁଥିବା ଲୋକେ, ଉତ୍କଳୀୟ ଶିଳ୍ପୀର ପରାକାଷ୍ଠା ପଥରମୂର୍ତ୍ତି ମଧ୍ୟରେ ଗବେଷଣା କରୁଥିବା ଲୋକେ, ବିଭିନ୍ନ ଭୂଖଣ୍ଡର ଅବସ୍ଥାରେ ସହସ୍ର ସହସ୍ର ବିହାରଗୁଳିକ ସାକ୍ଷୀ କଳିଙ୍ଗର ଇତିହାସ ଚର୍ଚ୍ଚା କରିଥିବା ଲୋକେ କେବେ ତ କହି ପାରିବେ ନାହିଁ ଯେ ଏ ଜାତିର କନ୍ୟାଗଣ ଦିନେ ଅନ୍ତଃପୁର ବାଉଳ, ଖାତର, ଶିଶ୍ରୀ, କଙ୍କାଳ୍ ରହିଥିଲେ । ଦିନ ଥିଲା ଏଇ ଦେଶର ଗ୍ରାମ୍ୟନାରୀ ତୁଣ୍ଡରେ ଗୀତଗୋବିନ୍ଦ ବିବାହ ଉତ୍ସବରେ ଗୀତ ହେଉଥିଲା । ଏହା ଶୁଣି କେହି କେହି ଆଶ୍ଚର୍ଯ୍ୟ ମଣି ପାରନ୍ତି । କିନ୍ତୁ ଏବେ ମଧ୍ୟ ଶତଶତ ପଲ୍ଲିର ଅଶିକ୍ଷିତା ନାରୀ କବିର ଗୀତଗୋବିନ୍ଦ ଗାଇ ପାରନ୍ତି, କେହି ମୋ ସହିତ ଆସି ଶୁଣିପାରି ପାରନ୍ତି ।

ସମସ୍ତଙ୍କ ଅଜ୍ଞାତସାରରେ ଜାତୀୟ ଜୀବନର ସଙ୍ଗୀତ ଚର୍ଚ୍ଚା ଲୋପ ହେବା ଯୋଗୁଁ ଜାତି ହେଲା ରୁକ୍ଷ, ସ୍ୱାର୍ଥବାହକ, କୁହୁଆ, ମୋହିଆ । ସ୍ନେହ ରସ ଶୁଷ୍କ ହେଲା । ପ୍ରାଣରୁ ମାଧୁର୍ଯ୍ୟ ହଜିଗଲା ପେଟ ହୋଇ ବାହାରିଗଲା । ସ୍ୱାଧୀନତା ରକ୍ଷା କରିବାକୁ ଓଡ଼ିଆ ଜାତି ନିଜର ଇତିହାସ ପୃଷ୍ଠାରେ ପାଞ୍ଚଶତ ବର୍ଷ ଅପ୍ରାଣ ଯୁଦ୍ଧ କଲେ । ଏପରି ଯୁଦ୍ଧ ପୃଥିବୀର ଇତିହାସରେ କେହି କରିଥିବାର ଶୁଣାଯାଏ ନାହିଁ । ତାର ଆଲୋଚନା ଲାଗି ଏ ସ୍ଥାନ ନୁହେଁ ।

ଫଳରେ ମଙ୍ଗଳ ବୋଲମାନ ଗ୍ରାମ୍ୟ ନାରୀଗଣ ପାସୋରି ଗଲେ । 'ହେଁ ମ, ଦେଖୁନ ତ ଅପ୍ସରା । କିଏ ଗୀତ ଗାଉଛି । ହଅ ସେପରି ଚଳେଇ ହଅ ।' ଏହା ଫଳରେ ସେଇଠି ସଙ୍ଗୀତ ରସ ଶୁଖିଗଲା ।

ଦେଶରେ ଜନସମାଜର ସ୍ୱାଧୀନତାରେ ଶତ୍ରୁତା ପୋଷଣ କରି ଯେଉଁମାନେ ବିଦେଶୀକୁ ବରଣନେଲେ ସେମାନେ ହେଲେ ଟନବନ୍ତ । ବର୍ଷା ଦେଖି ସେମାନେ ଛତା ଟେକିଲେ, 'ଛତ୍ରପିତୃକ ଯେ କର ରାଜକାର୍ଯ୍ୟ' କହି କେତେ ଅଭିଜାତ ସୃଷ୍ଟି ହେଲେ । ଟଙ୍କା ଏବଂ ଅଭିଜାତମାନଙ୍କର ଏକ ନୂତନ— ସୃଷ୍ଟି ଟଙ୍କଶ୍ରେଣ୍ୟା ଶ୍ରେଣୀ—ଯେଉଁମାନେ ବି ଜନନ୍ତର ବିଭିନ୍ନ ଦେଶରେ ଅପରକୁ ମୁଗ୍ଧ କରିବା ଲକ୍ଷ୍ୟରେ ସୃଷ୍ଟି ହୋଇଥିଲେ, ସେହିମାନେ ଏହାପରେ ଏହି ଅମୂଲ୍ୟ ସଙ୍ଗୀତ ମଙ୍ଗଳବୋଲକୁ ସେମାନଙ୍କ କବ୍ରୀଯୁଦ୍ଧରେ ରଖିନେଲେ ।

ଗ୍ରାମର ଧନବନ୍ତ, ଅଭିଜାତଙ୍କର ପୁତ୍ର ଓ କନ୍ୟାଙ୍କ ଶୁଭନୁଷ୍ଠାନମାନଙ୍କରେ ପିପିଲିର ସୁରମ୍ୟ ଗୃହଅ ତଳେ ମାଦଳହସ୍ତ ଭଣ୍ଡୁଅ ସହିତ ରୂପସୀ ବେଶ୍ୟା-କେତେଜଣ ମିଳିତ ସ୍ୱରରେ ସେ 'ମଙ୍ଗଳ ବୋଲି' ବୋଲି ଗାଇଲେ । କିନ୍ତୁ ଗୃହେ ଗୃହେ ଆଜି ସେ ମଧୁର ଧ୍ୱନି ଶୁଣାଗଲା ନାହିଁ ।

ଏହାପରେ ନରେନ୍ଦ୍ରର ଦୁଃଖ ଯାତନା ଦୃଷ୍ଟିଭ୍ରମରୁ ଦିନଟିଏ ଛାଡ଼ ରହିଲା ନାହିଁ । ଧନୀ ଅଭିଜାତଗଣ ମଧ୍ୟ ପାପଫଳ ଭୋଗିଲେ । ସେ ମଧ୍ୟ ଦିନେ ସାତ ସମୁଦ୍ର ତେର ନଦୀର ଦୂରସ୍ଥ ବିଦେଶୀ ଶଠତାରେ ଲୁପ୍ତ ହେଲେ । ତାକୁ ରହିଲେ ରାଜା ନାମରେ କେତେଜଣ ଅତି ଶ୍ରେଷ୍ଠତମ ହୋଇ । ରାଷ୍ଟ୍ରର ବିଦେଶୀ ଶାସକ ତାଙ୍କୁ ହିଁ ସବୁ ସୁଯୋଗ ଦେଇ ରକ୍ଷା କଲା—ତାର ଅର୍ଥ୍ୟାଗୃହର ସହଯୋଗି ଭାବରେ । ତେଣୁ ରାଜଗୃହରେ ସମଗ୍ର ଜନତାର ସମସ୍ତ ଆନନ୍ଦ ପୁଞ୍ଜିଭୂତ ହେଲା । ରାଜା ଖାଇଲେ ସମସ୍ତ ଜନତାର କ୍ଷୁଧା ଦୂର ହେଲା । ରାଜା ସୁନା ପିଢ଼ାରେ ବସିଲେ ସମଗ୍ର ଜନତାର ତାହାହିଁ ହେଲା ଶିରମାପଣ ! ବହୁଜନ, ବହୁହିତାୟ କଥା ଲୁଚିଗଲା । ଜଣକର ହିତ ସମଗ୍ର ସମାଜର ହିତ ବୋଲି ପାରିଷଦମାନେ ଘୋଷଣା କଲେ । ଯେଉଁ ଟିକିଏ ଆନନ୍ଦ, ସଙ୍ଗୀତ ଗ୍ରାମ୍ୟ ଜନ ମଧ୍ୟରେ ଲୁଚିଥିଲା, ତାହାର ବ୍ୟବହାର ମଧ୍ୟ ମନା କରି ଦିଆଗଲା— ପରୋକ୍ଷରେ । ବିଳାସ ବୋଲି ଅଭିହିତ କରି ତାହାର ଇତିଶ୍ରୀ ହୋଇଗଲା ।

ଏଣେ ଗ୍ରାମ ଗ୍ରାମାନ୍ତରରୁ ରାଜାଙ୍କ ପ୍ରଣୟ ଲାଗି ବିଭିନ୍ନ ଜାତି ବର୍ଣ୍ଣରୁ ଶତ ଶତ ସୁନ୍ଦରୀ କନ୍ୟା ବର୍ଷ ବର୍ଷ ଶାମ ଦାନ ଦଣ୍ଡ ଭେଦ ନୀତିରେ ଅନ୍ତଃପୁରକୁ ଆସି ପହଞ୍ଚିଲେ । ଜଣେ ପୁରୁଷ ଲାଗି ପାଞ୍ଚଶ ଜଣ ଯୁବତୀ । ପୁଣି ଶୁଣାଗଲା ଆଉ ଜଣେ ଅଛି ଅତି ବିଚକ୍ଷଣା । ସେ ମଧ୍ୟ ନାନା ଉପାୟରେ ଅନ୍ତଃପୁରରେ ପହଞ୍ଚିଲା । ସ୍ତାବକ ଗାଇ ଶୁଣାଇଲେ 'ମହତୀ ଦେବତା ହ୍ୟେଷା ନର ରୂପେଣ ତିଷ୍ଠତି' । ମନସ୍ୱୀ ମନୁଙ୍କ ଚିନ୍ତାଧାରା ଏପରି ଭାବରେ ନୂଆ ଗତି ଲାଭ କଲା । ସମାଗତାମାନଙ୍କ ମଧ୍ୟରୁ ଭଲମନ୍ଦ ବିଚାରରେ ଶେଷକୁ ପ୍ରଣୟ ବଞ୍ଚିତା କେତେ-ଜଣ ଗାଅଣି ନାମରେ ଅଭିହିତ ହେଲେ । ସେମାନେ ବେଶ୍ୟା ତୁଣ୍ଡରୁ କେତେକ ଶୁଣିଥିଲେ ଅଥବା ନିଜଗ୍ରାମରୁ କିଛି କିଛି ମନେ ରଖିଥିଲେ । ଅଥବା ରାଜଗୃହର କେହି କେହି କନ୍ୟା, ବଧୂ କେତେକ 'ମଙ୍ଗଳବୋଲି' ରଚନା କରି ଦେଲେ ତ ସେ ସବୁ ଗାଅଣିମାନେ ଶିକ୍ଷା କରି ନେଲେ । ଅଭିଜାତ, ଧନବନ୍ତ ଲୋପ ହେବା ସଙ୍ଗେ ସଙ୍ଗେ ବେଶ୍ୟା ମଧ୍ୟ ଲୋପ ହୋଇଗଲେ । ତେଣୁ ରାଜଗୃହର ଯାବତୀୟ ମଙ୍ଗଳ ଅନୁଷ୍ଠାନରେ ଗାଅଣିମାନେ ମଙ୍ଗଳ ଗୀତ ବୋଲି ହୁଳହୁଳି ଶଙ୍ଖଧ୍ୱନି କଲେ । ଏଇ ହେଲା 'ଗାଅଣି ମଙ୍ଗଳ ବୋଲି'ର ଇତିହାସ ।

ରାଜଗୃହରେ ବାଳର ଉଙ୍ଗେଡ଼ ଘେନ ଅଜ ସେ ଗାଅଣି ନାହାନ୍ତି । ୧୯୪୮ ପରଠୁ ସେମାନେ ମୁକ୍ତି ପାଇ ଗ୍ରାମ ଗ୍ରାମାନ୍ତରକୁ ନିଜ ନିଜ ପିତୃଭୂମିକୁ ଚାଲିଗଲେଣି । ଅଥବା କିଏ କେଉଁଆଡ଼େ ଲୁଚି ଗଲେଣି । ଯାହାହେଉ ଏ ସଂଗ୍ରହ ତାଙ୍କର ଭଣ୍ଡାର କଥା । ସେମାନଙ୍କ ମଧ୍ୟରୁ କେତେକ ମଧ୍ୟ ରାଜଗୃହର ପ୍ରାଚୀର ମଧ୍ୟରେ ମୃତ୍ୟୁ ବରଣ କରିଅଛନ୍ତି । କିଏ ସେରଗଡ଼ିଆଣି, କିଏ ହନ୍ଦୋଳିଆଣି, କିଏ ଛଗଣିଆଣି ଆଦି ନାମରେ ସେମାନେ ଅଭିହିତ ଥିଲେ । କାରଣ ବିଭିନ୍ନ ରାଜଧାନୀରୁ ସେମାନେ ଯୌତୁକ ସୂତ୍ରରେ ବିଭିନ୍ନ ରାଜଅନ୍ତଃପୁରକୁ ପ୍ରେରିତ ହୋଇଥିବାରୁ ସେମାନଙ୍କଠାରୁ ବିଭିନ୍ନ ଅଞ୍ଚଳର କବିତା ମିଳିପାରି ଥିଲା ।

ଏହି ଗାଅଣି ମଙ୍ଗଳ ବୋଲିରେ ପୁତ୍ର ଓ କନ୍ୟା ଉଭୟଙ୍କର ମଙ୍ଗଳ-ବିଧାନ କିପରି କରାଯାଏ ତାର ବର୍ଣ୍ଣନା ଅତି ନିପୁଣ ଭାବରେ କରାଯାଇଅଛି । ଯେଉଁ ମନୋରମ ସ୍ମୃତି ଏବଂ ସଂସ୍କୃତି ଘରେ ଘରେ ଲୁଚି ଯାଇ ସାରିଲାଣି, ଆମେ ମନୋଯୋଗ ଦେଇ ପାଠକଲେ ସେ ସବୁର ତାତ୍ପର୍ଯ୍ୟ ଏବଂ ମାଧୁର୍ଯ୍ୟ ଏଥିରୁ କେତେକ ପରିମାଣରେ ଅନୁଭବ କରିପାରିବା ।

ଏହି ମଙ୍ଗଳ ବୋଲିର ପ୍ରଥମ ଭାଗରେ ପୁତ୍ରଲାଗି ଜନ୍ମ, ଲକ୍ଷ୍ମୀକଣ୍ଠା, ଷଠୀଘର, ଉଠିଆରି, ସ୍ୱପ୍ନଦର୍ଶନ, ନାଉଳ, ମଙ୍ଗଳାରୋପଣ, ବ୍ରତ ବୋଇଲିବୃତ୍ତ, ବ୍ରତ ବିଦ୍ୟାଶିକ୍ଷା, ଅଳଙ୍କାର ଗଢ଼ା, ପାଅଘିଠା, ପନିଅର ଲାଗି, ସ୍ନାନ, ମଙ୍ଗୁଳିତି, ବନ୍ଦାପନା, ଅନୁକୂଳ, ବିବାହଯାତ୍ରା, ଦୁଧଭରଣ ଲାଗି ମଙ୍ଗଳଗୀତ-ମାନ ରହିଅଛି ।

ଦ୍ୱିତୀୟ ଭାଗରେ କନ୍ୟାଲାଗି—ଜାତକ ଦେଖା, ଅନୁକୂଳ, ବେଦ ଛଅରି, ମଣ୍ଡପଧଉଳା, ବନ୍ଧାପକା, ହଳଦୀକୁଟା, ବାଟଘସ, ମୁଗଜାଇଦାର, ହାଣ୍ଡିମଙ୍ଗଳନ, ତେଲଉଣି ବସା, ସିଂଗାର, ଚୁଡ଼ିଲାଗି, ବାଟବରଣ, ଶ୍ରୀବନ୍ଦେ, ବରବନ୍ଦାପନା, କଙ୍କଣପୂଜା, ସୂତାଧରା, କୌତୁକ ସୂତ୍ର ବନ୍ଧନ, ଲବଣ ଦେଉଁରି, ଗନ୍ଧଘଷ, ହାତଗଣ୍ଠି, ହୋମ, ଜଗନ୍ନାଥ ବନ୍ଦନା, ଶ୍ଳୋକପାଠ, ଗୀତଗୋବିନ୍ଦ ପାଠ, ଲୁହାକଳସ, ଚୁଡ଼ିକଳସ, ଜୁଆଖେଳ, ପଞ୍ଚୁଗ୍ରାସି, ଗୃହଅଞ୍ଜୁଳି, ଗହଣିଆ, କନ୍ୟାଦେଖା, ବର ଓ କନ୍ୟାକୁ ଅଣିବା, ଉକୁଣାଧରା, ବର ନିକଟେ କନ୍ୟାକୁ ଅଣିବା, ଈଶାଣକୁ ଯିବା, ଚତୁର୍ଥୀ, ପାଣିଖେଳ, ଅମୃତ ଗୃହ ପ୍ରବେଶ, ଚନ୍ଦ୍ର ବନ୍ଦାପନା ସମ୍ବନ୍ଧରେ ମଙ୍ଗଳଗୀତମାନ ରହିଅଛି । ଏହି ସବୁ ଶୁଭାନୁଷ୍ଠାନରେ କିପରି ଭାବରେ ବିଧିମାନ କରାଯିବ, କି କି ପଦାର୍ଥ ପ୍ରୟୋଜନ ହେବ ତାହାର ବିଶ୍ଳେଷିତ ବିବରଣ ଉକ୍ତ ସଙ୍ଗୀତମାନଙ୍କରେ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଅଛି ।

ବୁଢ଼ାକଳସ, ବୁଢ଼ୀକଳସରେ ଭଇ ଓ କନ୍ୟା ଦୁହିଙ୍କର ଦଶା ବର୍ଣ୍ଣନା ଦିଆଯାଇଛି ସତ୍ୟ ତେବେ ପ୍ରାଚୀନ ସାହିତ୍ୟରେ କଳସା ଓ 'କଳସ' ଶବ୍ଦ ଘେନି ଯେଉଁ ବିବାଦ ଉପସ୍ଥିତ ହୋଇଅଛି ତାର ଆଲୋଚନାରେ ଏମାନ ପଣ୍ଡିତମାନଙ୍କୁ ଯଥେଷ୍ଟ ସହାୟକ ହେବାର ଆଶା କରାଯାଏ ।

ଏଥିରେ ପ୍ରୟୋଗ ହୋଇଥିବା ଅନେକ ଶବ୍ଦର ଅର୍ଥ ବର୍ତ୍ତମାନ ଜାଣିବାର ସୁଯୋଗ ସମାଜ ହରାଇ ବସିଲାଣି । ଯେପରି ଶିଶୁର ଉଠିଆରି ସ୍ନାନରେ ଅଭଙ୍ଗ ଉଣ୍ଡିଲେ । ଏହି 'ଅଭଙ୍ଗ' କଣ ବର୍ତ୍ତମାନ ଜାଣି ହେଉନାହିଁ । ଏହି ଅଭଙ୍ଗ ଲୁକର୍ମ୍ମ ବେଦୀରେ ବର ପାଇଁ ମଧ୍ୟ ଲୋଡ଼ା ହୋଇଅଛି । ସରସ୍ୱତୀ ବୋଲି ଏକ ମିଷ୍ଟାନ୍ନ ଶୁଭାନୁଷ୍ଠାନର ପ୍ରାରମ୍ଭରେ ତେଲହଣି ବସାଯିବା ମାତ୍ରେ ପୂର୍ବେ କରାଯାଉଥିଲା । ଗୁଜଳ ଚୂନାରେ ପ୍ରଚୁର ଘିଅ ଏବଂ କନ୍ଦରେ ଏହି ମିଷ୍ଟାନ୍ନ ପ୍ରସ୍ତୁତ ହେଉଥିଲା । ଏମିତି ଏହା ସମ୍ବଲପୁର ଅଞ୍ଚଳରେ ଥିବାର ଶୁଣାଯାଏ । ଅଛି କି ନା କହି ହେବ ନାହିଁ । ଏହିପରି ଅନେକ ଶବ୍ଦ ସେଥିରୁ ଜାଣିବା ଅସମ୍ଭବ ହେଲାଣି, ଯେପରି ଅନେକ ବିଧି ମଧ୍ୟ ମେଣ୍ଟା ଧୋଇ ଧୋଇ ଜବାଳ ହେଲାପରି ସମାଜ ସଂସ୍କାରକ ନାମରେ ସଂସ୍କୃତି-ନାଶନ-ବେରସିକମାନେ ଲୋପ କରି ଦେଲେଣି ।

ଏହି ସଙ୍ଗ୍ରହରେ ଥିବା ସଙ୍ଗୀତମାନଙ୍କ ମଧ୍ୟରୁ ଦୁଇଟିମାତ୍ର କେବଳ ବ୍ରାହ୍ମଣ ପରିବାରରେ ଶୁଣାଯାଇ ଥାଏ । ଗୋଟିଏ ବ୍ରତଘର ଉପଲକ୍ଷେ—

'ଗୁରୁ ଛଅଣ ଭୂତ କଏ ସେ ଗୁମ୍ଫଇ ରେ
କଲା ତୋ ଜ୍ୟେଷ୍ଠ ଭଉଣୀ
ଗୁରୁ ଛଅଣ ଭୂତ କଏ ସେ ପଇଶଇ ରେ
କଲା ତୋ ଜ୍ୟେଷ୍ଠ ମଉଳାଣୀ' । ଇତ୍ୟାଦି ।

ପିତୃହୀନ ବାଳକର ଉପନୟନ ଘେନି ତାର ଜନନୀର ଏହି ସଙ୍ଗୀତ ଆମକୁ ସେ କାଳର ବିଧିବିଧାନ ଘେନି ଅନେକ ସମସ୍ୟା ସହିତ ପରିଚିତ କରାଇଥାଏ ।

ବିବାହ ଘେନି ଅନ୍ୟ ଏକ କବିତାରେ—

'ନ ଖାଇବୁ ବାବୁ ତୁ ଟଭ ଗୋଡ଼ ମଡ଼ା ଶାଗ
କନିଅଁର ମାଆ ତତେ ପରଶିବ ଅଗ ।
ନଖକଟା ପଟେ ବାବୁ ଦେଇଥିବେ ଲୁଣ୍ଡ
ଜାଣି ଶୁଣି ବାବୁ ତୁ ରେ କରିବୁ ଭୋଜନ' । ଇତ୍ୟାଦି ।

ଏ କଥା ଦୁଇଟି ଗାଆଁ ଶିମାନଙ୍କ ଦ୍ୱାରା କେବେ ବୋଲ ହୋଇ ନ ଥାଏ । ସେ ଯାହାହେଉ ସମାଜରେ ବଧୂକୁ ଶାଶୁମାନେ ନିଜର ଅଧୀନସ୍ଥ କରି ରଖିବାକୁ ଯେଉଁଦିନୁ ମନ କଲାଇଲେ ସେଦିନୁ ପୁଅ ଯେପରି ବୋହୂର ଅଧିକ ପ୍ରୀତିଭାଜନ ନ ହେଉ ଏପରି କଦର୍ଯ୍ୟ ଚିନ୍ତା ମନକୁ ଆଣିଲେ । ଫଳରେ ଏପରି କବିତାର ଉଦ୍ଭବ ସମ୍ଭବ ହେଲା ।

ବିବାହ ବିଧିରେ 'ପଙ୍କ୍ତିଂ ମେ କଣମାନସ୍ତୁ' ଏହି ସୁନ୍ଦର ପ୍ରଥାର ଏହା ବିରୋଧ କରେ । ବିବାହ ବେଳେ ବରକନ୍ୟାଙ୍କୁ ଦେବପୁତ୍ର, ଦେବକନ୍ୟା ସ୍ୱରୂପ ମାନିବାକୁ ହୁଏ । ଯେମନ୍ତ ସେମାନେ ସ୍ୱର୍ଗର ଦେବା ଦେବୀ । ଉଭୟେ ଏକ ଅଙ୍ଗ ବୋଲି ଅଭିହିତ ହୋଇଥାନ୍ତି । ତେଣୁ କନ୍ୟାର କଣରେ ବର ଉଦ୍ଧବା ଲକ୍ଷରେ କନ୍ୟାର କଳକଟାଗୁଅ, ଗୋଡ଼ ମଡ଼ା ଶାଗ, ଉଚ୍ଛିଷ୍ଟାନ୍ନ ପର୍ଯ୍ୟନ୍ତ ବରକୁ ରୂପରେ ଖୁଆଇ ଦିଅଯାଏ; ଅବଶ୍ୟ ଏହା ତାନ୍ତ୍ରିକ ବିଧିରର ଅନ୍ତର୍ଗତ ଅଟେ । ହେଲେହେଁ ପଞ୍ଜୀଠ ଅନେକ ପରିବାରରେ ବର କନ୍ୟା ମଧ୍ୟରେ କୌଣସି ଭେଦ ଦେଖାଯାଏ ନାହିଁ । ଗୋଟିଏ ପିଣ୍ଡ ସ୍ୱରୂପରେ ସେମାନେ ଜୀବନ ଅତିବାହିତ କରିଥାନ୍ତି । ଅଗ୍ରର ବିଧିରେ ସେଠି ଦୁହିଙ୍କ ମଧ୍ୟରେ ଉଚ୍ଛିଷ୍ଟ ବା ଅସ୍ୱାସ୍ଥ୍ୟ ପ୍ରଶ୍ନ ନ ଥାଏ । କିନ୍ତୁ ସାମ୍ପ୍ରତିକ ଅଧଃପତନ ଯୋଗ୍ଯ ବର ଓ କନ୍ୟାର ପ୍ରତ୍ୟେ ଶିବପାର୍ବତୀଙ୍କର ଅର୍ଦ୍ଧନାରୀଶ୍ୱର ଭାବରୁ ଏବେ ବଞ୍ଚିତ ହୋଇଅଛୁ । ଶିବ ନିଜକୁ କୀତଦାସ କହୁଥିଲେ ପାର୍ବତୀଙ୍କ ସଦ୍‌ଗୁଣରେ ମୋହିତ ହୋଇ, ଏମନ୍ତ କି ଚିରଜୀବନ କୀତଦାସ ଥିବାର ଇତିହାସ ଅଛି । କୃଷ୍ଣ ତାଙ୍କର ପ୍ରଣୟିନୀ ରାଧାଙ୍କୁ 'ଦେହି ପଦପଲ୍ଲବମୁଦାରଂ' କହି ସେ ବିଶ୍ୱବନ୍ଦିତ ନାରୀର ପାଦପଦ୍ମକୁ ଦୁଇଟି ମସ୍ତକରେ ବହନ କରିଥିଲେ । ଏହି ତ ହିନ୍ଦୁ ଆଦର୍ଶ । ନାରୀ— ପୂଜାରେ ବିମୁଖ ହେବୁ ପ୍ରୀତି ଏବେ ପରୋକ୍ଷ ହୋଇ ଯାଉଅଛି । ତେଣୁ ଯେଉଁ ନାରୀଠାରେ 'ଉତ ପ୍ରୀତିଂ ଚ ଧର୍ମଂ ଚ ତା ସ୍ୱାୟତ୍ତ ମେବେକ୍ଷତେ' ସେଠାରେ ପୁରୁଷ ନାରୀର କୀତଦାସ ହେବାର ଅସମୀଚୀନତା ଘଟୁଛି କିପରି ? ଏହି ମଙ୍ଗଳ ବୋଲରେ ରାମଚନ୍ଦ୍ର ସୀତାଙ୍କ ସହିତ ଜୁଆଖେଳି ବାରମ୍ବାର ହାରଛନ୍ତି ଏବଂ କହୁଛନ୍ତି—

'ହସିଣ କହନ୍ତି ରାମ ଶୁଣ ସଖୀଗଣେ
ସୀତା ପାଦପଦ୍ମେ କିଏ ମୁହିଁ ଚିରଦିନେ'—ଏହି ବୋଲରେ

ଏହା ଅସନରେ ବସି ରାମସୀତା ମଣୋହି କରିବାର ବର୍ଣ୍ଣନା ମଧ୍ୟ ରହିଅଛି ।

ଏକ ଠାଅ ପେଡ଼ାରେ ଯେ ବରକନ୍ୟା ବସି
ଷଡ଼ରସେ ମଣୋହି କରନ୍ତି ପଞ୍ଚୁଗ୍ରାସି ।

ଏହି ମଙ୍ଗଳ ବୋଲର ଅନ୍ତ ଗୋଟିଏ ସାମାଜିକ ବିଧି ଏଠାରେ ବର୍ଣ୍ଣିତ ହେବା ଦ୍ୱାରା ଏହି ସଙ୍ଗୀତର ମନୋହାରିତା ସହଜରେ ଅନୁଭୂତ ହେବ ।

ଏଥିରେ ବରକନ୍ୟାଙ୍କୁ ବିଶେଷରୂପରେ ରାମ ସୀତା ବୋଲି ଚିତ୍ରିତ କରାଯାଇଅଛି । ତେଣୁ ରାମ ସୀତା କହିଲେ ହିଁ ଏ ସ୍ଥଳରେ ବର କନ୍ୟା ବୋଲି ବୁଝିବାକୁ ହେବ ।

ବିବାହ ବାସି ଦିନ କନ୍ୟା ତାର ମାତାଙ୍କ ସମ୍ମୁଖରେ ଗୃହ ଅଙ୍ଗନ ଗୃହଳ ଦେଇ ସାରିବା ପରେ ପରିବାର ମଧ୍ୟରୁ ସେ ଚିର ଦିନ ପାଇଁ ବିଦାୟ ହେଲ ବୋଲି ଏକାନ୍ତ ଭାବରେ ସ୍ଥିର ହୋଇଯାଏ । ଫଳରେ ହଠାତ୍ ମାତା କାନ୍ଦି ଉଠନ୍ତି—

ଶ୍ରୀଅଙ୍ଗ ଅଇଁପି ମାଏ ଦିଅନ୍ତି ଚୁମ୍ବନ
କେମନ୍ତ ମୂର୍ଚ୍ଛିବି କହ ଜୀବର ଜୀବନ ।
ପାଞ୍ଚ ବରଷଠାରୁ କରିଥାଇ ଚିନ୍ତା
ରାନ୍ଧ କିଦ୍ରା ନ ମାଡ଼ଇ ଅନ୍ନ ବଛିପିଠା ।
ବାର ବରଷ କରି ନୋହିଲି ଲେ କଛି
କ୍ଷଣରେ ବିଚ୍ଛାଇ ରାମ ନେଇ ଯାଉଅଛି ।

ଏହି ସମୟରେ ବରଯାତ୍ରୀମାନେ ବରପିତାଙ୍କ ସହିତ ଶୁଭ ଅନୁକୂଳରେ କନ୍ୟା ଦେଖିବାକୁ ଆସିଥାନ୍ତି । ସୁନ୍ଦର ସୁନ୍ଦର ଅଳଙ୍କାର, ମହାପ୍ରସାଦ, ସିନ୍ଦୂର କଜ୍ଜ୍ୱଳ, ନବର୍ତ୍ତନ ପାଟ, ଦଶଅବତାର ହାର ସହିତ ଦଧିଖଣ୍ଡ, ମାଛ ହାଣ୍ଡି, ପୂର୍ଣ୍ଣକୁମ୍ଭ, ଅମ୍ବଡାଳ, ରାଜହଂସ, ଶ୍ୱେତପାରି, ଶ୍ୱେତ ଚାମର ଧରି ଜଣେ ଜଣେ ରୂପବତୀ ନାରୀ ପଟୁଆର କରି ଆଗରେ ଚାଲନ୍ତି । ବରପିତା ଓ ବରଯାତ୍ରୀ ସେମାନଙ୍କ ପଛେ ପଛେ ଆସନ୍ତି ।

ଶ୍ୱଶୁର ବଧୂଙ୍କୁ କୋଳରେ ଧରି ମୁଖ ଦେଖନ୍ତି ଏବଂ କୋଟି ଜନ୍ମର ଦୁଃଖ ପାସୋରିଲି ବୋଲି କହିଥାନ୍ତି ।

ଅଁଠିକୁ କାଢ଼ିଣ ରାଘେ ଚନ୍ଦ୍ରକାନ୍ତ ମଣି
ଜାନକୀଙ୍କ କପୋଳରେ ଟଙ୍କିଦେଲେ ପୁଣି
ଚନ୍ଦନ ଅକ୍ଷତ ପୁଷ୍ପ ଶିରପରେ ଦେଲେ
ଧନ୍ୟ ଧନ୍ୟ ତ୍ରିସିଗରନ୍ତୁ ବୋଲି ପ୍ରଶଂସିଲେ ।

ଏବେ ମଧ୍ୟ ଘରେ ଘରେ ଶ୍ୱଶୁରମାନେ କନ୍ୟା ଦେଖାରେ ମଥାମଣି ବା ଟଙ୍କା ଦେବାର ବିଧି ରହିଅଛି ।

ଅନନ୍ତର ବରଯାତ୍ରୀ ବସାକୁ ଫେରି ଆସିବା ପରେ ବର ନିଜେ ଯାଇ ଶ୍ୱଶୁରଘରୁ କନ୍ୟାକୁ ସଙ୍ଗରେ ଧରି ଯୁଗଳ ମୂର୍ତ୍ତିରେ ହସ୍ତୀପୃଷ୍ଠରେ ବସି ବିଦାୟ ହେବାର ବର୍ଣ୍ଣନା ରହିଅଛି ।

ନବବଧୂ ସହିତ ବର ସ୍ୱଗୃହରେ ପହଞ୍ଚିବା ପରେ ସେମାନଙ୍କୁ ବନ୍ଦାପନା କରି ଗୃହକୁ ନିଆଯାଏ । ଦ୍ୱାରକଣି ନଣନ୍ଦମାନେ ବସିଥାନ୍ତି । ତେଣୁ ନବବଧୂ

ତାଙ୍କ ପିତୃଗୃହରୁ ଆଣିଥିବା ନାନା ଅଳଙ୍କାର, ବସ୍ତ୍ର, ଛେନା ଗୁଡ଼ର ଏକ ଏକ ପାତ୍ର ଦେଇ ସେମାନେ କାଠ ଖଣ୍ଡ ଦେଇ ଆଲିଙ୍ଗନ ଦେଇଥାନ୍ତି । ତା ପରେ ନବବଧୂର ପରୀକ୍ଷା ଆରମ୍ଭ ହୁଏ । ବନ୍ଧୁତ ହାଣ୍ଡି ଅଟିକା ତଳୁ ଉପରଯାଏ ସଜାଡ଼ି ରଖି ଦିଆ ଯାଇଥାଏ । କନ୍ଧୁତ ବାସନ ଏକାଠି କରି ରଖି ଦିଆଯାଇ ଥାଏ ଏବଂ ଏକ ଦଧିପୂର୍ଣ୍ଣ ଧାତୁ ପାତ୍ରର ଖଣ୍ଡି ଓ ଛତା ଦେବାର ଏକ ପାତ୍ର ସେଠାରେ ମଧ୍ୟ ରହିଥାଏ ।

ଚତୁର ନବବଧୂ ଅତି ସତର୍କତାର ସହିତ ହାଣ୍ଡିମାନଙ୍କୁ ଏପରି ଭାବରେ ସ୍ୱତନ୍ତ୍ର କରି ଦିଅନ୍ତି ଏବଂ ବାସନମାନଙ୍କୁ ଏପରି ଭାବରେ ଅଟି ହାତରେ ଥୋଇ ରଖନ୍ତି ଯେ ଟିକିଏ ମାତ୍ର ଝୁଣ୍ଡୁଖାଡ଼ ଶବ୍ଦ ହୁଏ ନାହିଁ । ସମଗ୍ର ପରିବାର ଅନାଇଁ ରହିଥାନ୍ତି । ପରୀକ୍ଷା ସରିଗଲେ ନବବଧୂ ଦଧି ଭାଣ୍ଡରେ ହାତ ପୂରାଇ ତାଙ୍କ ସ୍ୱାମୀଙ୍କ ସଙ୍କେତ ଓ ନାମ ଲେଖାଥିବା ଏକ ରୂପା ମୁଦ୍ରିକା ଲାଭ କରନ୍ତି । ଉକ୍ତ ମୁଦ ଲଗାଇବାବେଳେ ହୁଳହୁଳି ଏବଂ ଶଙ୍ଖଧ୍ୱନିରେ ଗୃହ ଚତ୍ୱର ଆନନ୍ଦ ମୁଖରିତ ହୋଇଯାଏ । ତା ପରେ ନବବଧୂ ଗୃହ ଚତ୍ୱରରେ ପିଠୋଉ ସାହାଯ୍ୟରେ ଚିତା କାଟି ନିଜର କଳା-କୁଶଳତାର ପରିଚୟ ଦିଅନ୍ତି ।

ଏହାପରେ ନବବଧୂଙ୍କର ସ୍ୱତନ୍ତ୍ର ବନ୍ଦାପନା କରାଯାଏ । ଚତୁର୍ଥୀ କର୍ମ ଶେଷରେ କିଛେକ ପୂର୍ବରୁ ନବବଧୂ ବରଙ୍କୁ ଖାଦ୍ୟ ପରିଷିବା କଥା ଏହି ମଙ୍ଗଳ ସଙ୍ଗୀତରେ ବର୍ଣ୍ଣିତ ଅଛି । କିନ୍ତୁ ଦଶମଙ୍ଗଳା ଦିନ ସ୍ୱତନ୍ତ୍ର ଏକ ଗୃହରେ ବର କନ୍ୟା ଉଭୟେ ଏକାକୀ ରହିବାର ସୁଯୋଗ ଲାଭ କରିଥାନ୍ତି । କନ୍ୟା ସେଦିନ ନିଜର ପାଲଟା ଶାଢ଼ୀକୁ ବରମସ୍ତକରେ ପାଗ ସ୍ୱରୂପ ବାନ୍ଧି ସାରିବା ପରେ ବିଧି ଶେଷ ହୋଇଥାଏ । ଏହି ସମସ୍ତ ଶୁଭକର୍ମରେ ସାତଜଣ ସଧବା ନାରୀଙ୍କର ପ୍ରୟୋଜନୀୟତା ଦେଖା ଯାଇଥାଏ ।

ଚନ୍ଦ୍ର ବନ୍ଦାପନାରେ ବରକୁ ତଣ୍ଡୁଳ ଓଳିଆ ଉପରେ ବସାଇ ଦ୍ୱିତୀୟା ଚନ୍ଦ୍ରକୁ ବନ୍ଦାପନା କରିବା ବିଧିରୁ ଅନୁମାନ ହୁଏ ବର ଏବଂ ବଧୂ ସେଇଠୁ ଧନ ଏବଂ ପ୍ରଣୟ ଏହି ଦୁଇଟିକୁ ଜୀବନର ଏକାନ୍ତ ପ୍ରୟୋଜନୀୟ ମନେ କରିଥାନ୍ତି । ବିବାହ ବିଧିର ସପ୍ତପଦୀରେ 'ଇଷ୍ଟୁ ସ୍ତ୍ୱାନୟତୁ'ରେ ଧନକୁ ହିଁ ପ୍ରଥମ ସ୍ଥାନ ଦିଆଯାଇଅଛି । ବାସ୍ତବରେ ଗୃହସ୍ଥାଶ୍ରମରେ ଧନ ଏବଂ ପ୍ରଣୟ ହିଁ ଉଚ୍ଚାଦର୍ଶ ହେବା ବାଞ୍ଛନୀୟ । ତଣ୍ଡୁଳ ଓଳିଆ 'ଧନ' ଏବଂ ଚନ୍ଦ୍ରମା ହିଁ 'ପ୍ରଣୟ'ର ସଙ୍କେତ ଦାନ କରିଥାଏ ।

ପ୍ରାଚୀନ ବିବାହ, ଉପନୟନ ଆଦି ବିଧିର ତାତ୍ପର୍ଯ୍ୟ ପ୍ରତି ଧ୍ୟାନ ନ ଦେଇ ସମାଜ ସଂସ୍କାର ନାମରେ ସେ ସବୁକୁ ଲୋପ କରିବାକୁ ଯିବା କେତେ ଦୂର ସମୀଚୀନ ତାହାର ବିଚାର ବିଦ୍ୱାନମାନେ ହିଁ କରିବେ ।

## ୨୧ । କିଶୋରୀଙ୍କ ମେଳ ପୀଠିକା ( ଚତୁର୍ଥ ଖଣ୍ଡ )

ଗ୍ରାମ୍ୟ କିଶୋରୀ କନ୍ୟାମାନେ ମେଳହୋଇ ନିଜ ନିଜ ଜୀବନକୁ ଏକାନ୍ତ ସରସ କରିଥାନ୍ତି । ନିଜ ନିଜ ମଧ୍ୟରେ ଥିବା ନିଷ୍କଳଙ୍କ ପ୍ରୀତିରେ କିଏ କାହାର କଣିକାଫୁଲ, କିଏ କାର ଚମ୍ପାକଢ଼ିଲ, କିଏ କାର ସଙ୍ଗାତସଖୀ, କିଏ କାର ଗଙ୍ଗାଯମୁନା, କିଏ କାର ମକର, ଗଙ୍ଗାମୃଗ ହୋଇ ସେମାନଙ୍କ ଜୀବନକୁ ମଧୁମୟ କରିଥାନ୍ତି । ଗୋଟିଏ କିଶୋରୀଦଳ ଗ୍ରାମ୍ୟ ପଥରେ ଦେଖିଦେଲେ ସାଧାରଣ ଜୀବନ ପୁଲକରେ ପୂରିଉଠେ । ଅବଶ୍ୟ ସେ ସ୍ୱର୍ଣ୍ଣସ୍ମୃତି ଆଜି ନିକୃଷ୍ଟ ସ୍ୱାତନ୍ତ୍ର୍ୟ, ଅଭିଜାତ୍ୟ ଏବଂ ମାନସିକ ଗ୍ଲାନି ହେତୁ ଘରେ ଘରେ ଲୁପ୍ତ ହୋଇଗଲାଣି । ସାଙ୍ଗ ହୋଇ ଦାନ୍ତ ଘଷିବା, ସାଙ୍ଗ ହୋଇ ଗାଧୋଇ ଯିବା, ସାଙ୍ଗ ହୋଇ ଚନ୍ଦ୍ର ପୋଖରୀରେ ପହଁରି ପଦ୍ମ ଫୁଲ ତୋଳିବା—ପୂଜା ଫୁଲ ତୋଳିବା, ସାଙ୍ଗ ହୋଇ ଓଷା ଉପାସ କରିବା, ସାଙ୍ଗ ହୋଇ ଦୋଳି ଖେଳିବା, ପୁଚି ଖେଳିବା, ନାଁ ଦିଅଦେଇ ହେବା ଏବଂ ଗୋଧୂଳି ଲଗ୍ନରେ ଗୋଠ ବାହୁଡ଼ା ବେଳେ ପିଣ୍ଡା ଦାଣ୍ଡରେ ଗୋଡ଼ ଲମ୍ବାଇ ବସି ନାନା ଅନୁଭବ ନାନା ସମସ୍ୟା ଦେଇ ଗ୍ରାମ ଦାଣ୍ଡକୁ ସଙ୍ଗୀତ ମୁଖରିତ କରିବା ବର୍ତ୍ତମାନ ପଲ୍ଲୀ ଗ୍ରାମରୁ ଅନେକ ସ୍ଥାନରେ ପାସୋର ହୋଇଗଲାଣି । ତା ସ୍ଥାନରେ ଈର୍ଷା, କୃତଘ୍ନତା, କଳି, ତିକ୍ତତା ଏବେ ମାଡ଼ି ବସିଲାଣି । ତେଣୁ ପଲ୍ଲୀର କନ୍ୟା କିଶୋରୀ-ଅବସ୍ଥାରୁ ମନରେ, ଚିନ୍ତାରେ, କାର୍ଯ୍ୟରେ ଦୂଷିତ ହୋଇ ଯାଉଛି । ତା ଫଳରେ ସଂସାରର ନିବିଡ଼ କୋଣରେ ଥିବା ବିଶୁଦ୍ଧତା ସରିଯାଉଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପାଶ୍ଚାତ୍ୟ ନଗର ଜୀବନ ବା ବଙ୍ଗଳାର ସ୍ୱଚ୍ଛନ୍ଦ ଜୀବନ କେବେ ଧରଣୀରେ ଚିରସ୍ଥାୟୀ ସୁଖ ନୁହେଁ । ଏହି ସାମାନ୍ୟ କେତେ ବର୍ଷର ସଭ୍ୟତା ମଧ୍ୟରେ ଉଦ୍‌ଯାନ ଓ ପରମାଣୁ ସୃଷ୍ଟି ହୋଇ ଆଜି ଜଗତ ଧ୍ୱଂସ ହେବାକୁ ବସିଲାଣି । ତାର ମୂଳ କାରଣ ଅନୁସନ୍ଧାନ କରି ମଧ୍ୟ ଯାଉ ନାହିଁ । ଭାରତୀୟ ଋଷିଜୀବନକୁ ଯେଉଁମାନେ ଅସଭ୍ୟତାର ଦୃଷ୍ଟାନ୍ତ ବୋଲି ଇତିହାସ ଲେଖୁଛନ୍ତି, ସେହି ଲୋକମାନେ ସମଝିବା ଉଚିତ ଯେ ସ୍ୱାର୍ଥତ୍ୟାଗ ସ୍ୱାର୍ଥ ବିଲୋପ ବିଶ୍ୱ ସଂରକ୍ଷଣ ଲାଗି ଏକ ସଭ୍ୟତାସମ୍ପନ୍ନ ଚିନ୍ତାଧାରା ଅଟେ । ଏ ଧରଣର ସଭ୍ୟତାକୁ ଯେଉଁମାନେ ତମ୍ବାପଟ୍ଟ, ପଥର କେତେଖଣ୍ଡ ଦେଖି ପାଞ୍ଚ ଛଅ ହଜାର ବର୍ଷର ବୋଲି ସ୍ଥିର କରିବାକୁ ଯାଉଛନ୍ତି, ସେମାନେ ମାନବ ଜାତିର ସାମାଜିକ ଓ ସାଂସ୍କୃତିକ ଇତିହାସ ଅଧ୍ୟୟନ କରି ନାହାନ୍ତି । ଆଜି ଧରଣୀର ଯେଉଁ ବୀର ପୁରୁଷମାନେ ସମଗ୍ର ମାନବର ସଭ୍ୟତାକୁ ଧ୍ୱଂସ କରିବାକୁ ବସିଛନ୍ତି, ସେମାନେ ପଲ୍ଲିଗ୍ରାମର ସରଳତା, ଅଦୂଷିତ ମନୋଭାବ, ମମତାଗ୍ରସ୍ତ ଜୀବନଠାରୁ ବାଲ

ବାଳ ବେଳେ ପୁରୁଷ ହେଲେ ଦୂରରେ ହୋଇ ଯାଉଛନ୍ତି । ଫଳରେ ଧରଣୀରୁ ଦେଉଛି ଲୋପ ହୋଇ ଅପୂର୍ବ ମନୋଜ୍ଞ କାର୍ଯ୍ୟ କରି ଚାଲିଛ । ତେଣୁ ଭାରତୀୟ ଗ୍ରାମ୍ୟ କିଶୋରୀ ଆଜି ଇତିହାସର ସାମଗ୍ରୀ ହୋଇଛି ।

ଏହି ସଂସାରରେ କିଶୋରୀ ତାର ପରବର୍ତ୍ତୀ ଜୀବନର ସୁଖମୟ ଚିତ୍ରମାନ ତାର ପ୍ରତ୍ୟେକ କାର୍ଯ୍ୟରେ କଳ୍ପନା କରିଅଛି । ସେ କିପରି ତା ଜୀବନ ସାଥି ସ୍ୱାମୀର ସେ ହାଗିଣୀ ହେବ, ସେ କିପରି ତାର ପ୍ରେମମୟ ସ୍ୱାମୀଙ୍କୁ କିବଡ଼, କିସୁନ୍ଦରଙ୍କ ପ୍ରୀତି ଦାନ କରିବ, ସେ ତାର ସରଳ ଅନାବିଳ ଜୀବନକୁ କିପରି ରସବନ୍ତ କରି ଗଢ଼ିବ, ସେ ତାର ଅଦୂଷିତ ଜୀବନ ଯେନ ପିତାମାତା, ଭାଇ ଓ ଅନ୍ୟାନ୍ୟ ସ୍ୱଜନମାନଙ୍କୁ ଓ ତାର ପଡ଼ୋଶୀମାନଙ୍କୁ କିପରି ଆନନ୍ଦ ଦାନ କରିବ, ଦୈନନ୍ଦିନ ସୁଖ ଦୁଃଖ ମଧ୍ୟରେ ତାହାହିଁ ସେ ମୂଳରୁ ଶିକ୍ଷା କରିଥାଏ । ବୈକୁଣ୍ଠ ସମାନ ଗୃହଗାଇଁ ଯଦି ମାନବ ଜାତି ଇଚ୍ଛା ପୋଷଣ କରନ୍ତି ତେବେ ଏହି କିଶୋରୀମାନଙ୍କ ପରବର୍ତ୍ତୀ ଆଶା ଆକାଙ୍କ୍ଷା ଯେନ ଯେଉଁ ନାରୀ ଗୃହିଣୀ ପଦ ପାଏ ତା ଛଡ଼ା ଅନ୍ୟ କିଏ ସେ ସୁଖ ଦେଇ ପାରେ ?

ଆଜିର ସଭ୍ୟତା ନାରୀସ୍ୱାଧୀନତା—ନାରୀସ୍ୱାଧୀନତା ନାମରେ ଏକ କୃତ୍ରିମ ଆକାର ଦାମ୍ପତ୍ୟ ଜୀବନ ସୃଷ୍ଟିକରିବାକୁ ବସିଅଛି । ଏମନ୍ତ କି କେତେକ ଅଭିନେତ୍ରୀ ଓ ଜନପ୍ରତିନିଧି ମଧ୍ୟ ନାରୀକୁ ଅବାଧ ଓ ଉନ୍ମୁକ୍ତିତା କରିବା ଲାଗି ଯତ୍ନ କରି ଚାଲିଅଛନ୍ତି । ତାସତ୍ତ୍ୱେ ଜଙ୍ଗଲ ବାହିଁକି ଭାରତର ପ୍ରତି ପ୍ରାନ୍ତରେ ପଲ୍ଲୀର ଅନୁପମ ରସବତୀ ସରଳ ନିଷ୍କପଟ ସୁନ୍ଦରୀ ବାଳିକାମାନେ ଭାରତୀୟ ସଂସ୍କୃତିକୁ ସେହି ଅତୀତର ସୀତା, ସାବିତ୍ରୀ, କୁନ୍ତୀ, ଦମୟନ୍ତୀ, ଶୈବ୍ୟା ଆଦିଙ୍କର ଚରିତ୍ରନିଷ୍ଠା ସହିତ ସେବା, ସ୍ନେହ, ସହିଷ୍ଣୁତା, ନମ୍ରତା ଯେନ ଅତ୍ୟନ୍ତ ଉଜ୍ଜ୍ୱଳ ଭାବରେ ରକ୍ଷା କରି ରହିଅଛନ୍ତି ।

ବର୍ତ୍ତମାନ ଭାରତୀୟ ନାରୀ କିଣ ହେବା ଉଚିତ ସେ ସମ୍ପର୍କରେ ବହୁ ଆଲୋଚନାରେ ସିଦ୍ଧାନ୍ତ ହୋଇଥିବା ଜଣେ ଶ୍ରୀମତୀଙ୍କ ମତ ପ୍ରତି ଧ୍ୟାନ ଦେଲେ ଜଣାଯାଏ—

"ଭାରତୀୟ ମହିଳାୟେଁ ସ୍ୱତନ୍ତ୍ର ହୋକର ଭୀ ପାରିବାରିକ ସୂତ୍ରୋଁ ମେଁ ଲିପ୍ତ ରହତି ହେଁ । ଭାରତକୀ କିତନୀ ହୀ ମହିଳାୟେଁ ଗ୍ରେଜୁଏଟ ହେଁ, ଔର ଉନମେଁ ସେ କିତନ ହୀ ମହତ୍ତ୍ୱପୂର୍ଣ୍ଣ ସାର୍ବଜନୀନ ସଂସ୍ଥାଓଁ ତଥା ଅଫିସୋଁମେ କାର୍ଯ୍ୟରତ କରତୀ ହେଁ । କିନ୍ତୁ ଇସ୍‌କା ୟହ ଅର୍ଥ ନହିଁ ହେଁ କି ବେ ବାଲକଟାକର ପୁରୁଷୋଁକା ଅନୁକରଣ କରନେ ଲଗେଁ ଔର ନ ଇସକା ୟହୀ ଅର୍ଥ ହୈକି ବେ ଅପନେ ପରିବାର, ପତି ତଥା ସନ୍ତାନକୋ ସୁଖୀ ରଖନେକା ପ୍ରଯତ୍ନ ନ କରେଁ । ଉନ୍‌କୀ ଦୃଷ୍ଟିମେଁ ଶିକ୍ଷା ଜ୍ଞାନକେ ଲିଏ ହେଁ, କେବଲ ଧନୋପାର୍ଜନକେ ଲିଏ ନହିଁ ।

ହମ୍ ଲୋଗୋଁକେ ଗୌରବ କା ଏକମାତ୍ର ମାର୍ଗ ହୈ ଆତ୍ମତ୍ୟାଗ । ଅପନେ ପରିବାର ପତି ତଥା ସନ୍ତାନକେ ସୁଖ କେ ଲିଏ ଅପନୀ ସାରୀ ଆବଶ୍ୟକତାଓଁକା ବଳିଦାନ କରନେସେ ହୀ ହମ୍ ଲୋଗୋଁକୋ ଶାନ୍ତି ମିଲତି ହୈ । ପୁରୁଷୋଁକା ଜୀବନ ହମ୍ ଲୋଗୋଁକେ ଜୀବନ ସେ ଭିନ୍ନ ହୈ । ବେ ହମାରେ ସ୍ୱାମୀ ହୈ ଔର ସଂରକ୍ଷକ ଭୀ । ହମ୍ ଉସ୍‌କେ ଲିୟେ ଗୃହିଣୀ, ସଚିବ, ସଖି, ପ୍ରିୟ ଶିଷ୍ୟା, ଲଳିତ କଳା ବିଧାୟିନୀ ବନନା ଚାହତି ।”

ଏହି ସଂଚୟନରେ କଣୋଗିଙ୍କ ମେଳ ଗୀତକୁ ଛଅଟି ଭାଗରେ ବିଭକ୍ତ ଅଛି । ଯଥା—ଦୋଳି, ଗୋଠ—ବାହୁଡ଼ା, ଓଷାମନସା, ଭଲୁକୁଣୀ ବାଦ, ପୁଚି ଖେଳ, ନାଁଦଅ । ପ୍ରତ୍ୟେକଟିର ସ୍ୱତନ୍ତ୍ର ଆଲୋଚନା କରାଯିବା ଆବଶ୍ୟକ—

(କ) ଦୋଳିଗୀତ—ଏଥିରେ ଦୁଇ ପ୍ରକାର ସଙ୍ଗୀତ ରହିଅଛି । ଏକ ପ୍ରକାର ରଜ ଦୋଳିଗୀତ, ଅନ୍ୟ ହେଉଛି କେତୁଣୀର ଦୋଳି ଗୀତ ।

ପୃଥିବୀ ରଜସ୍ୱଳା ହେବା ସମୟରେ କଣୋଗିମାନେ ଦୋଳିର ଆୟୋଜନ କରିଥାନ୍ତି । ଲକ୍ଷ୍ୟର ବିଷୟ ଯେ ଏହି ରଜପର୍ବ କେବଳ ଉତ୍କଳର ନିଜସ୍ୱ । ଗ୍ରୀଷ୍ମଶେଷରେ ମିଥୁନ ସଂକ୍ରାନ୍ତିକୁ ମିଶାଇ ଏହି ପର୍ବ ଚାରିଦିନ ହୋଇଥାଏ । ରଜ ପର୍ବର ଆଲୋଚନା ସ୍ୱତନ୍ତ୍ର କଥା । ତେବେ ଦୋଳିର ଆୟୋଜନ କଣୋଗିମାନେ କରିଥାନ୍ତି ସତ୍ୟ କିନ୍ତୁ ଅନ୍ୟମାନେ ମଧ୍ୟ ଦୋଳି ପହଞ୍ଚିଥାନ୍ତି । ହେଲେହେଁ କଣୋଗିମାନଙ୍କର ଏହି ଚାରିଦିନ ଦୋଳିଖେଳହିଁ ଅବଲମ୍ବନ ହୋଇଥାଏ । ଗାଁ ମଝିରେ ମଝିରେ ଥିବା ବାଡ଼ିପାଖ ଆମ୍ବ, ଜାମ୍ବ, କରଁଜ ଆଦି ଗଛ ଡାଳରେ ଝୁଲୁଥିବା ଦୋଳିପଟାରେ ସୁବେଶିତା କଣୋଗିମାନେ ବସି ଭାଉଜଙ୍କୁ ଚଢ଼ାଇ ଚଢ଼ାଇ ସଙ୍ଗୀତର ତାଳେ ତାଳେ ଗାଇ ଉଠନ୍ତି—

‘ପିଠା ଖାଇ ବୁଦ ବୁଦ
ଭାଇ କାହା ସଙ୍ଗେ କଲେ ପୀରତି ଲୋ
ହାତୁ ଦେଇ ସୁନାମୁଦ ।’

ଚନ୍ଦ୍ରବଦନା ଭାଉଜ ଅଞ୍ଚଳରେ ଥାଇ ଆଖିରେ କଟାକ୍ଷ ହାଣନ୍ତି— ‘ଖାଇ କହିଲ କାହ୍ନ ?’ ଏ ସୌନ୍ଦର୍ଯ୍ୟ, ଏ ବିଳାସ, ଏ ମାଧୁର୍ଯ୍ୟ ବିଶ୍ୱ ସଂସାରରେ କେଉଁଠି ଅଛି ଥିବାର ଜଣାଯାଏ ନାହିଁ । ସେହି ଭାଉଜଙ୍କୁ ପୁଣି ଖୁସି କରିବାକୁ ଗାନ ଶୁଭେ ଦୋଳିର ଲହରେ ଲହରେ—

ରଥରୁ ଖୁମ୍ବ ଖସିଲା
ଭାଇନା କାନରେ ନୋଳି ବସିଲା ଲୋ
ଭାଉଜ ଦେଖି ହସିଲା ।

ଏ ଗୀତମାନଙ୍କର ପ୍ରଥମ ଧାଡ଼ି ନିରର୍ଥକ ପ୍ରୟୋଗ ବୋଲି କେହି କେହି ମତ ଦିଅନ୍ତି । କିନ୍ତୁ ଏମାନ ସମସ୍ତ ନିରର୍ଥକ ନୁହେଁ । ତାର ଅନ୍ତର୍ନିହିତ ଅର୍ଥ ସହିତ ପରବର୍ତ୍ତୀ ବିଷୟର ସମ୍ପୂର୍ଣ୍ଣ ସମ୍ପର୍କ ପ୍ରାପ୍ତ ଥାଏ । ଯେଉଁ ଦୁଇଟି ପଦ ଉଦ୍ଧାର କରାଯାଇଛି, ତାହା ନିରର୍ଥକ ମନେ ହୁଏ ନାହିଁ । କାରଣ ପିଠାଶାଗ ବୁଦି ବୁଦିରେ ଦୁଇରୁ ଅଧିକର ଧାରଣା ସୃଷ୍ଟିଭୂତ । ପୁନଶ୍ଚ ଇଥରୁ ଖୁମ୍ପ ଖସିଲି ଅର୍ଥାତ୍ ସ୍ୱତନ୍ତ୍ର ଖମ୍ପର ପ୍ରୟୋଜନ ହେବ । ତେଣୁ ଭଉଣୀଙ୍କ ନୋକି କଦିଲବ ।

ଢେଙ୍କୁଣିମାନେ ଉଚ୍ଚ ବାଉଁଶ ଉପରେ କୁଅଁ ଦୋଳି ଶୁଅ ଦୋଳିରେ ବସି ଯେଉଁ ସଙ୍ଗୀତମାନ ସ୍ୱରଧରି ଗାନ କରିଥାନ୍ତି, ତାର ଲହର ଏତେ ବିସ୍ତୃତ ଯେ ସେ ଲହରରେ ଉର୍ଦ୍ଦୁ ଗଜଲ ହାର ମାନେ । ମନେ ହୁଏ ଓଡ଼ିଆ ସଙ୍ଗୀତର ଏହି ଲହରରୁ ଏବଂ ଛନ୍ଦର ଦୀର୍ଘ ସ୍ୱରରୁ ଉର୍ଦ୍ଦୁର ଗଜଲ ସମ୍ଭବତଃ ସୃଷ୍ଟି ହୋଇଅଛି । ଅବୁଲ ଫଜଲ ତାଙ୍କର ଅଇନ ଅକବରୀରେ ଯେଉଁ ଉତ୍କଳୀୟ ସଙ୍ଗୀତଜ୍ଞ ମହାପାତ୍ରଙ୍କ କଥା ଲେଖି ଯାଇଅଛନ୍ତି, ବୋଧହୁଏ ତାଙ୍କର ଦ୍ୱାରା ଏହି ଲହର ଦିଲ୍ଲି ମୋଗଲ ଦରବାରରେ ଆଦୃତ ହୋଇ ନୂତନ ସୃଷ୍ଟି ଗଜଲ ରୂପ ଗ୍ରହଣ କରିଅଛି । ମୋର ମନେ ଅଛି ଦିଲ୍ଲିରେ ଉତ୍କଳ ଭାରତୀ କୁନ୍ତଳା-କୁମାରୀ ଥିବା ବେଳେ ଔପନ୍ୟାସିକ ଜୈନେନ୍ଦ୍ର କୁମାର ଏବଂ ଅର୍ଯ୍ୟ ସମାଜ ସମ୍ପାଦକ ଅନନ୍ଦ ଭିକ୍ଷୁ ସରସ୍ୱତୀ ଆଦିଙ୍କ ସମକ୍ଷରେ ଜଣେ ଉର୍ଦ୍ଦୁ ଗଜଲର ଓସ୍ତାଦ ଗାୟକଙ୍କ ଦ୍ୱାରା ଏପରି ଏକ ନିଷ୍ପତ୍ତି ହୋଇଥିଲା ।

(ଖ) ଗୋଠବାହୁଡ଼ା ଗୀତମାନ ଗାଈ ଗୋଠ ଫେରି ଆସିବା ବେଳେ କିଶୋରୀ କନ୍ୟାମାନେ ଦଳ ଦଳ ହୋଇ କୋରସ୍‌ରେ 'ମହାପ୍ରଭୁସେ' କହି ଗାଇବାର ଦୃଶ୍ୟ ଆଉ ଏବେ ନାହିଁ । ଏହି ସଙ୍ଗୀତମାନ ପ୍ରତି ଗ୍ରାମର ପିଣ୍ଡା ଦାଣ୍ଡରେ ଗୋଡ଼ ତଳକୁ ଲମ୍ବାଇ ବସିଥିବା କିଶୋରୀମାନଙ୍କ ମିଳିତ କଣ୍ଠରୁ ଶୁଣାଯାଇଥାଏ । ଅବଶ୍ୟ ଗୀତମାନଙ୍କରେ ଶାଶୁ ଘରର ଯନ୍ତ୍ରଣାମାନଙ୍କର କେତେକ ଚିତ୍ରଣ ଦିଆଯାଇଥାଏ । ଏହା ଦିଆଯିବାର କାରଣ ସ୍ୱରୂପ ଜଣାଯାଏ ଯେ, କିଶୋରୀର ପରବର୍ତ୍ତୀ ଜୀବନ ଏପରି ଦିନେ ଦୁଃଖପ୍ରଦ ହେବ । ଏ ଆଂଶଙ୍କାପ୍ରଦ ଚିତ୍ର ବ୍ୟତୀତ ପାରିବାରିକ ସ୍ନେହମମତାର ନାନା ସୁନ୍ଦର ଚିତ୍ର ମଧ୍ୟ ଏଥିରେ ବର୍ଣ୍ଣିତ ଥାଏ ।

ଯେପରି—ବଡ଼ ଶୁନ୍ଥୁଅର ଅଣି

ଯେତେବେଳେ ବାଟା ବାଟ ଗୃଲୁଥିବ ହେ
ମାଅ ବସଲେଇ ସାକ୍ଷୀ, ମହାପ୍ରଭୁ ସେ ।
କୁକୁଡ଼ା ରଡ଼ି କରଛି
ସତେ କି ମୋ ନନା ଅଣି ଅସୁଛି ହେ
ତଳିକା ବନ୍ଦ କରଛି, ମହାପ୍ରଭୁ ସେ ।

ବାଅ ଢଳେ ବରଷିବ
ଅଧନେ ଭଇନା ପରବାସିଅ ସେ
ଢଏ ଗନ୍ଧ ପରଶିବ,           ମହାପ୍ରଭୁ ସେ ।

(ଗ) ଓଷା ମନସାର ଅର୍ଥ ହେଲା ବିଭିନ୍ନ ଓଷାବ୍ରତ ଆଦି ଉତ୍ସବାଦି ଦିନରେ ଝିଅମାନେ ବିଭିନ୍ନ ଫଳମୂଳ ସଂଗ୍ରହ କରି ତାହା ଗୃହଦ୍ୱାରରେ ରଖି ସ୍ନାନ ସାରି ପ୍ରତି ଫୁଲ ଫଳକୁ ସ୍ପର୍ଶ କରି ଯେଉଁ ଶୁଭ ମନାସନ୍ତି ସେହି ସବୁ ସଙ୍ଗୀତ ଓଷା ମନସା ନାମରେ ଅଭିହିତ ଅଟେ ।

ଯେପରି—"ଢିନେ ଗଜରା ଗଇଣ ମୁଣ୍ଡି
ମୋତେ କରିଥିବ ସିନ୍ଦୂରମୁଣ୍ଡି ।

ଝିଅମାନେ ଗଇଣ ଫୁଲ ଶୋଭିତ ମୁଣ୍ଡିକୁ ଛୁଇଁ କହନ୍ତି—'ହେ ଗଜରା, (ହେ ଗୌରୀ) ମୁଁ ଗଇଣ ମୁଣ୍ଡି ଦେଉଛି । ତୁମେ ମୋତେ ଦୟାକରି ଚିରକାଳ ସିନ୍ଦୂରମୁଣ୍ଡି ( ସଧବା ) କରିଥିବ । ପୁନଶ୍ଚ—

ଢିନେ ବେଲ ପତର
ମୋତେ କରିଥିବ ତୁମ ଚରିସ ।

ହେ ବେଲପତ୍ର, ତୁମକୁ ଦେଉଛି । ମୋତେ ତୁମପରି ଚରିସ କରିଥିବ, ଅର୍ଥାତ୍ ତୁମେ ଯେପରି ଶିବ ମସ୍ତକରେ ନିରନ୍ତର ଶୋଭା ପାଉଛ ମୁଁ ସେହିପରି ମୋର ସ୍ୱାମୀ ମସ୍ତକରେ ଯେପରି ଶୋଭା ପାଇବି ଅର୍ଥାତ୍ ସ୍ୱାମୀଙ୍କୁ ମୋର ଅଧିକାର ମଧ୍ୟରେ ଲାଭ କରିବି । 'ପତିଂ ମେ ବଶମାନୟ' ।

ଏହି ସ୍ପର୍ଶ ବିଧି ବୈଦିକ ଯୁଗରୁ ପ୍ରଚଳିତ ଥିବାର ଜଣାଯାଏ ।

ବଦରୀ କଣ୍ଟକ କାରି ତବ ଶତ୍ରୁ କ୍ଷୟଂ କରୁ
ବଦରି ବନ୍ଦତେ ନିତ୍ୟଂ ଆୟୁଃ ପ୍ରଜ୍ଞା ଯଶୋବଳଂ ।

ମଙ୍ଗଳ ଲାଭ ଉଦ୍ଦେଶ୍ୟରେ ଦୂବ, ବରକୋଳି ପତ୍ର, ଚନ୍ଦନ, ସିନ୍ଦୁର, ନାରିକେଳ ଆଦି ସ୍ପର୍ଶ କରିବାର ବିଧି ବୈଦିକ କର୍ମକାଣ୍ଡରେ ପ୍ରଚଳିତ ଅଛି । ଏଥିପରେ କୌଣସି ବୈଜ୍ଞାନିକ କାରଣ ନ ଥାଇ ପାରେ ବା ଥାଇପାରେ । ସୂର୍ଯ୍ୟ ନାରାୟଣ କହି ନଅକୋଟି ତିରିଶ ଲକ୍ଷ ମାଇଲ ଦୂରସ୍ଥ ସୂର୍ଯ୍ୟଙ୍କୁ ଜଳ ଅଞ୍ଜୁଳା ଏବେ ନୁହେଁ ସେବଠାରୁ କୋଟି କୋଟି ନରନାରୀ ଦେଇ ଚାଲିଛନ୍ତି । ଏଥିର ତାତ୍ପର୍ଯ୍ୟ କଣ ଏବେ ମଧ୍ୟ ଜଣାଯାଇ ନାହିଁ । ତେଣୁ ଏହି ପଦାର୍ଥ ସ୍ପର୍ଶ ହେତୁ ଶୁଭ ଆଶା କରିବା କିଶୋରୀମାନଙ୍କର ଓଷା ମନସା ଏକ ଆନନ୍ଦପ୍ରଦ ଶୁଭାନୁଷ୍ଠାନ ଅଟେ । ଏହା ସାବିତ୍ରୀବ୍ରତ, ବାଲି ତୃତୀୟାବ୍ରତ ଏବଂ ଦୁର୍ଗାବ୍ରତ ଏହି ତିନିଦିନ ଅର୍ଥାତ୍ ଜ୍ୟେଷ୍ଠ କୃଷ୍ଣ ଚତୁର୍ଦ୍ଦଶୀ, ଭାଦ୍ର ଶୁକ୍ଳ ତୃତୀୟା ଏବଂ ଆଶ୍ୱିନ ଶୁକ୍ଳ ଅଷ୍ଟମୀ ତିଥିର ପ୍ରାତଃକାଳରେ କରାଯାଇଥାଏ । ଯେଉଁ

କନ୍ୟାମାନେ ଯୁବତୀ ନ ହେଉଣୁ ବିବାହ ହୋଇଥାନ୍ତି, କେହି ଅବା ବିବାହ ପରେ ସ୍ୱାମୀଗୃହକୁ ଯାଇ ନଥାନ୍ତି ସେମାନେ ଏହି ଓଷା ମନସା ପାଳନ କରିଥାନ୍ତି । ଧନ, ସନ୍ତାନ, ସୁଖାଦ୍ୟ, ଉତ୍ତମପତି, କୁଆଁରୀ ବନ୍ଧୁସବୁ ନାରୀ ଆଶା କରିଥାଏ । ତାର ସଙ୍ଗଭୁଣୀ କପଟ କେହି ନ ରହୁ ଏଥିପାଇଁ ସେ ଏହି ଓଷା ମନସାରେ କହେ ।

ସେ କୂଳେ ମୋ ସଙ୍ଗଭୁଣୀ ଥାଉ
ଏ କୂଳେ ମୋ ଧନ ଯାଉ ।

(ଘ) ଭାଲୁକୁଣୀ ଗୀତ—

କୁଆଁରୀ କନ୍ୟାମାନେ ଭାଦ୍ରବ ମାସରେ ଖୁଦୁରୁକୁଣୀ ଭାବରେ ମଙ୍ଗଳ-ମୟୀ ମଙ୍ଗଳା ମୂର୍ତ୍ତିର ପୂଜା କରନ୍ତି । ଏ ପୂଜା-ପାର୍ବଣ ଉତ୍କଳର ଏକ ଐତିହାସିକ ଅନୁଷ୍ଠାନ । ପିଣ୍ଡା କାନ୍ଥରେ ମଙ୍ଗଳା ଦେବୀଙ୍କର ମୂର୍ତ୍ତି ଝିଅମାନେ ରୁଚିକଳା ଦୃଷ୍ଟିରୁ ନାନା ରଙ୍ଗ ଦେଇ ଅଂକିତ କରିଥାନ୍ତି । ମଙ୍ଗଳାଙ୍କ ମୂର୍ତ୍ତି ସହିତ ଏହି ପର୍ବର ଐତିହାସିକ ଘଟଣାବଳୀ ମଧ୍ୟ ଅଙ୍କିତ ହୁଏ । ଯଥା ବୋଇତଟିଏ, ସାଧବ ସାଧବାଣୀ, ବୋଇତ ବନ୍ଦାଣର ଦୃଶ୍ୟ, ଛେଳି ଗୋଠ ଏବଂ ନାନା ଧନରତ୍ନର ଚିତ୍ର ଅଙ୍କିତ ଥିବାର ଦେଖାଯାଏ । ଏହି ପର୍ବ ବୋଇତଅଳ କାଳ ବୋଲି ଓଡ଼ିଆଙ୍କୁ ସୂଚିତ କରାଏ । ଭାରତର କେଉଁ ପଲ୍ଲିରେ ଏପରି ପର୍ବ ଥିବାର ଜଣାଯାଏ ନାହିଁ ।

ଏହି ପର୍ବରେ ଯେଉଁ କାହାଣୀ ବୋଲାଯାଏ ସେଥିରେ କେଉଁ କାଳରେ କେଉଁଠି ଯେ କଳିଙ୍ଗର କେଉଁ ସାଧବଙ୍କର ଶତ ଶତ ବୋଇତ ସମୁଦ୍ର ମଧ୍ୟରେ ଯାତ୍ରା କରି ବିଦେଶରୁ ଧନରତ୍ନ ବହି ଆଣୁଥିଲା ତାର ଅବଶ୍ୟ ସଠିକ ପରିଚୟ ନାହିଁ । ତେବେ ସେଥିରୁ ଜଣାଯାଏ ଜଣେ ସାଧବଙ୍କର ସାତପୁଅ ସାତବୋହୂ ଥିଲେ । ଏକମାତ୍ର କନ୍ୟା—ନାମ ତାର ତଅପୋଇ । ଏହି ତଅପୋଇ ଶବ୍ଦରୁ ଭାଷାତତ୍ତ୍ୱବିଦ୍‌ମାନେ କିଛି ଇତିହାସ ଦେଇ ପାରନ୍ତି । ଏ ଗଳ୍ପ ଘରେ ଘରେ ଗ୍ରାମେ ଗ୍ରାମେ ପ୍ରଚଳିତ ହେଲେ ହେଁ ଏଠାରେ ଚୁମ୍ବକରେ ତାହାର ବିବରଣ ଦେଲେ ଅପ୍ରାସଙ୍ଗିକ ହେବ ନାହିଁ ।

ସଣ୍ଡୀ ବ୍ରାହ୍ମଣୀ ଚକ୍ରାନ୍ତରେ ତଅପୋଇ ପିତାମାତାଙ୍କ ମୃତ୍ୟୁ ପରେ ଭାଉଜମାନଙ୍କର ସନ୍ଦେହ ଘେନି ଛେଳି ଚରାଇଥିଲା । ଯେ ହଂସତୂଳ ଶଳରେ ଶୟନ କରୁଥିଲା, ଯେ କୁଆଁରୀ କନ୍ୟା ଭାବରେ ସ୍ୱର୍ଗ ସୁଖ ଭୋଗୁଥିଲା, ଭାଇମାନେ ବୋଇତ ଘେନି ବାଣିଜ୍ୟରେ ଯିବାରୁ ତାର କଷଣ ବଢ଼ି ଉଠିଥିଲା । ଦିନେ ବର୍ଷା ରାତିରେ ଛେଳି ହଜିଲା । ମାଡ଼ ଭୟରେ ତଅପୋଇ ଗୃହକୁ ଫେରିବାକୁ ଭରସା କଲା ନାହିଁ । ଏକ ଗ୍ରାମରେ ମଙ୍ଗଳା ଦେବୀଙ୍କର

ପୂଜା ଦେଖିବାକୁ ରହିଲେ । ସମସ୍ତ ଘଟଣା ବୁଝି ମଙ୍ଗଳାଙ୍କୁ ଚିତ୍ତ ସମର୍ପଣ କରି ହଜିଲା ଛେଳି ପାଇବାରୁ, ଭକ୍ତି ବିଶ୍ୱାସରେ ଦୃଢ଼ତା ରଖି ସେ ସାର୍ଦ୍ଧବର୍ଷ ହେଲେ ବଣିଜରୁ ଫେରି ନ ଥିବା ତାର ଭାଇମାନଙ୍କୁ କପରି ଶୀଘ୍ର ଭେଟିବ· ସେଥିପାଇଁ କ୍ଷୁଦ୍ର ତଣ୍ଡୁଳ କଣା ( ଖୁଦ ) ଭିଷାକରି ସେଥିରେ ଅତି ଯତ୍ନରେ ମଙ୍ଗଳା ପୂଜୁଥିଲେ । ଏହି ସମୟରେ ସେ ଖୁଦ ତଣ୍ଡୁଳଟିଏ ପାଇଲେ ରଙ୍କ ସମ୍ପତ୍ତି ପାଇଲା ପରି ହେଉଥିଲେ । କାରଣ ଅନଶନରେ ସେ ଭାଉଜମାନଙ୍କ ଅତ୍ୟାଚାରରେ କାଳଯାପନ କରୁଥିଲେ । ତେଣୁ ତାକୁ ଖୁଦରଙ୍କୁଣି କୁହାଯାଉଥିଲେ । ଏହି ଖୁଦରଙ୍କୁଣିରୁ ଏହି ବ୍ରତର ନାମ ଖୁଦୁରକୁଣି ବୋଲି ପରବର୍ତ୍ତୀ କାଳରେ ଅଭିହିତ କରାଯାଇଛି । ଏଥିରୁ ଧନରତ୍ନ ସମୃଦ୍ଧ ବଣିକଙ୍କର ତାମସିକ ସାମାଜିକ ମନୋବୃତ୍ତି ସୂଚିତ ହୁଏ ।

ତଅପୋଇ ଘୋର ଦୁର୍ଦ୍ଦଶା ମଧ୍ୟରେ ଅରଣ୍ୟରେ ଛେଳି ଚରାଇ ଅଖାଦ୍ୟରେ ଅନଶନରେ ରହି ଏମନ୍ତ କି ସମସ୍ତ ବିଳାସରୁ ଦୂରରେ ଥିବାରୁ ତାର ଅବୟବ ଭାଲୁପରି ହୋଇ ଯାଇଥିଲା । ତପ୍ତକାଞ୍ଚନ ରଙ୍ଗ କଳା ପଡ଼ି ଯାଇଥିଲା । ତେଣୁ ତାକୁ ଭାଲୁକୁଣି ବୋଲି ଅଭିହିତ କରା ଯାଇଅଛି । ଶିଳ୍ପୀ ଯେଉଁ ମୂର୍ତ୍ତିଟି ଭାଲୁକୁଣି ନାମରେ ନିର୍ମାଣ କରେ ତାହା ଅତୀବ ସୁନ୍ଦର ସୁଗଠିତ, କିନ୍ତୁ ନାମ ତାର ଭାଲୁକୁଣି ।

ତଅପୋଇ ମଙ୍ଗଳା ପୂଜା କରି କରି ଫଳଲାଭ ନ ହେବା ସନ୍ଦେହରେ ଦିନେ ଗୃହକୁ ନ ଫେରି ଘୋର ଅରଣ୍ୟରେ ଶିଅଳିଲତା ତଳେ ମୃତ୍ୟୁ ବରଣ କରିବାକୁ ଯାଇ ଦୈବାନୁଗ୍ରହରୁ ତାର ଭାଇମାନଙ୍କୁ ନଦୀକୂଳରେ ଭେଟିଥିଲା । ଭ୍ରାତୃବଧୂମାନେ ଦଣ୍ଡିତ ହୋଇ ନାସାଚ୍ଛେଦନ ଶାସ୍ତି ଲଭିଥିଲେ ଏବଂ ସାଧବ ବାଳା ତଅପୋଇ ଏହାପରେ ଧନଜନ ଗୋପଲକ୍ଷ୍ମୀର ଅଧିକାରିଣୀ ହୋଇଥିଲା । ଅବଶ୍ୟ ସାତ ଭାଉଜମାନଙ୍କ ମଧ୍ୟରୁ ସାନ ଭାଉଜ ନଂଳେନ୍ଦୀ ତଅପୋଇ ପ୍ରତି ସଦୟ ଥିବାରୁ ସେ ମଧ୍ୟ ସୁଖର ଅଧିକାରିଣୀ ହୋଇ ପାରିଥିଲା । ମୋଟରେ ଛୋଟ ନଣନ୍ଦ ପ୍ରତି ଭାଉଜମାନେ ସବୁପ୍ରକାର ସ୍ନେହ ମମତା ଦେବା ଲକ୍ଷରେ ଗଳ୍ପଟିର ସୃଷ୍ଟି ବୋଲି ମନେହୁଏ ।

ଏହି ଖୁଦରଙ୍କୁଣୀ ଓଷାକୁ ପଲ୍ଲିର କିଶୋରୀମାନେ ଅତ୍ୟନ୍ତ ଜାକ-ଜମକରେ କରିଥାନ୍ତି । ଗ୍ରାମରେ ଦୁଇ ଭିନ୍ନଦଳ ହୋଇ ଏହି ପୂଜାର ଯାତ୍ରା ଉତ୍ସବ କରାଯାଇଥାଏ । ଭାଲୁକୁଣି ନାମରେ ତଅପୋଇର ବିଗ୍ରହକୁ ଧରି ଦୁଇ ଦଳରେ କିଶୋରୀମାନେ ବାଦଗୀତ ଗାଇଥାନ୍ତି । ନିଜ ଦଳର ଉତ୍କର୍ଷତା ପ୍ରତିପାଦନ ଲକ୍ଷରେ ଗୀତର ପଦମାନ ରଚିତ ହୋଇଥାଏ ।

## (ଙ) ପୁଚଖେଳ ଗୀତ—

ଯୌବନ ପୂର୍ବରୁ କନ୍ୟାର ଜନନେନ୍ଦ୍ରିୟର ନିରୋଗ ଏବଂ ଦୃଢ଼ତା ଲାଗି କିଶୋରୀମାନଙ୍କ ମଧ୍ୟରେ ଏହି କ୍ରୀଡ଼ା ଅଭିପ୍ରେତ । ଖେଳଟା ଏକ କସରତ । ଠିଆ ପୁଚ ଏବଂ ବସା ପୁଚ ଏପରି ଭାବରେ ଏହି ଖେଳ ହୋଇଥାଏ । କିଶୋରୀମାନେ ଏହି ଖେଳରେ ପ୍ରତିଦ୍ୱନ୍ଦ୍ୱିଭାବରେ ଜଣେ ଜଣକ ଠାରୁ ସରସ ପ୍ରତିପାଦିତ ହେବା ଲାଗି ଓ ମନୋଯୋଗ ଆକର୍ଷଣ ଲାଗି କେତେକ ଭର୍ତ୍ସନା-ମୂଳକ ସଙ୍ଗୀତ ଗାନ କରିଥାନ୍ତି । ସେ ସବୁ 'ପୁଚ' ଖେଳ ନାମରେ ଅଭିହିତ ଅଟେ । ପୁଚର ଶାବ୍ଦିକ ଅର୍ଥ କଣ ତାହା କେଉଁଠି ଆବିଷ୍କାର ହୋଇ ନାହିଁ । ତେବେ ତାହା ସ୍ଥିତ ବା ପିଚାରୁ ଉତ୍ପତ୍ତି ବୋଲି କେହି କେହି କହନ୍ତି । ନିତମ୍ବ-ଚାଳିତ ନୃତ୍ୟ ବୋଲି ଧାରଣା କରାଯାଏ ।

ଏହି ଖେଳ ଖେଳୁ ଖେଳୁ ଗୋଟିଏ କିଶୋରୀ ଅନ୍ୟଜଣକୁ ତଡ଼ି ଘୁଞ୍ଚାଇ ନେଇଯାଏ । ତେଣୁ ଗୀତରେ

'ପୁଚ ଲୋ, ଯା ଘୁଞ୍ଚି ଲୋ' ବୋଲି ବାରମ୍ବାର କୁହାଯାଇଥାଏ । ଉତ୍କଳରେ ନିରୋଗ ଅବ୍ୟଙ୍ଗ ସନ୍ତାନ ଜନ୍ମ କରିବାରେ ଅନ୍ୟାନ୍ୟ ସୁଖ ସମ୍ଭୋଗ ଲାଗି ଏହି ପୁଚଖେଳ ବହୁତ ସହାୟକ ହୋଇଥାଏ । ଏହି ଖେଳପ୍ରତି ସମଗ୍ର ଧରଣୀର ଦୃଷ୍ଟି ପଡ଼ିବା ଏକାନ୍ତ ଆବଶ୍ୟକ ।

## (ଚ) ନାଁ ଦିଆ

ନାଁ ଦିଅ କିଶୋରୀମାନଙ୍କ ମଧ୍ୟରେ ପ୍ରାୟ ସୀମାବଦ୍ଧ ଥାଏ । ଏଥିରେ କିଶୋରମାନେ ସାମୟିକ ଭାଗ ନେଇଥାନ୍ତି । କିନ୍ତୁ ସଞ୍ଜହେଲେ ଭୂତପ୍ରେତ ଗଳ୍ପ, ବାଘ ସାପର ଭୟାବହ ଗଳ୍ପ ସହିତ କିଶୋରୀମାନେ ଏହି ନାଁ ଦିଅ-ଦେଇରେ ନିଜର ଆତ୍ମ ବୁଦ୍ଧି ଏବଂ ଚାତୁର୍ଯ୍ୟର ପରିଚୟ ଦେଇଥାନ୍ତି । ଏହି ବୈଠକ ଅତି ଜଣକ ଚନ୍ଦ୍ରରେତ ବାଲି ଜଣକ ଗମ୍ଭୀର ଘରେ ହୋଇଥାଏ ।

ଏହିସବୁ ଚର୍ଚ୍ଚାଦ୍ୱାରା କିଶୋରୀ ବୟସରୁ ଝିଅମାନେ ବିଦ୍ୟାଭ୍ୟାସ ସହିତ ଏକ ସରସ ଜୀବନର ସନ୍ଧାନ ପାଇ ପାରିଥାନ୍ତି । ମାଆ ପଚାରନ୍ତି ଦେଖି କହିଲ ପିଲେ—

ଶ୍ୱଶୁର ଜ୍ୱାଇଁ
ଶଳା ଭଉଣୀଇଁ

ଥାଳ ତିନିପଟ ବାଢ଼ିବ କାହିଁ ? ଗଣିତରେ ଚାରିଜଣ ହେଉଛନ୍ତି । ତିନିଖଣ୍ଡ ଥାଳି କଣ କରାଯିବ ? ଝିଅଙ୍କ ଅକଲ ଗୁଡୁମ୍ ହୋଇଯାଏ । କିଏ କହେ ଗୋଟେ ଥାଳରେ ଦିଜଣ ବସି ଯାନ୍ତୁ । ଶଳା ଭଉଣୀ ଏକାଠି ବସିଲେ କଣ ଚଳିବ ନାହିଁ ? ମାଆ କହନ୍ତି—ସମସ୍ତେ

ଅଲଗା ଅଲଗା ଖାଇ ବସିବେ । କିଶୋରୀ ମହଲରେ ବୃଦ୍ଧି ବିସ୍ତରିତ ହୁଏ । ପାରିବାରିକ ଜୀବନର ସମ୍ବନ୍ଧ ନେଇ ଏକ ଛଳ-ଚତୁରୀ କିଶୋରୀ କହୁଛେ—

'ଯେ ଶ୍ୱଶୁରଙ୍କର ଜ୍ୱାଇଁ, ସେହି ତ ଶଳାର ଭିଣୋଇ । ତେଣୁ ଜ୍ୱାଇଁ ଏବଂ ଭିଣୋଇ କି ଜଣେ ମଣିଷ ? ହେଲା, ହେଲା, ହେଲା କହୁ ତାଳମାରି ସେ ଜଣକ ଝିଅ ହସି ଉଠେ ତ, ସବୁ ଝିଏ କହନ୍ତି 'ହଁ ହଁ, ଅମେ ତ ସେୟା ଭାବୁଥିଲୁଁ । ପୁଣି ମାଆ ପଚାରନ୍ତି—

ଷଟ୍‌ପଦ ବହୁ ନୁହେ ଭ୍ରମର
ନୁହଇ ମହତ ବସେ ମଥାର
ବାଘନହ ନୁହେ ରକତ ପିଏ
ପକ୍ଷୀ ନୋହୁ ସେତ ଡିମ୍ବ ଦିଏ ।—ପିଲେ କହି

ଦିଅନ୍ତି—'ଉକୁଣି' ହେ । ହସରେ ଘର କମ୍ପିଯାଏ । ଏ ନାଁ ଦିଅ ଶୁଣୁଥିବା ବେଳେ ନୂଆବୋହୂ ତାଙ୍କ ଅଡ଼ର ନାଁ ଦିଅରୁ ଏମିତି ସବୁ ଅକଟ ମକଟ ପ୍ରଶ୍ନ ପଚାରନ୍ତି—ତା ଶୁଣି କିଶୋରୀମାନେ ଥକ୍କ ପଡ଼ନ୍ତି । କିଶୋର କେହି ଥିଲେ ତାର ଉତ୍ତର ଦେଇ ସେଇଠି କିଶୋରୀଙ୍କ ମନ ଉପରେ ପ୍ରଭୁତ୍ୱ କରି ବସେ ।

ବଗ ବସିଛନ୍ତି ଧାଡ଼ି ଧାଡ଼ି କୁମ୍ଭ ବସିଛନ୍ତି ଏକା
ଯେ ଏକଥା କହି ନ ପାରିବ ଷାଠିଏ ଗଣ୍ଡା ବୋପା ।

କିଶୋରୀମାନେ ସତକୁ ସତ କହି ପାରନ୍ତି ନାହିଁ । କିନ୍ତୁ କିଶୋର ଜଣେ ମୁଚୁମୁଚୁ ହସି କହିଦିଏ—'ଗୃହଶାଳୀ ।' ଝିଅମାନେ କହନ୍ତି ସତେ ରେ ! ଏହା କହି କହନ୍ତି—ନୂଆବୋହୂ ହାରିଗଲେ, ତାଙ୍କର ଷାଠିଏ ଗଣ୍ଡା ବୋପା । ହସ ବୃଷ୍ଟି ହୋଇଯାଏ । ନୂଆବୋହୂ କଳାଡୋଳା ଚମକାଇ, ଭ୍ରୂଲତା ଡିଆଇଁ ବିଶ୍ୱକୁ ମନ୍ତ୍ରମୁଗ୍ଧ କରି କହନ୍ତି—'ହଉ ହଉ ନଣନ୍ଦଙ୍କ ପାଖରେ ନୁହେଁ, ଦିଅରଙ୍କ ପାଖରେ ସିନା ହାରିଲି ? କିଶୋରୀଏ କହନ୍ତି—ତୁମର ଦିଅର ହେଲେ ଅମର ତ ଭାଇ ? ପୁଣି ହସରେ ଗ୍ରାମ ଫାଟି ପଡ଼େ ।

ଅନାଘ୍ରାତ ପୁଷ୍ପପରି, କରରୁହ ଅଲୂନ କିସଲୟପରି, ଅନାମୁକ୍ତ ରତ୍ନପରି, ଅନାସ୍ୱାଦିତ ନବମଧୁ ପରି, ପୁଣ୍ୟର ଅଖଣ୍ଡ ଫଳପରି ଅଦୂଷିତ ଗ୍ରାମ୍ୟ କିଶୋରୀର ମନୋହର ରୂପ, ତାର ସୁନ୍ଦର ସରଳ ପ୍ରାଣ, ତାର ମଧୁର କମନୀୟ ଭାଷା ଆଜି ବିଲୁପ୍ତ ହୋଇ ଯାଉଅଛି । ତେଣୁ ଦେଢ଼କୋଟି ଉତ୍କଳ ଆଜି କଳଙ୍କିତ, ବିପଦଗ୍ରସ୍ତ । ହଜାର କୀର୍ତ୍ତିସୌଧ, ହଜାର ଶିଳ୍ପ ସୌଧ, ଲକ୍ଷ ଲକ୍ଷ ବୈଜ୍ଞାନିକ ବିଳାସ ସାମଗ୍ରୀ ତାକୁ କଦାପି ସୃଷ୍ଟି କରି ପାରିବ ନାହିଁ, ତେଣୁ ଏ ଜାତିକୁ ରକ୍ଷା କରିବାକୁ ଅତୀତର ଏ ସଙ୍ଗୀତମାନଙ୍କ ଉପରେ ଶିକ୍ଷାବିତ୍‌ମାନଙ୍କର ଦୃଷ୍ଟିପାତ ହେଉ ।

## ୧୬ । ଗାଁ ପିଲାଙ୍କ ଗୀତ—(ପଞ୍ଚମ ଖଣ୍ଡ)

ଅତୀତର କାବ୍ୟମୁଖର ପଲ୍ଲୀରେ ଇଂରେଜୀ ଶିକ୍ଷାର ପ୍ରସାର ପୂର୍ବେ ଜନନୀ, ଭଗିନୀ ଏବଂ ପ୍ରୌଢ଼ାମାନେ ଶିଶୁମାନଙ୍କୁ କର୍ମାବସରରେ ନାନା ସଙ୍ଗୀତ ଗାଇ ମୁଗ୍ଧ କରି ରଖୁଥିଲେ ଏବଂ ଏମାନଙ୍କ ଶିଶୁମାନେ ମଧ୍ୟ ନାନା ସଙ୍ଗୀତ ଗାଇ ପଲ୍ଲୀପଥ ମୁଖରିତ କରୁଥିଲେ । ସେ ମଧୁର ଇତିହାସର ସ୍ମୃତି ଏବେ ବେଳେବେଳେ ଉଙ୍କି ମାରି ଯାଉଛି, ନାନାବାୟା ଗୀତ ବା ଖେଳି ଗାଇ ଶିଶୁକୁ ଖୁଆଇବା, ଶୁଆଇବା ଇତ୍ୟାଦି ଏବେ ଆଉ କେଉଁ ଜନନୀ ମୁଖରୁ ଶୁଣାଯାଉ ନାହିଁ ।

(କ) ଏହି ସଙ୍ଗୀତରେ ଖେଳି ଗାଇ କ୍ଷୁଦ୍ର ଶିଶୁକୁ ଜାନୁରେ ଥୋଇ ଝୁଲାଇବା, ମଥାରେ ତେଲ ମାଲିସ କରିଦେବା, ହସାଇବା, ଖୁଆଇବା, ନଚାଇବା, ଶୁଆଇବା, ହଳଦି ଲଗାଇ ଦେବା, ଚମକାଇବା, କୌତୁକ କରାଇବା ଆଦି ସଙ୍ଗୀତମାନ ସେ କାଳର ଜନନୀଙ୍କ ତୁଣ୍ଡରୁ ଅତି ସତର୍କତାର ସହିତ ସଂଗ୍ରହ କରାଯାଇଅଛି । ଏ ସଙ୍ଗୀତମାନଙ୍କର ସ୍ୱର ଅଛି । ସେ ଶବ୍ଦମାନ ସ୍ୱର ସଂଯୋଗରେ ଶୁଣି ଶିଶୁ ଅଳି ଅଝଟ ଭୁଲିଯାଏ । ତାର କାନ୍ଦ ବନ୍ଦ ହୋଇଯାଏ । ସେ କହେ ବା ଠାରେ ଆଉ ସେପରି ଗାଇବାକୁ । ହାତୀ, ବେଙ୍ଗ, ଚୂଳମୁଣ୍ଡି, କୁଆ, କୋବମିନା, ବାଘୁଆଚଢ଼େଇ, ମାଛ ଇତ୍ୟାଦି ଜୀବର ନାଁ ଶୁଣି ସେ ଆନନ୍ଦରେ ଅଧୀର ହୋଇପଡ଼େ ।

ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ଦୁଧ ଦଶମାସ ଯାଏ ପିଇବା ପରେ ଶିଶୁକୁ ଅନ୍ନ ଖୁଆଇବାର ଅଭ୍ୟାସ କରାଯାଏ । ସେ ପ୍ରଥମେ ପ୍ରଥମେ ତାହା ଖାଇବାକୁ ଘୃଣା କଲେ ଉଦ୍ଭ୍ରାନ୍ତ ଆଏ । ପ୍ରୌଢ଼ା ଜନନୀ ଅନ୍ନର ଛୋଟ ଛୋଟ ଗୁଣ୍ଡି ସଜାଡ଼ି ଶିଶୁକୁ କୋଳରେ ଧରି ଝୁଲାଇ ଝୁଲାଇ ଗାନ ଧରନ୍ତି—

ଗିଲି ଗିଲି ଗୁଣ୍ଡି
ଗିଲି ଗିଲି ଗୁଣ୍ଡି
ପାନ୍ତ ପାନେ
ମା ତୋର ଯାଇ କଉଡ଼ି ଆଣେ ।
ମାଅ ବୋଇଲା କଉଡ଼ି ନାହିଁ
ଝିଲିକ ଉଡ଼ୁଛି ପାଇବୁ କାହିଁ ?
ପକେଇ ଦେଲି ଖଟ ବୁଢ଼ାକୁ
କୁଅ ନେଇଗଲା ମାମୁ ଘରକୁ
ମାଇଁ ବୋଇଲା ଏଉଁଟି ବଏ
ମାମୁଁ ବୋଇଲା ଉଣ୍ଟା ଉଏ

ଧୋଇ ଧାଇ କରି ଘରକୁ ନେଏ ।
ଦୁଧଭାତ କରି ଗୁଣ୍ଡିଏ ଦେ
ଭୂଇଁତଳେ କନା ଗଡ଼େଇ ଦେଏ ।

ଏ କ୍ଷେତ୍ରରେ ଗଲ୍ ଗିଳ—ଗିଳ ଫଳ ଟିକର ବୋଲି ସଙ୍କେତ କରା-ଯାଇଛି । ପାନୁ ପାନେ ଅର୍ଥାତ୍ ପାନୁଅନୁ ପାନୁ କୁହାଯାଇ, ବୁଢ଼ା ପାନୁଆ ପାଟିରେ ଯେପରି ପାନ ପାକୁଳେଇ ଖାଇଥାଏ ସେହିପରି ଶିଶୁକୁ କୁହାଯାଉଛି—ତୁ ପାନୁଆ ପାଟିରେ ଏଇ ଗଲ୍‌ଟିକର ଭାତଗୁଣ୍ଡି ଗିଳ ଦେ ।

ବୁଢ଼ୀମାଆ ଶିଶୁକୁ କହନ୍ତି—ମୁଁ ପରିଶ୍ରମ କରି ତୋତେ ଖୁଆଇଲି ପିଆଇଲି—'ଯା, ତୋ ବଡ଼ଷଣା ସୁନ୍ଦରୀ ଯୁବତୀ କନ୍ୟାଠାରୁ ଆଣି ମତେ କଉଡ଼ି କିଛି ପଇସା ଦେ । ମା'ତ ତୋର ରୁକ୍ମିଣୀ ପୁଣି ଗର୍ବିଣୀ । ତୋ ପରି ଅମୂଲ୍ୟ ନିଧିଠାରେ ତାର କୋଉ ଲୋଭ ଅଟାଇଲାଣି ? ସ୍ୱାମୀ ବୋଇଲେ ତା ଆଖିରେ କିଛି ଦିଶୁ ନାହିଁ । ସେ କେଉଁ କଉଡ଼ି ଦେବ । ଅଧିକ କହିବ—କଉଡ଼ି ମୋଠେଇ ନାହିଁ । କଉଡ଼ି ନ ଦେଲେ ଏହି ଝିଲବ ଲଙ୍କ କି ଅମୂଲ୍ୟ ରତ୍ନଟିକୁ ( ତୋତେ ) ତୋ ମାଆକୁ ମୁଁ ଅଉ ଦେବି ନାହିଁ । ପ୍ରୌଢ଼ା କହନ୍ତି ।

'ହେଇ, କଉଡ଼ି ତ ଦେଲୁ ନାହିଁ, ଏବେ ତତେ ଗଡ଼କୁଡ଼କୁ ପକେଇ ଦେବି ।' ଏହା କହି ସେ କୋଳରୁ ଟିକେ ଗଡ଼େଇ ଦେବାର ଛଳନା କରନ୍ତି । ପୁଣି କହନ୍ତି—'ତୋ ପରି ପଦାର୍ଥର ପରବା କଣ ? ତତେ କୁଆ ଟେକି ନେଇ ମାମୁଁ ଘରକୁ ନେଇ ଯିବ । ତୋ ମାମୁ ଦେଖିବା ମାତ୍ରେ ଆଦର କରିବେ । ମାଇଁ ଦେଖିବା ମାତ୍ରେ ପଚାରିବେ—'କେଉଁଟି କିଏ, ଏଇ କୋମଳ ସୁନ୍ଦରଟି କିଏ ? ମାମୁଁ କହିଦେବେ ସେ ସବୁ ରୂପ ଭଣଜା । ଗୋବର ଗାଡ଼ିରେ ପଡ଼ି ମଇଳା ହୋଇ ଯାଇଛି । ଧୋଇଧାଇ କରି ତାକୁ ଘରକୁ ନେଇ ଯାଅ । ଦୁଧ ଭାତ କରି ଗୁଣ୍ଡିଏ ଖୁଆଇ ଦେଇ ଭୂଇଁତଳେ ଗଡ଼େଇ ଦିଅ । ଘର ଭୂମିର ଶୋଭାରେ ପୁରି ଉଠିବ ।' ଏଠି କୁତ୍ସିତ ତାର ସ୍ତୁତି ମଧ୍ୟ ନିହିତ ଥାଏ ।

ଏ ସମସ୍ତ କବିତାର ଭାଷ୍ୟ ଏକାନ୍ତ ସଠିକ ଭାବରେ କରି ଦେଖିବାର ବେଳ ଏବେ ମଧ୍ୟ ଆସି ନାହିଁ । କାରଣ ଭାଷାତତ୍ତ୍ୱର ଆଲୋଚନା ଏବେ ମଧ୍ୟ ପାହାଚେ ଉଠି ନାହିଁ । ଗ୍ରାମ୍ୟ ସାହିତ୍ୟ ତ କେତେ ଦୂରରେ, ପୌର ସାହିତ୍ୟମାନଙ୍କର ଭାଷା ପ୍ରୟୋଗର ଆଲୋଚନା ଏବେ ମଧ୍ୟ ସମ୍ପୂର୍ଣ୍ଣ ହୋଇ ନାହିଁ । ତେଣୁ 'ପାନୁ ପାନେ' ଜାଣିବାକୁ ଆମକୁ କ୍ଲାନ୍ତ ବୋଧ ହେବଣି ହେବ ।

(ଖ) ଏହି ବିଭାଗରେ ପିଲାଙ୍କ ଖେଳଗୀତ ୧୪ଟି ମାତ୍ର ରହିଅଛି । ପ୍ରତି ଗୀତର ଟୀକା ପାଠ ନ କଲେ ସେ ସବୁ ଖେଳ କିପରି ହୁଏ ଜାଣି ହୁଏ ନାହିଁ, କାରଣ ସେ ସବୁ ଖେଳ ଆଜିକାଲି ପଲ୍ଲୀ ଦାଣ୍ଡରେ ପ୍ରାୟ ଦେଖାଯାଏ ନାହିଁ ।

ମେଘୁଆ ପାଗରେ ଆକାଶରେ 'ଶଙ୍ଖଚିଲ ଦେଖାଗଲେ ଶିଶୁମାନେ ପିତାମାତାଙ୍କ କଠୋର ଶାସନର ଡୋରି ଛିନ୍ନ କରି ଗ୍ରାମଦାଣ୍ଡକୁ ବାହାରି ପଡ଼ନ୍ତି ଏବଂ ଚଉଦିଗ ଘୁରିବୁଲି ଶଙ୍ଖଚିଲ ଲକ୍ଷରେ ଆକାଶକୁ ଅନାଇଁ ଧାଇଁ ଧାଇଁ ଗୀତ ଗାଉଥାନ୍ତି—

ଶଙ୍ଖଚିଲ ମହାବଳ ଧୋବ ଧାଉଳିଆ ପକ୍ଷୀ'
ରାମଚନ୍ଦ୍ର ବଣ ଯାଇଛନ୍ତି, ସୀତା ବଡ଼ ଦୁଃଖୀ ।

କେଉଁ ମହାବଳ ଶଙ୍ଖଚିଲର ଆଦି ଜନ୍ମଭୂମି ତାହା ଭୌଗୋଳିକ ଓ ପ୍ରାଣୀତତ୍ତ୍ୱବିତ୍ ଅନୁସନ୍ଧାନ କରିବେ । ରାମଚନ୍ଦ୍ର ସୀତାଙ୍କ ସହିତ ଏହି ପକ୍ଷୀଟିର କି ସମ୍ପର୍କ ତାହା ପୌରାଣିକ କହିବେ । କିନ୍ତୁ ଶିଶୁ, ଶଙ୍ଖଚିଲ ଅନ୍ୱେଷଣରେ ଏକାନ୍ତ ଶୁଭ କଳ୍ପନାରେ ଅନବହିତ ଥାଇ ଉପରକୁ ମୁଖ କରି ଧାଇଁ ଧାଇଁ ଅସ୍ତବ୍ୟସ୍ତ ହୋଇ ଫେରେ । ଏଇ ହେଲା ଶଙ୍ଖଚିଲ ଖେଳ ଗୀତ ।

ମୁହଁ ଉପରକୁ କରି ଶୋଇଥିବା ପ୍ରୌଢ଼ାର ପାଦ ଯୁଗଳ ଉପରେ ଶିଶୁ ବସି ତାଙ୍କର ଅଣ୍ଟୁ ଧରେ । ପୌଢ଼ା ଶିଶୁକୁ ସେପରି ଅବସ୍ଥାରେ ଗୋଡ଼ ଉଠାଇ ଖେଳାନ୍ତି । ଏହି ହେଲା ଘୁଘୁପାଖି । ଏ ଖେଳରେ ଶିଶୁର ଡେଇଁବା ସାହସ ଉଦ୍ଭବ ହୋଇଥାଏ ।

ଗ୍ରାମ ଦାଣ୍ଡରେ ବେଳରେ ଦୁଇହାତ ପାପୁଲି ଘୁରାଇ ଅଥବା ଦୁଇହାତ ସିଧା ମେଲାଇ ଶିଶୁମାନେ ଘୁରି ଘୁରି ବୁଲିଥାନ୍ତି । ଏହାହିଁ ଚକାଭଉଁରି ଖେଳ । ଏହି ଖେଳଦ୍ୱାରା ଶକଟ, ନୌକାଦି ଯାନ ବାହନରେ ଗଲେ ମୁଣ୍ଡ ଭ୍ରମିବା ବା ବାନ୍ତି ହେବାର ଭୟ ନ ଥାଏ । ଏହିପରି ଭାବରେ 'ମୋ ପେଟେଇଁକାଳି ବାଜେ', 'ମେଘ ବରଷିଲା ପୁତୁ ଠାପେରେ,' 'ମଣ୍ଡପ ଖେଳ,' 'ଉଦୁଉଦୁମା ଖେଳ,' 'କୋଇଲି ଖେଳ', 'ଇଟିଲି ମିଟିଲି ଖେଳ', 'ଇଟିକିଲି ମିଟିକିଲି ଖେଳ,' 'ତରିଦେଖା ଖେଳ', 'ବଗୁଲି ଖେଳ', 'ହଇଣ ଖେଳ', 'କାନଧରା ଖେଳ' ପ୍ରଭୃତି ଶିଶୁ ପକ୍ଷରେ ଏତେ ଉପକାରୀ ହୋଇଥାଏ ଯେ ପ୍ରତି ଖେଳର ଗମ୍ଭୀର ତତ୍ତ୍ୱ ଏଠାରେ ଅନୁସନ୍ଧାନ କରାଯାଇ ପାରୁ ନାହିଁ ।

ଏକ ତରି ମଣିଷ ମରି, ଦୁଇତରି କଟରି ଘୋଡ଼ା ।
ତିନି ତରି ନନ୍ଦଘୋଷ, ଚାରି ତରି ଘରେ ପଶ ।
ପାଞ୍ଚ ତରି ନାହିଁ ଦୋଷ, ଛଅ ତରି ବୈକୁଣ୍ଠେ ବସ ।

ସନ୍ଧ୍ୟା ସମୟରେ କଳକୁ ଶାନ୍ତ ସଂଯତ କରି ରଖି କ୍ରୀଡ଼ା, କୌତୁକ, ବିଦ୍ୟାଭ୍ୟାସ, ଲେଖନ, ପଠନ ଆଦିରୁ ବିରତ ହେବା ଏକାନ୍ତ ଉଚିତ ଅଟେ । ଶିଶୁକୁ ସେଥିରୁ ବିରତ କରିବା ଲାଗି ଏହା ଏକ ସୁନ୍ଦର କୌଶଳ । ଶିଶୁ ହଠାତ୍ ଗୋଧୂଳିରେ ତରାଟିଏ ଦେଖି ଅନାଇଁ ରହେ । ଦ୍ୱିତୀୟ ତାରା

ଦେଖିବାକୁ ସେ ବେକ ବୁଲାଇ ଚତୁର୍ଦ୍ଦିଗକୁ ଅନାଇଁ ଅନାଇଁ ବହୁତ ଅନୁସନ୍ଧାନ କରିଥାଏ । ଏଥିରେ ଦୃଷ୍ଟିଶକ୍ତିର ଯୁଦ୍ଧ ମଧ୍ୟ ଶିଶୁମାନଙ୍କ ମଧ୍ୟରେ ହୋଇଥାଏ । ପୁନଶ୍ଚ ତୃତୀୟ, ଚତୁର୍ଥ, ପଞ୍ଚମ, ଷଷ୍ଠ ଦେଖୁ ଦେଖୁ ସଂଖ୍ୟା ଉତ୍ତୀର୍ଣ୍ଣ ହୋଇ ରାତ ହୋଇଯାଏ । ସୁତରାଂ ଦୃଷ୍ଟିଶକ୍ତିର ପ୍ରତିଦ୍ୱନ୍ଦ୍ୱିତା ହେତୁ ଏତଦ୍ୱାରା ଗଣିତ ସଂଖ୍ୟା ପ୍ରତି ଆସକ୍ତି ଅପ୍ରତ୍ୟକ୍ଷ ଭାବରେ ନିହିତ ଥାଏ । 'ଗୋଲାନଭଶ୍ଚେ ଗଣିତ ସ୍ତୈବ' ।

ଉଦୁଉଦୁମା ଖେଳରେ ଲକ୍ଷ୍ୟ ସ୍ଥିର କରିବା ଏବଂ ଲଘୁହସ୍ତ ହେବାର ଶିକ୍ଷା ହୋଇଥାଏ । ବଗୁଲି ଖେଳରେ ଅନ୍ୟ ଶିଶୁପ୍ରତି ଏମନ୍ତ କି ଜୀବଜନ୍ତୁ ପ୍ରତି କପଟ ଶିଶୁ ମନରେ ସ୍ନେହ ଏବଂ କରୁଣା ସଂଗୃହିତ ହେବ ସେହି ଶିକ୍ଷା ଦିଆ ଯାଇଥାଏ ।

'ମୋ ବଗୁଲି କାନ୍ଦେନା କ୍ଷେ ତୋ ମାଅ କାଲି ଆସିବ ଦିନା ।
କୋଡ଼ରେ ପୂରେଇ କରିବ ଡେଲ × × ଅଇଲେ ଖାଇବୁ ପେଟ ପୂରେଇ' ।
ତେଣୁ ପ୍ରତି ଖେଳରେ ଏପରି ଅମୂଲ୍ୟ ଶିକ୍ଷାର ତତ୍ତ୍ୱ ନିହିତ ଥାଏ ।

(ଗ) ଶିଶୁ ଟିକିଏ ବଡ଼ ହୋଇଗଲେ ଅର୍ଥାତ୍ ୩ ବର୍ଷର ହେଲେ ତାକୁ ବିଭିନ୍ନ ଆବୃତ୍ତି ଦ୍ୱାରା ନାରୀମାନେ ପ୍ରାଥମିକ ସ୍ତରରେ ଶିକ୍ଷାପ୍ରତି ମନୋଯୋଗୀ କରିଥାନ୍ତି । ସଙ୍ଗୀତ ଏବଂ ସାହିତ୍ୟର ମୂଳବୀଜ ଏଇଠୁଁ ଶିଶୁ ମନରେ ପ୍ରୋତ୍ଥିତ ହୋଇଥାଏ ।

ଜନନୀ ଶିଶୁକୁ ଆବୃତ୍ତି ଶିକ୍ଷା ସର୍ବପ୍ରଥମେ ଗଣନାଥଙ୍କ ବନ୍ଦନାରୁ ଆରମ୍ଭ କରିଥାଆନ୍ତି । First lern to tolk, then to read, then to write. ଏହି ପ୍ରଥା ଉତ୍କଳର ଶିଶୁ ଶିକ୍ଷା ମୂଳରେ କେଉଁ ଆଦିମ ଯୁଗରୁ ରହି ଆସିଅଛି ।

ଥୋଲ ଅନ୍ତଲ ପେଟା
ନାଚଇ ଗଣିଆ ବେଟା
ଯାର ପିଅର ହର
ତାର କାହାକୁ ଡର ।

'ଅଗ୍ରପୂଜ୍ୟୋ ଗଣାଧିପଃ' କଥାଟି ପୌର ଜାନପଦ ସର୍ବତ୍ର ପ୍ରସିଦ୍ଧ । ତେଣୁ ଏହି ବନ୍ଦନାରେ ଶିଶୁ-ଅନୁକୂଳ ଗଣପତିଙ୍କର ନୃତ୍ୟ ମୂର୍ତ୍ତି ଯାହା ଏକାନ୍ତ ପୁଷ୍ଟ, ନିର୍ଭୀକ, ପିତୃ ସ୍ନେହରେ ଗର୍ବିତ, ତାହାହିଁ ବର୍ଣ୍ଣିତ ଥାଏ । ଶିଶୁ ଏ ଆବୃତ୍ତିଟିକୁ ଅତି ଆଗ୍ରହରେ ନିରନ୍ତର ଗାନ କରିଥାଏ । ଅନନ୍ତର ତାର ମନୋରଞ୍ଜନ ଲାଗି ନାନା କବିତା ଆବୃତ୍ତି ହୁଏ, ଶିଶୁ ସେ ସବୁକୁ ବିଚକ୍ଷଣ ଭାବରେ ମନେରଖେ ।

(ଘ) ଏହି ଗାଁରେ ଶୁଭବର୍ଷ ଶୁକ୍ଳମାସ ଶୁଭଦିନ ପୂରିଗଲେ ଶିଶୁ ଚଟଶାଳୀକୁ ଯାଏ । ଜନନୀ ବା ମାତୃସ୍ଥାନୀୟାମାନେ ଶିଶୁର ବିରହରେ ମମତା-ଗ୍ରସ୍ତ ହୋଇ ସେ ବିଦ୍ୟାଶିକ୍ଷାରେ ଯେପରି ଅବହେଳା ନ କରିବ ସେଥିପାଇଁ ଅଧିକ ବାତ୍ସଲ୍ୟ ଦେଖାଇ ଥାନ୍ତି । 'ଲାଳୟେତ୍ ପଞ୍ଚ ବର୍ଷାଣି' । ଶିଶୁର ମନ ଏହିଦ୍ୱାରା ଉଲ୍ଲସିତ ହୁଏ । ସେ ତାର ଗୁରୁଜନଙ୍କ କଥିତ ବାତ୍ସଲ୍ୟ ଗୀତରେ ମନ୍ତ୍ରମୁଗ୍ଧ ହୋଇ ସେମାନଙ୍କୁ ଭକ୍ତି କରିବାର, ସେମାନଙ୍କ ଆଜ୍ଞାବାହକ ହେବାର ଶିକ୍ଷା ଲଭିଥାଏ । ତେଣୁ ଏଥିରୁ କେତେକ ଗୀତ ବାତ୍ସଲ୍ୟ ଗୀତ ନାମରେ ଅଭିହିତ ଅଛି ।

(ଙ) ଶିଶୁର ସାଧାରଣ ଜ୍ଞାନ ଆସିଗଲେ ଜନନୀ ୭ବର୍ଷ ମଧ୍ୟରେ ତାକୁ କେତେକ ଉପଦେଶ ଦେଇ ତାର ବିଦ୍ୟାଶିକ୍ଷା ପ୍ରତି ଅଧିକୁଁ ଅଧିକ ମମତା ଆନୟନ କରିଥାନ୍ତି । ଏସବୁ ସଙ୍ଗୀତ ଉପଦେଶ ଗୀତ ନାମରେ ଅଭିହିତ ହୁଏ । ଏଥିରେ ଓଡ଼ିଆନାରୀ ତାର ସନ୍ତାନକୁ ୩ଟି ଭାଷା ଶିକ୍ଷା ଦେବାକୁ ପ୍ରବର୍ତ୍ତାଇଥାଏ । ଅଛିର ଭାରତୀୟ ସଭ୍ୟତା ଯେଉଁ ତିନୋଟି ଭାଷା ଶିକ୍ଷା କରିବାକୁ ଉପଦେଶ ଦେଉଅଛି, ଧ୍ୱନିର ବିଷୟ ସେ ଉପଦେଶ କେଉଁ ଦୀର୍ଘ କାଳରୁ ଉତ୍କଳରେ ପ୍ରଚଳିତ ରହିଅଛି ।

ଓଡ଼ିଆ, ତେଲଙ୍ଗୁ, ନାଗରୀ ଜାଣ
ନ ପଢ଼ିଲେ କାହୁଁ କରିବ ଠାଣ ।

ଏଥିରୁ ଜଣାଯାଏ ଯେ କେବଳ ପିତୃଭୂମିର ଭାଷା ଜାଣିବା ଉତ୍କଳରେ କେବଳ ପ୍ରଥା ନ ଥିଲା । ତେଲିଙ୍ଗ ଭାଷା ଓଡ଼ିଆ ଭାଷୀମାନଙ୍କର ଅବଶ୍ୟ ପାଠ୍ୟ ହୋଇଥିଲା । ମନେହୁଏ ତେଲିଙ୍ଗ ସଂସ୍କୃତି ଉତ୍କଳୀୟ ସଂସ୍କୃତି ସହିତ ସୋଦର ସମ ରହିଥିଲା । ଇତିହାସରୁ ଜଣାଯାଏ ତାର ଫଳରେ ଦକ୍ଷିଣ ଭାରତୀୟ ରାଜବଂଶ ଉତ୍କଳଙ୍ଗରେ ରାଜପଣ କରିଥିଲେ । ଉକ୍ତ ଦକ୍ଷିଣର କନ୍ୟାମାନେ ଉତ୍କଳଙ୍ଗରେ ବଧୂ ମଧ୍ୟ ହେଉଥିଲେ । ଏମନ୍ତ କି ଉତ୍କଳ ଜେମାମାନେ ଦକ୍ଷିଣରେ ମଧ୍ୟ ବଧୂ ହୋଇ ଥିଲେ । କଥିତ ଅଛି ଜୟଦେବ ପତ୍ନୀ ପଦ୍ମାବତୀ ଦକ୍ଷିଣାଞ୍ଚଳବାସିନୀ ଥିଲେ । ପ୍ରତାପରୁଦ୍ରଙ୍କର ଜନନୀ ଏବଂ ପୁରୁଷୋତ୍ତମଙ୍କର ଜାୟା ସାମ୍ରାଜ୍ଞୀ ପଦ୍ମାବତୀ ଥିଲେ କାଞ୍ଚି ଜେମା । ପ୍ରତାପରୁଦ୍ରଙ୍କର ଜେମା ସର୍ବ ସଦ୍‌ଗୁଣବତୀ ଅନ୍ନପୂର୍ଣ୍ଣା କୃଷ୍ଣଦେବ ରାୟଙ୍କୁ ବିବାହ କରିଥିଲେ ।

ତେଲିଙ୍ଗ ବାଦ୍ୟ, ତେଲିଙ୍ଗ ଅଳଙ୍କାର, ଭୂଷା, ବସ୍ତ୍ର, ଭାଷାର ଛନ୍ଦ ଉତ୍କଳଙ୍ଗରେ ଅତି ସମାଦର ଲାଭ କରୁଥିଲା । ତେଣୁ ତେଲିଙ୍ଗି ଭାଷା ଜାଣିବାରେ ଓଡ଼ିଆ ପଲ୍ଲୀଜନନୀର ସ୍ୱାଭାବିକ ଆଗ୍ରହ ରହିଥିଲା । ବୋଧହୁଏ ସର୍ବ ଭାରତୀୟ ଭାବରେ ନାଗରୀ ଭାଷା ଶିକ୍ଷା କରିବାକୁ ପ୍ରତି ପ୍ରାନ୍ତରେ ବାଧ୍ୟତାମୂଳକ ବ୍ୟବସ୍ଥା

ରହିଥିଲା । ଏଥିରୁ ଭାରତୀୟ ଭାଷା ବ୍ୟବହାର ଶୈଳୀର ଇତିହାସ ଅନେକାଂଶରେ ବୋଧ କରାଯାଏଁ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଗୋଟିଏ ପଡ଼ୋଶୀ ଭାଷା, ଗୋଟିଏ ସାଂସ୍କୃତିକ ଭାରତୀୟ ଭାଷା ବା ରାଜଭାଷା ଶିକ୍ଷାକରିବା ଅତୀତରେ ବାଧ୍ୟତାମୂଳକ ରହିଥିଲା ।

ଜନତା ମୂର୍ଖତାକୁ ଭୀଷଣ ଅପରାଧ ବୋଲି କହି ଶିଶୁ ମନରେ ଏହି ଭାବ ସଂଗୃହିତ କରୁଥିଲେ ଯେ—

ମୂର୍ଖ ହେଲେ ବଳା କିପାଣେ ପଶେ
ଲୁହା ଭାର ତାର କାନ୍ଧରେ ବସେ ।
ଗୋରୁ ଛେଳି ରଖି କଅନ୍ତି ଦିନ
ପାଞ୍ଚ ଲୋକଙ୍କ ବଳା କରନ୍ତି ହୀନ ।
ପରର ପାଣ୍ଡୋଇ ବୁହନ୍ତି ଛତା
ରାଜାଙ୍କ ତୁଲେ ହୋନ୍ତି ଲମ୍ବହତା ।

କିପାଣେ ପଶେ—କୃଷିକାର୍ଯ୍ୟରେ ପଶେ । ଲୁହା ଭାର କାନ୍ଧରେ ବସେ—ଭାରବାହକ ହୁଏ । ପଶୁପାଳକ ହୋଇ ଦୁଃଖ ଭୋଗ କରେ । ସମାଜରେ ନିନ୍ଦିତ ହୁଏ । ଅପରର ଗୋଲାମି କରି ତାର ପାଣ୍ଡୋଇ ଓ ଛତା ବହନ କରେ । ଏମନ୍ତ କି ଗଣ୍ଡିର ବୋହି ଦାସ ଭାବରେ ରାଜାଙ୍କ ପଛରେ ଲମ୍ବ ପାଦ ପକାଇ ଚାଲେ ।

ବର୍ତ୍ତମାନ କୃଷିଜୀବୀଙ୍କ, ଶ୍ରମିକମାନଙ୍କ, ପଶୁପାଳକମାନଙ୍କ ଏବଂ ଭୃତ୍ୟମାନଙ୍କ ପ୍ରଶଂସା ବୃଦ୍ଧି କରାଯାଉଅଛି ସତ୍ୟ କିନ୍ତୁ ସେମାନେ ଅଶିକ୍ଷିତ ଥିବାରୁ ସେ ପ୍ରଶଂସା ଦ୍ୱାରା ତାଙ୍କର କିଛିମାତ୍ର ଲାଭ ହେଉ ନାହିଁ । ସେମାନେ ନିରନ୍ତର ଦୁଃଖ ହାହାକାର ମଧ୍ୟରେ କାଳଯାପନ କରି ଚାଲିଅଛନ୍ତି । ଶିକ୍ଷିତ ବୁଦ୍ଧିଜୀବୀମାନେ ପ୍ରଧାନ ଏବଂ ଶ୍ରେଷ୍ଠ ହୋଇ ସମସ୍ତ ସୁଖ ଭୋଗ କରି ଚାଲିଅଛନ୍ତି । ତେଣୁ ଏଥିରେ ବର୍ଣ୍ଣିତ ଉପଦେଶମାନ ଅକାରଣ ନୁହେଁ । ଏ କବିତାରେ ଅଛି ଯେଉଁ ଲକ୍ଷ୍ମୀ ମାଆମାନେ ପାଠ ପଢ଼ାନ୍ତି ନାହିଁ, ତାଙ୍କର ପିଲାଏ ଏପରି ଦୁଃଖ ଭୋଗ କରିଥାନ୍ତି ।

ତାହାର ପ୍ରାଣକଥା ଏସବୁ ସଙ୍ଗୀତମାନଙ୍କରେ ଭରପୁର୍ଣ୍ଣ ହୋଇ ରହିଅଛି । ଏମନ୍ତ କି ସେକାଳ ଚାଟଶାଳୀରେ ଶିକ୍ଷାଦାତ୍ ଶିକ୍ଷକ କପରି କଠୋର ଶାସନ ମଧ୍ୟରେ ଶିଶୁମନର ଏକାଗ୍ରତା ଏବଂ ତୀକ୍ଷ୍ଣ ବୁଦ୍ଧିର ବିକାଶ ସାଧନ କରିଥାନ୍ତି ତାହା ସୁନ୍ଦର ରୂପେ ବର୍ଣ୍ଣିତ ହୋଇଅଛି ।

## ୧୩ । ଗ୍ରାମ୍ୟ ବନ୍ଦନା ଗୀତ ( ଷଷ୍ଠ ଖଣ୍ଡ )

କାଳ କାଳ ଧରି ଧର୍ମ ନାମରେ ଏକ ପ୍ରସ୍ତର ସମଗ୍ର ଜନ ସମାଜକୁ ଗ୍ରାସ କରି ରହିଅଛି । ଏହି ଧର୍ମ ମଧ୍ୟରେ ବହୁ ଐତିହାସିକ ଶ୍ରେଷ୍ଠତମ ପୂଜ୍ୟ-ଜନଙ୍କ ନାମ ଶୁଣା ଯାଇଥାଏ । ତନ୍ମଧ୍ୟରୁ କୁଳପତି କଣ୍ୱ କାହିଁକି ଦେବତା ନୁହନ୍ତି ଅଥବା ତାଙ୍କ ପରବର୍ତ୍ତୀ କୃଷ୍ଣ କାହିଁକି ଦେବତା ବୋଲନ୍ତି ତାର ତାତ୍ତ୍ୱିକ ଆଲୋଚନା ସ୍ୱତନ୍ତ୍ର କଥା । ଏହି ଦେଶର ପଲ୍ଲିବାସୀ ବ୍ରାହ୍ମଣମାନେ କିଛିଦିନ ପୂର୍ବେ ପରଂବ୍ରହ୍ମ ମୂର୍ତ୍ତି କହି ଜଗନ୍ନାଥଙ୍କୁ କେବଳ ପ୍ରଣାମ କରୁଥିଲେ । ଅଥଚ ସେହି ଜଗନ୍ନାଥ ଯେ କୃଷ୍ଣ, ବଳରାମ, ସୁଭଦ୍ରା ଭାବରେ ପ୍ରକଟିତ ପୁନଶ୍ଚ ତାଙ୍କର ପୂଜାବିଧାନ କୃଷ୍ଣଙ୍କ ନାମରେ ହେଉଥିବା ସର୍ବବାଦୀସମ୍ମତ । ଅଥଚ ଏହା ଜାଣି ମଧ୍ୟ ମଠମାନଙ୍କରେ ବିଭିନ୍ନ ମନ୍ଦିରମାନଙ୍କରେ ସ୍ଥାପିତ କୃଷ୍ଣ ମୂର୍ତ୍ତିଙ୍କୁ ବ୍ରାହ୍ମଣମାନେ ନମସ୍କାର କରି ନ ଥାନ୍ତି ।

ଏଣେ ସହସ୍ର ନାମ ସ୍ତୋତ୍ରରେ 'ରାମେତି ରାମ ରାମେତି' ଗାଉଥିଲେ ମଧ୍ୟ ମଠ ଏବଂ ମନ୍ଦିରମାନଙ୍କରେ ସ୍ଥାପିତ ରାମଚନ୍ଦ୍ରଙ୍କ ମୂର୍ତ୍ତିକୁ ସେହି ବ୍ରାହ୍ମଣମାନେ ପୂଜା କରନ୍ତି ନାହିଁ । ଏଥିର ଗୂଢ଼ରହସ୍ୟ ମତ ପାର୍ଥକ୍ୟରୁ ଘଟିଥାଏ ସତ୍ୟ, କିନ୍ତୁ ଏସବୁ ମୂର୍ତ୍ତି ପୂଜାର ସମ୍ଭାବନା ଏତେ ବ୍ୟାପକ ଯେ ଦେଶର ପୂଜ୍ୟ ବ୍ୟକ୍ତିମାନଙ୍କ ମଧ୍ୟରୁ କେତେ ଦେବତା ଭାବରେ ପୂଜା ପାଉଛନ୍ତି ତ ଅଧିକାଂଶ ଅପୂଜିତ ହୋଇ ରହିଅଛନ୍ତି । ବଳୀ, ବେଣୁ, ମାନଧାତା, ଦୁଷ୍ମନ୍ତ, ଭରତ ଆଦି ଇତିହାସ ହୋଇ ରହିଅଛନ୍ତି । ଅଥଚ ବୃନ୍ଦାଦେବୀଙ୍କୁ ମନ୍ଦିରରେ ଦେବତା ସ୍ୱରୂପ ପୂଜା କରାଯାଉଅଛି । ଏଇ କାଳର ଚୈତନ୍ୟ, ନିତ୍ୟାନନ୍ଦ ମଧ୍ୟ ଦେବତା ହୋଇଯାଇଅଛନ୍ତି । ଜଳ, ତେଜ ଆଦି—ଇନ୍ଦ୍ର, ବରୁଣ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର ଭାବରେ ପୂଜା ପାଇଥାନ୍ତି । ଏମନ୍ତ କି ବଟ, ଅଶ୍ୱତ୍ଥ, ପଳାଶ ଆଦି ବୃକ୍ଷ ମଧ୍ୟ ଦେବତା ଭାବରେ ପୂଜିତ ହୋଇଥାନ୍ତି । ଏହି ଦେବତା ରହସ୍ୟ ମନୁଷ୍ୟ ଜାଣି ରହିବାର ବ୍ୟାକୁଳତା ଯେବେ ହେଉ ବା ସେ ସବୁର ବିଶେଷତ୍ୱ ଯୋଗୁଁ ହେଉ ଅଥବା ବରେଣ୍ୟ ବ୍ୟକ୍ତିମାନଙ୍କର ସ୍ମୃତି ପୂଜା ଯୋଗୁଁ ହେଉ ବହୁ ହଜାର ବର୍ଷ ହେଲା ମନୁଷ୍ୟ ଗୋଷ୍ଠୀରେ ଏପରି ଭାବରେ ସଂକ୍ରମିତ ହୋଇଅଛି ଯେ ବିଜ୍ଞାନ ବହୁ ଉନ୍ନତି କରି ମଧ୍ୟ ତାର ଉଚ୍ଛେଦ ସାଧନ କରିପାରି ନାହିଁ । ସାଂଖ୍ୟ, ଚାର୍ବାକ, ବୁଦ୍ଧ ଏମାନଙ୍କର ଶ୍ରୁତି ମଧୁର ଉକ୍ତି, ସମାଜବାଦର ପ୍ରତ୍ୟକ୍ଷ କାର୍ଯ୍ୟ ପରେ ମଧ୍ୟ ସେ ସରଳ ବିଶ୍ୱାସ ପଲ୍ଲି କାହିଁକି ଭାରତର ଅତି ଶ୍ରେଷ୍ଠତମ ନାଗରିକ ରାଷ୍ଟ୍ରପତିଙ୍କଠାରେ ଠିକ୍ ପୂର୍ବପରି ରହିଛି । ଖ୍ରୀଷ୍ଟିୟାନ, ମୁସଲମାନ, ବୌଦ୍ଧ, କେହି ସେଥିରୁ ନିଷ୍କୃତି ପାଇ ନାହାନ୍ତି ।

କିନ୍ତୁ ପଲ୍ଲି ତ ଅଛି ସେହି ଅଧମ ମନବୃତ୍ତି ଧରି । ତେଣୁ ସେ ସୁଖ ପାଇଲେ ଗାଇଉଠେ ପ୍ରଭୃତ ଅବଦାନମାନ । ଯେପରି ସେମାନ ଗାନ ବା ଆବୃତ୍ତି ନ କଲେ ତାର ଦିନଟି ସୁଖରେ କଟିବ ନାହିଁ, ଏହାହିଁ ତାର ବିଶ୍ୱାସ । ନାରୀ ସନ୍ଧ୍ୟାରେ ଦୀପ ବସାଇ ମୃଡ଼ାଣୀସ୍ତୁତି, ଦୁର୍ଗାସ୍ତୁତି ଗାଇଉଠେ । ବିମଳା ଠାକୁରାଣୀ, ତାରଣୀନାମରେ କେଉଁଦେବୀ, ଜଗନ୍ନାଥ, ବାସ୍ତୁବଠ ଏସବୁଙ୍କର ସ୍ତୁତି ଗାନ କରେ । ଭକ୍ତିର ଲହରି ଛୁଟାଏ । ଯେପରି ସେହିମାନଙ୍କ ଦୟାରେ ତାର ପରିବାରର ସ୍ୱାସ୍ଥ୍ୟ, ଧନ ଓ ଆୟୁ ଅକ୍ଷୁଣ୍ଣ ରହିବ । ଏହାହିଁ ତାର ଦୃଢ଼ ଆଶା ଓ ଆକାଙ୍କ୍ଷା ।

ଏହି ସଙ୍ଗ୍ରହରେ ଯେ କେତୋଟି ଗୀତ ରହିଅଛି, ସେ ସମସ୍ତ ନାରୀ ହୃଦୟରୁ ଅତି ସତର୍କତାର ସହିତ ଲେଖା ଯାଇଛି । ଅନ୍ୟ ନାରୀ ନିରନ୍ତର ଆଶାକରେ—

ଏଇତା ମାଗୁଛି ତୋତେ
ହାତେ କାଚ ଥିବ ମୁଣ୍ଡେ ମାଛ ଥିବ
ଦେବୀ ଗୋ, ଅନ୍ୟ ଡେଙ୍ଗୁରୁ ବାହିବ ମୋତେ ।

ସେ ସଧବା ହୋଇ ଯେପରି ମୃତ୍ୟୁ ଲାଭ କରିବ, ତେଣୁ ସର୍ବଦା ତାହାର ସେହି ପ୍ରାର୍ଥନା ଓ କାମନା ।

ଏହି ସଙ୍ଗ୍ରହରେ ଧର୍ମଦ୍ୱେଷ ଖଣ୍ଡନ ପାଇଁ ହରିହର ନାମରେ ଏକ କବିତା ନାରୀ ମହଲରେ ପ୍ରଚଳିତ ଥାଏ । ତାହା ଏପରି ଉପାଦେୟ ଯେ ପାର୍ବତୀ ଏବଂ ଲକ୍ଷ୍ମୀଙ୍କ କଳି ସେଥିରେ ଅତି ଭଦ୍ର ଭାବରେ ଦିଆଯାଇ ଶେଷରେ ଧର୍ମନିରପେକ୍ଷତା— ସବୁ ଧର୍ମପ୍ରତି ସମାନ ଶ୍ରଦ୍ଧା ଘୋଷଣା କରାଯାଇଛି ।

ହରିହର ଆତ୍ମା ଆମ ନୁହେଁ ଭିନ୍ନାଭିନ୍ନ
ଥିର କରି ନେଇନେ ଦୁଇ ସଖୀ ତୁମେ ଚିତ୍ତ ।
ଏତେ ବୋଲି ହରିହର ଦୁହେଁ ଗଲେ ମିଶି
ତାହା ଦେଖି ଆନନ୍ଦେ ଚଳିଲେ ବେନି ସଖୀ ।

'ଅବଧ୍ୟୋ ନାସ୍ତି ଭେଦୋବୈ ଭେଦ ନରକ ମାପ୍ନୁୟାତ୍' । ସୁତରାଂ ଧର୍ମଦ୍ୱେଷ ଖଣ୍ଡନ ପ୍ରତି ପଲ୍ଲିସାହିତ୍ୟ ନିରନ୍ତର ଜାଗ୍ରତ ଥିବାର ପ୍ରମାଣ ରହିଅଛି । କିନ୍ତୁ ପୌର ନାଗରିକତା ଏବେ ହରିଦ୍ୱାର, ହରିଦ୍ୱାର ବିବାଦରେ ବର୍ଷବର୍ଷ ଧରି ମାନବ ରକ୍ତସ୍ରୋତ ବୁହାଇ ଚାଲିଛି । ହତ୍ୟାକାରୀମାନଙ୍କ ମଧ୍ୟରେ ଅନେକଙ୍କର ନାମ ଥିବ ହରିହର, ହରିଶଙ୍କର, ଦୁର୍ଗାମାଧବ ଇତ୍ୟାଦି ।

### ୧୪ । ଢଗ, ଢମାଳି, ବଚନ, ପଦ (ସପ୍ତମଖଣ୍ଡ)

ଓଡ଼ିଶାର ନଗର, ଗ୍ରାମ, ଜନପଦ, ତୋଟା, ବିଲ, ବଣ, ବାଟ, ଘାଟ ଯେଉଁଠି ଦେଖିଲେ ସେଠି ଯେପରି ବୁଢ଼ା ବୁଢ଼ୀ ଯୁଦ୍ଧ ହତ୍ୟାର ହାଡ଼ ପୁରି ରହିଛି,

ଯେପରି ସେହି ସବୁଠି କେତେ ଚୈତ୍ୟ, ସ୍ତୂପ, ବିହାର, ଦେଉଳ, ଅଟ୍ଟାଳି, ମୂର୍ତ୍ତି, ତମ୍ରାପଟ୍ଟା, ମୁଦ୍ରାର ଅବଶେଷ ପୂରି ରହିଛି, ସେହିପରି ତାର ଜନସମାଜ ଓ ନର ଓ ନାରୀ ସମସ୍ତଙ୍କ ତୁଣ୍ଡରେ ଢଗ, ଢମାଳି, ପ୍ରବଚନ ଓ ପଦମାନ ପୂରି ରହିଛି । ଏକଥା ଏକାନ୍ତ ସତ୍ୟ ଯେ ବୀରମାନଙ୍କ ଅସ୍ଥି ମଧ୍ୟରେ, ମୂର୍ତ୍ତି ଅଟ୍ଟାଳିର ଅବଶେଷ ମଧ୍ୟରେ ଯେପରି ଏ ଜାତିର ଇତିହାସ ଲୁକାୟିତ ଅଛି, ତଦ୍ରୂପ ଏସବୁ ଢଗ ଢମାଳିର ପଦ ମାନହିଁ ଓଡ଼ିଆ ସାହିତ୍ୟର ଓ ଓଡ଼ିଆ ଭାଷାର ମୂଳପିଣ୍ଡ ଅଟନ୍ତି । ଆମ ଜାତିର ଶତଶତ ଇତିହାସ ମଧ୍ୟ ତାର ଭିତରେ ଲୁଚି ରହିଛି ।

କାରଣ କଢ଼େଇରେ ଦାୟୁ କି ପୁଅରେ ଦାୟୁ, ଅମେଇ ଠାରୁ କମେଇ ଯାଏ, ଶିବେଇ ସାନ୍ତ୍ରର ଦେଉଳ ତୋଳାଇଲା ନ୍ୟାୟ ପରି ଶତଶତ ଇତିହାସର ପ୍ରମାଣିତ ବଚନରୁ ଆମେ ଆମର ଇତିହାସର ଦିଗ୍ ଦର୍ଶନ ଲାଭକରି ଥାଉଁ । ସେତିକି ନୁହେଁ ସେ ସବୁରେ ଆମର ଓଡ଼ିଆ ଜାତିର ଇତିହାସ କିପରି ଲୁକ୍କାୟିତ ଅଛି ତାହା ମଧ୍ୟ ଜାଣି ପାରିଥାଉଁ ।

ପଣ୍ଡିତ ଗୋପବନ୍ଧୁ ଦାସ ଆମଜାତିର ଏକ ମହାନ୍ ସତ୍ୟ ଏପରି ଏକ ପ୍ରବଚନରୁ ଆବିଷ୍କାର କରି ତାଙ୍କର 'ଧର୍ମପଦ' ନାମକ ଅମର କାବ୍ୟ ଆମକୁ ଦାନ କରିଅଛନ୍ତି । ସୁତରାଂ ଆଜି କେତେ କଣ ଯେ ଲୁଚି ରହିଛି ତାରି ଆଲୋଚନାର ସମୟ ଏବେ ମଧ୍ୟ ଏ ଜାତିର ଭାଗ୍ୟକୁ ସ୍ପର୍ଶ କରିନାହିଁ ।

ଓଡ଼ିଆ ଭାଷାର ସମ୍ପୂର୍ଣ୍ଣ ପୃଷ୍ଠପରେ ଯେ ଏମାନ ଉତ୍ପତ୍ତି ଲାଭ କରି ଅଛନ୍ତି— ଏଥିରେ ସନ୍ଦେହ ନାହିଁ । ମନୁଷ୍ୟ ନିଜର ଅନୁଭବ ଓ ଜୀବନର କେତେକ ନିଗୂଢ଼ ସମସ୍ୟାରେ ସୁଖ ଦୁଃଖ, ଜୟ ପରାଜୟ, ହସ କୌତୁକ ମଧ୍ୟରେ କେବେ ବିବ୍ରତ, କେବେ ଅହ୍ଲାଦିତ, କେବେ ସ୍ତମ୍ଭିତ ହୋଇ ଏସବୁ ରଚନା କରିଯାଇଛି । ଏଥିରୁ ଅଧିକାଂଶ ନାରୀ ମୁଖରୁ ପ୍ରକାଶିତ ବୋଲି ସ୍ପଷ୍ଟ ଧାରଣା ଆସେ ।

ମୋର ଏହି ସଂଗ୍ରହ ପୂର୍ବରୁ ସ୍ୱନାମ ଧନ୍ୟ ଗୋପାଳଚନ୍ଦ୍ର ପ୍ରହରାଜ ଦୁଇଖଣ୍ଡି ପୁସ୍ତକ ପ୍ରକାଶିତ କରିଥିଲେ । କିନ୍ତୁ ମୋର ସଂଗ୍ରହର ଭାଷା ତାଙ୍କ ସଂଗ୍ରହଠାରୁ ସ୍ୱତନ୍ତ୍ର, ପୁନଶ୍ଚ ମୋର ସଂଗ୍ରହରେ ତାଙ୍କ ସଂଗ୍ରହଠାରୁ ଅନେକ ସ୍ୱତନ୍ତ୍ର ବାକ୍ୟ ରହିଅଛି । ୧୯୩୯ ରେ ସ୍ୱର୍ଗତ ପ୍ରହରାଜ ମୋର ସଂଗ୍ରହ ଦେଖି ବିଶେଷ ଆନନ୍ଦିତ ହୋଇଥିଲେ । ଏମନ୍ତ କି ମୋର ବିଶାଳ ଗାଉଁଲିଗୀତ ପାଣ୍ଡୁଲିପିକୁ ଏକ ସପ୍ତାହ କାଳ ନିକଟରେ ରଖି ସମ୍ପୂର୍ଣ୍ଣ ପାଠ କରି ସେଥିରୁ ଅନେକ ନୂତନ ଶବ୍ଦ ସଂଗ୍ରହ କରିଥିଲେ । ସେତେବେଳେ ଭାଷାକୋଷ ଲେଖା ସରିଯାଇଥିଲା । ତେଣୁ ମୋର ସଂଚୟନର ଶବ୍ଦମାନ ଦିଆଯିବାର ସୁବିଧା ହେଲା ନାହିଁ । ସେ ମୋ ସମ୍ବନ୍ଧରେ ଲେଖିଥିଲେ—"ଶ୍ରୀମାନ୍ ଚକ୍ରଧର ଏ କ୍ଷେତ୍ରରେ

ଯେଉଁ ପ୍ରଥମ ଉଦ୍ୟମ କରିଅଛନ୍ତି, ଏହାଙ୍କୁ ଉତ୍କଳୀୟ ପ୍ରତ୍ୟେକ ଦେଶହିତୈଷୀ ବ୍ୟକ୍ତି ଉତ୍ସାହିତ କରିବା ସର୍ବଥା ବିଧେୟ ।"

'ପ୍ରବଚନମାନଙ୍କର ଇତିହାସ ଲେଖିବା ଦ୍ୱାରା, ସେମାନଙ୍କର ଆଲୋଚନା ଲେଖିବା ଦ୍ୱାରା ସେ ନିଜର ଶାସ୍ତ୍ରକୁଶଳତାର ଓ ସାହିତ୍ୟନିଷ୍ଠାର ଯଥେଷ୍ଟ ପରିଚୟ ପ୍ରଦାନ କରିଅଛନ୍ତି'—ଏହା ଡକ୍ଟର ଅର୍ତ୍ତବଲ୍ଲଭ ମହାନ୍ତି ଏବଂ 'ଆଲୋଚନାଗୁଡ଼ିକ ଏ ସଂଗ୍ରହକୁ ମୂଲ୍ୟବାନ କରିଛି' ବୋଲି ବର୍ତ୍ତମାନର କୁଳପତି ପ୍ରାଣକୃଷ୍ଣ ପରିଜା ମତ ଦେଇଥିଲେ ହେଁ ମୋର ଜ୍ୟେଷ୍ଠ ପୁତ୍ର ଗଙ୍ଗାରେ ବୁଡ଼ିଯିବା ପରେ ମୋର ଭାର୍ଯ୍ୟା ଜୀବନପ୍ରତି ବୀତଶ୍ରଦ୍ଧ ହୋଇ ବହୁଦିନର ସଂଗ୍ରହ, ବହୁ ତଥ୍ୟସଂକଳନ-ବହୁଳ ରଚନା ଏବଂ ବହୁ ଟିପ୍ପଣୀ ସହିତ ସେହି ଆଲୋଚନା ଅଂଶଟିକୁ ଅଗ୍ନିରେ ଦଗ୍ଧ କରି ଦେଇଥିଲେ । ଆମର ପୁରୁଷ ପୁରୁଷର ରାଜଗୁରୁ ବଂଶର ଶତ ଶତ ସନନ୍ଦ ଉପରେ କ୍ରୁଦ୍ଧ ହୋଇ ତାଙ୍କୁ ଦଗ୍ଧ କରିବାକୁ ଯାଇ ମୋର ବହୁ ଅମୂଲ୍ୟ ସମ୍ପଦ ସେତେବେଳେ ହତାଦରରେ ଦଗ୍ଧୀଭୂତ ହୋଇ ଯାଇଥିଲା । ସ୍ୱର୍ଗତ ପଣ୍ଡିତ ଗୋଦାବରୀଶଙ୍କର ୧୯୩୬ ଠାରୁ ୧୯୫୫ ଯାଏ ଲିଖିତ ପ୍ରାୟ ଶହେକରୁ ଊର୍ଦ୍ଧ୍ୱ ଚିଠି ତା ସହିତ ପୋଡ଼ି ଯାଇଥିଲା । ପୁତ୍ର ଶୋକାତୁର ମୋତେ ପଣ୍ଡିତ ଗୋଦାବରୀଶ ସାନ୍ତ୍ୱନା ଦେଇ ଯାହା ଲେଖିଥିଲେ—'ସହ । କଣ କରିବ ?' ତାହାହିଁ ଏ କ୍ଷେତ୍ରରେ ପ୍ରଯୁଜ୍ୟ ହୋଇଥିଲା ।

(ଝ) ମୋର ତରଙ୍ଗମାଳ ସଂଗ୍ରହରେ ତଗମାନ ଛନ୍ଦୋବଦ୍ଧ ଏବଂ ଗଦ୍ୟାଂଶ ଭାବରେ ଅକ୍ଷରାନୁକ୍ରମରେ ରଖାଯାଇଅଛି । ଯେପରି ପଦ୍ୟାଂଶରେ—

ଅଖିଳ ମଙ୍ଗଳ ଚିହ୍ନ ଯାର
ପଦ୍ମପରି ପୂତ ତାର । ଅଥବା

ଅଖି ବୁଜି ଥିଲେ ଚକ ବୁଲୁଥାଏ      ବୁଲି ପଡ଼ୁଥାଏ ପରି
ସଂସାର ଭିତରେ ଘର କରିଥିଲେ      ପଥର ପଡ଼ିଲେ ସହି । ଅବା

ଧଇତା ସୁଅଗ ଭସି ରେ
ଦଅର ସୁଅଗ ଅଢ଼େଇ ଦିନ ତା
ମାଇପ ଅଇଲେ ଗଲା ରେ । ପୁନଶ୍ଚ

ଏହି ପରି ତୁମ ଡେଙ୍ଗା ଉଆସ      ଚାଲିପଣି ବଲି ଯାଉଛି
ଏହି ପରି ତୁମ ସୁଅଗି ମାଇପ      କ୍ରୁଣ ନାହିଁ ପେଜ ପିଉଛି ।

ଏହି କ୍ରମରେ ୭୦୦ ସଂଖ୍ୟାର ଡଗ ମୋର ସଂଗ୍ରହରେ ରହିଅଛି ।

ଗଦ୍ୟାଂଶରେ—ଅତି ପିହାଣାରୁ କୁଅ ବୁହି ଖାଏ,
ଅଗ ପୁଅ ବାଘ,
ଓହଲକୁ ବୋହଲ ଟାଣ । ୧

ଏପରି ଏଥିରୁ ମୋର ସଂଗ୍ରହରେ ପାଞ୍ଚଶତ ରହିଅଛି ।

(ଖ) ରହସ୍ୟପୂର୍ଣ୍ଣ ଏବଂ କୌତୁକଙ୍ଗପଳ ହେଲେ ତଗମାନ ତମାଛ ନାମରେ ଅଭିହିତ ହୋଇଥାଏ । ଯେପରି ସାଧାରଣ ତମାଳି—

କଷି ସଜନା, ଦେହକୁ ଅନା
କଳା ବାଇଗଣ କଷି
କାହିଁକି ନାଗରି ଅନାଉଁ ନାହୁଁ ମୋ
କଇଁସ ଯାଉଛି ଖସି ।

ଅନ୍ୟତ୍ର ଦୀର୍ଘ ତମାଳରେ—

ଅଛିଲ ବନ୍ଧୁ କିଲ କଲ ବସିବାକୁ ନାହିଁ ଠାଅ
ଯେଉଁ ବାଟେ ବାଟେ ଅଇଲ ବନ୍ଧୁ ସେହି ବାଟେ ବାଟେ ଯାଅ ।
ପାଣି ମନ୍ଦେ ଦଅନ୍ତି ବନ୍ଧୁ ଦଦରି ମାଠିଅ
ନ ବସି ବନ୍ଧୁ ଯ ଅ ବେଗେ ବେଳେ ହେବ ଟିଅ । ଇତ୍ୟାଦି
ଏହି ଦୀର୍ଘ ତମାଳିର ପଦସଂଖ୍ୟା ୬୦ ଅଟେ ।

ତା ବ୍ୟତୀତ କୋବା-ବାଡ଼େଇବାରେ, ଡୁମା ବଜାଇବାରେ, ପୁଅଦ ଖିଅରେ ଯେଉଁ ସବୁ ପଦ ଗୀତ ହୁଏ, ସେ ସବୁ ତମାଳ ଭାବରେ କଥିତ ହୋଇଥାଏ । ଯେପରି ଉଦାହରଣ ସ୍ୱରୂପ—

କୋବା-ବାଡ଼ିଆରେ—

କଃକର ଗୁଅକାଢ ରେ, କଃକର ଗୁଅକାଢ
କଃକ ମାଇପେ ଏତେ ଚହଟି, ଘରେ ଘରେ ସୁନାଡାଟି ରେ ।
(ଗାଉଁଲି ଲୋକେ କଟକକୁ ସବୁମତେ ଏହିପରି ଦେଖିଥାନ୍ତି ସିନା !)
ଧୋବା ସାହି ବାଟେ ବୁଲି ମୁଁ ଅଇଲି ଧୋବଣି ପୋଡୁଛି ଖାର
ଚୋର ଧରଅଛି କାଗଜପତ୍ରର ଝୋକା ମାରୁଅଛି ଠାର
ହୁସ ତ ବାନକୋଳ କଣ୍ଢା
ଲାଗିଲେ ହେବ ଝଙ୍କାପଥା ରେ ।

ଏ କବିତାମାନ ଏକାନ୍ତ ମଧୁର ଉଦ୍ଦୀପକ ଆଉ କୋବା ବାଡ଼ୁଅ କଣୋରମାନଙ୍କୁ ପରିଶ୍ରମ ମଧ୍ୟରେ ସହର୍ଷ ଦେଇଥାଏ ।

ଡୁମ୍ବାମାଡ଼—

ଧାନ ଶ୍ରାବଣ ମାସରେ ହୋଇଥାଏ । ଡୁମା ହେତୁରେ ଦୁଙ୍ଗୁର ଲଗାଇ ତାକୁ ବାଡିଠି ଦୂର ଖଣ୍ଡରେ ଲଗାନ୍ତି । ଗାନ ଧରନ୍ତି ଗାଁ ଝୋବା ଦଳ—କୋରସ୍‌ରେ ।

କଅଁଳ କାକୁଡ଼ ବଢ଼ିଲ ଗ୍ରେସ୍ମା ମୁଁ କାଟି ଦେଇ ପରିବାକୁ
ପାନଖିଆ ସଙ୍ଗେ ପୀରତି କଲି ମୁଁ ଝୁରିଝୁରି ବୋଲିବାକୁ
ଲୋ ଗେଣ୍ଡ ମହାନ୍ତିଅଣି
ତୋର ନାସାରେ, ଲୋ ତୋର ନାସାରେ ଯୋଡ଼ା ବସଣି ।

× × ×

ଅଦନ କଅ କେତକୀ ଜାଇଫୁଲ ଅଦନ କଅ କେତକୀ
ରୁହୁ ଚମ୍ପାଫୁଲ, ମୁହିଁ ମାଳତୀ ହସିଲେ ଯିବି ପୀରତି
ଲୋ ନ'ଯା ତେଲଙ୍ଗାପେଣ୍ଡୁ
ତେଲଘଣା ଡାକେ କଃକଃ ଲୋ ନ'ଯା ତେଲଙ୍ଗାପେଣ୍ଡୁ
ହଜରେ ହଜ, ନ'ଯା ତେଲଙ୍ଗା ପେଣ୍ଡୁ ।

× × ×

କାଠି କାଙ୍ଗୁଲିର ତେର ଜାଇଫୁଲ କାଠିକାଙ୍ଗୁଲିର ତେର
ପିଲ୍ଲଯାଇ ନାହିଁ ଘରତା ଘର ମୋ ମୁହିଁ କରେ ଫରଫର
ନ'ଯା ଲବଙ୍ଗଲତା, ଫେରି ଆସିଲେ କଥା କାରତା ଲୋ,
ନ'ଯା ଲବଙ୍ଗଲତା ।

ଶ୍ଲୀଳ ଅଶ୍ଲୀଳ ଦେଖିବାର ଅବକାଶ ନ ଥାଏ । ରସବୋଧ ପାଇଁ ପଲ୍ଲୀରେ ଯାହା ଆମେ ପ୍ରତ୍ୟକ୍ଷଭାବରେ ଶୁଣୁ କଲମ ତାହା ଲେଖେ । ଏ କବିତା ଗାନ ବେଳେ ଗାଁ ଝକୁଳ ଉଠେ । ଗ୍ରାମର ହୃଦୟସ୍ପର୍ଶୀ ତାନରେ ଶୁଷ୍କ ପ୍ରାଣ ରସାପ୍ଲୁତ ହୋଇଯାଏ ।

ସୁଆଦଖିଆ ଡମାନ—ଗର୍ଭବତୀ ସ୍ତ୍ରୀଜନକୁ ଲକ୍ଷ୍ୟ କରି ନଣନ୍ଦ ଓ ଦିଅରମାନେ ଗାଇଥାନ୍ତି । ଏ ଗୀତ ମଧ୍ୟ ପଲ୍ଲୀରେ ଅନେକ ପାଲାକାର ଗାଉଥିବାର ଶୁଣାଯାଏ ।

ଯେପରି—ତାଳ ମଣ୍ଡା ତାଳ ଚକୁଳି ବାସି ହେଲେ ସୁଆଦ
ବରକୋଳି ପିଠା କରିବ ପଣ୍ଡ ଅରୁଆ ଗୁଡ଼ ।
କାଣ୍ଡିଆ କୁଣ୍ଡାକୁ ଝାଡ଼ିବ ଟିକି ମୁଣ୍ଡରେ ବସି
ବୁଢ଼ୀମାନେ ତାକୁ ଖାଇଲେ ହେବେ ଷୋଳ ବରଷି ।

ପ୍ରକାରାନ୍ତରରେ ଏହାର ଭିତରେ ଭିଟାମିନ୍‌ଯୁକ୍ତ ଖାଦ୍ୟ ପ୍ରତି ତୀବ୍ର ନଜର ଦିଆଯାଇଛି । କାଣ୍ଡିଆକୁଣ୍ଡାର ଉପାଦେୟତା ଏବେ ବୈଜ୍ଞାନିକମାନେ ପ୍ରକାଶ କଲେ । କିନ୍ତୁ ଓଡ଼ିଆ ପଲ୍ଲୀରେ ତାର ବିଶେଷତ୍ୱ କେଉଁ ପୂର୍ବକାଳରୁ ପ୍ରସିଦ୍ଧ ହୋଇ ରହିଅଛି ।

(ଗ) ଆଶୀର୍ବାଦ ବଚନ—

ଯଥା— ତୁ ଅହ୍ୟ ସୁଲକ୍ଷଣୀ ହୋଇଥା ।
ତୁ ଅହ୍ୟ ଝେଙ୍ଗୁସ୍ତରେ ଯାଅ ।
ତତେ ପଦ୍ମ ଙ୍ଗୀ କନ୍ୟା ମିଳୁ ।

ଏସବୁ ବୃଦ୍ଧ, ବୃଦ୍ଧା, ଗୁରୁଜନମାନେ ଗ୍ରାମରେ ଥିବା ଯୁବକ, ଯୁବତୀ ଏବଂ ଶିଶୁମାନଙ୍କୁ ପ୍ରଣତ ବହୁବା ମାନେ ଯାହା ପ୍ରତି ଯାହା ପ୍ରଯୁଜ୍ୟ ତାହା ପ୍ରକାଶିତ କରିଥାନ୍ତି । ତେଣୁ ଗ୍ରାମରେ ତା ଫଳରେ ଅଶିଷ୍ଟତାର ଅବକାଶ ନ ଥାଏ ।

ଅଭିଶାପ ବଚନ—

ଅଶୀର୍ବାଦ ପରି ଯେବେ ଗୁରୁଜନମାନେ କନିଷ୍ଠମାନଙ୍କ ଦ୍ୱାରା ଲାଞ୍ଛିତ, କର୍ଯାତିତ, ପୀଡ଼ିତ ହୋଇଥାନ୍ତି, ତେବେ କୋଧରେ ଅଭିଶାପ ଦେଇଥାନ୍ତି ।

ଯଥା— ତୋ ମୁଣ୍ଡ ସିନ୍ଦୁର ଲଭିଯାଉ ।
ତୋତେ ରାଜଦଣ୍ଡ ପଡ଼ୁ ।
ତୋ ମୁହଁରେ ଗଣଗଣା ମାଛି ବେଢ଼ନ୍ତୁ ।

ଏ ସବୁର ସଂଖ୍ୟା ମଧ୍ୟ ଅଳ୍ପ ନୁହେଁ ।

ଇତିହାସ ବଚନ—

କଟକ ଚଣ୍ଡୀ ବାଇମୁଣ୍ଡିକ—ପରି ପଦ୍ୟାଂଶମାନ ଏହାର ଅନ୍ତର୍ଗତ ଅଟେ । ଏହା ମଧ୍ୟରେ ଇତିହାସର ଏକ ଏକ ଦୀର୍ଘ କାହାଣୀ ପ୍ରଚ୍ଛନ୍ନ ଭାବରେ ରହିଥାଏ ।

କୃଷିଡାକ ବଚନ—

କୃଷିଜୀବୀ ମୁଖରୁ ୩୪ ମାତ୍ର ସଂଗୃହୀତ ହୋଇ ଏହି ସଙ୍ଗ୍ରହରେ ରଖା ଯାଇଅଛି ।

ଯଥା—ଅଖୁ ବଙ୍କା, ନ ବୁଡ଼େ ଙ୍କା,
ଜଡ଼ା ବଙ୍କା ନ ବୁଡ଼େ ଟଙ୍କା ।
ପୁନଶ୍ଚ
ପାଠିଏ ଓଡ଼ ମୂଳା
ତହିଁରୁ ଅଧେ ଢ଼ୁଳା
ତହିଁରୁ ଅଧେ ଗୁଳା ( ଅଖୁ )

ତଣ୍ଟିରୁ ଅଧା ଧାନ
ତଣ୍ଟିରୁ ଅଧେ ପାନ
ବସି ଖାଏ ଚଷା ସୁଆର ପାନ ।

ଏହି ସଙ୍ଗ୍ରହରେ ଗୃଷର ବଡ଼ ସମ୍ପଦ ଗାଈ-ବଳଦଙ୍କ ବେଳ ନାନା ସମସ୍ୟା ମଧ୍ୟ ରହିଅଛି ।

## ନ୍ୟାୟ ବଚନ—

ବଉଳ ଗ୍ରାମ୍ୟ ଚଳିତର ଶେଷ ନିଷ୍ପତ୍ତିକୁ ଗ୍ରହଣ କରି ଗ୍ରାମରେ ଏକ ଏକ ନ୍ୟାୟ ଘଟଣାକୁ ଲକ୍ଷ୍ୟ କରି ଯେଉଁ ବଚନମାନ କୁହାଯାଇଥାଏ, ତାହାସବୁ ନ୍ୟାୟ ବଚନ ନାମରେ ଅଭିହିତ ହୋଇଥାନ୍ତି । ଏହାହିଁ ପଲ୍ଲିଗ୍ରାମର ସଂହିତା ବା ନ୍ୟାୟଶାସ୍ତ୍ର ଅଟେ ।

ଯଥା—ଅମୃତ ହାଣ୍ଡିରେ ବିଷ ଢାଳିବା ଏ ମିଶିବା ନ୍ୟାୟ ।
ଅଳପ ପଇସାରେ କାଣି ମାଇପ କରିବା ନ୍ୟାୟ ।
କେଉଣ୍ଡି ଗୁଣ୍ଡି ଶେଉଳ ପାଇବା ନ୍ୟାୟ ।
ହାଡ଼ରୁ ଖାଇ ଘୋଡ଼ା ଆଗରେ ଡେଇଁବା ନ୍ୟାୟ ।

ଏଥିରୁ ଏହି ସଙ୍ଗ୍ରହରେ ୭°ରୁ ଊର୍ଦ୍ଧ୍ୱ ରହିଅଛି ।

## ଗ୍ରାମ୍ୟ ସଂସ୍କୃତ ବଚନ—

ଯେଉଁ ପ୍ରବଚନ ସବୁ ଗ୍ରାମେ ଗ୍ରାମେ ସଂସ୍କୃତ ଭାଷାରେ ଶୁଣାଯାଏ ସେ ସମସ୍ତରୁ କେତେକ ସଂଗୃହୀତ ହୋଇ ଏଥିରେ ରଖାଯାଇଛି । ତାର ସଂଖ୍ୟା ଶହେରୁ ଊର୍ଦ୍ଧ୍ୱ ଅଟେ ।

ଯଥା—ଅବ୍ରାଣଂ ସ୍ୱର୍ଗ ଭୋଜନଂ ।
ଯଥା ଦେହେ ତଥା ଦେବେ ।
ଗତସ୍ୟ ଶୋଚନା ନାସ୍ତି ।
ଘୃତହୀନଂ କୁଭୋଜନଂ । ଇତ୍ୟାଦି ।

## (ଘ) ପଦ—

ଏ ସଙ୍ଗ୍ରହରେ ଜଗନ୍ନାଥ ଦାସଙ୍କ ଭାଗବତରୁ ଯେଉଁ ସବୁ ପଦମାନ ଗ୍ରାମ୍ୟ ନରନାରୀଙ୍କ ତୁଣ୍ଡରେ କଥା କଥାକେ ଫୁଟି ଉଠେ, ସେଥିରୁ କେତେକ ଦିଆଯାଇଛି । ସେ ସମସ୍ତ ଏପରି ରୂପ ଦେଖି ଯେ ତାହା ସଂଗୃହୀତ ହେଲେ ସହସ୍ରରୁ ଅଧିକ ହୋଇପାରେ । ନାନା ଦୁଃଖ ସୁଖ, ଜୟ ପରାଜୟ ମଧ୍ୟରେ ସେ ସବୁ ଅନୁଭୂତି କହିଗଲେ ଗ୍ରାମ ଲୋକେ ଆନନ୍ଦ ବିହ୍ୱଳ ହୋଇ

କରନ୍ତି । ଚିତ୍ତକୁ ଶାନ୍ତ କରିବାରେ, ଧୈର୍ଯ୍ୟ ଦାନ କରିବାରେ ଏ ପଦମାନ ଅମୃତ ସେବାର କାର୍ଯ୍ୟ କରିଥାନ୍ତି ।

ଯେପରି—ଦଣ୍ଡେ ମୁହୂର୍ତ୍ତେ ଥିଲେ ପ୍ରାଣ
ନେଇ ନ ପାରେ କଳୁଷଣ ।
ଜୀବର ଭଲ ମନ୍ଦ ବାଣୀ
ନେଣ ଜାଣେ ତାହା ଜାଣି ।
ଶ୍ରେଷ୍ଠ ନ କହେ ବ୍ରାହ୍ମଣ
ଅସ୍ପୃଶ୍ୟ ଯାଜନ୍ତି ପରାଣ ।
କାଷ୍ଠ ପାଷାଣ ତରୁ ତୃଣ
ସକଳ ଦେହେ ନାରାୟଣ ।

ସମଗ୍ର ଭାଗବତର ଯେଉଁ ପଦଗୁଡ଼ିକ ସରସ ଅଟନ୍ତି, ତାହାହିଁ ପଲ୍ଲି-ବାଣ୍ଡରେ ନିରନ୍ତର ଉଚ୍ଚାରିତ ହୋଇ ଶୋଭା ପାଇଥାଏ । ଗାଁଦାଣ୍ଡରେ ଭାଗବତ ପଦମାନ ଜଗନ୍ନାଥଙ୍କ ମହାପ୍ରସାଦ ପରି ଅତି ପବିତ୍ର । ତେଣୁ ସେ ପଦ ଗୀତ ହେଲେ କେହି ଅମାନ୍ୟ କରି ନ ଥାନ୍ତି । ବରଂ ମନରୁ ଗର୍ବ ଦୂର ହୋଇ-ଥାଏ । ବିଷୟ ପ୍ରତି ଅକାଙ୍କ୍ଷା ଜାଗ୍ରତ ହୁଏ ଯେତିକି, ବିଷୟ ଲୋଭ ଦୂର ହୁଏ ସେତିକି ।

## ୧୪ । କୃଷକ ବୋଲି ( ଅଷ୍ଟମ ଖଣ୍ଡ )

ଉତ୍କଳର କୃଷକ ଏ ଜାତିର ମେରୁଦଣ୍ଡ । ଏଇ କୃଷକ ଗୃଷ କରେ । ଡାହାଳୀ ଶୁଭିଗଲେ ପାଞ୍ଚଣ ଫିଙ୍ଗିଦେଇ ଢାଲ ତରବାରି ଧରି ଯୁଦ୍ଧକୁ ଚାଲିଯାଏ । ଉତ୍କଳର କୃଷକ ପାଇକ, ଉତ୍କଳର ପାଇକ ଥିଲା କୃଷକ । ଇଂରେଜ ରାଜତ୍ୱରେ ତାର ସମସ୍ତ ମୌଳିକତା ଲୁଚି ଯାଇଛି । ୧୮୧୭ ବିଦ୍ରୋହ ପରେ ବୀର ଓଡ଼ିଆ ଭାଗ୍ୟରେ କୃଷିଗିରି ହୋଇଛି ପରମ ପୁରୁଷାର୍ଥ । ପାଇକ ବୃତ୍ତି ଅଉ ତାର ନାହିଁ । ସେ ଜାଗିରି ହରାଇବା ପରେ କାଁ ଭାଁ ଗୋଟେ ଗୋଟେ ଜମିଦାର କୃଷିକାର କେଉଁଠି କା ବଞ୍ଚି ରହିଛି । ତା'ର ସଙ୍ଗୀତମାନ କିଛି ଦିନ ପୂର୍ବେ ପଲ୍ଲି ପଥ, ପଦା, ବିଲ, ପ୍ରାନ୍ତରକୁ ଉନ୍ମାଦିତ କରୁଥିଲା । ଏ···ହେ···ର ଦୀର୍ଘ ଧ୍ୱନି ଯେପରି ସମଗ୍ର ବସୁଧାକୁ ଆହ୍ୱାନ କରୁଥିଲା ଏ ବସୁଧା—ଏକ କୁଟୁମ୍ବରେ ଭଳି । ତାପରେ ଫୁଟି ଉଠୁଥିଲା କବିତା । ସେ ମନୋରମ କବିତା ଗୋଟିକ ଗୋଟିକ ଗୋଟିଏ ଗୋଟିଏ ଇତିହାସ ଥିବା । ମନେହୁଏ ସେଥିରୁ ଗୋଟିକ ଲାଗି ଗୋଟିଏ ଗ୍ରନ୍ଥ ହୁଅନ୍ତା—ତାକୁ ଅପେକ୍ଷା କରିବସିଲେ ।

ଈଶ୍ୱର ପ୍ରତି ଅଗାଧ ପ୍ରୀତିରେ କମ୍ପିତ କୃଷକ ଏବଂ କୃଷକପଲ୍ଲୀର ଜୀବନର ଚିତ୍ରମାନ ଏସବୁ କବିତାରେ ମଧ୍ୟ ପ୍ରତିଫଳିତ ହୋଇଥାଏ । ଅବଶ୍ୟ

କୃଷ୍ଣକପଟୀ ସୀତାଙ୍କ ପରି ମହାସତୀ ନୁହନ୍ତି । ତାର କେଉଁଠି ମଧ୍ୟ ସ୍ଖଳନୀ ଥାଏ । କେଉଁଠି ସେ ଦିଅରକୁ ଅଧିକ ସ୍ନେହ କରିଥାଏ । ସେଥିପାଇଁ ସାମାଜିକ ବାଧା ନ ଥାଏ । ଭାରତେଶ୍ୱରୀ ପାଞ୍ଚାଳୀ କୃଷ୍ଣାଙ୍କ ପାଇଁ ଯେବେ ସେଥିରେ ଘୃଣା ସଞ୍ଚାରିତ ନ ହୁଏ, ଅଥବା, ଅହଲ୍ୟା, ତାରା, କୁନ୍ତୀ, ମନ୍ଦୋଦରୀ ପ୍ରାତଃସ୍ମରଣୀୟା ହୋଇପାରନ୍ତି, କୃଷ୍ଣକପଟୀର ଦୋଷ କେଉଁଠି ? 'ପ୍ରବୃତ୍ତିରେଷା ଭୂତାନାଂ' । ନିବୃତ୍ତିରେ ସୀତା, ସାବିତ୍ରୀ 'ଅପାଂଶୁଳାନାଂ ଧୁରି କୀର୍ତ୍ତନୀୟା' ହୁଅନ୍ତି । ତାହା ସାଧନାର ବିଷୟ, ଶିକ୍ଷାର ବିଷୟ । ପ୍ରକୃତି କୋଳରେ ବଢ଼ନର କୌଣସି ନିଗୂଢ଼ ମୋହ ନ ମାନି କୃଷିଜୀବୀର ପାରିବାରିକ ଜୀବନଧାରା ପ୍ରବାହିତ ହୁଏ । ସେଇଠି ଦେଖାଯାନ୍ତି କୁଳଟା ରାଧା । ସେଇଠି ଦେଖାଯାନ୍ତି ଷୋଳ ସହସ୍ର ଗୋପିକା । ସେଇଥି ପାଇଁ ଓଡ଼ିଆ ପ୍ରାଚୀନ ପୁରୁଷମାନେ ବ୍ୟବସ୍ଥା ଦେଇଅଛନ୍ତି ଯେ— ଯେଉଁମାନେ ଇଚ୍ଛା କରନ୍ତି ସେମାନେ ସ୍ୱାମୀର ମୃତ୍ୟୁ ପରେ ଦେବରକୁ ଦ୍ୱିତୀୟବାର ପରିଣୀତ ହୋଇ ପାରିବେ । କେତେକ ବର୍ଣ୍ଣରେ ଏ ପ୍ରଥା ଚଳି ନ ଥିଲେହେଁ ଏଥିପ୍ରତି ସମଗ୍ର ସମାଜରେ କେବେ ହେଲେ ଘୃଣା ଦେଖା ଯାଇ ନାହିଁ । ଦୁଇଟି ତିନୋଟି ବର୍ଣ୍ଣ ବ୍ୟତୀତ ବାକି ସମସ୍ତେ ଏହି ପ୍ରଥାକୁ ଧର୍ମ ବୋଲି ଗ୍ରହଣ କରିଥାନ୍ତି ଯେପରି, ଉକ୍ତ ଦୁଇ ତିନୋଟି ବର୍ଣ୍ଣ ମଧ୍ୟ ତାହା ହୃଦୟର ସହିତ ସମର୍ଥନ କରିଥାନ୍ତି ସେହିପରି । ଯାହା ଆଜି ଆଇନ ବଳରେ ଏବଂ ସମାଜ ସଂସ୍କାରକମାନଙ୍କ ବହୁ ତର୍କବିତର୍କ ସଂଗ୍ରାମରେ ଭାରତର ବହୁଳାଞ୍ଚଳରେ ଚଳିବାକୁ ଆରମ୍ଭ ହୋଇଅଛି—ତାହା ଏ ରାଜ୍ୟରେ କେଉଁ ଯୁଗ ଯୁଗାନ୍ତରରୁ ଚଳି ଆସୁଅଛି ।

ବାପଘର ଯିବ ବୋଲି ବୋହୂ ବାନ୍ଧେ ପେଡ଼
ଦିଅର କାନ୍ଦଇ ଯେ ଗୃହ ବାଡ଼ ଧରି
ନ କାନ୍ଦ ନ କାନ୍ଦ ଦିଅର ହୋ ପଣତେ ପୋଛ ଲୁହ
ଆଗତ ଏଇ ଦିନେ ଆସିବି ହୋ
କାଖରେ ଧରି ପୁଅ ।

କାଖରେ ଥିବ ପୁଅ
ଆଗରେ ଚାଲୁଥିବ ଝିଅ
ଲୋକ ପଚାରିଲେ ବତାଇ ହୋ କହିବ
ଦିଅର ଅଡ଼ ପୁଅ ହୋ ।

ଦିଅର ଅଡ଼ ପୁଅ ତ ଖୋଲାଇବ କୂଅ
କାଠ ଦେବ ପଣା ହୋ ଛତର
ବଇଦ ରଜା ଝିଅ ହୋ ।

ତେଣୁ ବୌଦ୍ଧ ଶ୍ଳୋକରେ କେବେ କୃଷକ ଜଣେ ବଡ଼ ଥିବାର ଅନୁମାନ କରାଯାଏ । ଅନ୍ୟତ୍ର—

କଦଳୀ ବାଣ୍ଡ ଘର ବଉଳ ଗଛ ଛାଇ
ଜନ୍ମ ଜନ୍ମ ଜନ୍ମଦେଲ ତ ମୁଁ
ବଅରକୁ ଝୁଇ ହୋ ।

ଏହା ବୋଲି କୃଷକର ପତ୍ନୀପ୍ରେମ ଏବଂ କୃଷକପତ୍ନୀର ପତିପ୍ରେମରେ କୌଣସି ତ୍ରୁଟି ଠୁଳେ ହେଲେ ଦେଖାଯାଏ ନାହିଁ । କୃଷକ ତ ସବୁକାଳେ ସବୁ ଯୁଗରେ ଦରିଦ୍ର । ସେ କେବେ ବିଶାଳ ଧନସମ୍ପତ୍ତିର ମାଲିକ ହୋଇ ନାହିଁ । ହେଲେ ହେଲେ ଧନ ମଧ୍ୟ ସେ ଯେଉଁ ସୁଖର ସଂସାର ଉପଭୋଗ କରି ପାରିଛି ତାହା କୌଣସି ସମ୍ରାଟ ଜୀବନରେ କେବେ ଦିନଟିଏ ମାତ୍ର ଘଟି ନ ଥିବ ।

ଦିନେ କୃଷକ ସାରା ଥାଉ ଥାଉ ହଳ ଯୁଚ ଦେଇ ବଳଦକୁ ଯାଇ ଗୃହଦ୍ଵାର ବସିଲା । ଟପ୍ ଟପ୍ ଗ୍ରୀଷ୍ମ ତାପରେ ତା'ର କଣ୍ଠ ଶୁଖି ଆସିଲା । ହାତରୁ, ମନରୁ ବଳ ଖସି ଆସିବା ବେଳେ ହଠାତ୍ ଆଖିରେ ପଡ଼ିଗଲା ତାର ପ୍ରିୟତମା କମଳା । ସେ ଟିକିଏ ଦୂରରେ ଥିବାରୁ ଦେଖି ନ ପାରି କୃଷକ ଚିତ୍କାର କଲା— କମଳା ଭାତ ଖାଇ ଆଣିଛୁ, ତୋଟିଣି ବୋଧହୁଏ ଆଣି ନାହିଁ, ତୃଷାରେ ଏଥର ତାର କଣ୍ଠ ଫାଟିଯିବ । କିନ୍ତୁ କମଳା ହଡ଼ ବାଟରେ ଧୀର ପଦକ୍ଷେପ ମନ୍ଥରେ ଚାଲିଆସୁଛି । ବାଃ ବାଃ, କି ସୁନ୍ଦର ଗୁଳି ତା'ର । କଂସାଉପରେ ମୁଠିଏ ଭାତ ସବୁ ପଣସପତ୍ରର ଢାଙ୍କି ଆଣୁଛି । କେଉଁଠି ସେ ଜଳ ଆଣୁଛି କିଏ ଦେଖିଛି ? ନିଶ୍ଚୟ ତୋଟିଣି ଆଣି ନାହିଁ । ବ୍ୟଥାରେ ତୃଷାରେ ଅଧୀର କୃଷକ । ତା ସମ୍ମୁଖରେ ହସ ହସ କମଳା ଦେଖା ଦେଇଛି ତାର ତୃଷା ବୁଝିଦେଇ ଉଭେଇ ଯାଇଛି— ଯେପରି 'ଦର୍ଶାହିଃଜଳଲେଶ୍ଚିବ' । ତତକ୍ଷଣା କମଳା ସ୍ଵାମୀକୁ ଉତ୍ସାହିତ କରିବାକୁ ଯାଇ ଗୀତ ଗାଇବାକୁ ସେତେବେଳେ ବାଧ୍ୟ କରୁଛି ।

ଭାତ ଧରି କମଳା ତ ହଡ଼ମୁଣ୍ଡେ ଠିଆ
ଗୀତ ତ ଗୃହ ପଦରେ ବୋଲିବୁ ହଳିଆ ।

କମଳାକୁ କୃଷକ ସବୁଦା କହେ ମୁଁ ତୋର କ୍ରୀତଦାସ । ତୋର ହଳିଆ । ତେଣୁ ଚତୁରା କମଳା ରହସ୍ୟ କରି ହଳିଆ ବୋଲି ଡାକି ସ୍ଵାମୀକୁ କହୁଛି—ଅରେ ହଳିଆ ! ଗୀତ ଗୃହପଦ ଗାଅମ । ଟିକିଏ ଶୁଣିବା । ଏପରି ନବଯୌବନ ମିଳନ ତ ଆଉ ନ ମିଳେ ।

କୃଷକ କହେଣ—ତୁ ତ ମୋର ସଙ୍ଗୀତ, ତୁ ତ ମୋର ଈଶ୍ୱର, କ ଗୀତ ଗାଇବ ?

ପାଠ ତ ପଢ଼ି ନାହିଁ ଲୋ ନାହାକ ଗୃହାଳୀରେ
ଗୀତ ତ ବୋଲି ନାହିଁ ଲୋ ପଞ୍ଚ ହଳଅରେ
ଗୀତ ତ ଗୀତ ଲୋ ଗମ୍ଭୀର ପହଣ୍ଟରେ
କି ଗୀତ ବୋଲିବ ଲୋ କହଲା, ଧରିଛି ହଳା ହଳେ ହୋ ।

ରସିକା କପଳା ଭୂବଳ ସେ ଅଭିବାଦନ୍ତୁ ପାଞ୍ଚକ୍ଷଣଅ ମଙ୍ଗଳସବୁ ସିନା ତାକୁ ଛଡ଼ ଦେଇ ନାହିଁ, ନଚେତ୍ ପାଠ ପଢ଼ିବାକୁ ତାକୁ କିଏ ମନା କରିଥିଲା ? ହଳାହଳ ଧରିବାକୁ ଯେବେ ଅପମାନ ଲାଗୁଛି ତାର କଣ ପ୍ରତିକାର ହୋଇ ପାରୁନାହିଁ ? ଅଛି ହଜ ହଜ । ବାଳକ ମଲକଡ଼ି ଦଣ୍ଡ ବାହାର କରିଦେଇ କହୁଛି —'ନିଅ ନିଅ । ହଳେ ଗଙ୍ଗା ଦ ମୁଣ୍ଡ ଏଇ ସୁନା ଭଙ୍ଗେଇ କଣିଅଣ' ।

କୃଷକ ଲଙ୍ଗଳ ଫିଙ୍ଗେଇ ଦେଇ ଗଛ ଛାଇତଳେ ପ୍ରିୟାର ମୁଖପଦ୍ମକୁ ଅନାଇଁ କହୁଛି—

ତୋହ କାନ ମଲକଡ଼ି ଲୋ ତୋହ କାନେ ଥାଉ
ଓଠଲ ସେସ କର ଲୋ ମାରିବା ଯେ
କରଷ ମୁଣ୍ଡ ପାଉ ହୋ ।

କରସ୍ପର୍ଶ ମଧ୍ୟରେ ଏଇଠି ନବୀନ ଦମ୍ପତିଙ୍କ ପ୍ରୀତି ଉଚ୍ଛଳି ହୋଇ ଉଠେ । କୃଷକ ଖାଇସାରି ସ୍ତ୍ରୀର ସୁନ୍ଦରପଣ ଦେଖୁ ଦେଖୁ ପୁଣି ବୀର ଦର୍ପରେ ଭୂମିଦଳନ ଆରମ୍ଭ କରିଦେଇଥାଏ ।

କୃଷକ ଗୀତିକା ଗୃହଗୀତ ଏବଂ ଶଗଡ଼ିଆ ଗୀତ ଏପରି ତିନି ଭାଗରେ ବିଭକ୍ତ । ଶ୍ରମ ଲାଘବ ଏବଂ ମନର ପ୍ରଫୁଲ୍ଲତା ସଂପାଦନ ଲାଗି ଲୋକପ୍ରାଣର ଏ ସମସ୍ତ ସ୍ୱକୀୟ ରଚନା ଅଟେ । ହେଲେହେଁ ଏହିସବୁ କବିତାମାନ ଉତ୍କଳ ସାହିତ୍ୟର ଏକ ଏକ ରତ୍ନ ଅଂଶ । ସେଥିରେ ଉତ୍କଳର ଜାତୀୟ ଜୀବନର ପ୍ରତିଛବି ଅତି ସୁନ୍ଦର ଭାବରେ ଅଙ୍କିତ ଥିବାର ଦେଖାଯାଏ ।

(କ) ଏହି ସ୍ତରର ପ୍ରଥମ ଭାଗ ସାଧାରଣ କୃଷିଗୀତ—ଭୂମି କୃଷି କରିବା, ଧାନ ବୁଣିବା, ବିଦ୍ଧି ହେବା, ବାଛିବା, ବେଉଷା ଆଦି କାର୍ଯ୍ୟରେ ଗାନ କରାଯାଇଥାଏ । ଦ୍ୱିତୀୟ ଭାଗରେ ଥିବା ସଙ୍ଗୀତମାନଙ୍କ ମଧ୍ୟରେ କୃଷକର ଗାର୍ହସ୍ଥ୍ୟ ଜୀବନକୁ ଲକ୍ଷ୍ୟକରି ନାନା ପ୍ରେମପୂର୍ଣ୍ଣ କବିତାମାନ ଦେଖା ହୋଇଅଛି । ତୃତୀୟ ଭାଗରେ ବହୁ ଦାର୍ଶନିକ କବିତା କୃଷକ ମୁଖରୁ ପ୍ରକାଶିତ ହୋଇଅଛି । ଯେପରି—

ହଳ ତ ଧରି ଚଳ ଅଭ୍ୟାସୀ ପଞ୍ଜରକୁ
ଅଖାତ ଠେକିଦେଇ ହରି ଶବଦକୁ

ବଢ଼ନ ବୁଣିଲ ନବରୁନ ମଞ୍ଜି
ହେତୁପାଇ ବୃକ୍ଷ ହୋ ଉଠିଲ
ଫଳିଲ ସୁନ ମଞ୍ଜି ହୋ ।

ଚତୁର୍ଥ ଭାଗରେ ରାମାୟଣ ଚରିତ କୃଷକ ମୁଖରେ ଅତ୍ୟନ୍ତ ସୁନ୍ଦର ଶୁଣାଯାଏ । ତାର ବର୍ଣ୍ଣନା ଶୈଳୀ ମଧ୍ୟ ଅଳ୍ପ ସୁନ୍ଦର ନୁହେ । ଉଦାହରଣ ସ୍ୱରୂପ ଦେଖାଯାଉ—

ଏ...ରାମ ବନ୍ଧଘରେ ହୋ ଲକ୍ଷଣ ବରଜାଢ
କନକ ବେଦୀ ତଳେ ମୋ କଳାଧଳା ଛଢ
କଳାଧଳା ଛଢ ତ ସୁବର୍ଣ୍ଣ ଛଏଣି
ମୁକ୍ତା ପେନ୍ଥି ପେନ୍ଥି ଯେ ହୀର ତ ଖୋଷଣି
ବସ୍ତ୍ର ସମ୍ଭରବ ତ ନ୍ତ୍ରିଣାଖା ମୁକୁଟ
ବେଗେ ସଜ କର ସୀତାଙ୍କୁ ଯେ
ଲକ୍ଷ୍ମଣ ବାହୁ ରଥ ହୋ !

ଓଡ଼ିଆ କୃଷକ ଏକାନ୍ତ ମୂର୍ଖ ନୁହେଁ । ଓଡ଼ିଆ ଭାଗ୍ୟବାଦୀ ସୁଦ୍ଧା ପରଂବ୍ରହ୍ମଙ୍କ ନ କହୁ ଭିକ୍ଷା ମାଗେ ନାହିଁ । ଦାନ, ଦୟା, ଧର୍ମ୍ମର ମହତ୍ତ୍ୱ ଗାଇ ଭିକ୍ଷା ମାଗେ । ତେଣୁ ତାର କବିତ୍ୱରେ ସେ ଭାବ ମୂର୍ତ୍ତି'କୁ ଅଣ୍ଡର୍ଜ ମନେକରେ ନାହିଁ ।

ପଞ୍ଚମ ଖଣ୍ଡରେ ରାଧାକୃଷ୍ଣ ଲୀଳା ଏବଂ ଷଷ୍ଠ ଖଣ୍ଡରେ ତାର ଜାତିର ଷରଣମଣି ଜଗନ୍ନାଥ ସେନ ନାନା ସଙ୍ଗୀତ ସେ ଗାଇଥାଏ । କେତୋଟି ସାଧାରଣ ନଜିର ଦେଇ ଏ ଅଲୋଚନା ଶେଷକରିବାକୁ ହେବ ।

ଗହିର ବଲରେ ତ ଉଡ଼ିଲ ମୁଗବୋଢ
ପତିତପାବନ ଯେ ବାନା ମୋ ଉଡ଼ୁଛୁ
ନୈଅଦେଇ ପୁଅ ହୋ ପାଇଛୁ
ଓଡ଼ିଶା ଗଜପତି ହୋ ।
ଦାଣିଲ ମହାଜନ୍ମ ଭସାଇ ଦେଲ ଜଳେ
ସେ ଯଦି ଲାଗିଲ ବାଙ୍କି ମୁହାଁଣରେ
ଦେବତା ବୋଲି ପୂଜା ଯେ ପାଇଲ
ବଡ଼ ଦେଉଳରେ ହୋ ।
କାଳିଆ କାଳିଆ ତ ବୋଲନ୍ତି ଯାହାକୁ
କାରଣ ବଢ଼େଇ ତା ରଥ ଗଢ଼ିବାକୁ
ତେଲିଣ ବ୍ରାହ୍ମଣ ତା ଭୋଗ ରାନ୍ଧିବାକୁ
ପଣ୍ଡାଙ୍କେ ପାଠ ହୋ ମୁରୁଜା
କାଳିଆ ବସିବାକୁ ହୋ ।

(ଖ) ଶଗଡ଼ିଆ ଗୀତମାନ ଏହି ପତ୍ରକରେ ଅଠ ଭାଗରେ ବିଭକ୍ତ ଅଛି । ଏହି ଅଠଭାଗରେ ଥିବା କବିତାମାନଙ୍କ ମଧ୍ୟରୁ ଦାଣ୍ଡଧୂଆ ନାମରେ ଛଅ ଖଣ୍ଡି ଅଛି । ଦାଣ୍ଡଧୂଆ—ଦାଣ୍ଡି ବୃତ୍ତିରେ ରଚିତ ଏବଂ ଏସବୁ ଦୋହା ଛାଗସ୍ କବିତା ହେତୁ ଧୂଆ ନାମରେ ବିଖ୍ୟାତ ହୋଇଥିବା ସମ୍ଭବ । ଦୁହା-ଦୁହା-ଦୋହା-ଧୂଆ ଏସବୁ ଏକଜାତୀୟ ଶବ୍ଦବୋଲି ସମ୍ଭବ ହୁଏ । ନେପାଳରୁ ଯେଉଁସବୁ ଓଡ଼ିଆ ଭାଷାରେ ବୌଦ୍ଧ ଦୋହା ମିଳିଅଛି ସେଥିରୁ ମନେହୁଏ ଦୋହା-ମାନଙ୍କର ରଚନା କାଳ ହଜାରେ ବର୍ଷରୁ ଊର୍ଦ୍ଧ୍ୱ ହେବା ସମ୍ଭବ ଅଛି ।

କବି ଶଗଡ଼ିଆର ସେ ଦୋହାର ଭାଷା ଉତ୍‌ଥାନ ପତନ ଅବସ୍ଥାରେ ଯାଇଛି ଏବଂ ନାରାୟଣ ଦାସ ନାମକ କବିଙ୍କର ନାମ ମଧ୍ୟ ସେଥିରୁ ମିଳୁଅଛି । ସେ ଯାହାହେଉ ଏହି ଛଅ ଖଣ୍ଡରେ ଲଙ୍କା ଦାଣ୍ଡଧୂଆ, ମନାଇଁ ଦାଣ୍ଡଧୂଆ, ଯୋଗୀନ୍ଦ୍ର ଦାଣ୍ଡଧୂଆ, ମନୁଆ ଦାଣ୍ଡଧୂଆ, ବାରମାସୀ ଦାଣ୍ଡଧୂଆ ଏବଂ ପଞ୍ଚକଠୀ ଦାଣ୍ଡଧୂଆ ରହିଅଛି । ତା ବ୍ୟତୀତ ସାଧାରଣ ଶଗଡ଼ିଆ ଗୀତ ଏବଂ ବୋଇତ ବୋଲି ଗୀତ ସ୍ୱତନ୍ତ୍ର ଦୁଇଖଣ୍ଡିରେ ରହିଅଛି ।

କୃଷିକାର୍ଯ୍ୟରେ ବୋଲାହେବା ଗୀତଠାରୁ ଶଗଡ଼ିଆମାନଙ୍କୁ ଚଳାଇବାର ଗୀତମାନଙ୍କର ଲହର ସ୍ୱତନ୍ତ୍ର ଏବଂ ସେ କବିତାମାନଙ୍କର ରଚନା ମଧ୍ୟ କର୍ଷଣ-ଭୂମିରେ ଏକାନ୍ତ ପ୍ରଲମ୍ବିତ ଅଣିଥାଏ ।

ଏ······ଦୂରକୁ ସୁନ୍ଦର ତ ପରବତମାଳ
ଗାଆଁକୁ ସୁନ୍ଦର ତ ନଡ଼ିଆ ଗୁଆ ତାଳ
ବନ୍ଧକୁ ସୁନ୍ଦର ତ ଦଶଇ ଦୂର ବାଟ
ସିନ୍ଧୁକୁ ସୁନ୍ଦର ତ ଲହଡ଼ାଭଙ୍ଗା ଘାଟ
ସଭାକୁ ସୁନ୍ଦର ତ ପଧାନ ସାନଭାଇ
ଗୋଠକୁ ସୁନ୍ଦର ଭ ଦୁହିଁ ଲଅ ଗାଈ
ଘରକୁ ସୁନ୍ଦର ଯେବେ ଲେ ଘରଣୀ
ନ ଯିବୁ ବାପଘର ଘେ ।

କଳକଣ୍ଠାଡ଼ ଅଡ଼େଇ ଶଗଡ଼ିଆ ଯେତେବେଳେ ଏ ସଙ୍ଗୀତର ଲହର ଛାଡ଼ଇ, ମନେହୁଏ ସମଗ୍ର ବଣ୍ଟ ସେ ଧ୍ୱନିରେ ପ୍ରତିଧ୍ୱନିତ ହୁଏ ଅବା । ଏହି ଅସଭ୍ୟ ମଣିଷଟି କେବେ ସୁନ୍ଦର ଭାଷା ଯୁକ୍ତଯୁକ୍ତ ପ୍ରୟୋଜନୀୟ ସରସ କଥାମାନ କହି ବସେ । ସଭାରେ ଗ୍ରାମଣୀ-ପଧାନେ କଣ୍ଠାଡ଼ ସ୍ୱାର୍ଥଦୋଷରୁ ସ୍ପଷ୍ଟ ନ୍ୟାୟ ନ ଦେଇ ପାରନ୍ତି । କିନ୍ତୁ ତାଙ୍କ ସାନଭାଇ ଗଙ୍ଗାଜଳ-ନିର୍ଦ୍ଦୋଷ । ସେ ଯେଉଁ ନ୍ୟାୟ ଦେବେ ସେଥିରେ ପଦେ ବଙ୍କା ନ ଥାଏ । ସେଇଥି ପାଇଁ ସଭାକୁ ସେଇ ସୁନ୍ଦର ଦଶନ୍ତି । ଘରକୁ ଭାର୍ଯ୍ୟା ସୁନ୍ଦର ଦଶିବ ଯେବେ ସେ ସ୍ୱାମୀ ଘରକୁ ତା ନିଜ ଘର ବୋଲି ଭାବିବ, ବାପଘରକୁ ବାରମ୍ବାର ନ ଯିବ ।

ଏହିସବୁ ଶଗଡ଼ିଆ ଗୀତଗୁଡ଼ିକ ମଧ୍ୟରେ ବହୁ ଦାର୍ଶନିକ କଥା ମଧ୍ୟ ଦେଖାଯାଏ । ଶଗଡ଼ିଆ ଗାଡ଼ି ଚଳାଇ ନିର୍ଜନ ବନ, ଶୁଣ ନ ଅଦ ପଥରେ ଯାଇ ଯାଇ ତାର ଦର୍ଶନ କହେ—

ଏ……ଘୋ'ଖରା ଦୁଇଟି ଗୃଧ ତଳରେ
ଡମ୍ଫ ପାରେଦେଇ ଅଣ୍ଡିର ସଜହଂସ
ଏକଗୋଟି ଡମ୍ଫରୁ ଦୁଇଗୋଟି ଛୁଆ
ଗୋଟିଏ ନୀଳବର୍ଣ୍ଣ ଗୋଟିଏ ହଳଦିଆ
ମାଆ ନାହିଁ ପିଲା ଦାଣ୍ଡରେ ଚେଙ୍କୁଛି
ବାପ ନାହିଁ ପିଲା ଶୂନ୍ୟରେ ଉଡ଼ୁଛି ହୋ ।

ଏତକ ବଲେ ନଦୀପଥ ଦଶିଯାଏ । ନଦୀଧାରରେ କ୍ଷୁଦ୍ର ନୌକା ଦେଖି ଓଡ଼ିଆ ଶଗଡ଼ିଆ ତାର ପୂର୍ବ ପୁରୁଷର ବଣିକ ବୋଇତ ଯାନ କଥା ସ୍ମରଣ କରି ବ୍ୟଥିତ ହୋଇ ଉଠେ । ମଧୁର ଧ୍ୱନିରେ ବୁଢ଼ୁଫଟା ବୋଧହୁ ସେକ ତାର ବୋଇତ ବୋଲି ଗାଇ ଗଲେ—

ଏ……ସାଧବାଣୀ ପୂଜଇ ଢାଳୀ ଖମ୍ବେଶ୍ୱରୀ
ସିମଳ ଘାଟୁଁ ବୋଇତ ହୋ
ଅସିବଣି ଫେରି
ଲଙ୍କା ଦ୍ୱୀପେ ଅଟ୍ଟ ଲ ଛଣ୍ଡି ଯେ
ବାଜିଲା ବତାସ
ଅମାପ ଦରିଆରେ ମୋ ସାଧବ
ଅଟେ ଶ୍ୱାସ ହୋ ।
ରମଣୀମଣି ଲମ୍ବା କୁଞ୍ଚିତ କେଶ ବାଳ
ସୁନ୍ଦର ବାନ୍ଧେ ହୋ ସାଧବ
ଅଛାତ ସିନ୍ଦୂରଳ ହୋ ।

ବୋଇତ ବୋଲି ଏହି ସଞ୍ଚୟନରେ ଉତ୍କଳର ପ୍ରଥମ ଅବଦାନ । କାରଣ ଏଯାଏ ତାର ସନ୍ଧାନ କେହି ଦେଇ ନାହାନ୍ତି ।

ମାନବ ଜୀବନର ଉଚ୍ଚାଦର୍ଶ ସମ୍ପର୍କରେ ଅନ୍ତ ବୋଲି ଯେଉଁମାନେ ଅପର ଦୃଷ୍ଟିକ ଶ୍ରେଣୀକୁ ଦେଖୁଛନ୍ତି, ସେମାନେ ଦବାକ୍ତ ବୋଲି ମୁଁ ମନେ କରୁଛି । ଜନବେନ୍ଦ୍ର କେବଳ ପୌର ସାହିତ୍ୟରେ ଅଛି, ଚଳି ସାହିତ୍ୟରେ ଯେ ନାହିଁ ଏହା ଅଳଙ୍କାରର ଅସ୍ଥିର ସନ୍ଦେହ ଯୋଗୁଁ କୁହାଯାଇ ନ ପାରେ । ସର୍ବହି ସର୍ବଦା ଜନ ସ୍ତରରେ ଗ୍ରହଣୀୟ ବୋଲି ମୋର ଧାରଣା ।

## ୧୬ । ସମର ବୋଲି ( ନବମ ଖଣ୍ଡ )

ବୀରଗାଥା ଓଡ଼ିଆ ଭାଷାରେ ମିଳି ନ ଥିବା କଥା ଅଧ୍ୟାପକ ଶ୍ରୀ କୁଞ୍ଜବିହାରୀ ଦାସ ତାଙ୍କର ଗୀତି ସଞ୍ଚୟନ ଭୂମିକାରେ ଲେଖିଛନ୍ତି । ମୁଁ ପ୍ରଫେସର ସତ୍ୟାର୍ଥୀଙ୍କର ବିଭିନ୍ନ ପ୍ରବନ୍ଧରେ ୧୯୪୦ ରେ ରାଜସ୍ଥାନ, ପଞ୍ଜାବ, ଉତ୍ତର ପ୍ରଦେଶ ଆଦିର ବୀରଗାଥାମାନ ପାଠ କରି ଏକାନ୍ତ ଚିନ୍ତିତ ଥିଲି ଯେ ଏତେ ବଡ଼ ବୀର ଜାତିର କୌଣସି ଗାଥା ତେବେ କଣ ଆଦୌ ନାହିଁ ? ଅବଶ୍ୟ ମୁଁ କିୟଦଂଶ ସଂଗ୍ରହ କରିଥିଲି ୧୯୪୩ ରେ । ବର୍ତ୍ତମାନ ସେ ସବୁର ଚିହ୍ନ ସନ୍ଧ ଆଉ ମିଳୁନାହିଁ, ଗଡ଼ଜାତ ଅଞ୍ଚଳରେ ଥିବା ଅତି ପ୍ରାଚୀନ ବୃଦ୍ଧ ଖଣ୍ଡାୟତ ଏବଂ ଶୁଦ୍ର ପାଇକ ଜାତିର କେତେଜଣ ସେତେବେଳେ ତାହା ଗାଉଥିଲେ । ସମର କବିତା ସଂଗ୍ରହ କରିବାକୁ ଶ୍ରୀଯୁକ୍ତ ମାନସିଂହ ମୋତେ ମଧ୍ୟ ସେତେବେଳେ ବାରମ୍ବାର ଲେଖୁଥିଲେ । ତେଣୁ ଏହିପରି ଯତ୍ ସାମାନ୍ୟ ସଂଗ୍ରହ ହୋଇ ପାରିଥିଲା ଏବଂ ବର୍ତ୍ତମାନ କିଛି କିଛି ସଂଗ୍ରହ ହୋଇ ପାରିଅଛି ।

ପାଇକଙ୍କ ଯୁଦ୍ଧ ବିପ୍ଳବର ଇତିହାସ ୧୮୧୭ରୁ ଉତ୍କଳରେ ଅବଲୁପ୍ତ । ସେମାନଙ୍କ ଜାଗିର ଜମିମାନଙ୍କ ଉପରେ ଖଜଣା ବସାଇବା ଦ୍ୱାରା ପାଇକବୃତ୍ତି ମୋଗଲବନ୍ଦିରୁ ଲୋପ ହୋଇ ଯାଇଅଛି । କିନ୍ତୁ କରଦ ଭାବରେ ଗଡ଼ଜାତ ଅଂଶ ରହି ଯିବାରୁ କିଛି କିଛି ଶକ୍ତି ସେ ସବୁ ଅଞ୍ଚଳରେ ୧୯୪୭ ଯାଏ ରହିଥିଲା । ପ୍ରକୃତ ଯୁଦ୍ଧ କୌଶଳ ଶିକ୍ଷା କରିବାର ସାଧନା ସେଥିରେ ଅବଶ୍ୟ ନ ଥିଲା । ତଥାପି ଗ୍ରାମେ ଗ୍ରାମେ ଅଖଡ଼ା ଘର ଥିଲା । ଯୁବକ ଯୁବତୀମାନେ ଭିନ୍ନ ଭିନ୍ନ ସମୟରେ ସାମରିକ ଶିକ୍ଷା ଲାଭ କରୁଥିଲେ । ଏବେ ମଧ୍ୟ ଖଣ୍ଡାୟତ ଦଳୁଅ, ଶୁଦ୍ର ପାଇକମାନଙ୍କର ପ୍ରକୃତି ଅକୃତି ବ୍ୟବହାର ମଧ୍ୟରେ ଏକ ନିଷ୍ଠୁର ସାହସିକତା, ମୃତ୍ୟୁ ପ୍ରତି ଅଖାତିର ଭାବ ସ୍ୱାଭାବିକ ଭାବରେ ଦେଖା ଯାଇଥାଏ । ଗଡ଼ଜାତ ଅଞ୍ଚଳର ଗୋଟିଏ ଦଳୁଅ ( ଖଣ୍ଡାୟତ ) ରମଣୀଠାରୁ କଥା ଶୁଣିଲେ ମନେ ହୁଏ ସେ ରମଣୀ ଜଣକ ଯେପରି ଖଣ୍ଡାରେ ମୁଣ୍ଡ ଛିଣ୍ଡେଇ ପକାଉଛନ୍ତି । ସେପରି ନ୍ୟାୟପରାୟଣ ଗର୍ବିତ ଭାଷା ଏବେ ମଧ୍ୟ ରେକର୍ଡ କରି ରଖିବାର ସୁଯୋଗ ରହିଅଛି । କିନ୍ତୁ ତତ୍ ପ୍ରା ଉଦ୍ୟମ କାହିଁ ?

ସାଧାରଣତଃ ବୀର ବିଦ୍ୟାର ଶିକ୍ଷା, ସାଧନା ନାମରେ ଅଭିହିତ ଥିଲା ।

'ସାଧନା କେମନ୍ତେ ହେବ ଶୁଣ ଯତିବର
ଆଦ୍ୟେ ଚଉତ ବସିବୁ ଗୁରୁ କଲା ପରକାର ।
ନଅଣ ବସିବୁ ତଥି ପରେ ହୋଇ ସଜ
ସରୁ ନଅଣ ସାଧିବୁ ଅତି ମନୋଯୋଗ ।

ଜମଣ, ସରୁଜମଣ ସରଗଲେ ଭାଇ
ପବନରୁ ଉଶ୍ୱାସ ହୋଇଯିବ ଦେଖି ।
ପାଅ ଗୃରଖଣ୍ଡ ସାଧି ନ ବୋହୁରୁ ଗଙ୍ଗ
ପାଅ ଖେଳ ଖଣ୍ଡ ସାଧିଲେ ହେବ ରଙ୍ଗଠାବ ।
ଏଥିଅନ୍ତେ ଅଖଡ଼ାଶାଳେ ତୋ ସାଧନା
ଗୁରୁ ଠେକ୍ ଦେବେ ସିଧିବନ୍ଧୁ ବାନା ।
ଏତେବେ ହୋଇବୁ ଶିଷ୍ୟ ଜାଣିଥାଅ ଚିତେ
ବହୁ କଷ୍ଟେ ବରଷକେ ଙ୍ଗ୍ରା ଦେବୁ ହାତେ ।

ଏଥିରେ ପ୍ରୟୋଗ ଥିବା ଚଉତ, ନଅଣ, ସରୁ ନଅଣ, ଜମଣ, ସରୁ ଜମଣ, ପାଅଗୃରଖଣ୍ଡ, ପାଅ ଖେଳଖଣ୍ଡ, ସିଧିବନ୍ଧୁବାନା ଅଦର ଅର୍ଥ ସର୍ବସାଧାରଣରେ ଜାଣିବା ବର୍ତ୍ତିମାନ ପାଇଁ ଏକାନ୍ତ କଷ୍ଟକର ହୋଇଯାଇଛି । ଏ ସବୁର ଅର୍ଥ ଗୋଟିଏ ଗୋଟିଏ କ୍ଷୁଦ୍ର ବାକ୍ୟରେ ମଧ୍ୟ ଦଅଯିବାର ସୁବିଧା ନାହିଁ । କାରଣ ସେ ସମସ୍ତ ବର୍ତ୍ତିମାନ ସାଧାରଣ ବ୍ୟବହାରରେ ଆଉ ନାହିଁ ।

ଏ ସବୁ ବ୍ୟତୀତ ଭିଟକା, ନୋଧ, ଟିପା, ଶାଯୂଣା, ପରଞ୍ଜି, ଖଣ୍ଡା, ଦାଣ୍ଡଣୀ, ଦାଉଲ୍, ଅସ୍ୱଟଣୀ, ଗୋବାହୁ, ଭାଇମାଟି, ଶିକ୍ରିଳ, ପନଖା, ଲ୍ହ ଲଙ୍ଗୁର, ଖାମଣା, ସୁନଚସ୍ୱ, ଧ୍ୱଜବନ୍ଧ, ସ୍ୱଜବନ୍ଧ, ଫିହୁବନ୍ଧ, ଦୁଷବନ୍ଧ, ଧ୍ୱଂସବନ୍ଧ, ପାନବନ୍ଧ, ନଖବନ୍ଧ, କୂର୍ମବନ୍ଧ, ଗାଞ୍ଜି, ଅହୁଢ, ବାଉଢ, ରସବାଡ଼, ମୃହୁନ, ଗଜ, ଲୁଡ଼, ବାଘମୁହିଁ, ପାମେର, ଖୋଲସ୍ୱ, ଅଡ଼ବନ୍ଧ, ବାଡ଼ବନ୍ଧ, ଫଡ଼, ପଟା, ଲଟାବାର, ତଙ୍କଣ ଇତ୍ୟାଦ ଶତଶତ ଶବ୍ଦ ଅଭିଧାନ ମଧ୍ୟରୁ ଯାଇଛି ବ ନାଁ ଅସମ୍ଭବ । ହୁଏତ କେତେକ ଯାଇ ଥାଇ ପାରେ, କିନ୍ତୁ ସେ ସବୁର ଯଥାଯଥ ପ୍ରୟୋଗ ବୁଝିବା ଏବଣି ମୁସ୍କିଲ ହୋଇ ଗଲଣି ।

ତଙ୍କଣରେ ମୂନ ହୋଇ ରହିଛି

ଖଣ୍ଡାରେ ହାଣି ପରଞ୍ଜିରେ ଯଛି ଅର୍କୁଛି— ବାକ୍ୟମାନଙ୍କର ପ୍ରୟୋଗ ମଧ୍ୟ ଏବେ ପାଇକଙ୍କ ଗାଁ ଗାଁରୁ ଲୁଚି ଗଲଣି ।

ଖଣ୍ଡା କପର ଢଅର ହେଲ, କେତେଖଣ୍ଡ ଜୋଡ଼ା ହେଲେ ଖଣ୍ଡା ଗଢ଼ା ହୁଏ, କ ଅସ୍ତ୍ର ଶସ୍ତ୍ରରେ ବୀର ଭୂଷିତ ହୁଏ, ସେ କପର ବେଶ ହୁଏ, କେତେ ଦୀର୍ଘ ଖଣ୍ଡା ଧରିବା ସମୀଚୀନ, ତାର ଦଳପଣ୍ଡିକୁ ସେ କପର କୈଡ଼ାର ଗାଇ ଅଭିନନ୍ଦନ ଦଏ, କଣ କହ ଖାପରୁ ଖଣ୍ଡା ଉତାରେ ଏପରି ନାନା ସମସ୍ୟାରେ ଏସବୁ ପାଏକ ବୋଲିର ସନ୍ଦର୍ଭମାନ ପୂର୍ଣ୍ଣ ।

ଯଥା— ପଞ୍ଚବୃକ୍ଷ ଅଙ୍ଗୁଳେ ବୃଷ ବନ୍ଧ ହୋଇ
ଯେ ଗୃହେ ରହିବ ଶତ୍ରୁ ମିତ୍ର ତା ହୁଅଇ ।

ରାଜସୈନ୍ୟ ଗୋ-ଧନ ସନ୍ତୁଜନ ହୋଇ
ଅବଶେଷେ ପତିବ୍ରତା ଧନ୍ୟ ନାରୀ ଲଭିଲ ।

ଚଉରାଳିଶି ଅଙ୍ଗୁଳ ଲମ୍ବ ବେଣ୍ଡା ଧଇଲେ ଶଙ୍ଖିଣୀ କନ୍ୟା, ତେୟାଳିଶି ଅଙ୍ଗୁଳରେ—

ହସ୍ତିଣୀ କନ୍ୟାକୁ ଲଭେ ହୁଏ ବଳବାନ
ଅତି ଲୋଭୀ ମିଥ୍ୟାବାଦୀ ଅତି ନୀଚ ମନ ।

ଏସବୁ ତାନ୍ତ୍ରିକ ମନୋବୃତ୍ତି କେଉଁଠୁ ଜାତ ହୋଇଛି ତାହା ବିଚାରିବାର ଅବକାଶ ନାହିଁ—ଏହାହିଁ ପରଂପରାର ବିଶ୍ୱାସ ଏବଂ

ଏହି ସମୟ ବୋଲି ସଂଗ୍ରହରେ ତିନୋଟି ଐତିହାସି.

ଦେଖାଯାଏ । ପାଇକ କୈବାରରେ—

ବୀରାଧି ବୀରବର ପ୍ରତାପି ଗଜପତେଶ୍ୱର
କଳିଯୁଗ ଷଣ୍ଢ, ଝାଡ଼ ପାତିଶା ଖଣ୍ଡା
ନବକୋଟି କର୍ଣ୍ଣାଟ କଳବର୍ଗ ଚଣ୍ଡା ।

ଏଥିରେ ଥିବା ଝାଡ଼ ପାତିଶା, ନବକୋଟି କର୍ଣ୍ଣାଟ, କଳବର୍ଗ ଆଦି ଶବ୍ଦ ଯେ ଗାଁ ଗହଳରେ ସ୍ଥାନ ଲାଭ କରି ପାରିଥିଲା ଏହାହିଁ ଏକ ଚମତ୍କାର ସମସ୍ୟା । ଏ ଘଟଣାଗୁଡ଼ିକର ମହତ୍ତ୍ୱ କେତେ ବିସ୍ତୃତ ଥିଲା ତାହାହିଁ ଭାବିବାର କଥା ।

'କବିର'ଙ୍କ ଭଜନରେ ଉତ୍କଳକୁ ଝାଡ଼ ଖଣ୍ଡ ବୋଲି ବର୍ଣ୍ଣନା କରାଯାଇଅଛି । 'ଝାଡ଼ ଖଣ୍ଡମେ ଅୟେ କସାଇ'—ଗ୍ରାମ୍ୟ କବିତାରେ ଉତ୍କଳ-ସମ୍ରାଟ ଝାଡ଼ ପାତିଶା ଅର୍ଥାତ୍ ଝାଡ଼ଖଣ୍ଡର ବାଦଶାହ ବର୍ଣ୍ଣିତ ହେବାଦ୍ୱାରା ଉତ୍କଳ ଯେ ଝାଡ଼ଖଣ୍ଡ ଏଥିରେ ସନ୍ଦେହର ଅବକାଶ ନାହିଁ । ପୁନଶ୍ଚ ଅନଙ୍ଗଭୀମ ଦେବଙ୍କ ରାଜକୀୟ ମୋହରରେ ଥିବା କର୍ଣ୍ଣାଟ କଳବର୍ଗ, ଗୌଡ଼ ଜୟକାରୀ ରଜାଙ୍କ ପ୍ରୋଢ଼ୀ ଗାଁ ଗହଳରୁ ମଧ୍ୟ ମିଳୁଅଛି । ତେଣୁ ଗ୍ରାମ ଏବଂ ନଗରର ଏହି ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଇତିହାସକୁ ଅପ୍ରମାଣିତ କରାଯାଇ ନ ପାରେ ।

ପୁନଶ୍ଚ ଏ ସଂଗ୍ରହର ବିଭିନ୍ନ ସ୍ଥାନରେ ଥିବା କେତୋଟି
ଲକ୍ଷ୍ୟ କଲେ ଅଜ ଏକ ଅଷ୍ଟର୍ଣ୍ଣ ଇତିହାସ ଆମେ ପ୍ରତ୍ୟକ୍ଷ କରୁ
ଗହଳରେ ଏପରି ପ୍ରମାଣ ଥାଇ ପାରେ କେହି ଅଦ୍ୟାବଧି କରି

ଏକା ଧୂର୍ତ୍ତି ବେଳାମଣ୍ଡନା ଚନ୍ଦନରତେ ଧ୍ୟାନ
ଏହା କୁଆଳେଣ ପାଇ ମୁଁ ପଦ କରେ ରଚନ ।
ଶଣ ହୋ ପାଇକ ଶ୍ରୁତରେ ତୋତେ ପଗ

... ବର୍ଣ୍ଣିତ ଥିବା 'ଏଳାଧୂଷି ବେଳା ମଣ୍ଡନା'ର ଅର୍ଥ ଏହି ପ୍ରକାରେ ହେବ ବୋଲି ମୁଁ ବିଶ୍ବାସ କରେ । ଏଳା କ ଐର ବଂଶଜ । ବେଳାମଣ୍ଡନା କ ଖାରବେଳଙ୍କର ମଣ୍ଡନା ଅର୍ଥାତ୍ ଖାରବେଳାଙ୍କର ରାଣୀ ଧୂଷିଙ୍କ ପଦଧ୍ୟାନ କରିବା ଅର୍ଥ କିଷପୃ ସଙ୍ଗତ ହେବ ।

ଷକ୍ଷିବୃତ୍ତିର ବମ ବିହାଣ ଯେକ ସେହି ରଚନାରେ ବର୍ଣ୍ଣିତ ଅଛି ଯେ ପର୍ଶୁରାମ ତାହା ଅଦଶକଙ୍କ ଠାରୁ ଶିକ୍ଷା ଲାଭ କରିଥିଲେ । ତାଙ୍କଠାରୁ ଦ୍ରୋଣ ଶିକ୍ଷା କରି ସେ ଉକ୍ତ ବିଦ୍ୟା କୌରବ ଏବଂ ପାଣ୍ଡବମାନଙ୍କୁ ଦାନ କରିଥିଲେ । ଅନନ୍ତର ... ଶୀରୁ ଲୁଚିଯାଇ ଥିଲା ।

ବେଳା ପ୍ରସାଦେ ଷକ୍ଷିବୃତ୍ତି ବଂଶଜ । ଏଠାରେ 'ଇଳାପୁତ୍ର
ଐରବଂଶୀୟ ଖାରବେଳ ହେବ ବୋଲି ସ୍ପଷ୍ଟ ଧାରଣା ଅଧୁଅଛି ।
...ହାର ଚର୍ଚ୍ଚା କଲେ ବିଶେଷ ଅର୍ଥଗୌରବ ସୂଚିତ ହେବ ।
ସେଠାରୁ ପାଇକ ବେଶେ ମୁଁ ହେଲି ମର୍ତ୍ତ୍ୟେ ପ୍ରକାଶ
ଏଳା ଧୂଷି ବେଳାମଣ୍ଡନା ମୋତେ କଲେ ପୌରୁଷ ।

ମନେହୁଏ ଏତଦ୍ବାରା ଐତିହାସିକ ସତ୍ୟର ସାକ୍ଷ୍ୟ ପରିଷ୍କାର ହୋଇଯାଇ ଅଛି । ସେ ବିସ୍ତୃତ ରଚନାକୁ ତତ୍ତ୍ୱପ୍ରେମୀ ପାଠକମାନେ ପଢ଼ି ଦେଖିଲେ ତାହା ସହଜରେ ହୃଦୟଙ୍ଗମ କରି ପାରିବେ ।

ଏହି ଗ୍ରନ୍ଥର ଅନ୍ୟ ଏକ ସ୍ଥାନରେ ଅଛି
ତତ୍‌କ୍ଷଣରେ ମୃନ ଜେର ରଖିଥାଏ ଷକ୍ଷି
ବଙ୍ଗଧୋଷ କରୁ ବୀର-ବିଦ୍ୟା ନ ଜାଣନ୍ତି ।
ଫଡ଼ରେ ଲଗିବୁ ଛାଇ ଅଣ୍ଟା ଜାନୁ ଜଙ୍ଘ
ବାଡ଼ ଖଣ୍ଡା ତରବାରି ମାରିଦେବେ ଜଗ ।

ଏହି ବଙ୍ଗଧୋଷର ଅର୍ଥ ଐତିହାସିକ ପଣ୍ଡିତମାନେ ସ୍ଥିର କରିବେ ବୋଲି ଆଶା କରୁଯାଏ ।

ପାଇକମାନଙ୍କ ମଧ୍ୟରେ ଜାତି ଏବଂ ଦଳ ଯେକ ଅନେକ ସମୟରେ
ଉପସ୍ଥିତ ହୋଇଥାଏ । ବାଡ଼ରେ, ଖଣ୍ଡାରେ, କୁନ୍ତରେ, ଢ଼ାଲରେ
ହୁଏ, ତା ପୂର୍ବରୁ ଏକ କଳ ଲାଗେ । ସେ କଳର କେତେକ
ଗୀତରେ ସନ୍ନିବେଶିତ ରହିଅଛି ।

ଅଡ଼ଣ କାଡ଼ଣ ହେବ
ସରକ ଯାଇ ପଛକୁ ଦୂଷିବ ରେ
ଏକା ମାଇବନ୍ଧର ସ୍ତମ୍ଭିବ, ବୀର ରେ ।

× ×

ଛାଡରେ ଚପିବ କାଢ଼
ତାହାରବ ପିତ୍ତ କରବୁ ବାଣ୍ଡ ରେ
ଛଣ୍ଡିପିବ ତୋର ସବୁ ଅନ୍ତ, ଖାର ରେ ।
କୁମ୍ଭୀର ଶତ ତନସ୍ୱେ
ବ୍ୟାଘ୍ର କାତ ବଲ୍ଲ ପାଞ୍ଚ ଯେ ପୋୟେ ରେ
ଏକା ସିଂହକୁ ସମାନ ନୁହେଁ, ଖାର ରେ ।
କପୋତ ଡମ୍ବ ଫୁଟାଇ
ସଞ୍ଚାଣ ହେବାର ଦେଖିଚ କାହିଁ ରେ
ତୁମ୍ଭେ ବୋଲଅ ବଣ ବଳେଇ, ଖାର ରେ ।

ତା ଛଡ଼ା ପାଏକ ଖେଳରେ ଦୁଇଦଳ ମଧ୍ୟରେ ଯେଉଁ ସବୁ ପ୍ରଶ୍ନ ଉତ୍ତର ହୋଇଥାଏ ତାହା ଅଗୁଳ ଏବଂ ଫିଠାଣ ନାମରେ କଥିତ ହୁଏ । ଏସବୁ ଶବ୍ଦ ସହିତ ଯୁଦ୍ଧ କରିବା ସମସ୍ୟା ପୈନ ଉଶତ ନୁହେ । ପାଏକ ଜୀବନର ନାନା କ୍ରୀଡ଼ା କୌତୁକ ମଧ୍ୟରେ ସାମରିକ ପଦ୍ଧତି ଯେନ ଏତଦ୍ଦ୍ୱାରା ସାଧାରଣ ଜ୍ଞାନ ବୃଦ୍ଧି କରାଯାଇଥାଏ ।

ପାଏକମାନଙ୍କ ବ୍ୟତୀତ ଦୋଳପୂର୍ଣ୍ଣିମୀରୁ ଗୋପାଳ ଯାଦବମାନେ ବାଡ଼ି ଖେଳରେ ନିଜର ସାମରିକ କୃତିତ୍ୱ ଦେଖାଇ ଯେଉଁ ସବୁ ସଙ୍ଗୀତ ଗାନ କରିଥାନ୍ତି ତାହାର ବହୁଦଂଶ ଏହି ସମର ବୋଲି ଅନ୍ତର୍ଗତ କରାଯାଇଅଛି । ଯାଦବମାନେ ପାଏକମାନଙ୍କ ପରି ନୃଶଂସ, ଦୃଢ଼, ଜିଦଖୋର ନୁହନ୍ତି । ସାଧାରଣ ସରଳତା ମଧ୍ୟରେ ଆତ୍ମରକ୍ଷାର ଉଦ୍ୟମ ଏହି ବାଡ଼ି ବୁଲାଇବା ବିଦ୍ୟାରୁ ସେମାନଙ୍କଠାରେ ସମ୍ଭବ ଥିବାର ଜଣା ଯାଇଥାଏ ।

ଧୁଳିଅାଁ, ଦଶହରା, ଦୋଳପୂର୍ଣ୍ଣିମୀରୁ ଖାରବାଜା ବଜାଇ ପାଏକମାନେ ପଲ୍ଲି ଗ୍ରାମ ଦାଣ୍ଡ ଦେଇ ଯେତେବେଳେ ଦଳଦଳ ହୋଇ ଦାଣ୍ଡୁଅଳ ଗାଇ ଅସ୍ତ୍ର ଶସ୍ତ୍ରର ଝନତ୍କାର ମଧ୍ୟରେ ଗତି କରି ଯାନ୍ତି, ସେତେବେଳେ ଘରେ ଘରେ ଅନନ୍ଦ ଖେଳଯାଏ । ବ ଏକ ଅଭୁତପୂର୍ବ ପ୍ରକମ୍ପ ଆସି ଗ୍ରାମକୁ ଚମତ୍କୃତ କରିଦିଏ ।

ପାଏକ ଦଳ ଅସିବେ ବୋଲି ଗ୍ରାମ୍ୟ ଦାଣ୍ଡ ଚକଚକ ହୋଇ ଶୋଭା ପାଉଥାଏ । ଶିଶୁମାନେ, ଯୁବକ ଯୁବତୀମାନେ ସମସ୍ତେ ସୁବେଶିତ ହୋଇ ଥାନ୍ତି । ସେ କାଳର ସେନାପତି, ସଗ୍ରାମସିଂହ, ଦଳବେହେରାଙ୍କ ବଂଶଧରମାନେ ଅଶ୍ୱ ପୃଷ୍ଠରେ ବଇକ ଦଳର ପଛୁଅର ଯିବା ପରେ ଅସିଯାନ୍ତି । ଗ୍ରାମ ଦାଣ୍ଡର କେତେ କାଗା ଲିପା ହୋଇ ଗୋଟିଏ ଗୋଟିଏ ଖଣ୍ଡ ଧୈଁଆଟାଳ ମୁରୁକ ଡଡା ମଧ୍ୟରେ ରଖାଯାଇଥାଏ । ସେନାପତି ସେ ଗୋଟାଳ ଗୁଡ଼ାକୁ ଶିକ୍ଷିତ ଅଶ୍ୱପୃଷ୍ଠରେ

ଆଉ ଶ୍ରାବଣ ଗଛରେ ଯିବାବେଳେ ଇନ୍ଦ୍ରଜାଲ ପରି ଉଠାଇ ନେଇଯାନ୍ତି ଯେପରି, ଫେରନ୍ତି ସେପରି ଥୋଇ ଦେଇ ଚାଲିଯାନ୍ତି । ଗାଁ ଲୋକେ ଦଳ ଦଳ ହୋଇ ଏ ସାହସିକତାର ପ୍ରଶଂସାରେ ଦଶଦିଗ ମୁଖରିତ କରିଦଅନ୍ତି ।

ଏଣେ ଗ୍ରାମମାନ ପତାକା ଅସ୍ତ୍ର ତୋରଣରେ ଏପରି ସଜ୍ଜିତ ହୋଇଥାଏ ଯେ ପାଏକମାନେ ମଧ୍ୟ ତାହା ଦେଖି ଅଭିଭୂତ ହୋଇଯାନ୍ତି । ଜାତିର ରକ୍ଷାକର୍ତ୍ତା, ଜାତିପାଇଁ ମୁଣ୍ଡ ଦେବା ମହାନ୍ ବ୍ୟକ୍ତିମାନଙ୍କୁ ପଲ୍ଲୀର ନରନାରୀ-ମାନେ ଏକାନ୍ତ ଶ୍ରଦ୍ଧାନ୍ୱିତ ହୋଇ ସେମାନଙ୍କ ଉପରେ ହଳଦୀ ଚାଉଳ, ଦୁବ, କରକୋଳି ପତ୍ର ବୃଷ୍ଟିକରି ଶୁଭ ମନାସନ୍ତି । ଯୁବତୀମାନେ ହୁଳହୁଳି ଧ୍ୱନି କରି ଶଙ୍ଖ ବଜାନ୍ତି । କେଉଁଠି କେଉଁଠି ପାଏକ ଦଳପତିଙ୍କୁ ଘିଅଦୀପଜାଳି ଫୁଲମାଳ ଚନ୍ଦନ ସିନ୍ଦୁରରେ ବନ୍ଦାପନା ମଧ୍ୟ କରାଯାଇଥାଏ ।

ଏ ପ୍ରଥା ୧୯୪୭ ଯାଏ ଗଡ଼ଜାତ ଅଞ୍ଚଳରେ କଥଞ୍ଚିତ୍ ରହିଥିଲା । ଏମନ୍ତକି ସେଯାଏ ପାଏକମାନେ ସେ ଅଞ୍ଚଳରେ ସାଧାରଣ ଆପଦ ବିପଦରେ ଜାତିକୁ ସାହାଯ୍ୟ କରିବାକୁ ପଛଘୁଞ୍ଚା ଦେଉ ନ ଥିଲେ । କେତେକ ଅଞ୍ଚଳରେ ଶିକ୍ଷିତମାନଙ୍କ ବ୍ୟତୀତ ଉକ୍ତ ପାଏକ, ଖଣ୍ଡାୟତ, ଶୂଦ୍ରମାନଙ୍କର ସ୍ୱତ୍ତ୍ୱ ଏବେ ମଧ୍ୟ ନଷ୍ଟଭ୍ରଷ୍ଟ ହୋଇ ନାହିଁ । ସେମାନଙ୍କର ସ୍ୱାମକାନ୍ତ ଗୁଣ ସେହି ପୂର୍ବପରି ଏତେ ଦୁର୍ଦ୍ଦଶା ମଧ୍ୟରେ ମଧ୍ୟ ବଂଚି ରହିଛି । ଆଉ କେତେ ବର୍ଷ ପରେ ଯେ ସ୍ମୃତି ଲୁଚିଯିବ । ଏ ଜାତି ଯେ ଏକ ବୀର ଜାତି ଥିଲା ତାହା ଆମେ ତା'ପରେ ପାସୋରିଯିବା ।

ମନେଅଛି ଶୈଶବରେ ଆମ ଗ୍ରାମଦାଣ୍ଡରେ ଦଳ ଦଳ ହୋଇ ଯେତେ-ବେଳେ ପାଏକମାନେ ଗତି କରନ୍ତି, ତାଙ୍କର ସେହି ବାଦ୍ୟଧ୍ୱନି, ତାଙ୍କର ସେହି ଫଡ଼କାରର ଫଡ଼ଫଡ଼ ଶବ୍ଦ, ଅସ୍ତ୍ରଶସ୍ତ୍ରର ଝନଝନ ସ୍ୱନ, ପାଏକ ଦଳର ବୃହତ ସାଙ୍ଗକୁ ସେହି ବୀର ଶୂର ମୂର୍ତ୍ତିମାନଙ୍କର ଦୃପ୍ତ ସଂଯତ ପଦକ୍ଷେପ ଏବଂ ଗୃହାଣି । କେବେ କେବେ ଦାଣ୍ଡ ଅଳି ସଙ୍ଗୀତର ଆହ୍ୱାନ ଦେହକୁ ଶିହରାଇ ଦିଏ । ଅନ୍ୟ କଥା ଦୂରେଥାଉ ଗୃହକନ୍ଦରା ସୁକୋମଳ-ହୃଦୟା ନାରୀ ତାହା ଦେଖି ଏବଂ ଶୁଣି ତାର ବନ୍ଧନ ଭୁଲିଯାଏ । ଏମନ୍ତ କି ପିଞ୍ଜରାର ଶୁକ ଉଡ଼ି ଯିବାକୁ ଅସମ୍ଭାଳ ହୁଏ ।

ଗ୍ରାମଦାଣ୍ଡର ମଝେ ମଝେ ବାଦ୍ୟଧ୍ୱନି ମଧ୍ୟରେ ତରବାରି ଖେଳ, ବାଡ଼ି ଖେଳ ଆଦି ହୋଇ ଗଲେ ଅସମ୍ଭାଳ ଅବସ୍ଥା ଆସିଯାଏ । ସେ ଠାଣି, ମାଣି, ଗୃହାଣି, ଢଙ୍ଗ, ତେଜ, ସାହସ, ବୋଧ, ଦମ୍ଭ ଦେଖି କିଏ ବା ଲୁଚି ରହିବ ? କୁଳବଧୂନାରୀ କନ୍ୟା ଓ ବଧୂମାନେ ଆସି ଦାଣ୍ଡରେ ଜମା ହୋଇଯାନ୍ତି । ତରବାରି ଚକପରି ଘର ବୁଲେ । ସଗ୍ରାମ ସିଂହ ସାଥିରେ ନବାବ କଲବନ୍ତ,

ବଜ୍ରକବାଟଙ୍କ ସାଥିରେ ଦକ୍ଷିଣ କବାଟ, ମାନସିଂହଙ୍କ ସାଥିରେ ଚମ୍ପୂପତି ଯୁଝନ୍ତି । ମନେ ହୁଏ ଜଣ ଜଣଙ୍କର ଅବା ମୁଣ୍ଡ ଛିଣ୍ଡିଗଲା ? କିନ୍ତୁ ଏ ଯୁଦ୍ଧ ଯେ ଦେଖାଣିଆ ନକଲି ଯୁଦ୍ଧ !

ତାହାକୁ ବଳବନ୍ତ ନ କରି, ଦୀର୍ଘ ଦିବସ ଶିକ୍ଷା ଲାଭରେ ଏବଂ ଜ୍ଞାନାର୍ଜନରେ ବକ୍ର ମେରୁଦଣ୍ଡ ହୋଇଥିବା ଦୁର୍ବଳବୀର୍ଯ୍ୟ ଯୁବକ ବିଦେଶୀ ଭାଷାର ବିଦେଶୀ ସାହିତ୍ୟର ଧମକରେ କଷ୍ଟେ ମଷ୍ଟେ ଏ ରାଜ୍ୟର ଶାସନ ଚଳାଉଛି । କିନ୍ତୁ ତାହାର ଶାସକବର୍ଗ ବୀର ପୁରୁଷ ଭାବରେ ଗଠିତ ହୋଇ ସମଗ୍ର ଜାତିକୁ ବୀର ଭାବରେ ଗଢ଼ିବା କଥା ଏବେ ମଧ୍ୟ ଆମେ ଏହି ସମର କବିତା ଆଲୋଚନା କରି କେବଳ ଆଶା କରିଥାଉଁ ମାତ୍ର ।

## ୧୭ । ନୃତ୍ୟ ଗୀତିକା (ଦଶମ ଖଣ୍ଡ)

ଭାରତର ବିଭିନ୍ନ ଅଞ୍ଚଳର ପଲ୍ଲୀ ନୃତ୍ୟମାନ ବର୍ତ୍ତମାନ ସର୍ବ ଭାରତୀୟ ଭାବରେ ପ୍ରସିଦ୍ଧି ଲାଭ କରିଥିଲେହେଁ, ଦୁଃଖର ବିଷୟ ଯେ ଉତ୍କଳୀୟ ପଲ୍ଲୀର କୌଣସି ନୃତ୍ୟ ପ୍ରତି ଏପର୍ଯ୍ୟନ୍ତ ସାଧାରଣ ଦୃଷ୍ଟି ପଡ଼ି ନାହିଁ । ଗ୍ରାମ୍ୟ ଦଣ୍ଡନୃତ୍ୟ ମଧ୍ୟରେ 'ପତରିସଉରା ନୃତ୍ୟ' ପରି ସୁଶୋଭିତ ମନୋରମ ଭଙ୍ଗୀର ନୃତ୍ୟ ଭାରତବର୍ଷରେ ଅଛି କି ନା କହି ହୁଏ ନାହିଁ । ଦାମ୍ପତ୍ୟ ଜୀବନର ମନୋହାରିତା ସେହି ନୃତ୍ୟର ପ୍ରତି ପଦକ୍ଷେପରେ, ପ୍ରତି ତାଳେ ତାଳେ ଏମନ୍ତକି ଗୀତ ହେଉଥିବା ସଙ୍ଗୀତ ଲହରରେ ଏପରି କମନୀୟ ଭାବରେ ଫୁଟି ଉଠେ, ଦେଖିଲେ ଶୁଷ୍କପ୍ରାଣ ସରସ ହୋଇଯାଏ ।

ଦଣ୍ଡ ନାଚ, ଚୈତିଘୋଡ଼ା ନାଚ, ଡଣକୋଇଲି ନାଚ ଏହିପରି ଛନୋଟି ଅଦମ ନୃତ୍ୟ ବିଶେଷରେ ପଲ୍ଲୀରେ ଦେଖାଯାଏ ।

(କ) ଦଣ୍ଡନାଚ—ମହାବିଷୁବ ସଂକ୍ରାନ୍ତିର ପୂର୍ବ ଦିବସକୁ ଗ୍ରାମମାନଙ୍କରେ ମେରୁ କହିଥାନ୍ତି । ମେରୁ-ମଧ୍ୟାଂଶ, ସୂର୍ଯ୍ୟଙ୍କର ଅବସ୍ଥାନକୁ ଲକ୍ଷ୍ୟ କରି ପଲ୍ଲୀରେ ମେରୁ ଦିବସର ସଞ୍ଜ୍ଞା ନିର୍ଦ୍ଧାରିତ ହୋଇଅଛି । ସେଦିନ ଦଣ୍ଡ ନାଚ ବା ଦଣ୍ଡଯାତ୍ରା ଶେଷ ହୁଏ । କେହି ସେହି ଦିନକୁ ମିଶାଇ ପୂର୍ବରୁ ଏକବିଂଶ ଦିନଠାରୁ, କେହି ତ୍ରୟୋଦଶ, କେହି ନବ, କେହି ତ୍ରିଦିନ ଠାରୁ ଏହି ନୃତ୍ୟର ଆୟୋଜନ କରିଥାନ୍ତି । ଏହି ନୃତ୍ୟରେ ବ୍ରାହ୍ମଣଠାରୁ ଚଣ୍ଡାଳ ଯାଏ ସମସ୍ତେ ଯୋଗ ଦେଇଥାନ୍ତି । ମାଳୀ ଓ ବ୍ରାହ୍ମଣମାନେ ଦେବତା ଶିବ ଏବଂ କାଳୀଙ୍କର ପୂଜାବିଧାନ କରି ସାରିବା ପରେ ଅଖଣ୍ଡ ଅଗ୍ନି ଆରୋପିତ ହୋଇଥାଏ । ଉକ୍ତ ଅଗ୍ନି ସଙ୍କଳିତ ଦିନମାନଙ୍କରେ ଅକ୍ଷୁଣ୍ଣ ରହେ । ଦଣ୍ଡୁଆ ବା ଭୋକତା (ଭୋକ୍ତା) ନାମରେ ଅଭିହିତ ପ୍ରତିଜ୍ଞାବଦ୍ଧ ବ୍ୟକ୍ତିମାନେ ଅଗାଧ ନିଷ୍ଠା ମଧ୍ୟରେ ଏହି

ଅନୁଷ୍ଠାନରେ ଯୋଗ ଦେଇଥାନ୍ତି । 'କଠୋର ଦଣ୍ଡ ସହ ଏହି ବିଧି ରକ୍ଷା କରାଯାଉଥିବାରୁ ଏହା ସମ୍ଭବତଃ ଦଣ୍ଡ ନାମରେ ଅଭିହିତ ଅଟେ ।

ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏହି ନୃତ୍ୟ ଯେନ ଏକ ବିସ୍ତୃତ ପ୍ରବନ୍ଧ ପୁସ୍ତକାକାରରେ ଲେଖିଅଛନ୍ତି । ସେଥିରେ ସେ ଯେଉଁ ଆଲୋଚନା କରିଅଛନ୍ତି— ତନ୍ତ୍ର ସାଧନାରୁ ଅଥବା ସଙ୍ଗୀତ ଶାସ୍ତ୍ରରୁ ଏହାର ଉତ୍ପତ୍ତି ବୋଲି ସେ ପ୍ରମାଣ କରିଅଛନ୍ତି । କିନ୍ତୁ କେତେକ ଅଞ୍ଚଳରେ ପ୍ରାଚୀନ ଦଣ୍ଡୁଆ ଲୋକମାନେ କହିଥାନ୍ତି ଯେ—'ରାମାୟଣ ଯୁଗରେ 'ଶୁଦ୍ରକ' ଅଗ୍ନି ଜାଳି ଉପରକୁ ଗୋଡ଼ ଏବଂ ତଳକୁ ମୁଣ୍ଡ କରି ଯେଉଁ ତପସ୍ୟା କରୁଥିଲେ, ସେତେବେଳେ ବର୍ଣ୍ଣ ଅନୁସାରେ କର୍ମ କରିବାର କଠୋର ପ୍ରଥା ସମାଜରେ ଚଳୁଥିବାରୁ ରାମଚନ୍ଦ୍ର ତାଙ୍କର ମସ୍ତକଚ୍ଛେଦ କରିଥିଲେ । କିନ୍ତୁ ଯାହା ସ୍ରଷ୍ଟା ଏବଂ ଶାସକର ମାନ ଦୃଷ୍ଟିରୁ ସତ୍ୟ, ତାହା ସର୍ବ ସାଧାରଣ ଜନତା ପକ୍ଷରେ ଅସହ୍ୟ ହୋଇ କାଳକ୍ରମେ ଶୁଦ୍ରକ ପ୍ରତି ସମବେଦନା ଦେଖାଇ ଝନିସ୍ୟୁ ବ୍ରାହ୍ମଣେତର ସମାଜରେ ଏହି ତପସ୍ୟାର ଉତ୍ପତ୍ତି ହୋଇଥିଲା ।' କିନ୍ତୁ ଏହି ବିଧି ବର୍ତ୍ତମାନ ସମୟରେ ଏକାନ୍ତ ଗଣତାନ୍ତ୍ରିକ ହୋଇ ଯାଇଅଛି । ଏଥିରେ କେହି ବାଦ ପଡ଼ୁ ନାହାନ୍ତି । ଏବେ ମଧ୍ୟ ନିଆଁରେ ଝୁଲି, ପ୍ରଖର ଖରାରେ ଉତ୍ତପ୍ତ ବାଲି ଉପରେ ନିଆଁ ବେଣ୍ଟିମାନ ସର୍ବାଙ୍ଗରେ ଧରି ଗଡ଼ି ଗଡ଼ି, ଏମନ୍ତ କି ନିଜ ପିଠିରେ ଲୁହାକଣ୍ଟା ଫୋଡ଼ି, ଉପବାସ କାଷ୍ଟରେ ନିରାଧାର ରହି ଏହି ଦଣ୍ଡ-ନୃତ୍ୟ-ବିଧିରେ କଠୋର ଆଚରଣ ଚାଲିଅଛି । ଏମନ୍ତ କି ସେ ବ୍ରତୋପବାସ ଦିନର ରାତିମାନଙ୍କରେ ନୃତ୍ୟ ମଧ୍ୟ କରାଯାଉଅଛି ।

ଏହି ନୃତ୍ୟ ବିଧିରେ ଦୁଇଟି ବେତ ଗୌରୀବେତ ନାମରେ ଅଭିହିତ ହୋଇ ପୂଜା ପାଇଥାନ୍ତି । ପତାକା ପରି ଛୋଟ କନା ସହିତ ଫୁଲହାର କେତୋଟି ସେଥିରେ ଓହଳ ଥାଏ । ମନେହୁଏ ଏ ଦୁଇଟି ବେତ ଶିବଗୌରୀ ଭାବରେ ଅଭିହିତ ଅଟନ୍ତି । କିନ୍ତୁ ଗୌରୀଙ୍କ ନାମରେ ବେଶ ପରିଚିତ ହୁଅନ୍ତି । ଏଣେ କଳା ରୁଦ୍ରମଣି ଭାବେ ଧ୍ୱନି କରାଯାଏ । କଳା—ମହାକାଳ, କି କାଳୀ, କି ନୃତ୍ୟକଳା ବା ଶକ୍ତିକଳା ତାହା ପଣ୍ଡିତମାନେ ସ୍ଥିର କରିବେ । ଶିବଙ୍କର ବନ୍ଦନା କରାଯାଏ । ସୋମନାଥ, ଲୋକନାଥ ଆଦି ଶିବଙ୍କର ଦଣ୍ଡଯାତ ବୋଲି କୁହାଯାଏ । ଏତଦ୍ଦ୍ୱାରା ଶିବଶକ୍ତି ଏହି ଅନୁଷ୍ଠାନର ମୁଖ୍ୟ ବୋଲି ସ୍ପଷ୍ଟ ପ୍ରତିଭୂତ ହୁଏ । କୌଣସି ବିଷ୍ଣୁଙ୍କ ନାମରେ ଦଣ୍ଡନୃତ୍ୟ ଥିବାର ଜଣାଯାଏ ନାହିଁ ।

ଏହି ପରିପ୍ରେକ୍ଷୀରେ ଦଣ୍ଡନୃତ୍ୟର ସାତଟି ନୃତ୍ୟରୁ ବିଭିନ୍ନ କେତୋଟି କବିତା ଦିଆଯାଇଅଛି । ଏହି କବିତାମାନଙ୍କରୁ ଅଧିକାଂଶ ପ୍ରାଚୀନ ଅଟେ । ସାମନ୍ତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନଙ୍କ ନାମରେ କେତେକ ଗୀତ ଥିବାର

ଦେଖାଯାଏ । ତାଙ୍କ ନାମ କେହି ଭଣିତା କରି ଦେଇଥା'ଇ, ଅଥବା ସେ ଏପରି ସଙ୍ଗୀତମାନ ତାଙ୍କର ଅପ୍ରାପ୍ତ ବୟସରେ ଲେଖିଥାଇ ପାରନ୍ତି ।

କବି ପଠାଣି ସାମନ୍ତ

କନ୍ଥା ଖଣ୍ଡପଡ଼ା କବିକୁଳଚନ୍ଦ୍ର ଯେ ଶେଷରେ ଏ ପଦ ଖ୍ୟାତ ।

ସାତଟି ନୃତ୍ୟ ମଧ୍ୟରେ ବୈଷ୍ଣବ, ଯୋଗୀ, ପତରସଉରା, ଦହିଖେଳ, ଚଢ଼େଇଆ, ବାଇଧନ, ବୀଣାକାର ଅଛି । ବୈଷ୍ଣବ ଏବଂ ବାଇଧନଙ୍କର ନୃତ୍ୟକାରିଣୀ ଆବଶ୍ୟକ ନ ଥାଏ । ସେମାନେ ଦାରଣ୍ଡା ଅଟନ୍ତି, କିନ୍ତୁ ଯୋଗୀ ସଯୋଗୀ ଅଟନ୍ତି । ଯୋଗି ଯୋଗିଅଣୀ କାହାରନ୍ତି । ସମାଜରେ ସନ୍ନ୍ୟାସ ପ୍ରତି ଅଧିକ ମମତା ଜାଗ୍ରତ ହେବାରୁ ସେ ପ୍ରଥାର ଉଚ୍ଛେଦସାଧନ ଲାଗି ଗାର୍ହସ୍ଥ୍ୟ ମନେଭାବ ପ୍ରତି ଅଧିକ ଆକର୍ଷଣ ଆଣିବା ଉଦ୍ଦେଶ୍ୟରେ ଏ ନୃତ୍ୟଗୀତ ଏକାନ୍ତ ମନୋରମ ଭାବରେ ରଚିତ ହୋଇଥିବାର ଜଣାଯାଏ । ଗୋଟିଏ ଯୁବତୀ ତାର ସ୍ୱାମୀକୁ ଅନ୍ୱେଷଣ କରୁ କରୁ ଏକ ଯୁବକ ଯୋଗୀକୁ ଗ୍ରାମାନ୍ତରରେ ଭେଟି ଠିକଣା କରେ ଏହି ମୋର ସ୍ୱାମୀ ବୋଲି । ତେଣୁ ଗ୍ରାମ ଲୋକେ ଉଭୟଙ୍କର ପରୀକ୍ଷା ନିଅନ୍ତି । ଶେଷକୁ ନାରୀ ଜୟ କରିଥାଏ ଏବଂ ଯୋଗୀ ତାକୁ ଯୋଗିଅଣୀ ଭାବରେ ବରଣ କରିନିଏ । ଏହି ହେଲା ଯୋଗି ଯୋଗିଅଣୀ ନାଚର ବିଷୟବସ୍ତୁ । ସେହି ନୃତ୍ୟରେ ଯୋଗି ଯୋଗିଅଣୀ ମଧ୍ୟରେ ଏହି ପ୍ରକାର ଉକ୍ତି ପ୍ରତ୍ୟୁକ୍ତି ଶୁଣାଯାଇଥାଏ ।

ଯୋଗୀ— (ତଗ) ଧୁମୁରୁ ଧୁମା
ତଳେ ପାହୁରାଣି ଉପରେ ସମା ।
କୁସୁମ ଫୁଲର କେୟାରି
ଖଣ୍ଡେଦୂର ଯାଇ ଓଢ଼ଣା ପକାଉ
କହ, ମୋହଠାରୁ ନାହିଁ ସଗି ?

(ଗୀତ) କେଉଁ ଦେଶରେ ତୋ ଘର ଲୋ ନାଗରୀ
କେଉଁ ଦେଶରେ ତୋ ଘର,
କେଉଁଠାରେ ମୋତେ ଦେଖିଣ ଥିଲୁ
ବୋଲୁଛୁ ଗିରସ୍ତ ମୋର ଲୋ, ନାଗରୀ ।

ଯୋଗିଅଣୀ—(ତଗ) ଦହିସର ପାଇଁ ମୋ ଘରକୁ ଯାଇ
ପୀରତି ଲାଳସା କଲ ରେ
ପୀରତି କରିଣ ଛାଡ଼ି ପଳାଇଲ
ପୁରୁଷ କେମନ୍ତ ହେଲ ରେ ।

(ଗୀତ) ମୁଁ ତ ଗୋପାଳୁଣୀ ଜାତି ଲୋ ମଉସା
ମୁଁ ତ ଗୋପାଳୁଣୀ ଜାତି
ମୋହ-ରୂପ ଦେଖି ଅମ୍ଭ ଘରକୁ
ଭିକ୍ଷା ମାଗି ଯାଏ କିତି, ଲୋ ମଉସା ।

ଅନ୍ୟାନ୍ୟ ନୃତ୍ୟ ମଧ୍ୟରେ ଜଙ୍ଗଲୀୟ ଶବର ସଭ୍ୟତାର ପତରସଉରା ନୃତ୍ୟର ତାଳେ ତାଳେ ଯେପରି ସଂସାର ଉନ୍ମାଦିତ ହୋଇଉଠେ । ପୁନଶ୍ଚ ଚଢ଼େୟା ନୃତ୍ୟରେ ଚଢ଼େୟା କୃଶଦ୍ୱୀପରୁ ଆସି ପକ୍ଷୀ ଶିକାର କରେ ଏବଂ ସେଥିରେ ଅକ୍ଷମ ହୋଇ ମୃତ୍ୟୁ ପାଏ । ଚଢ଼େଇଣୀ ଦୁଃଖରେ କ୍ରନ୍ଦନ କରିବାରୁ କିପରି ଇଂରେଜ ରାଜତ୍ୱର ଅନ୍ୟାୟ ବିଚାରରେ ପୋଲିସମାନେ ଅଯଥା ଅତ୍ୟାଚାର କରିଥାନ୍ତି, ତାର ବର୍ଣ୍ଣନା ଏଥିରେ ଥାଏ । ଏହା ଅତି ପୁରାତନ ନୃତ୍ୟଗୀତ ସହିତ ବିଷୟବସ୍ତୁ ଅର୍ବାଚୀନ ବୋଲି ଜଣାପାଏ ।

ଦଣ୍ଡ ଖେଳରେ ପଲ୍ଲୀୟ ପ୍ରୀତିର ଆଦର୍ଶ ବର୍ଣ୍ଣିତ ହୁଏ । ଏହା ଏକାନ୍ତ ନୂତନ ଏବଂ ଗୌଡ଼ୀୟ ଗୋସାଇଁମାନଙ୍କ ଆବିର୍ଭାବ ପରେ ଏହାର ଉତ୍ପତ୍ତି ବୋଲି ମନେହୁଏ ।

ବୈଷ୍ଣବ ନୃତ୍ୟରେ ବୈଷ୍ଣବ ନିଗୂଢ଼ ଦର୍ଶନର କଥା କହେ । ଏମନ୍ତ କି ଦେଶର ସମାଜର ନାନା ସୁରୁଚି କୁରୁଚି ଅଂଶମାନ ବିଚକ୍ଷଣ ଅବୃତ୍ତିରେ ଚିତ୍ରିତ କରାଇଥାଏ ।

ବାଇଧନର ବେଶ ପରିପାଟୀରୁ ସେ ଗୋଟିଏ ଗନ୍ଧର୍ବ ବୋଲି ମନେ ହୁଏ । କିନ୍ତୁ ତତ୍ତ୍ୱକଥା, ଦାର୍ଶନିକ ବିଚାର ତାର କେତେକ କବିତାରେ ପ୍ରକାଶିତ ହୋଇଥାଏ । ଅଧିକାଂଶ କବିତାରେ ସେ ପ୍ରଣୟ, ପ୍ରେମ, ବିଦଗ୍ଧ ମନୋଭାବ ଅତି ଚିତ୍ତାକର୍ଷକ ଭାବରେ ବର୍ଣ୍ଣନା କରେ ।

ଏହି ନୃତ୍ୟମାନଙ୍କ ମଧ୍ୟରେ ଅତି ଶ୍ରେଷ୍ଠତମ ନୃତ୍ୟ ବୀଣାକାର । ଏହି ବୀଣାକାର ଯେଉଁ ବୀଣା ଧାରଣ କରେ ତାହା ଏକ କାଣ୍ଡ ବାଉଁଶ ଅକୃତି ଅଟେ । ସେଥିରେ ତାର ଦ୍ୱାରା ଗୁଣ ନିର୍ମିତ ଥାଏ । ଉକ୍ତ ତାରରେ ସାନବଡ଼ ହୋଇ କେତେକ ଘୁଙ୍ଘୁର ଲାଗିୟ ଘଣ୍ଟି ଧାଡ଼ି ଖଞ୍ଜା ଯାଇଥାଏ । ତାକୁହିଁ ଏହି ନୃତ୍ୟରେ ବୀଣା ବୋଲି କୁହାଯାଏ । ମୁଖନିଃସୃତ ଗାନ ସହିତ ଉକ୍ତ ବୀଣାକୁ ବାମ ହସ୍ତରେ ବାମକାନ୍ଧ ଉପରେ ଟେକିଧରି ବୀଣାକାର ତାନମାନରେ ବଜାଇଥାଏ ।

ବୀଣାକାର ଓ ବୀଣାକାରୁଣୀ ପଲ୍ଲୀ ଗ୍ରାମରେ ପଣ୍ଡିତ ଏବଂ ଶାସ୍ତ୍ରକୁଶଳ ବୋଲି ବିବେଚିତ ହୁଅନ୍ତି । ସେମାନେ ନିଜ ନିଜର ପରିଚୟ ଦେବାକୁ ଯାଇ ଗାଇଥାନ୍ତି—

ଅନ୍ତର କଥାଏ ମନରେ ମୋର
ପଚାରୁଛି କହ ନାଗରବର,
ଜ୍ୟୋତିଷ ମତରେ ତୁମ୍ଭେ କି ଜାତି
ମୁଁ ଅଟଇ କେଉଁ ଜାତି ଯୁବତୀ
ରତିଶାସ୍ତ୍ର ମତେ ତୁମ୍ଭ ଅମ୍ଭର
କି ନାରୀଜାତି ପୁରୁଷ ପ୍ରକାର
ଗଣମେଳକ ବୁଝିଲ କିପରି
ମୋର କି ନାମ କି ନାମ ତୁମ୍ଭର
କହିଲେ ଏ କଥା ବାର
ନିଷ୍ଟେ କାନ୍ତ ବୋଲି ପରିଚୟ ପାଇ
ପାଶକୁ ଯିବି ତୁମ୍ଭର ।

ଅଭିଶାପଗ୍ରସ୍ତ ନୃତ୍ୟକୁଶଳ ଗନ୍ଧର୍ବ ଗୃହକୁ ଫେରି ନିଜର ସ୍ତ୍ରୀ ସୁପଣ୍ଡିତା ଭାର୍ଯ୍ୟାକୁ ନିଶାକାଳରେ ଆହ୍ୱାନ କରେ । ନାରୀ ପତିଙ୍କୁ ଏହିପରି ଭାବରେ ନାନା ପ୍ରଶ୍ନ ପଚାରି ବୁଝେ—ସେ ପ୍ରକୃତରେ ତାର ସ୍ୱାମୀ କି ନା ? ପୁରୁଷ ଉତ୍ତର କରେ—

ସର୍ଗ ରେ ଅଦ୍ରା ମିଥୁନ ରାଶିର
କୃତ୍ତିବାସ ନାମ ଅଟେ ମୋହର
ରୋହିଣୀ ବୃଷ ତୋ ନାମ ବୈଦେହୀ
ଦୁହେଁ ଯାକ ନର ଜାତି ରେ ସହି
ମୁଁ ଅଟଇ ମୃଗ ଜାତି ପୁରୁଷ
ହରିଣୀ ଜାତି ତୁହି ନାରୀଈଶ
ମନେ ନ ବହ ସନ୍ଦେହ
ଏ ସବୁ ମଧ୍ୟରେ ଜାଣିଅଛି ମୁହିଁ ଯେ
ଚଞ୍ଚଳ ମୋ ପାଶେ ଅସ ।

ନାରୀ — ସଜ୍ଜନଙ୍କୁ ନିବେଦନ ମୋର
ଯେତେ ପ୍ରଶ୍ନ କଲି ସବୁ ମଧ୍ୟର
ସବୁ ପ୍ରଶ୍ନକୁ ପାଇଲି ଉତ୍ତର
ଏଣୁ ଜାଣୁଛି ମୋର ପ୍ରାଣେଶ୍ୱର
ଏବେ ଯଦି ତାଙ୍କ ପାଶେ ନ ଯିବି
ସ୍ୱାମୀ ଦୋରେହା ହୋଇ ଜାଣିବି
ସ୍ୱାମୀ ସଙ୍ଗତେ ନାରୀ ମାନ କଲେ
ଯେତେ ପୁରୁଷ ନାରୀ ହୁଏ ତେତେ

ବଶିଷ୍ଠ ସଙ୍ଗେ କ୍ରୀଡ଼ ଅରୁନ୍ଧତୀ
ସଗୁଣର ଯୋଗୁଁ ଖ୍ୟାତ କୈବର୍ତ୍ତୀ
ଏତେ ଭୂଷିଣ ପଣ୍ଡିତା ଯୁବତୀ
ସ୍ୱାମୀ ପାଦରେ ସେ କଲ ପ୍ରଣତି
କ୍ଷେତ୍ରବାସୀର ବଚନ
ଶୁଣନ୍ତୁ ସୁଜନେ ଗନ୍ଧର୍ବ ବିଧାନ ଯେ
ଅଛି ଚଞ୍ଚୁଳ ଭ୍ରମେ ଟି ।

ଏହାର ଭାଷ୍ୟ ବା ବିଶ୍ଳେଷଣ ପ୍ରୟୋଜନ ହୁଏନାହିଁ । ଶୁଣୁ ଶୁଣୁ ହୃଦୟଙ୍ଗମ ହୋଇଯାଏ । ଏ କବିତାରୁ ପଲ୍ଲୀବାସୀଙ୍କର ପାଣ୍ଡିତ୍ୟଚର୍ଚ୍ଚା କପର ଇଙ୍ଗିତକୁ ବେଳେ ବେଳେ ଉଲ୍ଲିଖିତ ହୋଇଥାଏ, ତାହା ସହଜରେ ଏଥିରୁ ଧାରଣା କରାଯାଇଥାଏ ।

(ଖ) ଚୈତିଘୋଡ଼ା ନାଚ—ଦଣ୍ଡ ନୃତ୍ୟ ବ୍ୟତୀତ ଉକ୍ତ ଚୈତ୍ର ମାସରେ ଅଶ୍ୱମୁଖୀ ବାସୁଳି ଠାକୁରାଣୀ ନାମରେ କୈବର୍ତ୍ତିମାନେ ଏକ ନୃତ୍ୟ ଗ୍ରାମେ ଗ୍ରାମେ କରିଥାନ୍ତି । ଏ ନୃତ୍ୟ ଅତ୍ୟନ୍ତ ମନୋରମ ହୋଇଥାଏ । ଘୋଡ଼ା ମୁହଁ ଲଗାଇ ଗ୍ରାମଦାଣ୍ଡରେ କେତେ ଜଣ ଏ ନୃତ୍ୟ କରିଥାନ୍ତି ।

ଏ ନୃତ୍ୟରେ ଥିବା ଗାନ ଗୁଡ଼ିକରେ ଅଶ୍ୱମୁଖୀ ବାସେଳି ଦେବୀର ବହୁ ପ୍ରଶଂସା ନିହିତ ଥାଇ ଅନେକ ବିଭିନ୍ନ ଆଲୋଚନା ଶୁଣାଯାଇଥାଏ । ଏହି ଅଶ୍ୱମୂର୍ତ୍ତିର ନିର୍ମାଣ ଏବଂ ବାସେଳି ଠାକୁରାଣୀ ସହିତ ଏହାର କି ସମ୍ପର୍କ ଆଲୋଚନାର ବିଷୟ ଅଟେ । ବୈଦିକ ଯୁଗରେ ଅଶ୍ୱକୁ ଅଶ୍ୱମେଧ ଯଜ୍ଞରେ ପୂଜା କରାଯାଇଥାଏ । ଗ୍ରାମଦେବୀମାନଙ୍କ ପୀଠରେ ମୃତ୍ତିକା ନିର୍ମିତ ଅଶ୍ୱ ସବୁନ ଦେଖାଯାଏ । ଧୀବରମାନେ ଅଶ୍ୱ ମୂର୍ତ୍ତିକୁ କାହିଁକି ପୂଜା କରନ୍ତି ତାହାର ଅନୁସନ୍ଧାନ ହୋଇ ନାହିଁ । କୈବର୍ତ୍ତି ନିଜ ଜନ୍ମ ନେଇ କହେ ।

ସିଂହଳ ଦ୍ୱୀପରେ ଘର
ସିନ୍ଧୁ ବାସେଳିଙ୍କ କଣ୍ଠରେ ବୋହିକୁ
ସିପାହୀ ରେ କଇବ୍ରତ ନାମ ତୋର ।

ଅନୁମାନ ହୁଏ ପୂର୍ବକାଳରେ କଳିଙ୍ଗର ବୋଇତବାହକ କୈବର୍ତ୍ତିମାନେ ଘଟଣା ଚକ୍ରରେ ସିଂହଳ ଦ୍ୱୀପରେ କୌଣସି ଅଦମ ମୂର୍ତ୍ତି ପୂଜାକୁ ନିଜର ଦୁର୍ଭାଗ୍ୟ ସମୟରେ ବରଣ କରି ନେଇ ସୁଖୀ ହୋଇଥିବାରୁ ଏହି ଯାତ୍ରା, ନୃତ୍ୟ, ପୂଜା, ସେମାନଙ୍କ ଭିତରେ ଜାତିଗତ ଧର୍ମ ଭାବରେ ସଞ୍ଚରିତ ହୋଇଅଛି ।

ଏହି ସମ୍ବନ୍ଧରେ କୈବର୍ତ୍ତି ମୁଖରେ ଯେଉଁ ଦାର୍ଶନିକ ଅଂଶ ଶୁଣାଯାଏ ସେଥିରୁ କେତୋଟିର ଉଦ୍ଧୃତ ଉଦ୍ଧରଣ କରାଯାଇ ପାରେ ନାହିଁ । ଯଥା:—

ଏକ ଗ୍ରଚଳରେ ଜଳ ପ୍ରଳୟରେ ପଥର ଯାଉଛି ଭସି
ବାପ ପୁଅ ଦୁହେଁ ଧରି ନ ପାରିଲେ
ସଜନ ରେ
କାନ୍ଦୁଛନ୍ତି କୂଳେ ବସି ।

ବଣ୍ଡିକେର ମାଛ ଘର ଛାଉଅଛି କେନ୍ଦ୍ରିଣ୍ଡି ଭିଡ଼ିଛି ବତା
ବଗ ପକ୍ଷୀ ନେଇ ଛଣ ପକାଉଛି
ସଜନ ରେ, ଚଲଢି ଧରିଛି ଛତା ।
ଅମାପ ଭୁଇଁରେ ଦୋଫେ ବୁଣିଲି ଅଙ୍କୁରୀ ନେଉଛି ଖୁଣ୍ଟି
ହାତ ଗୋଡ଼ ନାହିଁ ଲୁଗା ବୁଣେ ତନ୍ତି
ସଜନ ରେ, ସୂତାରେ ପକାଏ ଗଣ୍ଠି ।
କଣ୍ଡାଲଣ୍ଡିଆରେ ଝିଙ୍କ ପୋଷିଥିଲି ପାଗ ତ ଉଡ଼େଇ ନେଲା
କଞ୍ଚ ବଯାକରୁ ଲଉ କରଡ଼ାରେ
ସଜନ ରେ, ଝିଙ୍କକୁ ଜୋକ ଗିଳିଲା ।
ଚଲକା ପାଣିରେ ଦେଖିଲି ଭସୁଛି ଶୁଖୁଆ ଗାଉଛି ଗୀତ
କଅଁଳେଣ୍ଡି ତଳେ ଅମ୍ବ ଓହଳିଛି
ସଜନ ରେ, ଚନ୍ଦ ହୋଇଛି ଚନ୍ଦନ ।

କିନ୍ତୁ ଦୈବଜ୍ଞିର ଏହି ନିଗୂଢ଼ ଦର୍ଶନର ଟୀକା କେବେ ହେଲେ ହୋଇନାହିଁ । କିନ୍ତୁ ଏ ଗୀତମାନ ଯେତେବେଳେ ଗ୍ରାମ ଦାଣ୍ଡରେ ବୋଲହୁଏ ଗାଉଁଲି ନରନାରୀ ଏସବୁ ସତେ ବୁଝିଲା ପରି ତନ୍ମୟ ହୋଇ ଶୁଣୁଥାନ୍ତି । ଏଥିରେ ଥିବା କଣ୍ଡାଲଣ୍ଡିଆ ଏବଂ ଲଉକରଡ଼ା କଣ୍ଟସ୍ଥ ଦନେ ଐତିହାସିକ ଏବଂ ପତ୍ନତତ୍ତ୍ୱବିଦ୍‌ମାନଙ୍କର ବସ୍ତୁସ୍ଥ ସମ୍ପାଦନ କରିବାର ଆଶା ଥୁଏ ।

(ଗ) ଚଣଡୋଲିଆ ନୃତ୍ୟ—ଅଶ୍ୱିନ ମାସରେ ପାଣ, ତଅଁଳା ଆଦି ଜନମାନେ ସେମାନଙ୍କ ଅରାଧ୍ୟା ମଙ୍ଗଳାଠାକୁରାଣୀଙ୍କ ଘଟ ମସ୍ତକରେ ଧରି ଗ୍ରାମେ ଗ୍ରାମେ ଏକ ନୃତ୍ୟର ଅୟୋଜନ କରନ୍ତି । ସେମାନେ ପଦ ରଚନା କରି ଗଦ୍ୟାବୃତ କବିତାମାନ ଏକ ମନୋରମ ଛନ୍ଦରେ ଗାଇ ପଲ୍ଲିପଥକୁ ମୋହିତ କରିଥାନ୍ତି । ଏ ନୃତ୍ୟ ସହିତ ତାଳ ଲୟରେ ବାଦ୍ୟ ମଧ୍ୟ ବାଜିଥାଏ । ଏହାହିଁ ଚଣଡୋଲିଆ ନୃତ୍ୟ ଭାବରେ ଅଭିହିତ ହୋଇଥାଏ । ଚଣଡୋଲିଆ ଶବ୍ଦର ପ୍ରକୃତ ଅର୍ଥ କଣ ଜଣାଯାଇ ନାହିଁ ।

ଏତଦ୍‌ବ୍ୟତୀତ ପଲ୍ଲିରେ ସ୍ନେହଲୀଳା, କୃଷ୍ଣଲୀଳା, ଭରତଲୀଳା ଆଦି ନୃତ୍ୟ ଗ୍ରୀଷ୍ମ ଏବଂ ବସନ୍ତ ଋତୁରେ ହୋଇଥାଏ । ସେ ସମସ୍ତ ନୃତ୍ୟ ପୋଥିରୁ ଗୀତ ସଂଗ୍ରହ କରାଯାଇଥାଏ ।

## ୧୮—ଯାତ୍ରା ଉତ୍ସବ ଗୀତିକା ( ଏକାଦଶ ଖଣ୍ଡ )

ଯାତ୍ରା ଉତ୍ସବ ଏବଂ ଓଷା ଉପାସ ଗ୍ରାମେ ଗ୍ରାମେ ବର୍ଷର ବାରମାସ ଲାଗି ରହିଥାଏ । ସେ ସବୁରେ ବିଭିନ୍ନ ବାଦ୍ୟର ଧ୍ୱନି, ସେ ସବୁର ସଙ୍ଗୀତର ହିଲ୍ଲୋଳ କାନ ଶୁଭି ପାଇଲେ ପଲ୍ଲୀ ଏଥିକୁ ଆନନ୍ଦ ମୁଗ୍ଧ କରିଦିଏ । ତନ୍ମଧ୍ୟରୁ ବିଶିଷ୍ଟ ଛଅଟି ମାତ୍ର ଉତ୍ସବକୁ ଏ ସଙ୍ଗ୍ରହରେ ରଖାଯାଇଅଛି ।

(କ) ଚନ୍ଦନ ଯାତ୍ରାରେ କେଉଁଠି ଗୋପୀନାଥ, କେଉଁଠି ମଦନମୋହନ, କେଉଁଠି ବିଭିନ୍ନ ଶିବ ମୂର୍ତ୍ତିମାନଙ୍କୁ ନେଇ ପଲ୍ଲୀ ଗ୍ରାମରେ ଅଥବା ବିଶିଷ୍ଟ ଜନପଦମାନଙ୍କରେ ଚନ୍ଦନ ଯାତ୍ରା କରାଯାଇଥାଏ । ଚନ୍ଦନ ଲାଗିର ଚୂଆ ଚନ୍ଦନ ଚର୍ଚ୍ଚିତ, ମଲ୍ଲି, ଜୁଇ ଆଦି ଫୁଲମାଳରେ ଭୂଷିତ ଯୁବକ ଯୁବତୀଙ୍କର ସହସ୍ର ପନ୍ଥୁଅର ଅଙ୍କ ସ୍ୱପ୍ନ ହୋଇ ଗଲଣି । ଚନ୍ଦନଯାତ୍ରା ପାଇଁ ରଚିତ ସଙ୍ଗୀତଟି କେବଳ ସେ ସବୁର ସାକ୍ଷୀ ସ୍ୱରୂପ ହୋଇଅଛି । କିନ୍ତୁ ଚନ୍ଦନଯାତ୍ରା ଏବଂ ଭଉଁରି ଖେଳ ଏବେ ଘରେ ଘରେ ବିଦ୍ୟମାନ ଅଛି ।

(ଖ) ରଥଯାତ୍ରା ପ୍ରତି ପଲ୍ଲୀଗ୍ରାମରେ ହେବାର ସୁବିଧା ନ ଥିଲେହେଁ ତାହା ଉତ୍କଳର ପ୍ରତି ପଲ୍ଲୀଗ୍ରାମର ବିଶିଷ୍ଟ ପର୍ବ ଅଟେ । ଦେବସ୍ନାନ, ଅଣସର, ନେତ୍ର ଅମାବସ୍ୟା, ନେତ୍ରଲାଗି, ଶ୍ରୀଗୁଣ୍ଡିଚା, ଲକ୍ଷ୍ମୀନାରାୟଣ ଭେଟ, ହେରାପଞ୍ଚମୀ, ବାହୁଡ଼ାଦଶମୀ, ଅଧରପଣା, ନୀଳାଦ୍ରିବିଜେ ଏସବୁ ଘଟଣାରେ ଉତ୍କଳର ଆଗ୍ରଣ୍ଡାଳ ବ୍ରାହ୍ମଣ ଏକାନ୍ତ ଅଭ୍ୟସ୍ତ । ଛୋଟ ବଡ଼ଜନ ଶିଶୁଟିଏ ମଧ୍ୟ ଏ କଥା ଜାଣେ । ଘରେ ଘରେ ସମସ୍ତେ ନୂଆଲୁଗା ପିନ୍ଧନ୍ତି ।

ଯେଉଁ ଗ୍ରାମରେ ଜଗନ୍ନାଥ ମନ୍ଦିର ଥାଏ ସେଠାକୁ ସହସ୍ର ସହସ୍ର ନରନାରୀ ଯାଇ ପହଞ୍ଚନ୍ତି । ପ୍ରତି ଉତ୍ସବରେ ଲୋକେ ଯୋଗ ଦେଇ ଠାକୁର ଦର୍ଶନ କରି ଭାବନ୍ତି ତାଙ୍କର ଆଉ ପୁନର୍ଜନ୍ମ ହେବ ନାହିଁ ।

ବିଶେଷରେ ରଥଯାତ୍ରା ସରିବା ଦିନ ଯେଉଁ ଲକ୍ଷ୍ମୀନାରାୟଣ ଭେଟ ହୁଏ, ସେଥିରେ ଦଳେ ଲକ୍ଷ୍ମୀଙ୍କ ପକ୍ଷରେ, ଦଳେ ଜଗନ୍ନାଥଙ୍କ ପକ୍ଷରେ ରହି ସଙ୍ଗୀତ ଗାନ କରିଥାନ୍ତି । ସହସ୍ର ନରନାରୀ ତାଙ୍କ ଜାତିର ପରଣମଣି ତାଙ୍କ ଜୀବନର ଜୀବନ ଦେବତାର ଦାମ୍ପତ୍ୟ ଜୀବନ ଯେନି କଣ ଘଟୁଛି ଅନାଇଁ ରହିଥାନ୍ତି । ବାହାରେ ସମାଲୋଚନା ହେଉଥାଏ—ଏଟା କଣ ଠାକୁରେ ନ୍ୟାଯ୍ୟ କଲେ । ଘୋଷଯାତ୍ରାକୁ ଗଲେ ଭଉଣୀକୁ ସାଥିରେ ଧରି ? ଯୁବା ଭଉଣୀ । ଲକ୍ଷ୍ମୀଙ୍କୁ ସାଥିରେ ନେଇଥିଲେ କଣ ସରିଥାନ୍ତା ?

ଅନ୍ୟ ମୁଖରେ ଶୁଣାଯାଏ—'ଘର ବାହାର ତ ସମାନ ନୁହେଁ ! ସାଙ୍ଗରେ ଦେଢ଼ଶୁର ? କମିତି ଭଲ ତାଙ୍କୁ ନେଇଥାନ୍ତେ ?' ଅପୂର୍ବ ଜନତା

ଅପେକ୍ଷା କରି ଥାଃମଃାନ୍ତି ମାତ୍ର ଅନାଗ୍ରିଆଣ୍ଡି । ପୁଣି କଣ ହେବ ? ଠାକୁରେ ଚନ୍ଦୁଛନ୍ତି । ତେବେ ବି ଠାକୁରାଣୀ କବାଟ ଖୋଲୁ ନାହାନ୍ତି । କିଶୋରୀ କିଶୋରମାନେ ଉତ୍ତେଜିତ ହୋଇ ପଡ଼ନ୍ତି । ସଙ୍ଗୀତ ଶୁଭେ—

ଅଗତ୍ୟର ହୋଇ ଲଳିତା ଦାସୀ
କେତେ ଡାକ ଦିଅ କଳ୍ପୁ ନିବାସୀ
ନିଦ୍ରା ଯାଇଛନ୍ତି ମାଏ ଅମ୍ଭର
ଜଗାଇଁ ପାରିବ ଶକ୍ତି କାହାର
ସେ ରଜାଙ୍କ ଜେମା
କେ ସହି ପାରିବ ତାଙ୍କ ଗାରିମା ।

ପଲ୍ଲିରେ ନାରୀର ଗାରିମା ସର୍ବାଧିକ ଉଲ୍ଲୁଷ୍ଟ ବୋଲି ପ୍ରତିପାଦିତ କରାଯାଏ । ନାରୀର ବନାନୁମତିରେ ପୁରୁଷ ତାର ସାମାଜିକ ଜୀବନ ସ୍ୱତନ୍ତ୍ର ଭାବରେ କେବେ ଅତିବାହିତ କରିବାକୁ ସୁଯୋଗ ଦିଅପାଏ ନାହିଁ । ତେଣୁ ସେ ତାର ଦେବତାକୁ ମଧ୍ୟ ଶାସନ କରିଥାଏ । ରୂପଗର୍ବିଣୀ ଚତୁରୀ ଚନ୍ଦ୍ରମାମୁଖୀ ବଧୂଦଳ ଲକ୍ଷ୍ମୀଙ୍କ ବାର୍ଣ୍ଣିକୁ ଏକାନ୍ତ ପସନ୍ଦ କରି କଳାକୋଳା ଖେଳାଉଥାନ୍ତି । ଏହିପରି ସମୟରେ ଶୁଭେ—

ବୋଇନ୍ତି କମଳା ଶୁଣ ଲୋ ଦାସୀ
ତୁମ୍ଭ ଶ୍ୱଶୁରକୁ ଯେମନ୍ତ ଅସି
ଅମ୍ଭ ନ ଜାଣିବା ପ୍ରାପ୍ୟେକ ହେଉ
ଫେଡ଼ କବାଟ ଅସୁ ମହାବାହୁ
ଫେଡ଼ ବନ୍ଧନ
ତାଙ୍କ ଶ୍ରୀମୁଖ କରିବା ଦର୍ଶନ ।

ଏ କଥା ଶୁଣିବା ବେଳେ ଉଚ୍ଛଳ ଜନସମୁଦ୍ର ଏପରି ଜୟ ଧ୍ୱନି କରନ୍ତି ଶୁଣିଲେ ପଥର ତରଳିଯିବ । ବୁଢ଼ାବୋଢ଼ି କୁହନ୍ତି ଅନେକ ନରନାରୀ—'ଯା ହେବ ଭରସା ନ ଥିଲା । ହେଲେ ବଡ଼ ଲୋକର ବଡ଼ କଥା । ସେ ତ ପୁଣି ବଡ଼ ଲୋକର ଝିଅ । ସହଜେ ଏକେ ସୁନ୍ଦରୀ । ସେ କଣ ଅନ୍ୟାୟ କରିବେ ? ସରଳ ବିଶ୍ୱାସୀ ପଲ୍ଲିବାସୀ ଏ ଘଟଣାକୁ ସତ୍ୟ ମନେ କରେ ।'

ଏତିକିବେଳେ କେତେ ସୁନ୍ଦରୀଙ୍କ ସୁକୋମଳ ପଦଘାତରେ ନେପୁରମାନ ଝୁଣୁଝୁଣୁ ଧ୍ୱନି କରି ଉଠେ । ଭୁଲିତାର ଇଙ୍ଗିତରେ ଯୁବତୀମାନେ ନିଜ ନିଜ ସ୍ୱାମୀମାନଙ୍କ ସହିତ ହଠାତ୍ ଯୁଗଳ ହୋଇଯାନ୍ତି ।

ଆଜ୍ଞା ପାଇ ଦାସୀ ଚଳିଣ ଗଲେ
ଘରେ ଘରେ ମାଏ ବିଜୟେ ହେଲେ

ଅଳପ ହୋଇ ଅଡ଼ଅଣି ଗୃହି
ତିନି ଭୁବନ ଲୋକ ଚନ୍ଦ୍ର ରହି
ବଢେ ଜଗଦୀଶ
ଦେଖି ଆନନ୍ଦ ହୋଇଲେ ତ୍ରିଦଶ ।

ଲକ୍ଷ୍ମୀଙ୍କର ତ୍ରିଭୁବନ ମୋହିନୀ ମୂର୍ତ୍ତି ସିଂହଦ୍ୱାରର ବଜ୍ର କବାଟ ଘୋର ଧ୍ୱନି କରି ଫିଟିଯିବା ମାତ୍ରେ ଆଲୋକମାଳା ମଧ୍ୟରେ ଦିଶିଯାଏ । ପ୍ରଭୁ ପିଢରେ ହୋଇ ଦେଖା ଦଅନ୍ତି । ଶତ ଶତ ଶଙ୍ଖ ବାଜି ଉଠେ । ହୁଳହୁଳିରେ ଗଗନ ପୂରି ଉଠେ । ସେପରି ମହୋତ୍ସବ ଧରଣୀ ବର୍ଷ ମଧ୍ୟରେ ସେହି ଦିନକୁ ଅବା ଦେଖି ଦିଏ । ହଠାତ୍ ସୁନ୍ଦରୀମାନେ ନିଜର ପରମାତ୍ମୀୟ ସ୍ୱାମୀଙ୍କୁ ବାହୁପାଶରେ ଆଶ୍ଳେଷିତ କରି ଭୂମି ତଳେ ସାଷ୍ଟାଙ୍ଗ ହୋଇ ପଡ଼ିଯାନ୍ତି । ଜୟ ଜଗଦୀଶ ହରେ ଧ୍ୱନିରେ ବିଶ୍ୱ କମ୍ପିତ ହୁଏ ।

ଦାମ୍ପତ୍ୟ ଜୀବନରେ ସେପରି ରଜନୀ ଅତି ଦ୍ୱିତୀୟଗାମୀ କେବେ ହୋଇ ନ ଥାଏ ।

ଆମ୍ଭେମାନେ ଆଜି ସାହେବ ମେମ କଥା ଶୁଣି ସ୍ତମ୍ଭିତ ହୋଇଥାଉଁ । କିନ୍ତୁ ଅତୀତରେ ଆମ ଜାତିର ସମସ୍ତେ ତାଙ୍କଠୁ ଅଧିକ ପ୍ରଣୟବନ୍ତ ଜୀବନ ଅତିବାହିତ କରୁଥିବାର ଏପରି ଶତ ଶତ ପ୍ରମାଣ ପଲ୍ଲିଗ୍ରାମରେ ଦେଖାଯାଇଥାଏ ।

(ଗ) କାର୍ତ୍ତିକ ମାସରେ ନବ ବୈଧବ୍ୟ ବିଧୁରା ନାରୀର ରାହି ଦାମୋଦର ଉତ୍ସବ ପଲ୍ଲିଗ୍ରାମକୁ ସଂଯମ ଏବଂ ସ୍ୱାର୍ଥ ବିଲୋପ ପ୍ରତି ଅଧିକ ମମତା ଆଣି ଦେଇଥାଏ । ଏକ ସୁସଜ୍ଜିତ ମଣ୍ଡପ ନିର୍ମାଣ କରି ତହିଁରେ ରାହିଦାମୋଦର ମୂର୍ତ୍ତି ସ୍ଥାପନପୂର୍ବକ ଅତି ସମ୍ଭ୍ରମରେ ଏହି ଉତ୍ସବ କରା ହୋଇଥାଏ । ରାହିଙ୍କୁ ରାଧା ବୋଲି କେହି କେହି କହନ୍ତି । କିନ୍ତୁ ରାହି ନାମକ ଏକ କନ୍ୟାର ଗଳ୍ପ ପଦ୍ୟାକାରରେ ଏହି ଉତ୍ସବରେ ଶୁଣା ଯାଇଥାଏ । କିନ୍ତୁ ବିଧବା ଯେଉଁ ସଙ୍ଗୀତ ଗାନ କରନ୍ତି ସେଥିରେ ରାହିଙ୍କୁ ଲକ୍ଷ୍ମୀ ବୋଲି ବର୍ଣ୍ଣିତ ଥିବାର ଜଣାଯାଏ ।

ପ୍ରକୃତରେ ନାରୀ ବିଧବା ହେବା ପରେ ତାର ସ୍ୱାମୀର ସ୍ମୃତିପୂଜା ଉଦ୍ଦେଶ୍ୟରେ—ଏହି ବ୍ରତ ଏବଂ ଉତ୍ସବ କରିଥାନ୍ତି । ସେମାନେ କାର୍ତ୍ତିକ ମାସରେ ସଂକଳ୍ପ କରି ସାଧାରଣ କେତୋଟି ପଦାର୍ଥ ଗୋଟିଏ ମାତ୍ର ଥର ଭୋଜନ କରନ୍ତି । ଏକାଦଶୀରେ ସମ୍ପୂର୍ଣ୍ଣ ନିର୍ଜଳା ହୋଇ ରହନ୍ତି । ସାଧ୍ୱୀ ପତିବ୍ରତା ବୈଧବ୍ୟମୂର୍ତ୍ତି ପଲ୍ଲିଗ୍ରାମକୁ ଶୁଦ୍ଧ ସାତ୍ତ୍ୱିକ ଭାବରେ ଆଚ୍ଛନ୍ନ କରିଦିଏ । ତାମସିକ, ରାଜସିକ ମନୋବୃତ୍ତି ଦଣ୍ଡକେ କେଉଁଆଡ଼େ ଉଭେଇ ଯାଏ । ପୁଣ୍ୟତମା, ବ୍ରତଧାରିଣୀ ଉପବାସ କ୍ଳିଷ୍ଟା, ବୈଧବ୍ୟ ବିଧୁରା ନାରୀର ପଦରଜ ନେବାକୁ ଗ୍ରାମର ନାରୀଗଣ, ଶିଶୁ, କିଶୋର, ଯୁବକଗଣ ଏମନ୍ତକି ଭିନ୍ନ ଭିନ୍ନ ଜାତିର ବହୁ ନରନାରୀ

ଯାତ୍ରା ପରି ଏକାନ୍ତ ହୋଇ ଯାନ୍ତି । ବ୍ରାହ୍ମଣେତର ନରନାରୀ ପ୍ରତି ଦଶମୀ ଦିନ ହବିଷ୍ୟ ପ୍ରସାଦ ପାଇଥାନ୍ତି । ହବିଷ୍ୟ ପାକ ନିଜେ ବିଧବା ସ୍ୱହସ୍ତରେ ସମ୍ପାଦନ କରିଥାନ୍ତି । ଅରୁଆ ଚାଉଳ, ଗୋଟାମୁଗ, କଦଳୀ, କୁଣ୍ଡି ସାରୁ, ଅଗସ୍ତି ଶାଗ, କଞ୍ଚା କଇଁଆ, ଦହି, ଘିଅ, ଓଳୁ, ସୈନ୍ଧବ ଲବଣ ଏବଂ ନାରିକେଳ ଏହି ଏଗାରଟି ପଦାର୍ଥରେ ହବିଷ୍ୟର ଖାଦ୍ୟ ସୀମାବଦ୍ଧ ଥାଏ ।

ବିଧବାମାନଙ୍କର ମିଳିତ ହବିଷ୍ୟ ଗ୍ରାମର ନିର୍ଜନ ସ୍ଥଳରେ ଥିବା ଅଁଳା ବୃକ୍ଷ ମୂଳରେ ଅଁଳା ନବମୀ ଦିନ କରାଯାଇଥାଏ । ସେ ଦିନ ବିଶେଷ ଉତ୍ସବ କରାଯାଇଥାଏ । ହବିଷ୍ୟ ରନ୍ଧା ସରିଲେ ବିଧବା ଈଶ୍ୱରଙ୍କୁ ଅର୍ପଣ କରିସାରି ଭୋଜନ ଉତ୍ସବ କରିଥାନ୍ତି । ଏହି ହବିଷ୍ୟ ଭୋଜନରେ ଶତ ଶତ ନରନାରୀ କଦଳୀପତ୍ର ପକାଇ ଯେତେବେଳେ ପ୍ରସାଦ ପାଉଥାନ୍ତି ସେ ଦୃଶ୍ୟ ନ ଦେଖିଲେ ସେଥିର ସାତ୍ତ୍ୱିକତା ଅନୁଭବ କରି ହେବ ନାହିଁ । ଶୁଦ୍ଧ ସାତ୍ତ୍ୱିକ ମୂର୍ତ୍ତି ବିଧବାମାନେ ପରଷିବା ଏବଂ ସମଗ୍ର ଜନତା ଏକାନ୍ତ ଅଙ୍କାଧୀନ ବତ୍ସର ଦାସାନୁଦାସ ପରି ନୀରବରେ ସେ ଅନ୍ନବ୍ୟଞ୍ଜନକୁ ମହାପ୍ରସାଦଠାରୁ ଅଧିକ କରି ଭୋଜନ କରିବା ଏମନ୍ତ କି ସଂପୂର୍ଣ୍ଣ ନୀରବତା ମଧ୍ୟରେ ସ୍ଥାନ ପରିଷ୍କାର କରିସାରି ବିଧବାମାନଙ୍କ ପଦତଳେ ପ୍ରଣତି ବିଧାନ କରି ଫେରିବାର ଦୃଶ୍ୟ ବର୍ଣ୍ଣନା କରିବାକୁ ଶ୍ରୋତା ଏକ୍ଷଣି ଉପନ୍ୟାସ ମନେ କରିବେ । କିନ୍ତୁ ଏହା ଧ୍ରୁବ ସତ୍ୟ ବୋଲି ସହସ୍ର ଚକ୍ଷୁ ଦେଖିଅଛି ।

ବିଧବାମାନେ ପ୍ରତ୍ୟହ ଯେତେବେଳେ କଉଡ଼ି ଖେଳ କରିଥାନ୍ତି ସେତେବେଳେ ଗ୍ରାମର ଶିଶୁ, କିଶୋର ଏବଂ କିଶୋରୀମାନଙ୍କର ଖୁସିର ଭିଡ଼ ହୁଏ । କିନ୍ତୁ ସମସ୍ତେ ନୀରବ ଥାନ୍ତି । ଯେପରି କିଏ କଠୋର ନିୟମରେ ସେମାନଙ୍କୁ ଅଭ୍ୟସ୍ତ କରି ଦେଇଛି । ସେଇ ବିଧବା ସମ୍ମୁଖରେ ସମସ୍ତେ ନିର୍ବାକ୍ ଏବଂ ନତ । ବିଧବା ମୁଖରୁ ସଙ୍ଗୀତ ଶୁଭେ—

ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ତହିଁ ଚନ୍ଦନ କୋଠି  
ରାଧାଦାମୋଦର ଖେଳନ୍ତି ହସ୍ତେ କଉଡ଼ି ମୁଠି ।  
ଏକ ମୁଠି ଜୁଆ ଖେଳନ୍ତେ ପ୍ରଭୁ ହୋଇଲେ ଧନ୍ଦା  
ହସି କମଳିନୀ କହନ୍ତି ଦିଅ ମୁକୁଟ ବନ୍ଧା ।

ଏହିପରି ଭାବରେ ପ୍ରଭୁ ଦାମୋଦର ଥରକୁ ଥର ହାରି କୁଣ୍ଡଳ, ହାର, ଫେଟା, ମୁଦି, ପାଦୁକା ହରାନ୍ତି । ଶେଷଥର ନିଜେ ବନ୍ଦି ରହନ୍ତି ।

ସାତମୁଠି ଜୁଆ ପଡ଼ନ୍ତେ ପ୍ରଭୁ ହୋଇଲେ ଧନ୍ଦା  
ହସି କମଳିନୀ କହନ୍ତି ତୁମେ ରହିଲ ବନ୍ଦା ।

ଏହାପରେ ଅଳିମାନେ ଅନୁରୋଧ କରିବାରୁ ରାଇ ତାଳିମାରି ହାରିଲ ହାରିଲ କହି ସବୁ ଇଳିଷ ଫେରାଇ ଦିଅନ୍ତି । କିନ୍ତୁ ତାଙ୍କର ଶ୍ରୀଅଙ୍ଗକୁ ବନ୍ଦ କରି ରଖନ୍ତି ।

ମୁକୁଳାଇ ଦିଅ ବୋଲି କହୁଛନ୍ତି ଅଳି
ହାରିଲ ହାରିଲ ବୋଲି ରାଇ ମାରେ ତାଳି
ପ୍ରଭୁ ହାରିଲ ହେ, ମାଧବ ହାରିଲ
ତୁମ୍ଭେ ତ ମୋହପାଶରେ ବନ୍ଧା ଯେ ରହିଲ ।

ସ୍ୱାମୀଙ୍କର ସମସ୍ତ ସମ୍ପଦରୁ ଦୂରରେ ରହି କଠୋର ତାସ୍ୟା ମଧ୍ୟରେ ବିଧବା ତାର ଜୀବନ ଅତିବାହିତ କଲେହେଁ ତାର ସ୍ୱାମୀ ଯେ ତାର ହୃଦୟରେ ବନ୍ଧ ଅଛନ୍ତି ଏହା ସେ ଭୁଲି ପାରେ ନାହିଁ । ଜନକନନ୍ଦିନୀ ବାଲ୍ମୀକି ତପୋବନରେ, ଅଶୋକ କାନନରେ ରାମଙ୍କୁ କେବଳ ସଙ୍ଗ ଦେଖିଥିବା କଥା ବର୍ଣ୍ଣିତ ଅଛି । ପଲ୍ଲୀର ବିଧବା କହିଥିବା ଯାଏ ତାହାହିଁ ଦେଖିଥାଏ । ସେ ଏହିପରି ଭାବରେ ଅତୀତର ଶାସ୍ତ୍ରକାରମାନଙ୍କୁ ତାର ପୂର୍ବଜାମାନଙ୍କୁ ସ୍ୱୀକାର କରିଥାଏ ।

ନାର୍ଯ୍ୟା ପତିର୍ଗତି ର୍ଭର୍ତ୍ତା ତପସ୍ତ ପରମଂ ପତିଃ
ଦୈବତଂ ଗୁରୁଭର୍ତ୍ତାଷ୍ଟ ପତିଂ ସ୍ତ୍ରୀଣାଂ ପରଂପଦଂ ।
ନ ପିତା ନାତ୍ମଜୋନାତ୍ମ ନ ମାତା ନ ସଖୀଜନଃ
ଇହ ପ୍ରେତ୍ୟ ଚ ନାରୀଣାଂ ପତିରେକୋ ଗତିଃ ସଦା ।
ପ୍ରଥମଂ ସଞ୍ଚିତା ଭର୍ତ୍ତା ପତିଂ ପ୍ରେତ୍ୟ ପ୍ରତୀକ୍ଷତେ
ପୂର୍ବ ମୃତଞ୍ଚ ଭର୍ତ୍ତାରଂ ପଶ୍ଚାତ୍ ସାଧ୍ୱୀନୁଗଚ୍ଛତି ।

(ଗ) ଉମାକୁଣି ଠାକୁରାଣୀ ଅରଣ୍ୟରେ ଥାନ୍ତି । ତାଙ୍କର ସେବିକା ଜଣେ ବୃଦ୍ଧା ହରିଜନ ସ୍ତ୍ରୀ ଏକ ପୁଷ୍ପମଣ୍ଡିତ ତାଳପତ୍ର ଛତା ଧରି ଦୁଇଟି ସୁବେଶିତା ସୁନ୍ଦରୀ କିଶୋରୀ କନ୍ୟାଙ୍କ ସାଥିରେ ଚୈତ୍ର ବସନ୍ତ ଆରମ୍ଭରେ ପଲ୍ଲିପଥରେ ଦେଖାଯାନ୍ତି ।

ବୃଦ୍ଧା ଗାଇ ଉଠନ୍ତି—

ଅଲେ ଥାନପତି ନାମେ ଖେଳବ, ଯୋ
ଅଲେ ଗ୍ରାମଦେବତୀ ନାମେ ଖେଳବ, ଯୋ ।
ଅଲେ ଉମାକୁଣି ନାମେ ଖେଳବ, ଯୋ
ଅଲେ ବୁଢ଼ା ବୁଢ଼ୀ ନାମେ ଖେଳବ, ଯୋ ।

ବୃଦ୍ଧା ପ୍ରତି ଗୀତ ଗାଇ ଚାଲନ୍ତି ଅଳସ ମୁଖପଦ୍ମରେ । କିଶୋରୀ ଦୁଇଟି ପଦ ଗାନ ଶେଷରେ ବୀଣାଝଣା ସ୍ୱନରେ ସ୍ୱୀକୃତି ଦିଅନ୍ତି—'ଯୋ' । ଏହି

‘ଯୋ’—‘ଗା’ ବା ଅଞ୍ଚଳବାଚକ ବା କଣ ତାହା ବିଚାରିବାର କଥା । ବୁଢାଙ୍କୁ ଜାତି ବର୍ଣ୍ଣ ନିର୍ବିଶେଷରେ ଜୁମାକ୍ରଣୀ ଠାକୁରାଣୀ ବୋଲି ସମସ୍ତେ ସ୍ୱୀକାର କରନ୍ତି । ଏମନ୍ତ କି ଉଚ୍ଚବର୍ଣ୍ଣ ବ୍ରାହ୍ମଣପତ୍ନୀ ମଧ୍ୟ ତାଙ୍କର ବନ୍ଦାପନା କରିଥାନ୍ତି ।

ବୁଢାଙ୍କ ତୁଣ୍ଡରୁ ଅମ୍ବ, ପଣସ, ମହୁଲ ଆଦି ଫସଲ ଅସିବାର ଭବିଷ୍ୟତ ବାଣୀ ସଙ୍ଗୀତରେ ଶୁଣାଯାଇଥାଏ । ଜଙ୍ଗଲ ଉଦ୍ଧ୍ୱ ହେବା—ନ ହେବା, ବାଢ଼ି ବସନ୍ତ ଉତ୍ପାତ ଏ ସମ୍ମୁଖରେ ଅଛି କି ନା ଏ ସମସ୍ୟାର ନିର୍ଦ୍ଦିଷ୍ଟ ଖବର ତାଙ୍କଠୁ ଶୁଣାଯାଏ । ବୋଙ୍ଗପୂଜାର ଗୃଣ୍ଡ ଲକ୍ଷାର ଏମାନେ ବଂଶଧର ନୁହନ୍ତି ବା କଏ କହିବ ? ଶୁଣାଯାଏ ଦିନେ ରାତି ଅର୍ଦ୍ଧରେ ଠାକୁରାଣୀ ତାଙ୍କର ଭକ୍ତ ସେବକ ପାଠରେ ଅବତୀର୍ଣ୍ଣ ହୋଇ ସମସ୍ତ ବୃତ୍ତାନ୍ତ ଜଣାଇଥାନ୍ତି ଅଥବା ସ୍ୱପ୍ନରେ ସମସ୍ତ ତଥ୍ୟ ବର୍ଣ୍ଣନା କରିଥାନ୍ତି ।

ଫାଲଗୁନ ପୂର୍ଣ୍ଣମୀକୁ ଫଳିତ ସୂତ୍ର ଧରି ଜ୍ୟୋତିଷ ଯେପରି ବର୍ଷର ଫଳାଫଳ ଭାଷଣ କରିଥାନ୍ତି, ସମ୍ଭବତଃ ଏହି ପଲ୍ଲୀନାରୀ ପରମ୍ପରା ସୂତ୍ରରୁ ଧ୍ୟାନ ଏବଂ ସ୍ୱପ୍ନର ସଫଳ ଯେନ ଫସଲ ବର୍ଷର ଫଳାଫଳ ପଲ୍ଲୀବାସୀଙ୍କୁ ଏତଦ୍ୱାରା ଜଣାଇ ଦେଇଥାନ୍ତି ।

ପଲ୍ଲୀପଥ ଆନନ୍ଦ ବହୁଳ ହୋଇ ଉଠେ । ହଳଦି ଗୋଳିଥିବା ପାଣି କୁଣ୍ଡରେ ଧରି, ହଳଦିଆ ଅରୁଆ ଚାଉଳ ସଜାଡ଼ି ଗୃହିଣୀମାନେ ଅପେକ୍ଷା କରି ରହନ୍ତି । ଗୋଟିଏ ଘରୁ ଜୁମାକ୍ରଣୀ ବିଦା ହେଲେ ଆର ଘର ମୁହୂର୍ତ୍ତେ ଅପେକ୍ଷା ନ କରି ତାଙ୍କର ବନ୍ଦାପନାରେ ଲାଗିଯାଏ । ତାଳଛତା ଉପରକୁ ହଳଦପାଣି ଛାଟିଦେଇସାରି ତା ପରେ ହଳଦିଆ ଚାଉଳ ବୃଷ୍ଟି କରି ଦିଆଯାଏ । ହଳଦପାଣି ଏବଂ ହଳଦିଆ ଚାଉଳ ଦ୍ୱାରା ଶସ୍ୟ, ଫସଲ ଆଦିରୁ କୀଟସବୁ ଦୂର ହୋଇଥାନ୍ତି । ତେଣୁ ଫସଲ ଦେବତାଙ୍କ ପୂଜାରେ ସେହି ରୋଗ ନିବାରକ ହରିଦ୍ରାର ବ୍ୟବହାରର ସଙ୍କେତ ଏତଦ୍ୱାରା ଦିଆଯାଇଥାଏ ।

ବିଚକ୍ଷଣା ସୁନ୍ଦରୀ ପଲ୍ଲୀନାରୀଙ୍କୁ ଦେଖିଦେବା ମାତ୍ରେ ଜୁମାକ୍ରଣୀ ଗାନ ଧରନ୍ତି—

ମାଲେ ହାତକୁ ସୁବର୍ଣ୍ଣବାହୁ ଦେବୁ, ଯୋ<br>
ମାଲେ କୋଳକୁ ସାତ ନନ୍ଦନ ଦେବୁ, ଯୋ ।<br>
ମାଲେ ଯୁଗେ ଯୁଗେ ସ୍ୱଚ୍ଛନ୍ଦ କରେଇବୁ, ଯୋ<br>
ମୋ ମାଅଙ୍କୁ ସୁଦୟା କହୁଥିବୁ, ଯୋ ।<br>
ମାଲେ ମୋ ମାଅଙ୍କୁ ଛତା ଅଢୁଆଳରେ ରଖିବୁ, ଯୋ<br>
ମାଲେ ଘଣ୍ଟା ଘୋଡ଼େଇ ରଖିବୁ, ଯୋ ।

ମାଳେ ଯମ ଦଣ୍ଡ ପଡ଼ିବ ନାହିଁ, ଯୋ
ମାଳେ ରାଜଦଣ୍ଡ ପଡ଼ିବ ନାହିଁ, ଯୋ ।
ମାଳେ ଖମାର ଅମାର ଭରିଦେବୁ, ଯୋ
ମାଳେ ଢୋଲ ଖଇଡ଼ଆ ପୂରେଇ ଦେବୁ, ଯୋ ।

ସେ ମଧ୍ୟ ବର୍ତ୍ତନ ଶସ୍ୟ ସମ୍ବନ୍ଧରେ କେତେକ ଭବିଷ୍ୟତ୍ ବାଣୀ କହୁଥାନ୍ତି । ଏ ବିଶ୍ୱାସ କେଉଁ ଅନାଦି କାଳରୁ ଚଳି ଆସୁଅଛି ।

(ଛ) ଗୃହେଚର—ଗାଁ ଦଅଁ ବୃଷଭ ଉପରେ ଚଢ଼ି ବା ବିମାନରେ ଚଢ଼ି ବାହାରି ପଡ଼ିଲେଣି । ମାଳୀ ବା ପଣ୍ଡା ସଞ୍ଜବେଳୁ କହି ଯାଇଛନ୍ତି ଆଜ ଲୋକନାଥ ବା ଗୋପୀନାଥ ବିଜେ ହେବେ । ଉଖୁଡ଼ା, ମୁଆଁ, ବାଗିଖଜା, ଛଅଁର ସରିଛି । ସାତଥର ନିପଟଳ କରି ଗୃହଭାମାନ ଧୁଆଧୋଇ ହୋଇ ତା' ଶୁଖିବା ପରେ ସେଥିରେ ସବୁ ସାଇତା ହୋଇଛି । ଦହି, ଛେନା, କଦଳୀ ଯାହା ଯାହା ଭୋଗ ଦଅଯିବ ସବୁ ସଜଡ଼ା ହୋଇ ଭାଡ଼ି ଉପରେ ଥୁଆ ହୋଇଛି । ପୁଅ ଝିଅଙ୍କ ନିଦ ହୋଇ ଯାଇଛି । ସମସ୍ତଙ୍କର ଡାକରି ଶମ୍ଭୁଚିହେଲେ ମଜେ ମାଆ ଉଠେଇବ ।

ଗୃହିଣୀଙ୍କର ଛଇନିଦ ବେଳେ ଘଣ୍ଟମାଡ଼ ଶୁଭିଗଲା । ଆଖି ପିତୁଳାକେ ଚକ୍ ଚକ୍ ସଫା ପିଲାସକଳରେ ଘିଅ ବଳିତାର ଅଲ୍ପ ଜଳିଉଠିଲା । ପିଲାଏ ଘିଡ଼ିଭିଡ଼ି ହୋଇ ଉଠି ପଡ଼ିଲେ । ଗୃହସ୍ଥିତ ଘଣ୍ଟ ବଜାଇବାକୁ ଠାକୁରଙ୍କ ସାଥିରେ ? ସବୁ ଆୟୋଜନ କରିବେ ଘରଣୀ । ପିଲାଙ୍କ ହସ ହସ ମୁହଁରେ କୁଡ଼ିଆଘର ହସି ଉଠୁଥାଏ । ଘରଣୀ ଆଜ ଏକାନ୍ତ ଅନନ୍ଦରେ ଅଧୀର ଯେ ଆଜ ତାଙ୍କ ଦ୍ୱାରକୁ ତାଙ୍କ କୁଳର ତାଙ୍କ ଗ୍ରାମର ଇଷ୍ଟଦେବତା ବିଜେ ହେବେ । ସଫା ତାଙ୍କ ଦୁଆରକୁ ଅସିବେ । ପ୍ରଭୁ ଗମ୍ଭୀର ଭିତରେ ଥିବା ରତ୍ନସିଂହାସନ ଛାଡ଼ି ଗରିବ ଦୁଆରକୁ ଅସିବେ । ଓହୋ—କି ସୌଭାଗ୍ୟ ।।

ଦନଯାକ ଲାଗି ପିଲେ ଦାଣ୍ଡ ପାଖ ଓଳେଇ ସଫା କରିଛନ୍ତି ଯେ ଭାତ ବୁଢେ଼ଇ ଖାଇ ହେବ । ପିଣ୍ଡାପଦ୍ମଣ୍ଡ ଲିପି ଝକଝକ କରିଛନ୍ତି । ଯେଉଁଠି ମହାମହମାମୟ ଦଅଁ ଭୋଜନ କରିବେ, ସେଠାରେ ଚିତା, ମଣ୍ଡଳମାନ ବଡ଼ ସତର୍କତାରେ ଅଙ୍କନ କରାଯାଇଛି । ଘଣ୍ଟମାଡ଼ ପାଖେଇ ଅସୁଛି । ପିଲାଏ ଉଚ୍ଛଳ—ଏତେ ଉଚ୍ଛଳ ଯେ ତାଙ୍କର ଛାତି ଉଠୁଛି ଅଉ ପଡୁଛି । ତାଙ୍କ ଦୁଆରକୁ ଆଜ ମହାପ୍ରଭୁ ବିଜେ ହେବେ । ଚଞ୍ଚଳଅ ପିଲାଏ ଦାଣ୍ଡକୁ ଦଉଡ଼ଯାଇ ନୂଆ ନୂଆ ଖବର ପ୍ରତି ମୁହୂର୍ତ୍ତରେ ଜଣାଉଛନ୍ତି—'ମାଆ, ଠାକୁର ଏତେ ଦୂରରେ ଅସି ହେଲେଣି ! ତାଙ୍କ ବୃଷଭ ଉପରେ ଚମ୍ପାଫୁଲର ଝରା ଉଠୁଛି ଅଉ ପଡୁଛି । ମାଆ ହେ, ଯୋଡ଼ି ସୁନ୍ଦର ଦେଖାଯାଉଛି, କଣ କହିବୁଁ ?

ଏହିକ୍ଷଣେ ହଠାତ୍ ଗୃହିଣୀଙ୍କ କାନରେ ଶୁଭଯାଏ—

ଯେଉଁଠା ମନରେ ଏତେ ରେ ସଖି ଘୋର ଅରଣ୍ୟ ବନସ୍ତେ
ଘନଶ୍ୟାମ ଚନ୍ଦ୍ରମୁଖ ମୁହଁ ଥିଲେ ବଇକୁଣ୍ଠ ଛର କେତେ ରେ ।
ଯା ଯା ଘଣ୍ଟ ଯା ଯା
ନେଲଅ ପୋଖରୀ ଗୋଳଅ କର, ଯା ଯା ଘଣ୍ଟ ଯା ଯା ।

'ଠାକୁର ବଜେ ହୋଇଗଲେ । ପିଲ୍‌ସଜ ବେଗେ ଅଣ—ବେଗେ ଅଣ । କ୍ଷେଗ ବେଗେ ବାଡ଼, ବେଗେ ବାଡ଼ ।' ଏହାପରେ କ୍ଷେଗ ସରିଲା । ବୃହସ୍ପତିର ସମସ୍ତେ ଗଳଲଗ୍ନ ଭାବରେ ଶିଶୁଟିମାନଙ୍କୁ ଧରି ଭୂମିରେ ସାଷ୍ଟାଙ୍ଗ ନତ ହେଲେ । ଯେପରି ଆଶୀର୍ବାଦ ସ୍ୱର୍ଗରୁ ଝରି ଆସିଲା । ଗୃହସ୍ଥର ଦମ୍ଭ ଏବଂ ଭରସା ଆସିଗଲା ମୋର ବିପଦ ସମ୍ପଦରେ ମହାପ୍ରଭୁ ଅଛନ୍ତି । ଏହି ହେଲା ପଲ୍ଲିର ଗୃହେର ଉତ୍ସବ । ସେଥିରେ ଘଣ୍ଟ ମାଡ଼ରେ ଗାନ କରାଯାଉଥିବା ଗୀତମାନଙ୍କୁ ଗୃହେର ଗୀତ ।

ଏହି ଘଣ୍ଟମାଡ଼ର ଗୀତମାନଙ୍କୁ ପରବର୍ତ୍ତୀ ଘଣ୍ଟାରବ ଛନ୍ଦ ଅଟେ । ବିଶେଷରେ କଣ୍ଠେଶ୍ୱରଙ୍କ ମେଳ ଗୀତକାରେ ଥିବା ଦୋଳଗୀତ ଏବଂ ଗୋଠ-ବାହୁଡ଼ା ମହାପ୍ରଭୁ ସେ ଗୀତମାନଙ୍କରୁ ଏହି ଘଣ୍ଟାରବ ଛନ୍ଦର ଉତ୍ପତ୍ତି ହୋଇ ଥିବାର ପ୍ରମାଣ ମିଳୁଅଛି ।

ଗାଉଁଲି ଗୀତରେ—

ଅରୁଆ ଗୁଣ୍ଡୁଲ ଖଣ୍ଡା
ଉଷୁନା ଗୁଣ୍ଡୁଲ ମଣ୍ଡା
ଗାଳି ନ ଦଅନ୍ତି ମାଡ଼ ନ ମାରନ୍ତି ଲୋ
(ବୋଉ) ବଚନେ କରନ୍ତି ଥଣ୍ଡା ।

ଲାବଣ୍ୟବତୀ ଛନ୍ଦରେ—

ଫାଲ୍‌ଗୁନ ଶୋଭା ପ୍ରକାଶି
ଶିଶିରେ ବସନ୍ତ ମିଶି
ବାଳବାମା ତନୁ ସୀମାକୁ ଅଶ୍ଳେଷେ
ଯୌବନ କଲା କି ଆସି ।—

ତୁଳନା କଲେ ପାଠକମାନେ ତାହା ଅତି ସହଜରେ ହୃଦୟଙ୍ଗମ କରିପାରିବେ ।

(କ) ଚଇତ ପରବ ଗୀତ—

ଜୟପୁରର ସ୍ୱର୍ଗତ ମଞ୍ଜୁଘୋଷ ତ୍ରିପାଠୀ ୧୯୩୮ରେ ମୋର ପଲ୍ଲି ସାହିତ୍ୟ ଆଲୋଚନାରେ ମୁଗ୍ଧ ହୋଇ ତାଙ୍କର ନିଜର ପ୍ରକାଶିତ କେତେ ଖଣ୍ଡି ପୁସ୍ତକ ସହିତ ମୋତେ 'ଚଇତ ପରବ ଗୀତ' ନାମରେ ଖଣ୍ଡିଏ ପୁସ୍ତକ ଦାନ କରି

ଲେଖିଥିଲେ—'ଆପଣ ମୋର ଏ ସଙ୍ଗ୍ରହଟି ଆପଣଙ୍କ ବିଶାଳ ସଙ୍ଗ୍ରହ ମଧ୍ୟରେ ସ୍ଥାନ ଦେବେ'। ଦାରିଦ୍ର୍ୟ ଏବଂ ଦୁଃଖ ମଧ୍ୟରେ ସେ ସେତେବେଳେ ଯାତନା ଭୋଗ କରୁଥିଲେ। ଏମନ୍ତ କି ସେ ଏକ ଦୁଃଖପ୍ରଦ ଅଭ୍ୟାସ ଦୋଷରୁ ଯାହା ବା ପାଉଥିଲେ ତାହା ତାଙ୍କୁ ଅଣ୍ଟୁ ନ ଥିଲା। ମୁଁ ତାଙ୍କ ସହିତ ବିଭିନ୍ନ ଚିଠିପତ୍ର ଓ ସମ୍ବନ୍ଧ ମଧ୍ୟରେ ଉକ୍ତ ଚଇତ ପର୍ବ ଗୀତଟିକୁ ମୋର ସଙ୍ଗ୍ରହ ମଧ୍ୟରେ ରଖିବାର ବଚନ ଦେଇଥିଲି। ତେଣୁ ମୋର ସଙ୍ଗ୍ରହ ମଧ୍ୟରେ ତାହା ରହିଅଛି। କିନ୍ତୁ ସେ ମୋତେ ଯେଉଁ ଛପା 'ବହିଟି ଦେଇଥିଲେ, ତହିଁର ଗୀତମାନ ଅବିକଳ ଅନ୍ୟ ସଙ୍ଗ୍ରହରେ ସ୍ଥାନ ପାଇ ସାରିଅଛି। ତାହା ହେଲେହେଁ ମୋର ପୂର୍ବ ପ୍ରତିଶ୍ରୁତି ମୁଁ ରଖିବାକୁ ବାଧ୍ୟ ଅଟେ।

ଏ ଗୀତଟି ଗଞ୍ଜାମ ମାଳଅଞ୍ଚଳର ଚୈତ୍ରପର୍ବ-ବୋଲି ବା ବାସନ୍ତିକ ଉତ୍ସବର ସଙ୍ଗୀତ ଅଟେ। ସେ ସ୍ଥଳରେ ଯୁବକ ଏବଂ ଯୁବତୀମାନେ କାମୋନ୍ମାଦିତ ହୋଇ ସନ୍ଦର୍ଭ ପ୍ରତିଯୋଗିତାରେ ବରକନ୍ୟାରେ ରୂପାନ୍ତରିତ ହୋଇଥାନ୍ତି। ଏହି କବିତାହିଁ ତାଙ୍କର ରସ ସମ୍ଭାର।

ଏତଦ୍‌ବ୍ୟତୀତ ବର୍ଷ ମଧ୍ୟରେ ପଲ୍ଲିପଥରେ ଯେତେ ଯେତେ ଯାନି ଉତ୍ସବ ଅନୁଷ୍ଠିତ ହୁଏ, ତାହା ଅଞ୍ଚଳକୁ ଅଞ୍ଚଳ ଭ୍ରମି ସଙ୍ଗ୍ରହ କଲେ ଏକ ବିଶାଳ ଗ୍ରନ୍ଥ ହୁଅନ୍ତା। କିନ୍ତୁ ସେ ସୁଯୋଗ ସୁଯୋଗଉପରେ ହିଁ ନିର୍ଭର କରିଥାଏ।

## ୧୯। ପରିଶିଷ୍ଟ ଗୀତିକା ( ଦ୍ୱାଦଶ ଖଣ୍ଡ )

ମୁଁ ଏଥିପୂର୍ବରୁ ଏଥିରେ ଥିବା ନଅଗୋଟି କବିତାକୁ ପୋଥି ଗୀତିକା ନାମରେ ଅଭିହିତ କରିଥିଲି। କିନ୍ତୁ ପୋଥି ଗୀତିକା ସ୍ୱତନ୍ତ୍ର ନ ରଖି ପରିଶିଷ୍ଟ ମଧ୍ୟରେ ଏଥର ରଖାଯାଇଛି। ଏଥିରେ ଥିବା କବିତାଗୁଡ଼ିକରୁ କେତୋଟି ହୁଏତ ପ୍ରାଚୀନ କେଉଁ କବିଙ୍କ କାବ୍ୟ ରଚନା ମଧ୍ୟରେ ଥାଇପାରେ କିନ୍ତୁ ସବୁ ଗୁଡ଼ିକ ନୁହେଁ। ପୋଥିରେ ଥିବା ବଉଳାଗାଈ ଗୀତକୁ ଯେବେ ଗାଉଁଲି ଗୀତ ମଧ୍ୟରେ ରଖାଯାଏ, ଏ ରଚନାମାନ ଗ୍ରାମେ ଗ୍ରାମେ ଯେଣୁ ନାରୀ ତୁଣ୍ଡରେ ବହୁକାଳରୁ ଗୀତ ହୋଇ ଆସୁଅଛି, ତେଣୁ ଏହା ଗାଉଁଲି ଗୀତ ଅନ୍ତର୍ଗତ ହେବାରେ କୌଣସି ବାଧା ନାହିଁ ବୋଲି ମୋର ବିଶ୍ୱାସ। ଏସବୁ କବିତାର ସ୍ୱର ପଲ୍ଲିପଥରେ ପ୍ରତିନିୟତ ରୋମାଞ୍ଚ ଆଣିଥାଏ। ସ୍ୱର୍ଗତା ମୋର ଜନନୀ ଏସବୁ ଗାଉଥିଲା ବେଳେ ଆମ ଗ୍ରାମର ଝିଅ ବୋହୂମାନେ ତାଙ୍କୁ ବେଢ଼ି ରହିଥାନ୍ତି ଆଖି ପିଛୁଳା ନ ପକାଇ ନିର୍ବାକ୍, ନିସ୍ପନ୍ଦ ଭାବରେ। ଅମୃତ ଧାରା ଅବା ବହି ଚାଲିଥାଏ—

ଚଉଦ ବରଷ କାଳ ଗୋ ପିନ୍ଧିବି ବୃକ୍ଷ ବକଳ
ନିତି ବୁଲୁଥିବି ପର୍ବତମାଳରେ ଗ୍ରାମାରହିତ
ଆହାର ମୋ ଫଳ ମୂଳ।

କହୁଚ କେତେ ଗୃହର ହେ, ତୁମେ ତ ଏବା ଚତୁର
ତୁମ୍ଭଠାରୁ ପରା ମୁଁ ସୁକୁମାର ହେ ରଘୁନନ୍ଦନ
ରଖ ରଖ ପ୍ରେ ବଗୃର ।

ଅନ୍ୟତ୍ର—

ବର୍ଷ ହେଲା ପଞ୍ଚୁଗ୍ରାସୀ ବେଳେ
ଭୁଞ୍ଜି ବସିଥିଲୁ ପିତା କୋଳେ
ତୋ ହସ୍ତ କଙ୍କଣେ ମୋ ମୁଖ ଦଶିଲା
ନ ଖାଇ ରହିଲୁ ଲଜ୍ଜାଭରେ ଗୋ
ଅଗୋ ବଇଦେହୀ, ତୋର ମୁଖକୁ ଚନ୍ଦ୍ରମା ସରି ନୋହି ।

ଗହନ ଲଟା ଅନ୍ଧାର ପନ୍ଥ
ପାଣି ବରଷଇ ଗିରି ଶିଖ
ମେଘ ଘଡ଼ଘଡ଼ି—ଛଟକ ବିଜୁଳି
ନ ଦିଶଇ ସର୍ପ ବାଟ ପନ୍ଥ
ଅଗୋ ବଇଦେହୀ
ଅମେ ଅନାସ୍ତ ହୋଇଲୁଁ ବେନସୁଇ ।

ଏ ପ୍ରକାର ପୋଥି ଗୀତିକା ବ୍ୟତୀତ ଏ ସଙ୍କଳନରେ କେତୋଟି ଦୁଃଖ-ସଙ୍ଗୀତ ଦିଆଯାଇଛି । ଯାହା ଆମ ଜୀବନକୁ ପ୍ରତି ନିୟତ ସ୍ପର୍ଶ କରିଥାଏ । ତନ୍ମଧ୍ୟରେ ଚକୁଳିଆ ପଣ୍ଡା ( ଚନ୍ଦ୍ର ପଣ୍ଡା ) ଯେ କି ଦୁଃଖ ଏବଂ ଦାରିଦ୍ର୍ୟକୁ ନିଜର ଭାଗ୍ୟ ମନେକରି ସମାଜ କଲ୍ୟାଣ ଲାଗି ଭିକ୍ଷାନ୍ନରେ ଜୀବନ ରକ୍ଷା କରିଥାଏ, ତାର ସଦୁପଦେଶମାନ ଅନ୍ୟତମ ଅଟେ ।

ତଦ୍‌ବ୍ୟତୀତ ଶ୍ରୀମତୀ ନାଗୀ, ଜାଗେଇଅ, ବାଟି ପାଣଟୋକା—ନିୟତ ଦୁଃଖ ଜର୍ଜରିତ ଛନୋଟି ଅସହାୟ ଔଦ୍ଧାସିକ ପ୍ରାଣୀ ଅଟନ୍ତି । ସେମାନେ ସମାଜରେ ବଞ୍ଚି ରହିବା ଲାଗି ଯେଉଁ ସଙ୍ଗୀତମାନ ନିଜେ ରଚନା କରି ଘରେ ଘରେ ଗାଉଥିଲେ ତାର ଖୀରକ ସ୍ମୃତି ଏ ସଙ୍କଳନରେ ଅତି ଯତ୍ନରେ ସଞ୍ଚୟ କରାଯାଇଅଛି ।

୧୮୯୬ ଦୁର୍ଭିକ୍ଷରେ ବାଟି ନାମର ଯାଣ ଟୋକାକୁ ଅଭିଜାତମାନେ ବାଲିରେ ଭାତ, ତରକାରୀ, ପିଠା, ପଣା, ଜାଉ ଆଦି ଗାରରେ କାଟି କହନ୍ତି ଖା—ଖା । କ୍ଷୁଧାତୁର ଅନାଥ ଶିଶୁ ଜିଭ ଲଗାଇ ଗୃହିଦିଏ ସତ୍ୟ ବୋଲି । ଧନବନ୍ତ ଗୃହରେ ହାସ୍ୟ ଖେଳ ଫୁଟି ଉଠେ । ସେ ତାର୍ପରେ ଗାଇ ଉଠେ ନିଜେ ରଚନା କରି କବିତା କେତେ ପଦ—

ଏ ବୋପା ମଲ୍ଲ ମାଅ 'ଘଇତା ଘିଣ୍ଟଗଲ୍ଲ
ଖତ ଗୁଣ୍ଡିଏ ଦଅ ହେ ସାଅନ୍ତାଣିଏଁ ।

× × ×

ଯାଇଥିଲି ମାମୁଁ ଘର
ତୋଲ ଖଣ୍ଡି ନେଲ୍ଲ ଗ୍ରେର

ସାଅନ୍ତେ ହେ—ଗୃହଦନ ଉପାସିଅ
କାହିଁକି ଡକର ମୋତେ, ସାଅନ୍ତେ ହେ ।
ବଣିଅଁ ପୋକ, ସାହୁଘର ଲୋକ, ହାଇଁ ।

ବଣିଅଁ ଅର୍ଥାତ୍ କୃପଣ ବେପାରି ମହାଜନ ଯେ କ ପୋକଠାରୁ ନୀଚ ସେ ଏବଂ ସାହୁକାର ଘରର ଗୃହର ଏଇମାନେ ଖାଇବାକୁ ପାଉଥିବାର ତାର ବର୍ଣ୍ଣନାରୁ ଜଣାଯାଉଅଛି ।

ଗୃହଦନ ଉପାସିଅ ହରିଜନ ଶିଶୁର ରଚିତ ଏ ଜାତର ସଙ୍ଗୀତଟିକୁ କେହି ଲୁଗ୍ରଇ ଦେଇ ନ ପାରେ । ତାହା ଅଳକ୍ଷ୍ୟ କାଳରେ ଏବେ ମଧ୍ୟ ପଲ୍ଲିରେ ଅନ୍ତିଧ୍ୱନି କରୁଥିବା କଙ୍କାଳର ବକ୍ଷୁର ବୃକ୍ଷ ଉପରେ ଲକ୍ଷିତ ରହୁଅଛି ।

ଶ୍ରୀମତୀ ନାମୀ ବାଳଶ୍ରୀ ବ୍ରାହ୍ମଣୀ ବିଧବା । ଏକାନ୍ତ ସଦାଗୃହିଣୀ । ଭିକ୍ଷା ନେଇ ଭିକ୍ଷା ଦିଏ । ତାପରି ତପସ୍ୱିନୀ ଏ ଧରଣୀକୁ ତା ସମୟରେ ଯେତେ ଜଣ ଅସିଥିବେ ତା ମଧ୍ୟରୁ ସେ ଜଣେ ! ଦୁର୍ଦ୍ଦାନ୍ତ ଦେବଶୂରର ଅତ୍ୟାଗୃହରେ ମଧ୍ୟ ସେ ଅଭିଜାତ ଘରର ପିଲାଙ୍କୁ ଗୀତ ଗାଇ ହସେଇ ରସାଇ ଭିକ୍ଷା ନିଏ । ତାର ନିଜ ରଚନା କବିତା ଶିଶୁକୁ ଅତି ଭଲ ଲାଗେ । ସେ ଖାଲି ହାତରେ ନ ଆସି ଲେଉଟିଅ ଦିଟା, ଖଜୁରିକୋଳି ଦିଟା, କେବେ ଓଉ ଦିଟା, କେବେ ଫୁଲ ଦିଟା ହେଲେ ଅଣି ଥାଏ । ସେ ତାର ଦେବଶୂରର କୃଷ୍ଣପାଣି ହସ୍ତରେ କରୁଥିବା ନୃତ୍ୟ ଅବିକଳ ଅଭିନୟ କରି ହସାଏ ପ୍ରତ୍ୟହ ।

ମୁଁ ଅଟେ ଯେଜମାନ ରଜା
ମୁଁ ଅଟେ ଯେଜମାନ ରଜା
ଅରେ ଚେଙ୍ଗପ ଯା ଯା ।
ତୁ ଖାଉ ଥା କାନ୍ଧଅ ଭଜା, କଦଳୀ ଭଜା ।

ତାର ଦେବଶୁର ନିଜକୁ ଯଜମାନମାନଙ୍କର ରଜା ବୋଲି ବିଖ୍ୟାତ କରେ । କାରଣ ପୁରୋହିତ ସେ ନ କଲେ ଶ୍ରୀମତୀର କିଏ ଅଛି ଯେ କରିବ ? ସେ ପୁରୋହିତ କରି ସମସ୍ତ ଖାଇଯାଏ । ଏମନ୍ତ କି ତା ଜମିର ଆୟ ମଧ୍ୟ ଅତ୍ମସାତ୍ କରିଦିଏ । ସବଦା କହେ—'ତୁ ତୋ ବାପ ଘରକୁ ପଳା' । ବାପଘର ବାଡ଼ିରେ ଯେଉଁ କାନ୍ଧଅ ( ଖଟା କମଳା ) କଦଳୀ ଅଛି ତାକୁ ଭଜି ଖାଉଥିବୁ ।

ଶ୍ରୀମତୀ ସ୍ୱାମୀ ସ୍ୱତ୍ୱ ତ୍ୟାଗ ନ କରି କୁଟୀରଟିରେ ପଡ଼ି ରହି ବରଂ ଭିକ୍ଷା ମାଗେ, କେବେ ତାର ଅଧିକାର ଭୂମି ତ୍ୟାଗ କରେ ନାହିଁ ।

ଦରିଦ୍ର ଢାଗେରଅ କୁଟୁମ୍ବଦୌର୍ଗମ୍ୟରେ ନିର୍ବାସିତ ହୋଇଥାଏ । ତାର ସ୍ତ୍ରୀ ମଧ୍ୟ ତାକୁ ପଚୃରେ ନାହିଁ । ସେ ବ୍ୟଙ୍ଗ କରୁଥିଲେ କହୁ ଅସୁନ୍ଦର, ଦୁର୍ବଳ । ଏହାହିଁ ତାର ଜୀବନର ଅଭିଶାପ । ସେ ନିଜେ ଦ ଗୃହପଦ ଗୀତ ଗଢ଼ି ଭିକ୍ଷା ମାଗେ । ସେ ଥାଏ ସର୍ବଭକ୍ଷ । ଯେ ଯାହା ଦିଏ ସେ ତାହା ଖାଦ୍ୟ ବୋଲି ବିଶ୍ୱାସ କରି ଗର୍ଭସ୍ଥ କରିଦିଏ ।

କେତେ ଏହିପରି ଅମୂଲ୍ୟ ସଂଗୀତ କେଉଁଅଡ଼େ ଲୁଚି ଗଲାଣି । ନଈବଢ଼ି, ସଢ଼କବେଠି ଆଦି ଦୁଃଖପ୍ରଦ ଘଟଣାରେ କେତେ ଯେ ସଙ୍ଗୀତ ସୃଷ୍ଟି ହୋଇ ଥିଲା ତାହା ଏବେ ଆଉ ଖୋଜିଲେ ମିଳିବ ନାହିଁ ।

ଧନେ ପଡ଼େ ରେ ଭାଇ ସଡ଼କ ବେଠି
ଗାଣ୍ଡି, ଖଣ୍ଡି ମୁଣ୍ଡ ହୋଇଗଲା କେଣ୍ଡି
ସେ ସଡ଼କକୁ ବୋହି ବୋହି ମାଟି ।
ଜଗୁ ନାଗୁ ସମାନ କରି
(ବେ) ସଲଖେ ଗୃଳିବ ମଟର
ଆପତ୍ତି କରିଲେ ଶୁଣାଯିବ ନାହିଁ ବିଳମ୍ବ ହୋଇଲେ ବାଜିବ ଚଟି ।

ଇଂରେଜ ଦପ୍ତରର ଏହି ଅତ୍ୟାଚାରର ନଗ୍ନ ଚିତ୍ରରୁ ଗଡ଼ଜାତର ତତ୍କାଳୀନ ପ୍ରଜାମାନଙ୍କ ଅବସ୍ଥା ସହଜରେ ଅନୁଭବ କରିହୁଏ । ଏହି କବିତାମାନଙ୍କରେ ଯେଣୁ ସତ୍ୟର ଅପଲାପ ନ ଥାଏ ।

ଏତଦ୍‌ବ୍ୟତୀତ ମନୁଷ୍ୟର ରୋଗବ୍ୟାଧି ନାଶନ ଲାଗି ପ୍ରନଷ୍ଟ ଭୁଗ୍ନ ବୃକ୍ଷର ସୁରକ୍ଷା ଲାଗି ଯେଉଁ ସବୁ ଗୀତ ବୋଲା ହୋଇ ଲୁଣ ମନ୍ତୁରା ହୁଏ, ଗୁଣିଲା ମନ୍ତୁରା ହୁଏ ତାହା ମନ୍ତୁରା ବା ମନ୍ତ୍ର ଗୀତ ନାମରେ ପ୍ରସିଦ୍ଧ । ସେଥିରୁ କେତେକ ମଧ୍ୟ ଏହି ସଙ୍କଳନରେ ରଖାଯାଇଅଛି । ଏ ସମସ୍ତ ତନ୍ତ୍ର ଶାସ୍ତ୍ର ସମ୍ଭୂତ ବୋଲି ମନେ ହୁଏ । ସଂସ୍କୃତ ଭାଷାରେ ବା ପ୍ରାକୃତ ଆଦି ଭାଷାରେ ଏହି ତନ୍ତ୍ରମନ୍ତ୍ରମାନ ବିଶେଷ ଦେଖାଯାଏ । ଅଥର୍ବ ବେଦୀୟ ବ୍ରାହ୍ମଣମାନେ ଲୁଣରେ ଫୁଙ୍କି ଅନେକ ଅନିଷ୍ଟ ନିବାରଣ କରିଥାନ୍ତି । ରକ୍ତ ଛଡ଼ାଇବା, ବିଛା, ସାପ, କଙ୍କଡ଼ାର ଆଘାତରୁ ରକ୍ଷା କରିବାରେ ଏ ସବୁ ମନ୍ତ୍ର ମଧ୍ୟ ବୋଲାଯାଇ ଫୁଙ୍କା ହୋଇଥାଏ । ସେ ସମସ୍ତ ସଂଗ୍ରହ କଲେ ଏକ ବିଶାଳ ଗ୍ରନ୍ଥ ହେବା ସମ୍ଭବ । କାରଣ ଘରେ ଘରେ ବିଭିନ୍ନ ଭାବରେ ସେମାନ ରହିଥାଏ । ଉଦାହରଣ ସ୍ୱରୂପ—

ଓଁ ପାଣି ତ ପାଣି
ସତ୍ୟ ତ୍ରେତା ଦ୍ୱାପର କଳି ଗୃରିଯୁଗ ପାଣି

ଶ୍ରୀରାମ ଅବତାର ପାଣି
କୂର୍ମ ଅବତାର ପାଣି
ପାଂଗଙ୍କ ଶ୍ରୀଅଙ୍ଗ ପାଣି
ତାଙ୍କର ମଣ୍ଡଳ ନେତାଇ ଧୋବଣି ପାଣି
ଏ ପାଣି ଦେଲେ ନାଶଣ କାଟଇ
ଲେଜଟ କାଟଇ, ଘର କାଟଇ, ଘାଇ କାଟଇ
ନ କାଟୁ ବୋଲି କାହାର ଆଜ୍ଞା,
ଅଯୋଧ୍ୟାଠାକୁର ଜାନକୀବଲ୍ଲଭଙ୍କର କୋଟି ଏ ଆଜ୍ଞା ।
ଏ ଘାଣ ଯେବେ ମେଣ୍ଟୁ
ବନଦୁର୍ଗାଙ୍କର ଭୁଜକାଟୁ
ସୀତାଙ୍କର ସ୍ତନ କାଟୁ ।     ଇତ୍ୟାଦି ।

## ୨୦ । ଉପସଂହାର—

ଏହି ସଗ୍ରହ କୌଣସି ସରକାରୀ ସାହାଯ୍ୟ ନ ପାଇ ଏକାନ୍ତ ବ୍ୟକ୍ତିଗତ ଚେଷ୍ଟାରେ କରାଯାଇଥିବାରୁ ଏଥିରେ ଅଞ୍ଚଳର ଭାଷାକୁ କେତୋଟି ଗୀତ ଖଞ୍ଜା ଯାଇ ନାହିଁ । ତାହା କରିବା ମୋ ପକ୍ଷରେ ମଧ୍ୟ ଅସାଧ୍ୟ କିଛି ନୁହେଁ ବା ନ ଥିଲା ! କାରଣ ମୁଁ ସମ୍ବଲପୁର ଅଞ୍ଚଳରେ ଦୀର୍ଘ ଦିବସ ରହିଥିଲି । ଏମନ୍ତ କି ଘଟଣାଚକ୍ରରେ ସମ୍ବଲପୁର, ବରଗଡ଼, ପାଟନା ଆଦିକୁ ବାରମ୍ବାର ଯାତାୟାତ କରିଥିଲି । ତା ଛଡ଼ା ଦକ୍ଷିଣାଞ୍ଚଳରେ ମୁଁ ମଧ୍ୟ ଦୀର୍ଘ ଦିବସ ରହିଥିଲି । ବ୍ରହ୍ମପୁର, ପାରଳା, ଟିକଲି, ଛତ୍ରପୁର ଆଦିରେ ମୋର ବନ୍ଧୁବର୍ଗ ଏବେ ମଧ୍ୟ ଅଛନ୍ତି । ତା ଛଡ଼ା ବାଲେଶ୍ବରରେ ମୁଁ ଦୀର୍ଘ ଦିବସ ରହିଥିଲି । ଘାଟଶୀଳାକୁ ଧରି ଉତ୍ତରାଞ୍ଚଳରେ ମୁଁ ବର୍ଷେ ରହି ଥିଲେହେଁ ଯାହା ସଂଗୃହୀତ ହୋଇଛି ମୁଁ ସେଥିରେ ସାଧାରଣ Standard ଓଡ଼ିଆ ଭାଷାକୁ ଅଧିକ ଲକ୍ଷ୍ୟ କରୁଥିଲି । ବିଶେଷରେ ପଡ଼ୋଶୀ ଅଞ୍ଚଳ ସହିତ ମିଶି ଓଡ଼ିଆ ଭାଷାର ବିକୃତି ହେଲେ ଯେ ତାହା ଗଞ୍ଜାମି, ବାଲେଶ୍ବରୀ, ସମ୍ବଲପୁରୀ, ଓ ହିନ୍ଦଭୂମିର ଭାଷା ହେବ ଏପରି ଯେଉଁମାନେ ତର୍କ କରନ୍ତି ମୁଁ ସେଥିରେ ଏକ ମତ ହୋଇ ପାରି ନ ଥିଲି କି ଏବେ ମଧ୍ୟ ହୋଇ ପାରି ନାହିଁ । ସେମାନଙ୍କୁ ମୁଁ ଏତିକି କହିପାରେ ଯେ ସେ ସମସ୍ତର ଗାଁ ଗହଳରେ ଭାଗବତ, ଗୋପୀଭାଷା, ମଥୁରାମଙ୍ଗଳ, ସାରଳା ମହାଭାରତ, କୃଷ୍ଣ ସିଂହ ମହାଭାରତ ଆଦିର ପ୍ରଭାବ କିପରି ଅପ୍ରତିହତ ଭାବରେ ରହିଅଛି, ସେମାନେ ନିଶ୍ଚୟ ତାହା ଅନ୍ୱେଷଣ କରିପାରି ନାହାନ୍ତି ।

ମୋର ଗୋଟିଏ ଅନୁଭବ କହିବି । ଥରେ ବାଙ୍କିଅଞ୍ଚଳର ଟିକଲି ସହରର ଦକ୍ଷିଣସ୍ଥ ଏକ ପୁଷ୍କରଣୀ କୂଳରେ ଥାଇ ଶୁଣିଲି ଦୂରରୁ ଏକ ଲହର

ଯଦିଓ ଅସ୍ପୃଷ୍ଟ ଉଚ୍ଚକାବ୍ୟର ଅମୃତ ମୂର୍ଚ୍ଛନା—'ଚେଣ୍ଢ ଚତୁର୍ଦ୍ଦଶ ଗୃହିଙ୍କ ନର୍ତ୍ତ ନାଚେଣ'। ମୁଁ ତାହା ଶୁଣି ଅଶ୍ରୁପାତରେ ହତଭମ୍ବ ହୋଇ ଯାଇଥିଲି। ସେପରି ମଧୁର ଚମତ୍କାର ଧ୍ୱନି ଆଜି କେବେ ଶୁଣିଛି ମୋର ମନେ ହେଉନାହିଁ। ସେହି ଟିକାଲ୍ ହରିଜନ-ସାହିରେ ଖଞ୍ଜଣି ସାହାଯ୍ୟରେ ବିପ୍ର ଜଗନ୍ନାଥ ଦାସଙ୍କ ଭାଗବତରୁ ବୋଲା ହେଉଥିବା ପଦମାନ ମତେ ବିହ୍ୱଳ କରି ଦେଇଥିଲା। ମୋର ଏକାନ୍ତ ବିଶ୍ୱାସ ଗଞ୍ଜାମରୁ ପ୍ରକୃତ ଓଡ଼ିଆ ଭାଷା ଏବେ ମଧ୍ୟ ଲୁପ୍ତ ହୋଇ ନାହିଁ। ସମ୍ବଲପୁର ହେଉ, କଳାହାଣ୍ଡି ହେଉ ସେ ଠାର ଦୂରନ୍ତ ମଫସଲରେ ଅତି ଅଶିକ୍ଷିତ ନରନାରୀ ମାନଙ୍କ କଥାଭାଷା ବ୍ୟତୀତ ଗୀତ ଭାଗବତରେ ଭାଷାର ଭିନ୍ନାନ୍ତର ତେତେ ଅଧିକ ମଧ୍ୟ ଦେଖାଯାଏ ନାହିଁ।

ତେଣୁ ମନେ ହୁଏ ପାଞ୍ଚ ସାତଟା ବିଭିନ୍ନ ଅଞ୍ଚଳର ଗୀତ ଖଞ୍ଜିଦେବା ଦ୍ୱାରା ଯେ ଏ ସଂଗ୍ରହ ସମଗ୍ର ଉତ୍କଳର ପ୍ରତିନିଧିତ୍ୱ କରିବ, ନଚେତ୍ ଅଶୁଦ୍ଧ ହୋଇଯିବ ଏପରି ଧାରଣା ମୂଳରେ ବିଶେଷ କିଛି ଯୁକ୍ତିର ତାତ୍ପର୍ଯ୍ୟ ଥିବାର ଜଣାଯାଏ ନାହିଁ।

ଉତ୍କଳର ପଲ୍ଲି କାହିଁକି, ଭାରତର ପଲ୍ଲିଗୁଡ଼ିକରେ ମଧ୍ୟ ଯେତେ ଯେତେ ଆଶା ଆକାଙ୍କ୍ଷା, ଜୟ ପରାଜୟ, ଦୁଃଖ ସୁଖ ଆଦିର ଘଟଣା ଘଟିଥାଏ, ତନ୍ମଧ୍ୟରେ ସାମ୍ୟ ଦୃଷ୍ଟାନ୍ତ ଅଧିକ ଥିବାର ଦେଖାଯାଏ। ଏମନ୍ତକି ଦୁର୍ଗମ ଅଫ୍ରିକା ଅରଣ୍ୟର ନିଗ୍ରୋ ଜନନୀ ତାର ଶିଶୁକୁ ଶୁଆଇବାକୁ ଯେଉଁ ମଧୁର ଶାନ୍ତ ଧ୍ୱନି କରୁଥିବ, ମନେହୁଏ କୋରାପୁଟର ଅରଣ୍ୟବାସିନୀର ତଦ୍ରୂପ ଶବ୍ଦ ଧ୍ୱନି ମଧ୍ୟରେ ଭାବ ଦୃଷ୍ଟିରୁ ଅଧିକ ପାର୍ଥକ୍ୟ ନ ଥିବା ସମ୍ଭବ। ସମସ୍ତେ ପାଣି, ପବନ, ମେଘ, ଝଡ଼, ବାଘ, ଭାଲୁ ଆଦିର ଭୟ ଶିଶୁ ମନରେ ସଞ୍ଚାରିତ କରିଥାନ୍ତି। ଏଣୁ ବସୁଧା ଏହି ପଲ୍ଲି ସଙ୍ଗୀତର ଏରୂପ ଭାବନା ଯୋଗୁଁ ଯେ ଏକ କୁଟୁମ୍ବ ଏଥିରେ ସନ୍ଦେହ ଅଛି ନାହିଁ। ଆମ ଭାରତରେ ବଙ୍ଗ ଭାଷାରେ 'ବୃଷ୍ଟିପଡ଼େ ଟାପୁରୁ ଟୁପୁରୁ ନଦୀ ଏଲୋ ବାନ' ବୃଷ୍ଟି ସମ୍ବନ୍ଧୀୟ କବିତା ସହିତ ଉତ୍କଳର 'ମେଘ ବରଷିଲା ଟୁପୁରୁ ଟାପେରେ' କବିତାରେ ଯେଉଁ ପାର୍ଥକ୍ୟ ଦେଖାଯାଏ, ତାହା ସାମାଜିକ ଜୀବନର ପାର୍ଥକ୍ୟ ଯେକି ଯେତିକି ପୃଥକ୍, ନଚେତ୍ ଲକ୍ଷ୍ୟ ପ୍ରାୟ ଏକା। ଏପରି କ୍ଷେତ୍ରରେ ମହାନ୍ ମାନବଜୀବନର ଇତିହାସ ଚର୍ଚ୍ଚା କରିବା ଲାଗି ଏହି ଗାଉଁଲି ଗୀତ ସଂଗ୍ରହ ଏବଂ ତାର ଆଲୋଚନା ଏକାନ୍ତ ଆବଶ୍ୟକ ହୋଇଥାଏ ବୋଲି ମୋର ବିଶ୍ୱାସ।

ଏହି ସଂଗ୍ରହରେ ଥିବା ଦୁର୍ବୋଧ ଶବ୍ଦ ମାନଙ୍କର ଟୀକା ଟିପ୍ପଣି ଗ୍ରନ୍ଥ ଶେଷରେ ସନ୍ନିବେଶିତ ହୋଇଅଛି। ସେଥିରୁ ପାଠକମାନେ ଏ ସଂଗ୍ରହରେ ଥିବା କବିତାମାନଙ୍କର ଚର୍ଚ୍ଚା ଅତି ସହଜରେ କରିପାରିବେ।

ପରିଶେଷରେ ଏତିକି କୁହାଯାଇ ପାରେ ଯେ ଏହି ସବୁ କବିତାମାନ ଆମ ଜାତିର ପ୍ରାଣର ଭାଷା। ପଣ୍ଡିତ ଗୋପବନ୍ଧୁଙ୍କ ମତରେ 'ଏହାହିଁ ଯଥାର୍ଥ

ଉଡ଼ିଆ ଭାଷା ।’ ଆଶା କରାଯାଏ ଏ ସମସ୍ତର ସଂଗ୍ରହ ଏବଂ ଆଲୋଚନାର ପରିସର ଯେତିକି ବଢ଼ିବ ଆମର ନିଜଭାଷାର ମର୍ଯ୍ୟାଦା ଓ ନିଜତ୍ୱ ସେତିକି ସୁରକ୍ଷିତ ହେବ । ଏ ସମ୍ପର୍କରେ ମୋର ପରବର୍ତ୍ତୀ ଏକମାତ୍ର ସମଧର୍ମୀ ଡକ୍ଟର କୁଞ୍ଜବିହାରୀ ଦାଶଙ୍କୁ ତାଙ୍କର କୃତିତ୍ୱ ଲାଗି ଧନ୍ୟବାଦ ଅର୍ପଣ କରୁଅଛି । ଯେଉଁ ବନ୍ଧୁ ଓ ବାନ୍ଧବୀମାନେ ମୋତେ ଏବଂ ମୋର ସ୍ତ୍ରୀଙ୍କୁ ଏ ସଂଗ୍ରହରେ ଥିବା ବହୁ କବିତା ହାତରେ ଲେଖି ଯୋଗାଇ ଦେଇଛନ୍ତି ଏବଂ ଯେଉଁ ମହତ୍ ବ୍ୟକ୍ତିମାନେ ଆମ୍ଭମାନଙ୍କୁ ଏକାନ୍ତ ଉତ୍ସାହିତ କରିଅଛନ୍ତି ସେମାନଙ୍କ ନିକଟରେ ମୁଁ ହୃଦୟର କୃତଜ୍ଞତା ଜ୍ଞାପନ କରୁଅଛି ।

ଜାହ୍ନବୀ ଗର୍ଭରେ ଲୀନ ହୋଇଥିବା ମୋର ପ୍ରଥମ ସନ୍ତାନ ଅମରଶିଶୁ ପ୍ରେମ ସୁନ୍ଦରର ସହଯୋଗ ଏ କ୍ଷେତ୍ରରେ କେତେ ଅଧିକ ଥିଲା ତାହା ମୁଁ କହି ପାରିବି ନାହିଁ । କାରଣ ସେ ଅଦୃଶ୍ୟରେ ।

ମୋର ସଂଗ୍ରହ ଦେଖି ଏକ ପ୍ରବନ୍ଧରେ ଲିଖିତ ଥିଲା ଯେ—

‘ଉତ୍କଳ ଦେଶର କବିମାନେ ଯଦି ବହିଃ ପ୍ରଭାବ ପରିତ୍ୟାଗ କରି ଏହି କବିତାର ଅନୁକରଣରେ ନିଜ ମାଟିର କଥା ନିଜଭାଷାରେ କହନ୍ତେ, ତେବେ ଉତ୍କଳ ସାହିତ୍ୟର ଶ୍ରୀବୃଦ୍ଧି ହୁଅନ୍ତା ବୋଲି ମୋର ବିଶ୍ୱାସ । ( ନବଭାରତ )

ଜଣେ ସଂସ୍କୃତ ବିଭାଗୀୟ ମହାନ୍ ପଣ୍ଡିତ ଶ୍ରୀ ରାମଚନ୍ଦ୍ର ମହାପାତ୍ର ତର୍କ ଦର୍ଶନତୀର୍ଥ ଯେ କି ବିଶ୍ୱନାଥ ପଠାଣି ସାମନ୍ତଙ୍କ ଗ୍ରାମବାସୀ ଅଟନ୍ତି ସେ ଏହି ସଂଚୟନ ପାଠକରି ଯେଉଁ ପ୍ରଶଂସା କରିଥିଲେ ସେଥିରୁ ଗୋଟିଏ ମାତ୍ର ଶ୍ଳୋକ ଉଦ୍ଧାର କରି ଏହି ରଚନା ଶେଷ କରାଯାଉଅଛି ।

ପଲ୍ଲୀଗୀତ ମନାଂସ୍ୟପି କବିଭିର୍ଦ୍ଧେୟଂ ପୁନର୍ବାଳକୈ
ର୍ଗେୟଂ ମାତୃମୁଖାତ୍ସ୍ଖଳନବଶାତ୍ ପୂର୍ବାକୃତଂ ନାଭବତ୍
ତସ୍ମାଚ୍ଚକ୍ରଧର ପ୍ରଯତ୍ନତ ଇବ କ୍ଷୀରାମ୍ବୁଧେ ରୁଦ୍ଧୃତଂ
ପୀଯୂଷଂ ସୁମନୋଭିରସ୍ତୁ ଚିରମାସ୍ୱାଦ୍ୟଂ ବଚଃ ସାଂପ୍ରତଂ ।
ଜୟୋଽସ୍ତୁ, ଜୟତ୍ୱହନ୍

**ଚକ୍ରଧର ମହାପାତ୍ର**
ନରସିଂହପୁର, (କଟକ)— ୧୯୫୯

# ସୂଚନା

ଏହି କଣାର୍କ ଗ୍ରନ୍ଥର ସଂଗ୍ରହ ଏବଂ ପରିମାର୍ଜିତ ପାଣ୍ଡୁଲିପି ୧୯୪୭ ମସିହାରେ ଶେଷ ହୋଇଥିଲା । କିନ୍ତୁ ଏପରି ଦୁଃସମୟମାନ ସଂଗ୍ରାହକ ଜୀବନରେ ଦେଖାଗଲା ଯେ ପାଣ୍ଡୁଲିପିଟି ଏଘର ସେଘର ହୋଇ ହୋଇ ଶେଷକୁ ୧୯୫୦ରେ କଟକରେ ନିରାପଦରେ ରହି ପାରିଥିଲା । ଲେଖକ ଜୀବନର ସେ ଶୋକାକୁଳିତ ଇତିହାସ ଅକଥନୀୟ ଅଟେ । ତଥାପି ଆଶା ଥିଲା ମୋର ସଂଗ୍ରହ ପ୍ରତି ସରକାରୀ ବା ବେସରକାରୀ ଦୃଷ୍ଟି ଆକର୍ଷିତ ହେବ । କିନ୍ତୁ

'ଜୀଅନ୍ତେ ନ ଦେଲୁ ଗଣ୍ଡେ
ନାଁ ମଲେ ଦେଲୁ ଦେଣା ମୁଣ୍ଡେ'—ଘଟଣା

ଏହି ଲେଖକ ଜୀବନରେ ପ୍ରମାଣିତ ହେଉଥିବା ଦୃଷ୍ଟାନ୍ତ ନିରନ୍ତର ଦେଖି ଦେଖି ମୁଁ ହତଭମ୍ବ ହୋଇଥିଲି । କିନ୍ତୁ ହଠାତ୍ ୧୯୫୮ ରେ ମୋର ଏକ ଦୁଃସମୟରେ କଟକ ପବ୍ଲିଶିଂ ହାଉସର ସ୍ୱତ୍ୱାଧିକାରୀ ଶ୍ରଦ୍ଧେୟ ଶ୍ରୀ ଉମାଚରଣ ମହାନ୍ତିଙ୍କ ଜ୍ୟେଷ୍ଠ ପୁତ୍ରବଧୂ ଆୟୁଷ୍ମତୀ ଶ୍ରୀମତୀ ସୁରମା ମହାନ୍ତି ପାଣ୍ଡୁଲିପିଟି ଦେଖିବାମାତ୍ରେ ଶେଷ ନିଷ୍ପତ୍ତି କରି ଗ୍ରନ୍ଥର ସମ୍ପୂର୍ଣ୍ଣ ସ୍ୱତ୍ୱ କ୍ରୟ କରି ନେଇଥିଲେ । ତାଙ୍କର ସହାନୁଭୂତି ପ୍ରତି ସଂଗ୍ରାହକ ଅନ୍ତରର କୃତଜ୍ଞତା ଜଣାଉଅଛି । କୌଣସି ସହୃଦୟ ପ୍ରକାଶକ ଅଗ୍ରଣୀ ନ ହେଲେ ଏପରି ଏକ ଗ୍ରନ୍ଥ ପ୍ରକାଶିତ ହେବା ସହଜ ସାଧ୍ୟ ହୋଇ ନ ଥାନ୍ତା । କାରଣ ଏହି ଗ୍ରାମ୍ୟ ଗୀତ ସଂଗ୍ରହ ଘେନି ମୁଁ ୧୯୩୦ରୁ ସରକାରୀ ସାହାଯ୍ୟ ପାଇଁ ଚେଷ୍ଟା କରି କରି ଏକାନ୍ତ ବିଫଳ ହୋଇଥିଲି । ଅଥଚ ମୋତେ ନ ଦେଲେ ମଧ୍ୟ ମୋର ପରବର୍ତ୍ତୀ ସଂଗ୍ରାହକଙ୍କୁ ସରକାର ସବୁ ମତେ ସାହାଯ୍ୟ ଦେଇଥିବାର ଜାଣିପାରି ମୁଁ ଆନନ୍ଦ ପ୍ରକାଶ କରୁଅଛି ।

ଏ ଗ୍ରନ୍ଥ ସଂଗ୍ରହରେ ମୋର ସ୍ୱର୍ଗତା ପୂଜନୀୟା ଜନନୀ ଶ୍ରୀମତୀ ଶୌରୀ ଦେବୀଙ୍କର ସ୍ୱତଃସବଳ କବିତାମାନହିଁ ସରସ ଏବଂ ସଂଗ୍ରହର ମୂଳଭିତ୍ତି ଅଟେ । ମୋର ଜାୟା ଶ୍ରୀମତୀ କନକମଞ୍ଜରୀ ଅତି ସତର୍କତାର ସହିତ ତାହା ସଂଗ୍ରହ କରିବାରେ ଏକାନ୍ତ ସାହାଯ୍ୟ କରିଥିବାରୁ ଏବଂ ଶେଷପାଏ ଏ କାର୍ଯ୍ୟରେ ସହଯୋଗୀ ରହିଥିବାରୁ ମୁଁ ତାଙ୍କ ନିକଟରେ ଏକାନ୍ତ କୃତଜ୍ଞ । ମୋର ଜନନୀ ମୋର ଭଉଣୀମାନଙ୍କୁ ହରାଇବା ପରେ ମୁଁ ତାଙ୍କ କୋଳରେ ଏକାକୀ ରହିବାରୁ ଏକ ଅଭିଜାତ ଗୃହବେଷ୍ଟନମଧ୍ୟରେ ଏସବୁର ଅଧିକାଂଶ କବିତା ନିରନ୍ତର ଶୁଣି ଶୁଣି ଏଁଥିପ୍ରତି ମୋର ଶ୍ରଦ୍ଧା ସଞ୍ଚରିତ

ହୋଇଥିଲା । ସେଥିପାଇଁ ମୋର ଜନନୀଙ୍କ ସ୍ମୃତି ଏ ଗ୍ରନ୍ଥ ଭୁଲିଯିବା ଅନୁଚିତ ହେବ । ମୁଁ ଥରେ ଲେଖିଥିଲି—

ବୋଲୁ ବୋଲୁ ବର୍ଷ
ଗମ୍ଭିର ଶବୁ ମୁଁ
ଟାଣି ଅଣିଛ ଏ ମୁକ୍ତାହାର,
କଏ ପୁଅଟିଏ ଅଛୁ ଏ ଗାଇଲେ
ଅଦରେ ଘେନିବ ମୋ ଉପହାର ।

ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ଏ ପଦଟିକୁ ଏକାନ୍ତ ପସନ୍ଦକରି ମୁଖସ୍ଥ କରି ଦେଇଥିଲେ ଏବଂ ମୋତେ ଦେଖିଲେ ଗାଇ ଗାଇ ସସ୍ନେହ ବାତ୍ସଲ୍ୟ ଦେଖାଉଥିଲେ । ପୁନଶ୍ଚ ମୋର ଜନନୀ ଅନେକ କବିତା ଯାହାଯୋଗୁଁ ସ୍ମରଣ କରି ଗାଉଥିଲେ, ବିଶେଷରେ ଯେ ଏହି କବିତାମାନଙ୍କର ଅନନ୍ୟ ଭକ୍ତ ରହିଥିଲା— ସେହି ମୋର ପ୍ରଥମ ସନ୍ତାନ ସ୍ୱନାମଧନ୍ୟ ଅମର ଶିଶୁ ପ୍ରେମସୁନ୍ଦର ଯେ କି ସ୍କଟିସ-ଚର୍ଚ୍ଚ କଲେଜରେ ବି. ଏ. ପଢୁଥିବା ବେଳେ ୧୯୫୩ ଜୁଲାଇ ୨୨ ରେ ଗଙ୍ଗା-ଗର୍ଭରେ ଲୀନ ହୋଇଯାଇଅଛି, ତାର ସ୍ମୃତି ମଧ୍ୟ ଏ ଗ୍ରନ୍ଥର ଭୂଷଣ ହେଉ । ଭାରତରେ ଏବଂ ଭାରତ ବାହାରେ ଗାଉଁଲିଗୀତମାନ ପ୍ରଚାର କରିବାରେ ସେ ମୋର ଅତୀବ ସହାୟକ ରହିଥିଲା ।

ଏତଦ୍‌ବ୍ୟତୀତ ଏ ଗ୍ରନ୍ଥ ସଂଗ୍ରହରେ, ପ୍ରଚାରରେ, ପ୍ରସାରରେ ଅନୁଲେଖନରେ, ଉତ୍ସାହିତ କରିବାରେ, ଈଶ୍ୱରଙ୍କର ଆଶୀର୍ବାଦ ବର୍ଷଣରେ ଯେଉଁ ବନ୍ଧୁ, ବାନ୍ଧବୀ, ପୂଜନୀୟ, ପୂଜନୀୟାମାନେ ସାହାଯ୍ୟ କରିଅଛନ୍ତି ସେମାନଙ୍କୁ ହୃଦୟର କୃତଜ୍ଞତା ଅର୍ପଣ କରୁଅଛି ।

ଚକ୍ରଧର ମହାପାତ୍ର
ଉତ୍କଳ ଗାଉଁଲିଗୀତ ସଂଗ୍ରାହକ
୨୨ । ୨ । ୫୯



## ଶ୍ରୀମତୀ ଶୌରୀ ଦେବୀ

ଯାହାଙ୍କ ସ୍ମୃତିରୁ ଏହି ସଂଗ୍ରହର ବହୁ ଗାଥା, ଢଗ, ସ୍ତୁତି କବିତା ପହିଲିଁ କଲମ କାଗଜକୁ ଆସିଥିଲା ।

ଜନ୍ମ—୧୮୬୭ ମୃତ୍ୟୁ—୧୯୩୮

# ସୂଚୀପତ୍ର

## ଅବତରଣିକା—



## ପ୍ରଥମ ଖଣ୍ଡ

### ଗାଥା—ପ୍ରଥମ ଭାଗ—

ଗାଁ ଝିଅବୋହୂଙ୍କ ସୁଖଦୁଃଖ ଗୀତିକା



### ଗାଥା—(ଦ୍ୱିତୀୟ ଭାଗ)

ଗାଁ ଝିଅଙ୍କ ପୁରାଣ ଓ କାହାଣୀ ଗୀତିକା



## ଦ୍ୱିତୀୟ ଖଣ୍ଡ

### ହୁଳହୁଳି କାନ୍ଦଣା—

## ତୃତୀୟ ଖଣ୍ଡ

### ଗାଆଁଣି ମଙ୍ଗଳ ବୋଲ
### (ପ୍ରଥମ ଭାଗ)

| ବିଷୟ | ପୃଷ୍ଠା |
|---|---|



( ଦ୍ୱିତୀୟ ଭାଗ )

## ଚତୁର୍ଥ ଖଣ୍ଡ

### ୧ । କିଶୋରୀଙ୍କ ମେଳ ଗୀତକା



### ୨—ଗୋଠବାହୁଡ଼ା ମହାପ୍ରଭୁ ସେ

| ବିଷୟ | ପୃଷ୍ଠା |
|---|---|



## ଦ୍ୱାଦଶ ଖଣ୍ଡ

## ପରିଶିଷ୍ଟ ଗୀତିକା



| ବିଷୟ | ପୃଷ୍ଠା |
|---|---|



## ଜାତିଦ୍ୟ ଗୀତିକା



## ମଙ୍ଗୁଳି ଗୀତ



---

## ଅମର ଶିଶୁ ପ୍ରେମସୁନ୍ଦର କରକମଳଟବାରକରେ



ଜନ୍ମ—୨୦-୯-୩୩ ଲୀନ—୨୬-୭-୫୩

ଅମୂଲ୍ୟ ନିଧି ପ୍ରେମସୁନ୍ଦର ନାହିଁ
ବଳ ବୟସ ବୁଦ୍ଧି କେତେ ଯେ ଦେଇ
ଗଢ଼ିଲୁଁ ଦେଶ ଲାଗି ଶେଷେ ଜାହ୍ନବୀ
ଘେନି ତୋଳିଲେ, ହୃଦେ ଭେଦିଲା ପବି ।

—ପିତରୌ—

# ଆଶୀର୍ବାଦ

ଉତ୍କଳର ଏହି ଗ୍ରାମ୍ୟଗୀତ ଗୁଡ଼ିକ ବଣର ମାଳତୀ । କାହାର ବଗିଚାରେ ତିଆରି କରା ହୋଇନାହିଁ । ବାବୁ ଚକ୍ରଧର ଏ ସଂକଳନରେ ବହୁତ ପରିଶ୍ରମ କରିଅଛନ୍ତି । ତାଙ୍କର ଏ ଉଦ୍ୟମ ଅତୀବ ସାଧୁ ଓ ଶ୍ଳାଘ୍ୟ । ଜାତିର ହିତକାମୀମାନେ ଏହି ଉଦ୍ୟମର ପରିସର ବଢ଼ାଇବାରେ ସାହାଯ୍ୟ କରନ୍ତୁ । ଏହି ସବୁ କ୍ଷେତ୍ରରେ ଅନୁସନ୍ଧାନ ବଢ଼ିଲେ ଯଥାର୍ଥ ଜାତୀୟ ସାହିତ୍ୟ ଯାହାକୁ କହନ୍ତି ତାହା କ୍ରମେ ପ୍ରକାଶ ପାଇବ । ବିକାଶ ଜୀବନ୍ତ ମୌଳିକତାର ଆଧାରରେ ପ୍ରତିଷ୍ଠିତ ହେବ । ଜାତିର ମେରୁଦଣ୍ଡ ଓ ଭବିଷ୍ୟତ ପରମ୍ପରାର ରସ ଓ ଶକ୍ତିରେ ପୁଷ୍ଟ ଓ ବଳିଷ୍ଠ ହୋଇ ସ୍ପଷ୍ଟ ବ୍ୟକ୍ତିତ୍ୱରେ ଆତ୍ମପ୍ରକାଶ କରିବ ।

ନୀଳକଣ୍ଠ ଦାସ

ବାବୁ ଶ୍ରୀମାନ୍ ଚନ୍ଦ୍ରଧର ବନ୍ଧୁ ଆନ୍ତ୍ରୀୟ ସହାୟତାରେ ଏଗୁଡ଼ିକ ଏକତ୍ର କରି ଉତ୍କଳ ଜାତୀୟ ସାହିତ୍ୟର ବିଶିଷ୍ଟ ଅଭାବ ପୂରଣ କରିଅଛନ୍ତି । ଏସବୁ ଦେଖି ମୋର ମନେହେଲା— ଏଗୁଡ଼ିକ ପ୍ରକୃତରେ ସରଳ ଅନାବିଳ ମୌଳିକ ରଚନା—ସରଳ ଉତ୍କଳ-ପ୍ରାଣର ସ୍ୱଚ୍ଛ ଭାବଧାରା । ଏହା ପାଠ କଲେ ଶତ ସ୍ନିଗ୍ଧ ସ୍ମୃତି ପ୍ରାଣରେ ଅଭିନବ କରୁଣ ରସର ସଞ୍ଚାର କରିଦିଏ । ମୋର ବିଶ୍ୱାସ ଏ ପୁସ୍ତକର ପ୍ରଚାର ଦ୍ୱାରା ଯଥାର୍ଥରେ ଆମ୍ଭମାନଙ୍କ ସାହିତ୍ୟ ବିଭବଶାଳୀ ହୋଇ ପରିଗତ ହେବ ।

[signature]

"ଶ୍ରୀଯୁକ୍ତ ଉମାଚରଣ ମହାନ୍ତି ପଠାଇ ଦେଇଥିବା 'ଉତ୍କଳ ଗାଉଁଲିଗୀତ' ବହିଟି ଏଇକ୍ଷଣି ପାଇ, ମଲାଟରୁ ମଲାଟ ପର୍ଯ୍ୟନ୍ତ ଦେଖିଗଲି । ମୋର ଚକ୍ଷୁ ଲୋତକାପ୍ଲୁତ ହୋଇ ଆସିଲା । ପ୍ରିୟ ଚନ୍ଦ୍ରଧର ବାବୁ, ମୁଁ ଆପଣଙ୍କୁ ଏ ଚିଠି ନ ଲେଖି ରହି ପାରିଲି ନାହିଁ । ମୋର ଚକ୍ଷୁ ଆର୍ଦ୍ର ହୋଇ ଆସିଲା ଦୁଇଟି କାରଣରୁ । ଗୋଟିଏ ହେଉଛି ଗଭୀର ଆନନ୍ଦାନୁଭୂତ । ଏ ସଂଗ୍ରହ ପ୍ରକାଶିତ ହେବାର ଦେଖି ମୋର ଚିତ୍ତ ଉଲ୍ଲସିତ ହୋଇ ଉଠୁଛି । ସେ ଉଲ୍ଲାସ ଏତେ ଗଭୀର ଓ ବ୍ୟାପକ ଯେ, ତାହା ଗଭୀର ଶୋକ ସହିତହିଁ ତୁଳନୀୟ । ଆପଣ ସମଗ୍ର ଜାତିର ନମସ୍ୟ । କନକ-ମଂଜରୀ ମଧ୍ୟ । ତାଙ୍କ ନାମ ପଛରେ ବୋଲିବାରେ ଅପରାଧ ନାହିଁ । ମୁଁ ଆଶାକରେ ଏହା ତାଙ୍କୁ ପ୍ରକୃତ ସୁଖ ଦେବ । କାରଣ, ଆମେ କେବଳ ସେହି 'କନକ'ଙ୍କୁ ପୂଜା ଦେବୁ, ଯାହା ଚନ୍ଦ୍ରଧରଙ୍କ ଲୌହଚନ୍ଦ୍ରକୁ ସ୍ୱର୍ଣ୍ଣରଂଜିତ କରିପାରିଛି । ଆପଣ ଦୁହିଙ୍କ ମିଳନରେ ଆମେ ଉତ୍କଳ ସାରସ୍ୱତ ମନ୍ଦିରର ଚୂଡ଼ାରେ ପ୍ରକୃତରେ କନକ-ଚନ୍ଦ୍ର ପାଇଛୁଁ । ଏହି ସଂଗ୍ରହହିଁ ସେହି ସ୍ୱର୍ଣ୍ଣ-ଚନ୍ଦ୍ର । × × ×

ଏ ପୁସ୍ତକ ପଢ଼ୁପଢ଼ୁ ମୋର ନେତ୍ର ନୀରଜଡ଼ିତ ହେବାର ଦ୍ୱିତୀୟ କାରଣ ହେଉଛି 'ପ୍ରେମସୁନ୍ଦର'ର ଛବି ଓ ଆପଣଙ୍କ ରଚିତ କବିତା । ବେଶୀ କହି କି ଲାଭ । × ×

ପୁସ୍ତକଟିର ଛାପା ସୁନ୍ଦର । ଆପଣଙ୍କ ମୁଖବନ୍ଧ ତ ଏକ ଦୀର୍ଘ କବିତା । କବିତା ଗୁଡ଼ିକର ବିଭାଗ ସୁନ୍ଦର । ପଛରେ ଇଣ୍ଡେକ୍ସ ବଡ଼ ଉପଯୋଗୀ । ସବୁମନ୍ତେ ବହିଟି ବଡ଼ ଉପଭୋଗ୍ୟ ହୋଇଛି । ଯାହା ପରିବେଷଣ କରିଦେଇ ଗଲେ, ସେଥିପାଇଁ ସମଗ୍ର ଓଡ଼ିଆଜାତି ଆପଣଙ୍କ ନିକଟରେ ଋଣୀ ବୋଧ କରିବ । × × ×

ତା ୭ । ୩ । ୧୯୬୦ }
କଟକ

ମାୟାଧର ମାନସିଂହ

# ଗାଥା

## ପ୍ରଥମ ଭାଗ

---

# ଗାଁ ଝିଅବୋହୂଙ୍କ ସୁଖଦୁଃଖ ଗୀତିକା

ଝିଅଙ୍କ ଗୀତକା-୧

### ପହିଲ ପାଳି

ପହିଲ୍ ପାଳି ବୋଉ ! ଦେଲୁ ପଠେଇ
ସାଙ୍ଗରେ ଯାଇଥିଲେ ସାନ କକେଇ ଲୋ । ୧ ।
ଅଧା ବାଟକୁ ବୋଲି ମୋ ନନା ଗଲେ
'ଝିଅ ! ଯାଉଛୁ'—ବୋଲି ମେଲାଣି ଦେଲେ ଲୋ । ୨ ।
ନନାଙ୍କ ମୁହଁକୁ ଯେ ଗୁହିଁଲି ମୁହିଁ
ନନା ଧଇର୍ଯ୍ୟ ଧରି ପାରନ୍ତି ନାହିଁ ଲୋ । ୩ ।
ଗଡ଼ୀଶ୍ୱରଙ୍କ ମାଳୀ ସେଠାରେ ଥିଲା
ନନାଙ୍କ ଆଖି ଲୁହ ପୋଛୁଣ ଦେଲା ଲୋ । ୪ ।
କାହିଁକି କାନ୍ଦ ମିତ୍ରେ ! ଯାଅ ଘରକୁ
ଝିଅ ଜନମ ସିନା ପରଘରକୁ ହେ । ୫ ।

ଚଉତା ଉପରେ ନାହିଁ ନଣନ୍ଦଶାଢ଼ୀ
ତା'ଦେଖି ବୋଉ ! ମତେ ପକାନ୍ତି ଝାଡ଼ି ଲୋ । ୬ ।
ପେଡ଼ିରେ ରଙ୍ଗ ଲୁଗା ଖଣ୍ଡିଏ ନାହିଁ
ପିନ୍ଧିଲି ଲୁଗା ଖଣ୍ଡି ନେଲେ ଛଡ଼ାଇ ଲୋ । ୭ ।

**ଶାଶୁ କହିଲେ**

ଓଢ଼ଲ କନା ପିନ୍ଧ ପଶିଲୁ ଘରେ
ତୋର କପାଳେ ସତେ ଗାରମା ଏତେ ଲୋ । ୮ ।
ବୁଢ଼ୀକାଳେ ଲୋ ମୋର ଅସୁଛି ଭାର
ବୁଢ଼ି ନ ମଲୁ ତୁ ଲୋ ବାଡ଼ରେ ଠୋଡ଼ି ଲୋ । ୯ ।
ତା' ଶୁଣି ଦେଢ଼ଶୁରେ ଦଅନ୍ତି ଗାଳି
ତା' ଶୁଣି ଖୁଡ଼ଶାଶୁ ଲଗାନ୍ତି କଳି ଲୋ । ୧୦ ।
ଅନ୍ୟ ଗାଳି ଲୋ ତୋର ତୁଣ୍ଡରେ ନାହିଁ
ଅଣ୍ଟକୁଡ଼ି ଝିଅ ତୁ ବୋଲୁ କପାଳି ଲୋ । ୧୧ ।
ଶାଗ କାଟିବି ବୋଲି ପନିକ ଥୋଇ,
ମନ ବିକଳ ହେଲା ପଡ଼ିଲି ଶୋଇ ଲୋ । ୧୨ ।
ହାଟରୁ ଖଜା ମୁଆଁ ଅଣନ୍ତି କଣି
ବୋଲନ୍ତି ତୋର ଭାଇ ଅସିଛି ଅଣି ଲୋ । ୧୩ ।

( ପ୍ରଥମ ରଚନା—ବାଣପୁର, ପୁରୀ )

ଝିଅଙ୍କ ଗୀତିକା-୨

## ମୋ ଜୀବନ

ଜାଗର ଦୁଆଅ ଦନ
ଚଉଧୁରୀ ପୁଅ ବୁହାଇ ଦନ ଲୋ ମୋ ଜୀବନ
ବୋଇଲା ବୋହୂକୁ ଅଣ, ମୋ ଜୀବନ । ୧ ।
ଭଲା ଚଉଧୁରୀ ଭଲା
କଟକ ଦାଣ୍ଡରୁ ମାଇଲା ଘୋଡ଼ା ଲୋ ମୋ ଜୀବନ
ଗାଆଁରେ ପ୍ରବେଶ ହେଲା, ମୋ ଜୀବନ । ୨ ।

କକେଇ ତୋହର ଥିଲେ
ସମଧି ଅଇଲା ଚହଲ କଲେ ଲୋ, ମୋ ଜୀବନ
ପାଣି ପିଢ଼ା ନେଇ ଦେଲେ, ମୋ ଜୀବନ । ୩ ।
ଜେଜ ବାପା ତୋର ଥିଲେ
ହାଣ୍ଡିଆ ସାହୁରୁ ନାହାକ ଡକେଇଲେ ଲୋ ମୋ ଜୀବନ
ଧନ ବାର ବୁଝାଇଲେ, ମୋ ଜୀବନ । ୪ ।
ଦଦେଇ ତୋହର ଥିଲେ
ବଣିଆ ସାହୁରୁ ବଣିଆ ଡକାଇଲେ ଲୋ ମୋ ଜୀବନ
ଅଳଂକାର ଗଢ଼େଇଲେ, ମୋ ଜୀବନ । ୫ ।
ଦେଠେଇ ତୋହର ଥିଲେ
ତୋରାଣି ପିଇବାକୁ ଡକାଇ ନେଲେ ଲୋ ମୋ ଜୀବନ
ହାତକୁ ଚନ୍ଦେଇ ଦେଲେ, ମୋ ଜୀବନ । ୬ ।
ଖୁଡ଼ି ଯେ ତୋହର ଥିଲା
ଅତ ଶରଧାରେ କୋଳକୁ ନେଲା ଲୋ ମୋ ଜୀବନ
ବେକୁ ଚନାମାଳି ଦେଲା, ମୋ ଜୀବନ । ୭ ।

ଗାଆଁରେ ପିଉସୀ ଘର
ତତେ ଦେଖିବାକୁ ଶରଧା ତାର ଲୋ ମୋ ଜୀବନ
ନୟନ୍ତୁଁ ବହଇ ନୀର, ମୋ ଜୀବନ । ୮ ।
ମଉଳା ତୋହର ଥିଲା
ତୋରାଣି ପିଇବାକୁ ଡକାଇନେଲା ଲୋ ମୋ ଜୀବନ
କଳା କୁମ୍ଭଶାଢ଼ୀ ଦେଲା, ମୋ ଜୀବନ । ୯ ।
ସାଇ ପଡ଼ିଶାଏ ଥିଲେ
ତୋରାଣି ପିଇବାକୁ ଡକେଇ ନେଲେ ଲୋ ମୋ ଜୀବନ
ଫରୁଆ ପାନିଆ ଦେଲେ, ମୋ ଜୀବନ । ୧୦ ।

ନୟନେ କଜଳ ଦେଇ
ଅଷ୍ଟ ଅଳଙ୍କାର ଖଞ୍ଜିଲ ନେଇ ଲୋ ମୋ ଜୀବନ
ତୋହର ତ ବାରୁ ନାହିଁ, ମୋ ଜୀବନ । ୧୧ ।

ପଯୃରେ ଅଲତା ଦେଇ
ଲେଉଟି ମୁହଁକୁ ଗୃହଁଲ ମୁହିଁ ଲୋ ମୋ ଜୀବନ
ଯାଉଛୁ ଲୋତକ ବହି, ମୋ ଜୀବନ । ୧୨ ।

ଦକ୍ଷିଣି ପିନ୍ଧା ପାଗ୍ଗେଡ଼ି
ଢେଙ୍କାନାଳ ଛତା କାନ୍ଧରେ ପଡ଼ି ଲୋ ମୋ ଜୀବନ
ଘୁଇ ନନା ଯିବ ଗ୍ଲଡ଼ି, ମୋ ଜୀବନ । ୧୩ ।
ଯେତେବେଳେ ଅନୁକୂଳ
ଠାକୁରପ୍ରସାଦ ଧଇଲ୍ କର ଲୋ ମୋ ଜୀବନ
ବୋଇଲ୍ ହେଲ୍ ଅନ୍ତର, ମୋ ଜୀବନ । ୧୪ ।

ଗଉଡ଼ ଯେ ଥିଲେ ତହିଁ
ଖଲ୍ ପର୍ କର ନେଲେ ଉଡ଼ାଇ ଲୋ ମୋ ଜୀବନ
ଆଉ ତ ଦେଖିଲ୍ ନାହିଁ, ମୋ ଜୀବନ । ୧୫ ।
ମାସ ତନ୍ ଦନ ବାଠ
କମିତ ଖାଇବୁ ପ୍ରବାସ ଭାତ ଲୋ ମୋ ଜୀବନ
ତୋ କର୍ମେ ଥିଲ୍ ଏ କଷ୍ଟ, ମୋ ଜୀବନ । ୧୬ ।
ପଞ୍ଜର ତଳେ ମୁଁ ଥାଇ
ନାତ ଭଗବତୀ ଜଣାଉଥାଇ ଲୋ ମୋ ଜୀବନ
ମୋ ବନ୍ଧୁ ଅସିବ କାହିଁ ? ମୋ ଜୀବନ । ୧୭ ।
( ପ୍ରଥମ ରଚନା—ବାଣପୁର, ପୁରୀ )

ହିଅଙ୍କ ଗୀତକା-୩

## ଚଉଡା ଚଡ଼ାଇ ନେଲେ

ଅମ୍ବ ଲଟିକାକୁ ଶିମ୍ବ ଲଟିକା ଲୋ
ନଡ଼ିଆ ଲଟିକା ମଲ୍
ବାବୁ ଚଣ୍ଡାଲ ସେ ଏଡ଼େ ଚଣ୍ଡାଳ ଯେ
ଦୂର ଦେଶେ ମେଲ୍ ଦେଲ୍ । ୧ ।

ମାଆ ଚଣ୍ଡାଳୁଣୀ ଏଡ଼େ ଚଣ୍ଡାଳୁଣୀ
କୋଠା ଭୂଛା କରଦେଲା
ଭାଇ ଚଣ୍ଡାଳ ସେ ଏଡ଼େ ଚଣ୍ଡାଳ ସେ
ଅଧା ବାଟେ ଛାଡ଼ି ଗଲା । ୨ ।
ଦେହଣ୍ଡରେ ଥିଲେ ତୁଳସୀ ବୃକ୍ଷ ସେ
ଖଣ୍ଡେ ଦୂରୁଁ ଅଡ଼ ହେଲେ
ଦୁଆର ଥିଲେ ଯେ ପରହାସି ଲୋକ
ଖଣ୍ଡେ ଦୂରୁଁ ହସି ଦେଲେ । ୩ ।
ଶଶୁରେ ଯେ ଥିଲେ ଘର ସାଆନ୍ତ ସେ
ଚଉତା ଚଢ଼ାଇ ନେଲେ
ଶାଶୁଏ ଥିଲେ ଯେ ଘର ସାଆନ୍ତାଣୀ
ଗୁଡ଼ଳ ବୃଷ୍ଟି କଲେ । ୪ ।
ଯାଆ ଯେ ଥିଲେ ସାଙ୍ଗ ସରସା ସେ
ହାତ ଧରି ଘରକୁ ନେଲେ
ନଣନ୍ଦ ଥିଲେ ଯେ ପର ଭୁଆସୁଣୀ
ଦୁଆର ଜଗି ବସିଲେ । ୫ ।
ବାପା ଦେଇଥିଲେ ଶାଢ଼ୀ ଗୁରଖଣ୍ଡି
ଭଲ ଶାଢ଼ୀ ଖଣ୍ଡି ନେଲେ
ପୋଷିଲା ଖୋଉଁଦ ମଉଡ଼ମଣି ଯେ
ମୁହଁମାଡ଼ି ଶୋଇଥିଲେ । ୬ ।
( ମୂଳ ରଚନା—ନୀଳାଦ୍ରିପୁର, ନୟାଗଡ଼, ପୁରୀ )

ବିଅଙ୍କ ଗୀତିକା-୪

## କେମା ମେଲଣି

ଏଥୁ ଅନ୍ତେ ବହନ        ବର କନ୍ୟା ଗମନ
ଅତି କ୍ରୋଧଭରେ କେମା କଲେ ରୋଦନ । ୧ ।

ସାଇ ପଡ଼ଶା ଭାର          ତାଙ୍କୁ ପ୍ରବୋଧ କର
ନ କାନ୍ଦ ନ କାନ୍ଦ ଜେମା ବେଦନ କର । ୨ ।
ଶୁଣି ଜନନୀ ଧାଇଁ          ଝିଅ କୋଡ଼େ ବସାଇ
ଆହା ମୋ ଦୁଲଣୀ ତୋରେ ମୂର୍ଚ୍ଛିବ କାହିଁ ? ୩ ।
ଜେମା ବୋଲନ୍ତି—"ମାତ,
ପାଳିଥିଲ ବହୁତ
ଜାଣି ଜାଣି ଦୂର ଦେଶେ ମେଲ ଦେଉଚ" । ୪ ।
ମାଆ ମାଉସୀ ଖୁଡ଼ି
କ୍ରୋଧେ ବୋଲନ୍ତି ବାଣୀ
ଯିବା ଖଣ୍ଡି ସତ ଝିଅ ! ନ ଭାଳ ପୁଣି । ୫ ।
କ୍ରୋଧେ ବୋଲଇ ପିତା
ଆଲୋ ଶୁଣ ଦୁହିତା
ଯାହା ତୋ କରମେ ଲେଖିଅଛୁ ବିଧାତା । ୬ ।
ଖୁଡ଼ି ବୋଲେ ଝିଅସି
କର୍ମେ ଅଛୁ ତୋହର
କର୍ମେ ଥିଲେ ଝିଅସି ଲୋ ଆସିବୁ ଫେର । ୭ ।

ଖୁଡ଼ୁତାଙ୍କ ଅଗ୍ରତେ
ଜେମା କହିଲେ ଯେତେ
ଖବର ଅନ୍ତର ଦେବ ବାରକ ହସ୍ତେ । ୮ ।
ଜେଠା ଜେଠାଇ ଶୁଣ
ତୁମ୍ଭେ କେଡ଼େ ଦାରୁଣ
ଜାଣୁ ଜାଣୁ ଦୂର ଦେଶେ ଦେଲ ଆପଣା । ୯ ।
ମାମୁଁ, ମଉଳା, ମାଇଁ
ମୋତେ ଦେଲ ଭସାଇ
ମେଲିଦେଲ ସିନ୍ଧୁକୂଳ ସାଗରେ ନେଇ । ୧୦ ।

ଜ୍ୟେଷ୍ଠ ଭାଇଙ୍କ ହସ୍ତ
ଜେମା ଧରି ତୁରିତ
ଆହା, ଆହା ଧାଇଁ ନ କରିବ ଅନାସ୍ତ । ୧୧ ।

ତୁମ୍ଭେ ଭାଇ ସୋଦର
ବାଣୀ ଶୁଣ ମୋହର
କରିବ ନା ମତେ ଏବେ ଗେଲ୍‌ବସର ! ୧୨ ।
ଭାଇ ବୋଲେ—"ଭଉଣି !
ତତେ ଠିକ୍ କ୍ଲେ ଆଣି
କାହିଁକ ମନରେ କରୁ ଏତେ ଭାଳେଣି । ୧୩ ।
ତତେ ଡୋଲି ଚଢ଼ାଇ
ଘେନି ଆସିବି ଯାଇ
ଶାଶୁ ଘରେ ଥିବୁ ଦୁଃଖ ସନ୍ତାପ ସହି" । ୧୪ ।

ତେଣୁ ଜେମା ଚଳିଗଲେ
ବୋହୂ ପାଶେ ମିଳିଲେ
ମୁଖେ ମୁଖ ଦେଇ ଜେମା ରୋଦନ କଲେ । ୧୫ ।
ବୋହୂ ବୋଲେ—'ନଣନ୍ଦେ !
'ମୁଁ ଯେ କହୁଛି ପଦେ
'ହେହେ ହେହେ ନ ହସିବ ଗୁରୁସ୍ତ ଆଗେ । ୧୬ ।
'ସେ ଯେ ଶାଶୁ ଶଶୁର
'ତାଙ୍କୁ କରିବ ମୋର
'ତାଙ୍କୁ ମୋର କଲେ ଜେମା କରିବ ଘର । ୧୭ ।
'ନିଜ ଗୁରୁସ୍ତ ଠାଇଁ
'ଆଶା ଥିବ ଲଗାଇ
'କଥା ନ କହିବ ଜେମା ମୁହଁକୁ ଗୁହିଁ । ୧୮ ।
'ସେ ଯେ ଦାଅର ଭାବ
'ଗେଲ୍ ହାତେ ମାରିବ
'ସେ କଥାକୁ ଜେମା ଅଭ୍ରେ ଦ୍ୱେଷ ନୋହିବ । ୧୯ ।
'ଠାହୁ ଠାପରି ଲୋକେ
'ସେ ଯେ କହନ୍ତି ଥୋକେ
'ସବୁ ସହି ନେବ ଜେମା ଗଜପଲ୍‌ଙ୍କେ' । ୨୦ ।

× × ×

"ତୁମ୍ଭେ ଥାଅ ଏଠାର
ଏବେ ଯାଉଛ ମୁହିଁ
କାହାକୁ ଡାକବ ଅସ ପିବା ଗାଧୋଇ । ୨୧ ।
"ଅହା ସଙ୍ଗାତ ସଖି
ଦୟା ଥିବଟି ରଖି
ନୟନୁଁ ନ ରହେ ନୀର ତୁମ୍ଭଙ୍କୁ ଦେଖି । ୨୨ ।
"ଅହା ଚମ୍ପା ବଉଳ
ତୁମେ ଅମର ମେଳ
ଆଜଠାରୁ ଛୁଡ଼ିଗଲା ବେଣୀଙ୍କ ଖେଳ । ୨୩ ।
"ଅହା କଷି କାକୁଡ଼ି
ମୁଁ ତ ଯାଉଚ୍ଛି ଛାଡ଼ି
ମନରେ ପକାଉ ଥିବ ଘଡ଼ିକ ଘଡ଼ି" । ୨୪ ।
ସିଣି ଯେ ସବ୍ବାଳୀ
ଦେଲେ ଯେ ହୁଳହୁଳି
ଆଜଠାରୁ ଛୁଡ଼ିଗଲା କେମାଙ୍କ ଅଳି । ୨୫ ।
ଥୋକେ 'କୋକିଳ' କହୁ
ବୁଦ୍ଧିତ ଦଶୁ ନାହିଁ
ଶ୍ରୀପାଦପଦ୍ମରେ ଶଉ ରହିଲା ଯାଇ । ୨୬ ।
( ରଚନା—କଟକ )



ବୋହୂଙ୍କ ଗୀତିକା-୧

## ଜନମ ଶାଶୁ

ଯେଉଁଦିନୁ ଦୁର୍ଗାଦେବୀ !          ଅଇଲି ଯେ ମୁହିଁ
କେତେ ଦୁଃଖ ସହିଲିଣି          ଏହି ଘରେ ରହି ଗୋ । ୧ ।
ସାବତ ତ କୁହନ୍ତି ଯେ          ଜନମ କଲା
ମୋହ କଥା ତ ଶାଶୁଙ୍କୁ          ନ ଯୋଗାଇଲା ଗୋ । ୨ ।

ଘଷି ଦେବାକୁ ଗଲେ ଯେ
ଲଗାନ୍ତି ଗୋଳ
ଅରସିତ ଟୋକୀ ମୋର
ଛୁଅନ୍ତା ଗୋଡ଼ ଯେ । ୩ ।
ଫିଙ୍ଗି ଯେ ଫୋପାଡ଼ି ଦ୍ୟନ୍ତି
ପଦୁଣ୍ଡ ତଳ
କବାଟ ଯେ କିଳି ଦ୍ୟନ୍ତି
ଅନ୍ଧାର ଘର ଯେ । ୪ ।
ପଦୁଣ୍ଡରେ ଠିଆ ହୋଇ
ବୁହାଏ ଲୁହ
ବୋଉ ନନା କଲେ ଇସ୍ପା
ସହିଲି ଦହ ଗୋ । ୫ ।

କହନ୍ତି ଲୋ—'ମାଇଲାର ମାଡ଼ ତାକୁ          ନାହିଁ ଅଳପ
ନରସିଂହପୁର ଝିଅ          ହୋଇଛୁ ଦୁଷ୍ଟ ଗୋ । ୬ ।
ବହୁତ ଯେ ଗାଳି ଦ୍ୟନ୍ତି          ଅପକରଷ
ଘର ମିଶିପଙ୍କ ଠେଇଁ          ହୁଅନ୍ତି ରସ ଗୋ । ୭ ।
ଖାତରେ ସୁଜନ ସେ ଯେ          ମଉନେ ଥାଇ
କାହାର ଅଗରେ କଛୁ          କହନ୍ତି ନାହିଁ ଗୋ । ୮ ।

କହନ୍ତି ସେ—'ବୁଝାଇ କହିଲେ କଥା
ବୁଝିଲୁ ନାହିଁ
ଅଳଟି କହିଲେ
ମୁହିଁ ଦେଲୁ ଶୁଖାଇ ଗୋ । ୯ ।

ବୋଲନ୍ତ— ଲୋ ! ତୁମ୍ଭେ ଯେବେ
ଦେବ ମୁଁ ମାର
ଜଗତରେ ହସୁଥିବେ
ଯାଇ ଭଗାର ଲୋ । ୧୦ ।
ତୋର ଦୁଷ୍ଟ ସାନ ଯାଆ
ଡଭାଉ ଥିବ
ତାହା ଶୁଣି ତୋର ଦନ୍ଦ
କେତେ ସହିବ ଲୋ । ୧୧ ।
ଖଟୁଲିରେ ବସିଛନ୍ତି ଦୁରୁଗା ଦେବୀ
ତାଙ୍କ ପାଦ ତଳେ ନିତ ଥିବୁ ତୁ ସେବି ଲୋ । ୧୨ ।
ଦେଏବୀ ନନ୍ଦନୀ ଅବା ଫେରିବେ ଶନ୍ତା
ବୋଉ କୋଳେ ଥିଲେ ଅଭିମାନ ଫିଟେନ୍ତା ଗୋ । ୧୩ ।
ଜନମ କଲୁ ଜନନୀ
ନାହିଁ ତୋହର
ଅଭିମାନ ଫିଟାଇଦେ
ଦୟାସାଗର ଗୋ । ୧୪ ।
( ମୂଳ ରଚନା—ପୁଷ୍ପ )

ବୋହୂଙ୍କ ଗୀତିକା-୨

**ଭଗାରପୁର**

କାନ୍ଦ କହେ ନାଗିବର
ମୋତେ ଛାଡ଼ିଗଲ ଭଗାରପୁର ରେ
ଜନନୀ କଲୁ ଅନ୍ତର, ସଜନୀ ରେ । ୧ ।
ଗର୍ଭେ ଦଶମାସ ଧରି
କେତେ ଦୁଃଖେ ଯାଇଥିଲୁ ବସ୍ତିର ରେ
ଏବେ ଦେଲୁଁ ପର କରି, ସଜନୀ ରେ । ୨ ।

ହୁଅନ୍ତି ମୁଁ କାକ ପକ୍ଷୀ
ଜନନୀ କ ଥରେ ଅସନ୍ତି ଦେଖି ରେ
ସଫଳ ହୁଅନ୍ତା ଆଖି, ସଜନୀ ରେ । ୩ ।
ମନ ମୋ ଯାହା ହେଉଛି
ଯେଣିକି ଗୁହଁଲେ ମୁହଁ ଦିଶୁଛି ରେ
ତା ଗୁଣ ମନେ ପଡୁଛି, ସଜନୀ ରେ । ୪ ।
ଭୁଞ୍ଜି ବସିଲେ ଅହାର
ମନେ ପଡୁଥିବ ମୁହଁ ତାହାର ରେ
ନେତ୍ରୁ ଗଡୁଥିବ ନୀର, ସଜନୀ ରେ । ୫ ।
ତାହାର ଅସ୍ଥିତ ନାହିଁ
ଅଣ ଅସ୍ଥିତରେ ରହୁଛି ସେହୁ ରେ
ପୁଅରେ ତ ପଣ ନାହିଁ, ସଜନୀ ରେ । ୬ ।
ନନାଙ୍କ ଦାରୁଣ ପଣ
ନାହିଁ ନ ଥିବ ତ ସଂସାରେ ଜାଣ ଯେ
ମୋଠାରେ ବଡ଼ କୃପଣ, ସଜନୀରେ । ୭ ।
ବୋଇଲେ ଦୁଃଖ କପାଇଁ
ବରଷ ନ ପୂରୁଁ ଅଣିବ ମୁହଁ ଲୋ
ଏତେ କୋହ କାହିଁପାଇଁ, ସଜନୀ ରେ । ୮ ।
ସତେ 'ବିଦ୍ୟାଧର' ମୋର
ଅସିବ ପାଶ ବସିବ କୋଡ଼ର ଯେ
ବୋଲିବ—'ନାନୀ' ବାହାର, ସଜନୀ ରେ । ୯ ।
ପଙ୍ଖା ଧରିଥିବ ହାତେ
ଡାକୁଥିବ ବସି ତାହାର ପାଖେ ରେ
ପିଞ୍ଚି ନ ପଡ଼ିବ ବାତେ, ସଜନୀ ରେ । ୧୦ ।
ତୁଣ୍ଡେ ପଛେ ନ ପଗୁର
ଜଗତରେ କର ଘର ଦୁଆର ରେ
ଯେଣେ ଥିଲେ ତ ମୋହର, ସଜନୀରେ । ୧୧ ।
( ମୂଳ ରଚନା—ତଗିରିଆ )

# କୋଇଲି ଦୂତ

କୋଇଲି ଲୋ
ମୋହ ପାଇଁ ଉଡ଼ ଉଡ଼ ଯିବୁ,
ମୋ ବୋଉ ନନାକୁ କହି
ମାନ ଉତ୍ତରବୁ ଲୋ କୋଇଲି । ୧ ।

କୋଇଲି ଲୋ
ବୋଉ ଯେବେ ଜନ୍ମ କରିଥାନ୍ତା
ସତେ ନ ଦେଖିଲେ ମୋତେ
ସପନେ ଦେଖନ୍ତା ଲୋ କୋଇଲି । ୨ ।

କୋଇଲି ଲୋ
ସପନରେ କହନ୍ତା ନନାକୁ
ବିକଳ ହେଉଛି ମନ
ଅଣାନ୍ତ ଝିଅକୁ ଲୋ କୋଇଲି । ୩ ।

କୋଇଲି ଲୋ
ନନା ଯେବେ ଜନ୍ମ କରିଥାନ୍ତେ
କାନେ ଛତା, ହାତେ ବାଡ଼ି
ସଙ୍ଗୋଳି ଆସନ୍ତେ ଲୋ କୋଇଲି । ୪ ।

କୋଇଲି ଲୋ
ଭାଇନା ମୋ ସିଡ଼ପଣି କଲା
ଛ ମାସକୁ କଣ୍ଟି କରି
ବରଷେ ରହିଲା ଲୋ କୋଇଲି । ୫ ।

କୋଇଲି ଲୋ
ଭାଉଜ ଭଉଣୀଏ ତ ସିଡ଼ପଣି କଲେ
ଭାଇ ସଙ୍ଗେ ପଡ଼ି ସେ ତ
ଜଣେ ଜଣେ ହେଲେ ଲୋ କୋଇଲି । ୬ ।

କୋଇଲି ଲୋ
ପୋଡ଼ପାଡ଼ ପ୍ରାଣ ବୋଉ ଜଳୁ କର ନାହିଁ
ଜହର ନ ଦେଇ ସତେ
ରଖିଲୁ କପାଳି ଲୋ କୋଇଲି । ୭ ।

କୋଇଲି ଲୋ
ଗାଁ ଝିଅ ବେଳେ ବେଳେ ବୁଲି ଆସୁଥିବ
ସାନ ଝିଅ କୋଡ଼େ ପଶି
ଦୁଃଖ ପାଶୋରିବ ଲୋ କୋଇଲି । ୮ ।

( ମୂଳ ରଚନା—ନରସିଂହପୁର )

ଅନ୍ୟତ୍ର—

କୋଇଲି ଲୋ
ତାହା ଶୁଣି ବାପା ଆସୁଥିଲେ
ନଈବଢ଼ି ପାଣି ଦେଖି
ଲେଉଟି ତ ଗଲେ ଲୋ କୋଇଲି ।

କୋଇଲି ଲୋ
ତାହା ଶୁଣି ଶାଶୁଏ ବୋଲନ୍ତି
ତୋର ପରି ବାପ ଭାଇ
ଖାଇ ବସିଛନ୍ତି ଲୋ କୋଇଲି ।

(ମୂଳ ରଚନା—ନୟାଗଡ଼)

ବୋହୂଙ୍କ ଗୀତିକା-୪

## ଭାଇ ନନା (କ)

ଯେଉଁ ଦିନ ଭାଇନନା ଅଣିଗଲୁ ମୋତେ
ହାଣ୍ଡିଶାଳେ ବସି ମୁଁ ଯେ କାନ୍ଦୁଥିଲି କେତେ । ୧ ।
ଦାଣ୍ଡ ଦୁଆରୁ ତୋ ତୁଣ୍ଡ ଶୁଭିଗଲା ମୋତେ
ଲୁହ ପୋଛୁ ଭାଇନନା ଗୁହାଁଦେଲି ତୋତେ । ୨ ।

ହସ ହସ ହୋଇଣ ଯେ ଆସୁଥିଲୁ ତୁହି
ଲକ୍ଷେ ଠଙ୍କା ହଜିଥିଲା ପାଇଲି କି ମୁହିଁ । ୩ ।
ଅଡ଼ଙ୍ଗ ଉପରେ ଯେବେ ବସିଲୁ ତୁ ଯାଇ
ପିଢ଼ା ପାଣି ମୁହିଁ ନେଇ ଥୋଇ ଦେଲି ତହିଁ । ୪ ।
ଗୋଡ଼ ଧୋଇ ସାରି ତୁହି ଗାମୁଛା ଧୋଇଲୁ
ଶୋଷ କରୁଛି ବୋଲିଣ ପାଣି ତ ମାଗିଲୁ । ୫ ।

ବଡ଼ ଶୋଷ କରୁଅଛି ବେଗେ ଦିଅ ପାଣି
ଧଡ଼ପଡ଼ ହୋଇ ମୁଁ ଯେ ବାଢ଼ିଲି ତୋଡ଼ାଣି । ୬ ।
ଦରଗିଆ ହୋଇ ସିନା କହି ଦେଲୁ ମୋତେ
କାହିଁକି କାନ୍ଦୁଛୁ ଆସିଅଛି ନେବ ତୋତେ । ୭ ।
ଘଡ଼ିକ ବାଦରେ ମୁହିଁ ଦେଲିଟି ଉତ୍ତର—
ଦଶ ମାସ ହେଲା ମତେ କରି ଦେଲି ପର । ୮ ।
ସାତ କୋଶ ଦୂର ବାଟେ ଦେଇଛୁ ରେ ମୋତେ
ଗୃରି ମାସେ ଥରେ ମୁଁ ଯେ ଦେଖୁଥାନ୍ତି ତୋତେ । ୯ ।
ତୁହି ପରା ଭାଇ ନନା ଛାଡ଼ି ଦେଇ ଗଲୁ
ନେଉଟି ଥରେ ତ ଆଉ ସଙ୍ଘୋଳି ନଇଲୁ । ୧୦ ।
କହିଲୁ ସର୍ବଦା ବୋଉ ଡରୁଥାଏ ମୋତେ
ଅଡ଼ତତ ଲାଗୁ ଥାଏ ଆସନ୍ତି କେମନ୍ତେ । ୧୧ ।
ନଣନ୍ଦ ହାତରେ ମୁଁ ଯେ କହି ପଠାଇଲି
ଭାଇନା ଆସିଚି ମୋର ଯିବ ତ ବୋଇଲି । ୧୨ ।

ତା ଶୁଣି ଯେ ଦେଢ଼ଶୁରେ ନାହିଁ କରି ଦେଲେ
ପଛନ୍ତରେ ଶାଶୁ ମୋରେ କେତେ ରଗି ହେଲେ । ୧୩ ।
ପୁନଅଁ ବାହାର କଣ୍ଟେ କେଣିକି ରେ ଗଲା
ଉଅଁସ ବାହାର କଣ୍ଟେ ନକଠ ହୋଇଲା । ୧୪ ।
ଦାଣ୍ଡ ଲୋକେ ଭାଇନନା କହନ୍ତି ରେ ସବୁ
ଜନ୍ମ କଲା ମାଆ ତାର ଅଛି ଠିକି ବାବୁ । ୧୫ ।
ସବୁବେଳେ ତଳକୁ ତ ମୁଣ୍ଡ ପୋତ ଥାଇ
ଯେ ଯାହା ବୋଇଲେ ତାହା ଦିଏ ଫୋପଡ଼ାଇ । ୧୬ ।

( ମୂଳ ରଚନା—ବାଙ୍କି )

## ଭାଇ ନନା (ଖ)

ଅଚ୍ଛନ୍ତି ସିଦ୍ଧେଶ୍ୱରୀ ତୋର ଜନନୀ
ତାଙ୍କୁ ଦର୍ଶନ କରି ହେଲୁ ମେଲାଣି । ୧ ।
ଅତି ଦୁର୍ଗମ ପଥ ଲଙ୍ଘି ଅଇଲୁ
ରଜନୀ କାଳେ ଆସି ପ୍ରବେଶ ହେଲୁ । ୨ ।
ହେଲୁ ତୁ ନମସ୍କାର ସଭିଙ୍କୁ ଚାହିଁ
କଲେ କଲ୍ୟାଣ ତୋରେ ସମସ୍ତେ ହୋଇ । ୩ ।

ତୋରେ ଦେଖିଣ ସବୁ ଆନନ୍ଦ ହେଲେ
ଭାଇ ଆସିଛୁ ବୋଲି ମୋରେ କହିଲେ । ୪ ।
ଜାଣିଲି ଭାଇନନା ଆସିଛୁ ମୋର
ଘୋର ଦାରୁଣ ଦୁଃଖ ଯିବ ପାସୋର । ୫ ।
ଚରଣ ଧୋଇ ଘରେ ଗଲୁ ତୁ ପଶି
ଆକାଶ ଚନ୍ଦ୍ରମା କି ଉଇଁଲା ଆସି । ୬ ।

କୋଇଲି କଣ୍ଠ ସ୍ୱରେ କହୁ ତୁ କଥା
ଛାଡ଼ିଲି ଘୋର ଦୁଃଖ ସକଳ ଚିନ୍ତା । ୭ ।
ସେଠାରୁ ଭାଇନନା ପାଖକୁ ଗଲୁ
ଟିକଏ ଦୂରେ ଛିଡ଼ା ହୋଇ ରହିଲୁ । ୮ ।
କାନ୍ଦିଲି ଭାଇନନା ତୋ ମୁଖ ଚାହିଁ
ବୋଇଲି—'ବୋଉ ଛାଡ଼ି ରହିଛୁ କାହିଁ । ୯ ।
'ଦୁଃଖ ପାଇବ ବୋଲି ଜାଣି ନ ଥିଲି
'ନାରୀଣ ହୋଇ ଯାଙ୍କ ଘରେ ରହିଲି' । ୧୦ ।
ସେଠାରୁ ଭାଇନନା ଦେଲୁ ଉତ୍ତର
ବୋଇଲୁ—'କେଉଁ ଦୁଃଖ ହୋଇଛୁ ତୋର' ? ୧୧ ।

ପନ୍ଦର ଦିନ କାଳ ରଖାଇ ତୋତେ
କଷ୍ଟେ ଛାଡ଼ିବୁ ବୋଲି କହିଲେ କେତେ । ୧୨ ।

ସମସ୍ତେ ଏକଠାବେ ବାହାର ହେଲେ
ନିଠୁର ବଚନରେ ତୋରେ କହିଲେ । ୧୩ ।
କହନ୍ତି ଦେଢ଼ଶୁରେ ନିଠୁର ବାଣୀ
ଦେଖା ନ ଦେଇ ତାରେ ହୁଅ ମେଲାଣି । ୧୪ ।

ସେଠାରୁ ଭାଇନନା ପାଖକୁ ଗଲେ
'ଗୁରୁ ମାସ ଗଲେ ତୁ ଯିବୁ'—ବୋଇଲେ । ୧୫ ।
କାନ୍ଦିଲି ଭାଇନନା, ମୁଗକୁ ଚାହିଁ—
'ଆହୁର କହ ଅବା ଦେବେ ପଠାଇ' । ୧୬ ।
ସେଠାରୁ ଭାଇଜନା ହେଲେ ବାହାର
ସଙ୍ଗରେ ଦେଢ଼ଶୁରେ ଥିଲେ ତୋହର । ୧୭ ।
ବସି ଯେ ଥିଲେ ସବୁ ବସିଲେ ଯାଇ
ବାଟ ଖରଚ ଲୁଗା ଦେଲେ ପଠାଇ । ୧୮ ।
କହନ୍ତି ଦେଢ଼ଶୁରେ ନାସ୍ତିକ ଲୋକ—
'କାଲି ସକାଳୁ ନିଅ ତୁମ୍ଭ ସଙ୍ଗତ' । ୧୯ ।
"ଦେବ ଜନମ ଗାଳି
ନୋହିଲି କାହିଁ
"କେତେ ମୁଁ କାମ ଛାଡ଼ି
ରହି ଅଛଇଁ । ୨୦ ।
"ଝିଅକୁ ନେଲେ ପିତା
କହନ୍ତି ଯାଇ
"ରହି ଯେ ଥିଲି ଯାକୁ
ଅଣିବା ପାଇଁ" । ୨୧ ।

ସେଦିନ ଭାଇନନା ଦାଣ୍ଡେ ରହିଲେ
ରାତ ପାହିଲା କ୍ଷଣେ ଘରକୁ ଗଲେ । ୨୩ ।
ଗାଧୋଇ ଅସି ମୁଁ ଯେ ଖୋଜଇ ଘର
ଘର ବାହାର ଖୋଜେ ମେଲା ଉପର । ୨୩ ।
ତହୁଁ ଖୋଜିଲି ଯାଇ ମଣ୍ଡପ ଘର
ଦେଖିଲି ଭାଇ ନାହିଁ ଠାବ ଭିତର । ୨୪ ।

ଓଦା ଲୁଗା ଯେ ମୁହିଁ ପାଲଟି ନାହିଁ
ଓଦା ଲୁଗାରେ କାନ୍ଦେ ମୁଁ ଠିଆ ହୋଇ । ୨୫ ।

ଏକୁ ଅରେକ ଗୃହିଁ କହନ୍ତି ମୋତେ
'ତୋହର ଭାଇ ଅଛୁ କାନ୍ଦୁଛୁ କେତେ । ୨୬ ।
ତେଣୁ ଶାଶୁଏ ଅସି କହନ୍ତି ବାଣୀ—
'ତୋହର ଭାଇ ଅଛୁ, କାନ୍ଦୁଛୁ ପୁଣି ? ୨୭ ।
'ଅନୁକୂଳ ଯେ କରଅଛନ୍ତି ଦାଣ୍ଡେ
'ଭୁଞ୍ଜି ସାରିଲେ ଯିବୁ ତାଙ୍କର ସଙ୍ଗେ' । ୨୮ ।

ହରଷ ମନେ ଲୁଗା ପାଲଟି ଦେଲି
ଚଣ୍ଡିକା ଠାକୁରାଣୀ ରଖ ବୋଇଲି । ୨୯ ।
କ୍ଷଣିକ ପରେ ଜାଣି ହେଲି କାତର
ଅଭିମାନେ ଫେରିଛୁ ଭାଇନା ମୋର । ୩୦ ।

( ମୂଳ ରଚନା—ବାଙ୍କି )

ଭୋଇଙ୍କ ଗୀତିକା-୭

## ବାପା ହେ

ବାପା ହେ ମୋତେ ନିରାଶ କଲ
ଏ ପର ଝିଅକୁ ଭସାଇ ଦେଲ । ୧ ।
ଆଗେ ମାରି ପଛେ ନିୟମ କଲ
ଭଗାର ଘାମ୍ବରେ ମୁଣ୍ଡ କାଟିଲ । ୨ ।
କହିଲ—ବୈଶାଖ ମାସରେ ଯିବ ଲୋ ଆଣି
କଳା କୁମ୍ଭ ଶାଢ଼ୀ ଦେବ ଲୋ କିଣି । ୩ ।
କଳା କୁମ୍ଭ ଶାଢ଼ୀ କଅଣ ହେବ
ଅହ୍ୟ ତେଙ୍ଗୁରିରେ ମୋ ଜୀବ ଯିବ । ୪ ।
ଆଗରେ ଯିବ ମୋ ଲୁଆ କଉଡ଼ି
ପଛରେ ବାଜିବ ଶଙ୍ଖ ମହୁରି । ୫ ।

ଦଇପଟେ ଯିବେ ଦ ଦଅର
ମଝିରେ ଗୃଳ୍‌ବେ ଅମର୍ ବର । ୬ ।
ସାତ ଢେର୍ କର ବୁଲେଇ ନେବେ
ଅଗିନ କୁଣ୍ଡକୁ ଧରାଇ ଦେବେ । ୭ ।
ଏହା ଶୁଣି ବାପା ଧାଇଁ ଆସିବେ
ମାଆ ଶୁଣି କର୍ କାନ୍ଦ ବସିବେ । ୮ ।
ଭାଉଜ ଅମର ପରର ଝିଅ
ଟିକେ କାନ୍ଦ ଟିକେ ପୋଛୁବେ ଲୁହ । ୯ ।
( ମୂଳ ରଚନା—ବଡ଼ାମ୍ମା )

ବୋହୂଙ୍କ ଗୀତକା-୭

## ଗଞ୍ଜଣା

ଏଥୁ ଅନନ୍ତରେ କଥା  ଶୁଣିବୁ ଟିକି
କାନ୍ତ ଅନୁରାଗେ ବଡ଼ ହୋଇଲି ଦୁଃଖୀ । ୧ ।
ପିନ୍ଧ ଦ'କାହାଣେ କନା ବୋହୂବ ପାଣି
ନ ପାଇବୁ ଝିଅ ଖୁଡ଼ ରଖିଥା ଜାଣି । ୨ ।
ହସିଲେ ବୋଲନ୍ତି ଖୁଡ଼ି ଦାଣ୍ଟ ହେଲଣି
କାନ୍ଦଲେ ବୋଲନ୍ତି ଖୁଡ଼ି କିଏ ମଲଣି । ୩ ।
ଉଠିଲେ ବୋଲନ୍ତି ଖୁମ୍ବ ଡେରା ହୋଇଛୁ
ଶୋଇଲେ ବୋଲନ୍ତି ଖୁଡ଼ି ଚିଙ୍କି ପଡ଼ିଛୁ । ୪ ।
ଲଇଁଲେ ବୋଲନ୍ତି ଖୁଡ଼ି ଲଠି ଗୋଡ଼ଠା
ବସିଲେ ବୋଲନ୍ତି ଚକା ପଥର ଏଠା । ୫ ।
ପେଜ କଂସାଏ ଲେ ଖୁଡ଼ି ଦଅନ୍ତି ବାଢ଼ି
ବୋଲନ୍ତି ଦେଉଳ ପ୍ରାପ୍ୟେ ବସିଲା ମାଡ଼ି । ୬ ।
ପେଜ କଂସାକ୍ ଲେ ଖୁଡ଼ି ଦଶେ ଅଧିକ
ହଳଦ ମାଲ୍‌ପା ଖୁଡ଼ି ତେଣିକି ରଖ । ୭ ।

ଜାଣି ତ ନ ଥିଲି ପିତା ଏତେ ଅଗ୍ଧର
ଭଲ ହେବ ବୋଲି ଏଥେ ଦେଲି ପିଅର । ୮ ।
ଘଇ ନନାକୁ କହନ୍ତି
ନାହିଁ ଯୋଗ୍ୟତା
କହିଲେ ବୋଲିବେ
ବଧ କଲେ ତୋ ପିତା । ୯ ।
( ମୂଳ ରଚନା—ପଞ୍ଚାମୁଣ୍ଡାଇ )

ବୋହୂଙ୍କ ଗୀତିକା-୮

## ସତୀ

ତୁନକୀ ରୂପରେ ନାରୀ ଥିଲଟି ମନ୍ଦର
ସବୁ ସିନା ଅରଦୋଳ କରୁଥିଲା ତାର । ୧ ।
ଠକ ଆର ପ୍ରାପ୍ତ ନାରୀ ଦାଣ୍ଡକୁ ଦଣଇ
ଖଞ୍ଜି ଥିଲି ବହି ତାକୁ ଏକ ଆତ୍ମା ଦେଇ । ୨ ।
ହୃଦୟ ଭିତରେ ନାରୀ କରଥାଇ ଚିନ୍ତା
ରାଅତ ଦିବସ ନାରୀ ପୋଡଥାଇ ମଥା । ୩ ।
ହୃଦୟ ଭିତରେ ନାରୀ କରୁଥାଇ ଶୋକ
ପରୁରିଲେ ଦେଉଥାଇ ଡ୍ରିଅ ଉପଲେଖ । ୪ ।
ହୃଦୟ ଭିତରେ ନାରୀ ଚିନ୍ତା କରଥାଇ
ବିଚ୍ଛେଦ ପଡ଼ିଲି ବୋଲି ମନେ ବିଗୁରଇ । ୫ ।
ସଙ୍କଟ ପଡ଼ିଲି ନାରୀ ବିଗୁରିଲି ମନ
ସନ୍ନିପାତ ଦେଲି ନାରୀ ହେଲି ଛନ ଛନ । ୬ ।
ମନେ ବିଗୁରିଲି ନାରୀ ପଡ଼ିଲି ସଙ୍କଟ
ମୃତ୍ୟୁ ହେଲି ତାଙ୍କର ଯେ ତୁଟିଗଲି ଘଟ । ୭ ।
ଉଜାଗରେ ଥିଲି ନଣି ସ୍ନାହାନକୁ ଗଲି
ବସନ ପାଲଟି ଗୋଡ଼ ତଳରେ ବସିଲି । ୮ ।

ଏଥିରୁ ଉଦ୍ଧାର କର ପତିତପାବନୀ
ଡନାକୁଳ ଉଦ୍ଧରିବ ତରିବ କାମିନୀ । ୯ ।
ଏଥିରୁ ଉଦ୍ଧାର କର ପତିତପାବନ
ସଙ୍ଗରେ କୁମର ଥିବ ଅଗ୍ନିରେ ଦହନ । ୧୦ ।
ମୁଖେ ଅଗ୍ନି ଦେଇ ବଳା ଲେଉଟି ଅସିବ
ସ୍ୱପତି ପୁରୁଷ ଭାଗ୍ୟ ସେଠାରେ ଦଶିବ । ୧୧ ।

ସାନପୁଅ ପାଖେ ବସି ହୋଇଲା ବିକଳ
ଜନ୍ମ କରିଥିଲ୍ବ ବୋଉ, କରିଗଲ୍ବ ପର । ୧୨ ।
ମୁହିଁକୁ ଗୃହିଁଲା ଝିଅ ବିକଳ ହୋଇଲା
କେଡ଼େକ ସେନେହ ବୋଉ ଛାଡ଼ିଲ୍ବ ବୋଇଲା । ୧୩ ।
ଯାଆମାନେ ଅସି ତାକୁ କହିଲେ ହାତଧରି
ବୋହୂ ଅସି ଗୋଡ଼ତଳେ ପଡ଼ିଲା ତାହାରି । ୧୪ ।
ଗାଆଁ ଲୋକେ ଅସି ତାକୁ କହିଲେ ହାତ ଧରି
'ପୁଅ' ଅସି ଗୋଡ଼ତଳେ ପଡ଼ିଲା ତାହାରି । ୧୫ ।

"ଆଶୀର୍ବାଦ କରୁଅଛୁ
ଶୁଣରେ କୁମର
"ଉତ୍ତମ ପୁଅଟି ବାରୁ
ହୋଇବ ତୁମ୍ଭର । ୧୬ ।
"ଆଶୀର୍ବାଦ କରୁଅଛୁ
ଶୁଣରେ କୁମର
" 'ଗୃହ'କୁ ତ ନଠୁର
ନ କରିବ ମୋହର । ୧୭ ।
"କେତେ ମାୟା କରିଥିଲ
ଏକା ଗୃହ ପାଇଁ
"ଦଶଟି ବରଷ, କାଳ
ସହିଲାତ ନାହିଁ" । ୧୮ ।

ଦେବଶୁରେ ଅସି ତାଙ୍କୁ ପ୍ରବୋଧି କହିଲେ
କାହା କଥା ମହା ସତୀ ମନେ ନ ଧରିଲେ । ୧୯ ।

ବାଜିଲା ତେଲଙ୍ଗି ବାଜା ଢଂସାଁଳ ମହୁରୀ
ସେହି ଭାବେ ନରନାରୀ ଦେଲେ ହୁଳହୁଳି । ୨୦ ।
ଅଗ୍ନି କୁଣ୍ଡ ପାଖେ ନାରୀ ଉଭା ହେଲା ଯାଇ
କୁଳଦୀପ କାଢ଼ି ତାର ପୁତ୍ର ହସ୍ତେ ଦେଇ । ୨୧ ।
ସେଠାରେ ଯେ ନରନାରୀ ଥାଇ ଦେଖୁଥିଲେ
ସପତ ପୁରୁଷ ଭାଗ୍ୟ ଦଶିଲା ବୋଇଲେ । ୨୨ ।
ଗିଆଁତ କୁଟୁମ୍ବ ତୁହେଁ ସାଇ ଲୋ ପଡ଼ଶା
ଭଣତ କରନ୍ତୁ ଏହା ସାଙ୍ଗ ଲୋ ସରସା । ୨୩ ।

( ମୂଳ ରଚନା—ନରସିଂହପୁର )

ବୋହୂଙ୍କ ଗୀତକା-୯

## ଗିରସ୍ତ ସୁଆଗି

ରଜନୀ ଶେଷେଣ
ନିଦ୍ରା ଉଚେବନ ପଲଙ୍କେ ରାଧା ପହୁଡ଼
ନଣଦିପାଇ ବେଳ
ଘଡ଼ଏ ହୋଇଲା ଝିଅକୁ ତୋଳଇ ବୁଢ଼ୀ । ୧ ।
ଉଠ ଲୋ ଝିଅ
ରାଧାକୁ ତୋଳ ଦିଅ କେତେ ଲୋ ଯାଇଛୁ ନିଦ
ଗିରସ୍ତ ଦେଶ୍ଚପ
ଏହା ନ ଜାଣଇ, ବାହେ ବାନ୍ଧିଥାଏ ବଦ । ୨ ।
ଏହି ଗୋପପୁରେ
ଯେତେ ଗୋପୀ ଥିଲେ, ନିତ୍ୟକର୍ମମାନ କଲେ
ଯେଝା ସୁଖେ ଯେଝା
ନିତ୍ୟକର୍ମ ସାରି, ଦଧି ବିକିବାକୁ ଗଲେ । ୩ ।

ଆମଘର ବୋହୂ
ନାଚ୍ଯାଇ ଅଛୁ, ଖଣ୍ଟ ଶେଯ ମାନ ପାଡ଼ି
କଥାଏ କହିଲେ
କଳା କ ଧାଇଁବ ଉପରକୁ ପଡ଼ିବ ମାଡ଼ । ୪ ।

ଭୁଣ୍ ଭୁଣ୍ ଶୁଣି ରାଧା ଠାକୁରାଣୀ
ପଲଙ୍କ ଉପରେ ବସି
ରାମ ନାମ ପଦ ଗୋବିନ୍ଦ ସୁମରି
ଅଳପ ଅଳପ ହସି । ୫ ।

ରାଧିକା ବୋଇଲେ—'ଧର୍ମ ! ପାରିକରି
ସଖୀଙ୍କୁ କଳିକି ସଜ
'ଏତେ ସଖୀଙ୍କୁ ଯେ କଳି ଭିଆଇଛ
କି ଯୋଗ ପଡ଼ିବ ଅଜ' । ୬ ।

ବୁଢ଼ୀ ବୋଲେ—'ଝିଅ ! ବୋହୂକୁ ଡରିଣ
କେତେ ଲୋ କରିବା ଘର
ଚ୍ୟାଇଁ କରି ଯେବେ କଳିକି ଧାଇଁଲା
ରାଧା ଗୋଷ୍ଠା ଗୃହ ମାର । ୭ ।

ଝିଅ ବୋଇଲା—'ମାଆ ! ବୟସରେ ସେ ବଡ଼
ବଇଷ ରେ ସାନ
କେମନ୍ତେ ମାରିବ ତାକୁ
'ଆଜ ଥର ରାଧା ଛଧାଏ ମାରିଛୁ
ବଥାଉ ଅଛୁ ମୋ ବୁକୁ' । ୮ ।

ରାଧିକା ବୋଇଲେ—'ମାରିବ ବୋଲୁଚ
କେଉଁ ଅପରାଧ କଲି,
ବଡ଼ ଘର ବୋଲି
ଟଙ୍କା ସୁନା ଯାକ
ସାଇ ପଡ଼ିଶାରେ ଦେଲି ? ୯ ।

"ଗଉଡ଼ ବାଉଡ଼ ଘରଁ ଲୋ ମୋହର
ମୁଁ କାହୁଁ ଅଣିବ ଧନ
"ବଡ଼ଘର ବୋଲି ଗଣିଥ ଲୋଭୁଛୁ
ତହିଁ ନ ସରବ ଧନ । ୧୦ ।

ବୁଢ଼ୀ ବୋଇଲା—"ଅଲୋ ଚାଣ୍ଡର ଝିଅ ତୁ
ଚେଇଁ ଶୁଣୁଥିଲୁ ସବୁ
"ଏ ବୋହୂ ଘେନି ମୁଁ କି ଘର କରିବ
ଭଲେ ହୋଇ ଯିବ ବାବୁ" । ୧୧ ।

ରାଧିକା ବୋଇଲେ—'ଭଲେ କୁହଁ ଯେବେ
ପୁଅଙ୍କ ଶପଥ ତୋତେ,
ତୁ ନ ଯୋଗାଉ ମୋ ମନକୁ ଲୋ
ମୁଁ ନ ଯୋଗାଏ ତୋତେ । ୧୨ ।

ଏମନ୍ତ ମାନ ବୋଲାବୋଲି ହୁଅନ୍ତେ
ଗଉଡ଼ ଗୋଗୋଷ୍ଠୁଁ ଆସି
ମାଆ ମାଆ ବୋଲି ଡାକ ପକେଇଲା
କବାଟ ଫିଅ ଲୋ ଆସି । ୧୩ ।

କବାଟ ଫେଇ ଲୋ ଧଅ
ଦୁଧଭାର ମାନ—ଫୁଟି ପଡ଼ୁଅଛୁ
ଘର ଭିତରକୁ ନିଅ । ୧୪ ।

ପୁଅ ତୁଣ୍ଡ ଶୁଣି ମାଆ ଧାଇଁଗଲା
କବାଟ ଯେ ଫେଇ ଦେଲା
ଦୁଧଭାର ମାନ ଫୁଟି ପଡ଼ୁଥିଲା
ଘର ଭିତରକୁ ନେଲା । ୧୫ ।

ମାଆ ଝିଅ ପୁଅ ତିନିହେଁ ମଉନ
କୋଧଭର ହୋଇ ବସି
ଭିତରେ ଥିଲେ ଯେ ରାଧା ଠାକୁରାଣୀ
ତୁଣ୍ଡ ଶୁଣାଇଲେ ହସି । ୧୬ ।

ଗଉଡ଼ ବୋଲେ ଖର
ଏ ମାଆ ମଲେ ମୁଁ ଭଲ ହୁଅନ୍ତି
ଏହୁ ଭାଙ୍ଗୁଛି ମୋ ଘର । ୧୭ ।

ଗଉଡ଼ ବୋଲେ ଖେଙ୍ଗ
ନିରନ୍ତର ଘରେ କଳି ଲାଗିଅଛି
ଲୋକେ ଦେଖୁଛନ୍ତି ରଙ୍ଗ । ୧୮ ।

ଝିଅ ଗୋଟିଏ ଲୋ ଜାତ କରିଅଛୁ
ନ କରିଲୁ ମୋର ବୋଲ
ତାହା କଥା ମତେ ଅତି ଅଗୋଚର
ସେ ମୋତେ ହୋଇଲା ସଲ । ୧୯ ।

ସେ ଯେବେ ବାବୁ ରେ ଡତେ ସଲ ହେଲା
ଏଇ ମାସେ ବିଭା କର
ସେ ଯାଉ ଘରୁ ମୁଁ ଯାଏ ଘରୁ
ତୁମେ ଦୁହେଁ କର ଘର । ୨୦ ।

ନନ୍ଦ ମୋର ଜ୍ୱାଇଁ ଯଶୋଦା ମୋ ଝିଅ
ତା ପୁଅ ମୋର ନାତି
ତୋର ଭଣଜା ପୁଅର ଭଣଜା
ତା ସଙ୍ଗେ କଲୁ ପୀରତି । ୨୧ ।

ସୁବା ତପ୍ତି ହୋଇ କେମନ୍ତେ ରହିଲୁ
କାଲି କଅଁଳା ପୁଅକୁ
ସେ ପୁଣି ଡତେ କେମନ୍ତେ ରହିଲା
ଭଲ ଭୁଲାଇଲୁ ତାକୁ । ୨୨ ।

ଏମନ୍ତ ମାନ ବୋଲବୋଲି ହୁଅନ୍ତେ
ଶ୍ରୀକୃଷ୍ଣ ଗୋଗୋଷ୍ଠୁଁ ଆସି
ମାମୁଁ ମାମୁଁ ବୋଲି ଡାକ ପକେଇଲେ
କବାଟ ଫିଅ ହେ ଆସି । ୨୩ ।

କବାଟ ଫେଇ ହେ ଧାଅ
ଦୁଧଭାର ମାନ ଫୁଟି ପଡ଼ୁଅଛୁ
ଘର ଭିତରକୁ ନିଅ । ୨୪ ।

ରାଧିକା ବୋଇଲେ—
'ଗୃହସ୍ଥ ?? ଅଇଲେ
ତୁମ୍ଭେମାନେ କୁହଁ କଛୁ,
'ମାଇଁ ଭଣଜ୍ଞାରେ
ଅଘଟ ଘଟେଇ
ଏତ ତୁମ ଘରେ ଅଛୁ । ୨୫ ।

ଏମନ୍ତ ଗୃହ୍ନୁ
ଶୁଣନ୍ତେ ଚନ୍ଦ୍ରଶେଣା
ଧଇଲ୍ଲ ରାଧାର ହାତ
ବୋଇଲ—'ରାଧା ଲୋ !
ଗାଧୋଇ ଯାଉଛୁ
ବେଗେ ତୁ ରାନ୍ଧ ଯା ଭାତ' । ୨୬ ।

ମୁଣ୍ଡେ ହାତ ଦେଇ
ବୋଲେ ବୁଢ଼ୀ
ମୋତେ ତ ମରଣ ନାହିଁ,
ବନ୍ଧୁ କୁଟୁମ୍ବ ମୋ
ଜାଉଁ ଜାଉଁ ମଲେ
ପଲେଇ ପଶିବି କାହିଁ ? ୨୭ ।

( ମୂଳ ରଚନା—ଟାଲଚେର )



# ଗାଥା

## ଦ୍ୱିତୀୟ ଭାଗ



# ଗାଁ ଟିଅଙ୍କ ପୁରାଣ ଓ କାହାଣୀ ଗୀତିକା

## ୧—ଶ୍ରୀରାମ ଅଭିଷେକ

ରାମର ଶ୍ରୀଚନ୍ଦ୍ର ପଣ
ଦେଖି ଦଶରଥ ରାଜନ
ହକାରି ସମସ୍ତ ଗଣ, ବୋଲନ୍ତି ବଚନ । ୧ ।

ବିବେକୀ ହେଲେ ମୋ ଶିଷ୍ୟ
ମୋ କାଳ ହେଲାଣି ଶେଷ
ବଶିଷ୍ଠ ଋଷିଏ ବସ, ମୋ ରାମ ହୋନ୍ତୁ ଅଭିଷେକ । ୨ ।

ମୋ ପୁତ୍ର ଟେକାଅ ଛତ୍ର
ମୋ ନେତ୍ର କରିବ ପବିତ୍ର
ସବୁ କଥା ସନମତ, ଏକଥା ହୋଇବ ସତ୍ୟ । ୩ ।

ଆଜ ମୋ କୋଦଣ୍ଡପାଣି
ନୃପତି ବୋଲନ୍ତି ବାଣୀ
ଉଠ ହେ କୁମରମଣି, ଆନନ୍ଦେ ପାଳ ଧରଣୀ । ୪ ।

କୋଡ଼ରେ ବସାଇ ପୁଅ
ମୁଖକୁ ଚୁମ୍ବନ ଦିଅ
ଆଜଠାରୁ ଶାଢ଼ୀ ନିଅ, କାଲି ଅଭିଷେକ ହୁଅ । ୫ ।

ସେ ଯେ ଅଭିଷେକ ସ୍ଥାନ
ମଣ୍ଡିଲେ ସୁବର୍ଣ୍ଣମାନ
ବଇକୁଣ୍ଠପୁର ଉପମ, ବିଜୟେ କରିବେ ରାମ । ୬ ।

ବିଚିତ୍ର ଚାନ୍ଦୁଆ ଟାଣି
କୁମ୍ଭେ ରତ୍ନ ଖଞ୍ଜଣି
ସହସ୍ର କୁମ୍ଭେ ଗଙ୍ଗାପାଣି, ଶ୍ରୀଫଳେ କନକ ଛାଏଣି । ୭ ।

ଲଗାଇଲେ ଚିତ୍ରକାର
ଏ ପୁର ମଣ୍ଡଣି କର
ଯେତେକ ବିଧି ବେଭାର, ଥୋଇଲେ ବଶିଷ୍ଠବର । ୮ ।

ନେତ ଉଡ଼େ ଫର ଫର
ବାଦ୍ୟ ବଡ଼କାଠ ଘୋର
ବେଦବାଦ୍ୟ ମୁନିବର, କମ୍ପଇ ଚଉଦ୍ଦ ପୁର । ୯ ।

ବିଜୟେ କୋଦଣ୍ଡଧର
ମିଳିଲେ ସୀତୟା ପୁର
ଶୁଣ ଗୋ ଯୁବତୀବର, କାଲି ଗୋ ହେବା ଠାକୁର । ୧୦ ।

ତୁମ୍ଭେ ହେବ ଠାକୁରାଣୀ
ଅଯୋଧ୍ୟାପୁର ମଣ୍ଡଣୀ
ଖଟିବେ ସମସ୍ତ ଜାଣି, ଈଶ୍ୱର କଲେ ଗୋ ଆଣି । ୧୧ ।

ଆଜ୍ଞା ଦେଲେ ରାମ ମାତା
ସୁବେଶ ହୁଅ ଗୋ ସୀତା
ସେ ମୋର କୁଳ ଉଦ୍ଧାରନ୍ତା, ତୁ ମୋର ଜନକଦୁହିତା ।୧୨।

ଏମନ୍ତେ ଦିବସ ଶେଷ
ରଜନୀ ହେଲା ପ୍ରବେଶ
ମନ୍ଥଡ଼ା ପାଞ୍ଚିଲା ନାଶ, ମିଳିଲା କକେୟୀ ପାଶ । ୧୩ ।

ପଲଙ୍କେ ପହୁଡ଼େ ସତୀ
ମନ୍ଥଡ଼ କହେ ବିନତି
କାଲି ରାମ ହେବେ ନୃପତି, ତୁମେ ଗୋ ଜାଣିନାହିଁ କି ? ୧୪ ।

ପଲଙ୍କୁ ଉଠି ତରୁଣୀ
ଆନନ୍ଦେ ବୋଲଇ ବାଣୀ
ବଧାଇ କହିଲୁ ଆଣି, ନେଏ ଲୋ ସୁବର୍ଣ୍ଣ ମଣି । ୧୫ ।

ମନ୍ଥଡ଼ ହସିଦେଲା—
'କିଛି ଲୋ ନ ଜାଣୁ ବୋଇଲା
କଉଶଲ୍ୟା ହେବ ସବୁ, ଏବେ ତୋର ଲୋ କି ଗଲା । ୧୬ ।

ସେ ହେବ ରାମର ମାତା
ଖଟିବେ ସର୍ବ ବନିତା
ମହାଦେଈ ହେବ ସୀତା, କାହର ପଣେ ତୋ' ପୁତା । ୧୭ ।

"କି ବୁଦ୍ଧି କରିବ ମୁହିଁ
ବୁଝିବାଟ ମୋତେ ଦିଶୁନାହିଁ"
"ବଡ଼ ହୋଇଚୁ ସତ୍ୟ କରାଇ, ତାହା କେ ମାଗ ଯା ଯାଇଁ" । ୧୮ ।

"ପାଳ ମୋ ସତ୍ୟ ବଚନ
ମୋ ଭରଥେ ହୋନ୍ତୁ ରାଜନ
ଚଉଦ ବରଷ ବଣକୁ, ଯାଉ ତୋ ରଘୁନନ୍ଦନ" । ୧୯ ।

କାକୟୀ ଦେବୀ ଗଲେ
ଭୂମିରେ ପଡ଼ୁଲେ
ଯୋଗେ ଦଶରଥ ମିଳିଲେ, ରାଣୀକି ତୋଳି ଧଇଲେ । ୨୦ ।

'ପାଳ ମୋ ସତ୍ୟ ବଚନ
ମୋ ଭରଥେ ହୋନ୍ତୁ ରାଜନ
ଚଉଦ ବରଷ ବଣକୁ, ଯାଉ ତୋ ରଘୁନନ୍ଦନ' । ୨୧ ।

ଛାଲେ ମୂର୍ଚ୍ଛାଗତ ଗଲେ
'କି ଦେଲୁ ଦଣ୍ଡ ବୋଇଲେ
ପିଣ୍ଡରେ କି ପ୍ରାଣ ରହିବ, ଦାଶରଥି ମୋ ଗଲେ । ୨୨ ।

'ଅତି ସୁକୁମାର ବଳା
ତେଜ ତ ନିଳେନ୍ଦ୍ର କଳା
ସକଳ ଜନ୍ତୁଙ୍କ ମେଳା, ଅହା ମୋ ପଙ୍କଜଡୋଳା ୨୩ ।

'କି ବୋଲି ବୋଇଲୁ ଭଣ୍ଡ
ମେରୁ ଭାଜିପଡୁ ତୋର ମୁଣ୍ଡ
ହୃଦ ହେଉ ଖଣ୍ଡ ଖଣ୍ଡ, ମୋତେ କି ଦେଲୁ ଦଣ୍ଡ' । ୨୪ ।

ବଶିଷ୍ଠ ଋଷି ବସିଲେ
ସମସ୍ତ କଥା ବୁଝିଲେ
ନଗରଲୋକେ ଅକୁଳ ହେଲେ, ରାମ ବାରତା ପାଇଲେ । ୨୫ ।

ଦୁଃଖିତ ରଘୁସୋଦର
କପାଳେ ମାରିଲେ କର
"ଧନ୍ୟ ରେ ଦଇବ ତୋର, ସୁଖ ନ ଦେଖିଲୁ ମୋର । ୨୬ ।

"ଦଣ୍ଡେ ଗଲେ ହୋନ୍ତି ରାଜା
ପାଳନ୍ତି ଜନ ପରଜା
ସକଳ ଋଷିଗଣ ସନ୍ନିଧେ, ମୋତେ କରାଇଲୁ ଲଜ୍ଜା" । ୨୭ ।

"ବନକୁ ଯିବେ ମୋ ଧନ
କୋଟି ଚନ୍ଦ୍ରମା ବଦନ
ମୂର୍ଚ୍ଛି ନ ପାରଇ ମନ, ନଷ୍ଟପ୍ରେ ଯିବ ଜୀବନ" । ୨୮ ।

ଦଶରଥ ରାଜା କହି
ରାମଙ୍କୁ କୋଳେ ବସାଇ
ମୁଖରେ ଚୁମ୍ବନ ଦେଇ, ନୟନୁ ଲୋତକ ବୁହାଇ । ୨୯ ।

ତୁମ୍ଭେ ଯିବ ଚକ୍ରଧର
ଅମ୍ଭେ ତେଜିବୁ ଶରୀର
ନାରଖାର ଦଶ୍ୟପୁର, ଅଗତି ହେବ ଅମ୍ଭର । ୩୦ ।

ପୂର୍ବ ଶାପ୍ୟ ଆସି ହେଲା
ଦଇବ ଅଣି ଗୋ କଲା
ଲେଉଟି ଆସି ରାଜା ହେବ, ବାବୁ ତୁମର କ ଗଲା ? ୩୧ ।

ପ୍ରଲମ୍ବ କରନ୍ତି ବୀର
କଲ୍ୟାଣ-ବଶିଷ୍ଠ ବର
ଶ୍ରୀରାମ ନୁଆଁଇଲେ ଶିର ଯେ ଆଜ୍ଞା ହେଉ ଦିଅର । ୩୨ ।

ଚାଲିଗଲେ ହୃଷୀକେଶ
ମିଳିଲେ କକେୟୀ ପାଶ
ଚରଣେ ଚରଣି ଭାଗବତ, "କି ଆଜ୍ଞା ହେଉ ଗୋ ମାତ" ।୩୩।

"ରାମ ! ଅଙ୍ଗୁ ଅଲଙ୍କାର କାଢ଼
ବ୍ରହ୍ମଚାରୀ ବେଶ ଲୋଡ଼
ସହିବ ବରଷା ଜାଡ଼, ନୃପତି ପଣ ନ ଲୋଡ଼ । ୩୪ ।

"ଚଉଦ ବରଷ ଯାଏ
ମୋ ପୁତ୍ର ହୁଅନ୍ତୁ ରାୟେ
ବନକୁ ଯାଅ ତନୟେ, ଆସି କରିବ ଉପାୟେ" । ୩୫ ।

ମହିମା ମହି ଅନନ୍ତ
ଆନନ୍ଦ ହୃଦୟ ଗତ
କପଟେ ଭ୍ୟାଇଲେ ଶୋକ, ଧନୁର୍ଦ୍ଧ କରବେ ହସ୍ତ । ୩୬ ।

ନିଜ ଜନନୀ ଭୁବନ
ପ୍ରବେଶ ରଘୁନନ୍ଦନ
"ମାୟେ ମୋତେ କୋଡ଼ରେ ଘେନ, କହିବି ଦିବ୍ୟ ବଚନ । ୩୭ ।

"ଭିଜଲ୍ଲ ଅମ୍ଭ ଅଭିଷେକ
ଅରଣ୍ୟେ କରିବୁଁ ବାସ
ଆଜ୍ଞା ଦେଲେ ସାନମାତ, ପାଳିବୁଁ ପିତାଙ୍କ ସତ୍ୟ । ୩୮ ।

"ଚଉଦ ବରଷ ପିବୁଁ
ଆସି ଛତ୍ର ଟେକାଇବୁଁ
ସଂସାରେ କୀର୍ତ୍ତି ରଖିବୁଁ, ପିତାଙ୍କ ସୁପୁତ୍ର ହେବୁଁ" । ୩୯ ।

ମାୟେ ଗଲେ ମୂର୍ଚ୍ଛାଗତ
ଭୂମିରେ ପଡ଼ିଲେ ଲୋଥ
"ଗୁଣମଣି ରଘୁନାଥ, କି କର୍ମ କଲେ ତୋ ପିତ । ୪୦ ।

"ତୁ ମୋର ଜୀବଜୀବନ
ଆଉ ନାହିଁ ରେ ନନ୍ଦନ
'ଜନକ ନନ୍ଦନୀ' 'ରାମ', କରନ୍ତୁ ବେନି ନୟନ । ୪୧ ।

"ରାଜ୍ୟ ନ୍ୟନ୍ତୁ ବେନି ଭାଇ
ପରଦେଶେ ଯିବା ପଳାଇ
ଖୁଆଇବି ଭିକ୍ଷା ମଗାଇ, ବନକୁ ନ ଯା ରେ ତୁହି" । ୪୨ ।

ଲକ୍ଷ୍ମଣ ଜନନୀ ହକାରି
ରାମ କହନ୍ତି ବିନୟ କରି
" 'ମାଉଁ' ! ରଖିବଟି ବୋଧ କରି, ସେ ଆମ ଅଚ୍ଛନ୍ତି ଟି ଗର୍ଭଧାରୀ" ।।

ଲକ୍ଷ୍ମଣ ଜନନୀ ଭାଷ—
"ଶୁଣ ହେ ସୂର୍ଯ୍ୟବଂଶ ।
ଯେତେକାଳେ ଦୁଃଖ ଶେଷ, ଶ୍ରୀ ପଦ୍ମଚରଣେ ଆଶ । ୪୪ ।

ଯାଅ ବାବୁ ବେଗ ହୋଇ
ନ କାଣ୍ଡୁ ଚନ୍ଦ୍ରମାମୁହିଁ
ଶୁଭେ ଯାଇ ଲେଉଟି ଆସ, ଦୁଇଗୋଟି ଭାଇ" । ୪୫ ।

ଧରି ରାମଚନ୍ଦ୍ର କର
ବୋଲନ୍ତି ଲକ୍ଷ୍ମଣ ବୀର
'ଭ୍ରାତୃଦେବ ! ଯିବି ସଙ୍ଗର, ଧନୁର୍ଦ୍ଧର ଦାସ ତୁମ୍ଭର । ୪୬ ।

'କହୁଅଛୁ ଏବେ ସତେ
ତୁ ଯେବେ ମୂର୍ଚ୍ଛିବୁ ମୋତେ
ମରିବି ଅସ୍ତ୍ରାଘାତକେ, ନୋହିଲେ ନାଅ ସଂଗତେ' । ୪୭ ।

ରାମ ସୀତାସ୍ଥାନରେ ମିଳି
ନୟନୁ ଲୋତକ ଗାଳି
ସଜାଡ଼ି ହୋଇ ବସିଛନ୍ତି, ଜନକରାଜ ଦୁଲାଳୀ । ୪୮ ।

'ଚନ୍ଦ୍ରମାମୁଖି ଗୋ ଆସ
ମୋହର ସନ୍ନିଧେ ବସ
ଅଦନେ ଭଜିଲି ବାସ, ମୁଖ ଗୋ ନୋହୁ ବିରସ । ୪୯ ।

'ଶାଶୁଙ୍କ ସନ୍ନିଧେ ଥାଅ
ଅକୁଳ ନ କର ଦେହ
ବିପତ୍ତିରେ ଦମ୍ଭ ହୁଅ, ସୁଲୋଚନି ନ ଛାଡ଼ ଲୁହ' । ୫୦ ।

"ତୁମ୍ଭେ ହେ ରାଜ ଠାକୁର
କଷ୍ଟ ସହିବ ଶରୀର
ତଥି ସ୍ଥିର ଦୁଃଖ ଲୋଡ଼ି, ମୋ ପ୍ରଭୁ ବିବେକ କର" । ୫୧ ।

"ତୁମ୍ଭେ ହେ ଜନକ ଯେମା
ସକଳ ଗୁଣେ ଉପମା
କେମନ୍ତେ ସହିବ ବାମା, ତହିଁକି ଦେଲି ଉପମା ? ୫୨ ।

ରାମ ହାତେ ଖଡ୍‌ଗ ବଂର
ସୀତଯ୍ୱା ବୋଲେ ଉତ୍ତର—
'ଗଳା ମୋ ଛେଦନ କର, ବନକୁ ଯାଅ ହେ ବୀର' । ୫୩ ।

ରାମ ହାତେ ଖଡ୍‌ଗ ଧରି
ଆଗରେ ଚଳଇ ନାରୀ
ଆପେ ଲକ୍ଷ୍ମଣ ଅନୁସରି, ଗଲେଟି ବିଜୟ କରି । ୫୪ ।

ଘର ଗ୍ରାମ ଛାଡ଼ି ଲୋକେ
ଗୋଡ଼ାନ୍ତି ବୃଦ୍ଧ ବାଳକେ
ବଶିଷ୍ଠ ବଶିଷ୍ଠ ରଥେ, ଗୋଡ଼ାନ୍ତି ରାମ ସଂଗତେ । ୫୫ ।

ଗ୍ରାମ ଲୋକେ ବାହୁଡ଼ି ଆଇଲେ
ଯେ ଯାହା ପୁରେ ରହିଲେ
କଉଶଲ୍ୟା ଆକୁଳ ହେଲେ, ଦଶରଥ ଦେହ ଛାଡ଼ିଲେ । ୫୬ ।

ଭରଥ ଶତ୍ରୁଘନ ବୀର
ସେ ଥିଲେ ମଉଳା ଘର
ବାଟରେ ଆସି ଭେଟିଲେ, ଶ୍ରୀରାମ ଠାକୁର । ୫୭ ।

"ନାଥ ହେ ! ଘେନ ଘେନ ବିନତି ମୋର
ଧିକ ଧିକ ଜନନୀ ଆମ୍ଭର
ମୁଖ ନ ଚାହିଁବୁ ତାର" । ୫୮ ।

ରାମ ହେଲେ ହସ ହସ—
"ଭରଥ ତୁ ରାଜ୍ୟରେ ବସ
ତୋ ଜନନୀ ମୁଖ ହରଷ, କେବେହେଁ ନୋହୁ ବିରସ" । ୫୯ ।

"ଭରଥ ଶତ୍ରୁଘନ ଭାଇ
ଅମେ ଯିବୁଁ ତପସ୍ୟା ବାହି
ଅରାଜକ ହେବ ମହୀ, କି ଆଜ୍ଞା ହେଉ ଗୋସାଇଁ" ? ୬୦ ।

"ଆମ୍ଭର ପାଦୁକା ନିଅ
ଥାପନା କରଣ ଥୁଅ
ବିପତ୍ତିରେ ଦମ୍ଭ ହୁଅ, ଆକୁଳ ନ କର ଦହ" । ୬୧ ।

ରାମ ଲକ୍ଷ୍ମଣ ଚଳିଗଲେ
ଦେବତା ମାନ ଦେଖିଲେ
ଜୟ ଶଙ୍ଖଧ୍ୱନି ଦେଲେ, ଇନ୍ଦ୍ରହିଁ ପୁଷ୍ପ ବୃଷ୍ଟି କଲେ । ୬୨ ।

ଲକ୍ଷ୍ମୀ ଘେନି ନାରାୟଣ
ସଙ୍ଗରେ ଭାଇ ଲକ୍ଷ୍ମଣ
ପତ୍ର କୁଡ଼ିଆ ଦଶେ ତତକ୍ଷଣି, ବିଜୟେ କଲେ ତିନିଜଣ । ୬୩ ।

ମୃଗୟା କରନ୍ତି ଭାଇ
ଫଳମୂଳ ଅଣନ୍ତି ଭ୍ୟାଇ
ରାମ ସୀତା କଲେ ମଣୋହିଁ, ରହିଲେ ନିଶ୍ଚିନ୍ତ ହୋଇ । ୬୪ ।

ଅହୁର ରୂପେ ସାଧିବ
ଯିବଟି ବଲ୍ଲଭ ଘର
ଯିବଟି ବନ୍ଧ ପକାଇ, ଛେଦ ଅଣିବ ଦଶଶିର । ୬୫ ।

ଦଶଶିର ଛେଦ ଅଣିବ
ବନରୁ ବାହାର ହେବ
ବନରୁ ବାହାର ହେଲେ, ରାଜ୍ୟ ଅଭିଷେକ ହେବ । ୬୬ ।

( ନରସିଂହପୁର )

## ୨—ସୀତାଙ୍କ ଅଯୋଧ୍ୟା ବିଜେ

ପାହିଲା ରଜନୀ ମାଗୋ
ଅସ୍ତ ଗଲେ ଶଶୀ
ଦଶରଥେ ଡାକୁଛନ୍ତି
ଉଠ ରଘୁବଂଶୀ । ୧ ।

ଉଠ ଉଠ ସୀତା ମାଗୋ
ଜନକର ଝିଅ
ଅଯୋଧ୍ୟାକୁ ଯିବା ମାଗୋ
ବେଗେ ସଜ ହୁଅ । ୨ ।

ମଥା ପାଗ ଭିଡ଼ି ରାମ
ମୁକୁଟ ଖଞ୍ଜନ୍ତି
ଅର୍ଘ୍ୟଥାଳି ଧରି ମାଏ
ଘରୁ ବାହାରନ୍ତି । ୩ ।
ଅର୍ଘ୍ୟ ଥାଳି ଘେନି ମାଏ
ଘରୁ ଯେ ବାହାର
ମୁକୁତା ତରୁଣୀ ଲୁହ
ବୁହେ ଝର ଝର । ୪ ।
ମୁହିଁ ତ କାନ୍ଦିଲେ ମୋର
ସୀତମ୍ବା କାନ୍ଦିବ
ଚନ୍ଦ୍ରମାବଦନୀ ମୁଖ
ମଳିନ ଦିଶିବ । ୫ ।
ଶୋକ କରି ଜନନୀ ଯେ
ଉଆରନ୍ତି ବାଣୀ
ପାଞ୍ଚବରଷ କଲି
ପ୍ରାଣର ଦୁଲଣୀ । ୬ ।
ସାତ ବରଷ ଦିନୁଁ
କରିଥିଲି ଚିନ୍ତା
ରାଜ ମୋତେ ନିଦ ନାହିଁ
ଅନ୍ନ ବସିପିତା । ୭ ।
ବାର ବରଷ ଜର
ନୋହିଲି ଲୋ କଷ୍ଟ
କୁଶରେ ବଠାଳି ରାମ
ଘେନି ଯାଉଅଛୁ । ୮ ।

ମାତାଦେବୀ କହୁଛନ୍ତି ସୀତା ମୁଖ ଚାହିଁ
ଥିବୁଟି ଲୋ ସୀତା ମୋର ଅଯୋଧ୍ୟାରେ ଯାଇ । ୯ ।
ବେଦୀ ଗୁରୁପାଖ ବାପା ଟାଳି ଦେଲେ ଝିଅ
ଗୁରଣଙ୍କ ଦେଇଁ ମାଏ ସମର୍ପିଲେ ଝିଅ । ୧୦ ।

ହାତୀ ଦେଲୁ ଛତ ଦେଲୁ ଝିଅ ଦେଲ ଯେମା
ରାଇଜରୁ ଅଧେ ଦେଲ ଦୋଷ କର କ୍ଷମା । ୧୧ ।
ହାତୀ ଦେଲୁ ଛତ ଦେଲୁ ଝିଅ ଦେଲୁ ଯେମା
କଛୁ ଦେଇନାହୁଁ ବାବୁ ଦୋଷ କର କ୍ଷମା । ୧୨ ।
ତୁମେ ଅମେ ସୀତା ମାଗୋ ଅଯୋଧ୍ୟାକୁ ଯିବା
ଏକା କାଠି ମାଢ଼େ ବସି ଶକଟା ଖେଳିବା । ୧୩ ।
ନିବନ୍ଧ ବନ୍ଧେଇ ରାମ ଶକଟା କାଟନ୍ତି
କୋଟି ନେବ ପାଟ ମାଠଗା ଅବଶ୍ୟ ପିନ୍ଧନ୍ତି । ୧୪ ।
ବାଜିଲା ଢମକ ଢୋଲ ବାଇଦ ନିଶାଣ
ଅଯୋଧ୍ୟାକୁ ବିଜେ କଲେ ଲକ୍ଷ୍ମୀନାରାୟଣ । ୧୫ ।
ଅଯୋଧ୍ୟା କଟକେ ଯାଇ ହୋଇଲେ ପ୍ରବେଶ
ଗୀତରେ ଭଣିଲେ ଏହା ବଳରାମ ଦାସ । ୧୬ ।

## ୩—ମୁକୁତା ଦେଇ

ଭଜ କନା ରାମ ନାମରେ ଜୁମର ଭଜ କନା ରାମ ନାମ
ଭଜ ନ ପାରିଲେ ଗୋବିନ୍ଦଚନ୍ଦ୍ରରେ ବାନ୍ଧିନେବ କାଳଯମ । ୧ ।
ଏକାଳର ଯମ ବଡ଼ ନିଦାରୁଣ ନ ଜାଣଇ ଦୁଃଖ ସୁଖ
ବାଛୁନେବ କଣ୍ଠା ରଖିବ ପାଚିଲା ଦେବଟି ଦାରୁଣ ଦୁଃଖ । ୨ ।

'ସଂସାର ସୁଲଭ ଦେଖି ଲେ ଜନନୀ ପୁତ୍ର ଅଟେ ବଡ଼ ଧନ
'ଯୋଉ ନାରୀ କୋଡ଼େ ପୁତ୍ର ନାହିଁ ମାତ ବ୍ୟର୍ଥ ତାର ଜୀବନ । ୩ ।
'ଯୋଉ ନାରୀ କୋଡ଼େ ପୁତ୍ରଇ ନାହିଁ ସେ ତା ଠାରୁ ପାତକୀ ନାହିଁ ।'
ପୁତ୍ର ନ ହେଲାକୁ ଗୋବିନ୍ଦଚନ୍ଦ୍ରରେ ମୋତେ କଲେ ନିମଦୋହି । ୪ ।
ମଥେ ଘର ଖଣ୍ଡେ ତୋଳାଇ ଦେଲେ ରେ ଘୋଡ଼ା ପାଇକାରେ ନେଇ
ଗୁଡ଼ଲ ମାଣକ କଉଡ଼ ପଣକ ଖଞ୍ଜା କରିଦେଲେ ତହିଁ । ୫ ।

ଗୃଉଲ ମାଣକ କଉଡ଼ି ପଣକେ ଗୃରଭାଗ ମୁଁ କରଇ
ପ୍ରଭାତ କାଳରେ ଈଶ୍ୱର ଥାଳରେ ଦାନ ପୁଣ୍ୟ ମୁଁ ଦଅଇ । ୬ ।
ତହିଁରୁ ଭାଗକ ଗୋବିନ୍ଦଚନ୍ଦ୍ରରେ ବ୍ରାହ୍ମଣ ବୈଷ୍ଣବ ଦେଇ
ତହିଁରୁ ଭାଗକ ଗୋବିନ୍ଦଚନ୍ଦ୍ରରେ ସାଙ୍ଗପୋଇଲିଙ୍କୁ ଦେଇ । ୭ ।
ଜ୍ୟେଷ୍ଠଭାଗ ବଳା ଯେତେକ ହୁଅଇ ଗର୍ଭକୁ ମୁହିଁ କ୍ଷେପଇ । ୮ ।
ଏହିମତ ବଳା ଗୋବିନ୍ଦଚନ୍ଦ୍ରରେ ଏଗାର ବରଷ ଦେଲେ
ବାର ବରଷଇ ପର୍ଣନ୍ତେ ବ୍ରାଜନ ସେରକଇ କୋଠ କଲେ । ୯ ।
ଅନ୍ନର ବିହୁନେ ଗୋବିନ୍ଦଚନ୍ଦ୍ରରେ ଉଠିବସି ନ ପାରଇ
ବସ୍ତ୍ରର ବିହୁନେ ଗୋବିନ୍ଦଚନ୍ଦ୍ରରେ ଘରୁ ବାହାର ନୁହଇ । ୧୦ ।
କୁଙ୍କୁମ ବିହୁନେ ଗୋବିନ୍ଦଚନ୍ଦ୍ରରେ ଦେହରୁ ଉଡ଼ଇ ଧୂଳି
ତଇଲ ବିହୁନେ ଗୋବିନ୍ଦଚନ୍ଦ୍ରରେ କେଶ ଉଡ଼େ ଫିର ଫିର । ୧୧ ।

ଅତ ସୁକୁମାରୀ ରାଜାର କୁମାରୀ ଦୁଃଖ ସହି ନ ପାରିଲି
ମାତା ପିତାଙ୍କର ରାଜ୍ୟକୁ ବୋଲି ମୁଁ ଉଗରକୁ ପେଶି ଦେଲି । ୧୨ ।
ବୋଇଲି ଉଗର, ବୋଇଲି ସୁବୁଦ୍ଧି, ଆଜ୍ଞା ପ୍ରମାଣରେ ଯିବୁ
ପିତା ବସିଥିବେ ଲାଉଚନ୍ଦ୍ର ରାଜା ଶୁଭ ବାରତା କହିବୁ । ୧୩ ।
ମାତା ବସିଥିବେ ମଉନା ସୁନ୍ଦରୀ ଦୁଃଖପାକ ଜଣାଇବୁ । ୧୪ ।

ତାହା ଶୁଣି କରି ସୁବୁଦ୍ଧି ଉଗର ଆଜ୍ଞା ପ୍ରମାଣରେ ଗଲା
ପିତା ବସିଥିଲେ ଲାଉଚନ୍ଦ୍ର ରାଜା ଶୁଭ ବାରତା କହିଲା । ୧୫ ।
ମାତା ବସିଥିଲେ ମଉନା ସୁନ୍ଦରୀ ଦୁଃଖପାକ ଜଣାଇଲା । ୧୬ ।
ତାହା ଶୁଣିକରି ଗର୍ଭଧାରୀ ମାତା ବଚନ ହିଁ ପଚାରଇ
ରଜାର ଘରକୁ କିସ ନ ମିଳଇ ଝିଅ କପାଁ ଦୁଃଖ ପାଇ । ୧୭ ।
ଯୋଉ ଝିଅ ତୁମେ ବିଭା କରିଥିଲ ବଙ୍ଗ ବଜାରରେ ନେଇ
ସେହି ଝିଅ ଏବେ ଦୁଃଖ ପାଉଛନ୍ତି ଘୋଡ଼ା ପାଇକାରେ ଥାଇ । ୧୮ ।
ତୁମ୍ଭର ନନ୍ଦନୀ ଗୋଟି ଗୋଟି କରି ସାତ ପୁତ୍ର ଜାତ କଲେ
କର୍ମ ଅବଳକୁ ଗୋଟି ଗୋଟି ହୋଇ ସାତ ପୁତ୍ରଯାକ ମଲେ । ୧୯ ।
ଅପୁତ୍ରୀକା ମୁଖ ନ ଚାହିଁବେ ବୋଲି ରଜା ନିମଦୋହି କଲେ । ୨୦ ।

ତାହା ଶୁଣି କର ଗର୍ଭଧାରୀ ମାତା ବହୁତ ରୋଦନ କଲେ
ଲକ୍ଷେମାଢ଼ ଥିଲା ସୁବର୍ଣ୍ଣ ଖଣ୍ଡିଏ ଡଗର ହସ୍ତକୁ ଦେଲେ । ୨୧ ।
ସେହି ସୁବର୍ଣ୍ଣକୁ ଧରଣ ବଲା ରେ ବଙ୍ଗ ବଜାରକୁ ଗଲ
ଅନେଶ୍ଵତ ଧାନ ଭରଣ ବଲା ରେ ତହୁଁ ଭଙ୍ଗେଇ ଅଣିଲ । ୨୨ ।
ତୋହର ପିତା ନଗରକୁ ଗୃହି ବେଣ ନଗର ତୋଳାଲ
ଅଠର ଗଣ୍ଡା ଧର୍ଓଟି ଗୋବନ୍ଦଚନ୍ଦ୍ର ରେ ପାଇକ ମୁଁ ଜଗେଇଲି । ୨୩ ।
ଅନେଶ୍ଵତ ଗଣ୍ଡା ଗୋବନ୍ଦଚନ୍ଦ୍ର ରେ ପୋଇଲ ପରିବାର ରଖାଇଲ
ଅନ୍ନଜଳ ପାଣି ଖାଇଣ ବଲା ରେ ନିଶ୍ଚିନ୍ତ ହୋଇ ରହିଲ । ୨୪ ।

ଏକ ଦନକର ତୋହର ପିତାରେ ଦାନୁଅଣି କଲବେଳେ
ଶୁକସାରୀ ରବ ଶୁଣିକର ରଜା ଡଗରକୁ ପଗ୍ଗରଲେ । ୨୫ ।
ବୋଇଲେ ଡଗର ବୋଇଲେ ସୁବୁଦ୍ଧି ଅଜ୍ଞା ପ୍ରମାଣରେ ଯିବୁ
ମୋହ ଧିମାନେ କେ ନଗର ତୋଳାଲା ତା'ବାଲ ଧର ଅଣିବୁ । ୨୬ ।
ତାହା ଶୁଣିକର ସୁବୁଦ୍ଧି ଡଗର କରପଦ୍ମ ଯୋଡ଼ି କହି
ଯୋଡ଼ ରାଣୀ ତୁମେ ନମଦୋହି କଲ ନଗ୍ର ତୋଳାଛନ୍ତ ସେହି ।୨୭ ।

ତାହା ଶୁଣିକରି ତୋହର ପିତା ରେ ବେଗେ ଦାନୁଅଣି କଲେ
ସୁବର୍ଣ୍ଣ କଠୋଉ ପାଦେ ମାଡ଼ିକର ମୋହ ପୁରେ ବଜେ କଲେ । ୨୮ ।
ମୋହ ପୁରେ ବଜେ କରନ୍ତେ ରଜନ ଯୋଗଧ୍ୟାନରେ ଜାଣିଲ
ସୁବର୍ଣ୍ଣ ଙ୍ଘରରେ ନୀର ଢେନିକର ସିଂହଦ୍ଵାର ଯାଏ ଗଲ । ୨୯ ।
ଡାହାଣ ଗୋଡ଼କୁ ଧୋଇଣ ବଲା ରେ ଶିରରେ ନିଜତ ହେଲ
ବାମ ଗୋଡ଼କୁ ଧୋଇଣ ବଲା ରେ ଗର୍ଭକୁ ମୁହିଁ ଖେପିଲ । ୩୦ ।
ଅହା ସ୍ଵାମୀ ବୋଲ ଅହା ସ୍ଵାମୀ ବୋଲ ବହୁତ ରୋଦନ କଲ । ୩୧ ।

ସେତେବେଳେ ଏକା ଗୋବନ୍ଦଚନ୍ଦ୍ରରେ ତୋ ପିତା ପଗ୍ଗରଲେ ମୋତେ
କେମନ୍ତେ ଗୋ ରାଣୀ ନଗର ତୋଳାଲ ତୁରତେ ତା କହ ମୋତେ ।୩୨।

ଅତ ସୁକୁମାରୀ ରାଜାର କୁମାରୀ ଦୁଃଖ ସହି ନ ପାରିଲି
ମାତାପିତାଙ୍କର ରାଜ୍ୟକୁ ବୋଲି ମୁଁ ଡଗରକୁ ପେଷିଦେଲି । ୩୩ ।
ମାତାପିତା ଦେଲେ ସୁବର୍ଣ୍ଣ ଖଣ୍ଡିଏ ତହିଁ ନଗର ତୋଳିଲି । ୩୪ ।
ତାହା ଶୁଣିକର ତୋହର ପିତା ରେ ହରଷଇ ମନ କଲେ
ସବୁ ରାଣୀ ରଜା ପଛ କରଦେଇ ମୋତେ ପାଟରାଣୀ କଲେ । ୩୫ ।

( ମୂଳ ରଚନା—ଖଣ୍ଡପଡ଼ା )



# ହୁଲହୁଳି କାନ୍ଦଣା

## ନୂଆବୋହୂ କାନ୍ଦଣା ( ଏକ )

କାଠିଆ କଦଳୀ ଫେଣିକ୍ୟା ପାରେ, ହେ ନୂଆବୋହୂ
ବଡ଼ନନା ଡାକ ଶିରରେ ନାଚେ, ହେ ନୂଆବୋହୂ । ୧ ।
ଅଳ୍ପ ପତରିଆ ମହୁତାପାନ, ହେ ନୂଆବୋହୂ
ଆଜ କି ଦେଖିବ ଜନମଥାନ, ହେ ନୂଆବୋହୂ । ୨ ।
ନୂଆ ଖଡ଼ଖଡ଼ ଛଅ ଗଜଡ଼, ହେ ନୂଆବୋହୂ
ନନା ବିଜେ କଲେ କନକା ଗଡ଼, ହେ ନୂଆବୋହୂ । ୩ ।
ଚକୁଳି ପିଠା ତ ଅଣା ଲେଉଠା, ହେ ନୂଆବୋହୂ
ଆଜ କି ଦେଖିବ ଜନମ କୋଠା, ହେ ନୂଆବୋହୂ । ୪ ।
ଆକାଶ କଇଁଆ ଚଳିକା ମାଛ, ହେ ନୂଆବୋହୂ
କାହିଁକି ପାଇବ ଅପାଞ୍ଚ ପାଞ୍ଚ, ହେ ନୂଆବୋହୂ । ୫ ।
ରାବଣ ଭଗାର ସୀତାଙ୍କ ପାଇଁ, ହେ ନୂଆବୋହୂ
ଶାଶୁଘର ହେଲା ମୋହର ପାଇଁ, ହେ ନୂଆବୋହୂ । ୬ ।
ବେକ ଚନାମାଳୀ ହୋଇଲା ସଲ, ହେ ନୂଆବୋହୂ
ସାନ ନନା ହେଲେ କେଡ଼େ ଅଭଲ, ହେ ନୂଆବୋହୂ । ୭ ।
ପର୍ବତ ଶିଖରେ ପୋତଲେ ମଞ୍ଜି, ହେ ନୂଆବୋହୂ
ପଦ୍ମ ପାଖୁଡ଼ାରେ ଦାହକ ଗଞ୍ଜି, ହେ ନୂଆବୋହୂ । ୮ ।

ଗୋଖର ସାପର ବିଷ ଝଡ଼ୁଛି, ହେ ନୂଆବୋହୂ
ମନେ ପଡ଼ଗଲେ ଛାତି ଫାଟୁଛି, ହେ ନୂଆବୋହୂ । ୯ ।
କୋଇଲି ବୋବାଏ ଶାରଙ୍ଗ ବଣେ, ହେ ନୂଆବୋହୂ
ସୀତା ବନ୍ଧ ହେଲେ ଅଶୋକ ବନେ, ହେ ନୂଆବୋହୂ । ୧୦ ।
ଅଯୋଧ୍ୟା ଫେରିବାକୁ ହୋଇଛି ମନା, ହେ ନୂଆବୋହୂ
ଲଙ୍କାଗଡ଼େ ବନ୍ଧ ଜନକଯେମା, ହେ ନୂଆବୋହୂ । ୧୧ ।
( କଟକ—କନ୍ଦିକା )

## ବୁଢ଼ାବର କାନ୍ଦଣା ( ଦୁଇ )

ବାପା ବସିଥିଲେ ଗମ୍ଭୀରୀ ଘରେ, ବୋଉ କଲେ
ଟଙ୍କା ପହଞ୍ଚିଲା ଦ'ପହରେ, ବୋଉ କଲେ । ୧ ।
ମୋହର ଯେମନ୍ତ ନିଶ୍ୱାସ ଥିବ, ବୋଉ କଲେ
ଟଙ୍କା ବାରବୋଉ ଅଙ୍ଗାର ହେବ, ବୋଉ କଲେ । ୨ ।
ତିନି ପେଟଚଳେ କାଣ୍ଡିଆ କୁଣ୍ଡା, ବୋଉ କଲେ
ବେଦୀରେ ବସିଚ ଚଟୁଆ ମୁଣ୍ଡା, ବୋଉ କଲେ । ୩ ।
ଦୋଳ ମୁକୁଟ ହୋଇ ଅଇଲା ବେଳେ, ବୋଉ କଲେ
ଅଣ୍ଟୁମାଡ଼ ବୁଢ଼ା ପଡ଼ିଲା ତଳେ, ବୋଉ କଲେ । ୪ ।
ବାପା ବସିଥିଲେ ବେଦୀ ଉପରେ, ବୋଉ କଲେ
କଡ଼ା ଡାଙ୍ଗେ କାନ ଫୁଙ୍କିଲେ ଶିରେ, ବୋଉ କଲେ । ୫ ।
ଦାନ୍ତ ନାହିଁ ବୁଢ଼ା ପାକୁଆ ପାଟି, ବୋଉ କଲେ
ବେଦରେ ବସିଛି ଅଗି ତରାଟି, ବୋଉ କଲେ । ୬ ।
ପର୍ବତ ଶିଖରେ ପାଚିଚ ବେଲ, ବୋଉ କଲେ
ତୋତେ ଲଜ ନାହିଁ
ଯାହା ବୁଢ଼ା ମୁଣ୍ଡେ ନେଇ ଖଞ୍ଜିଲୁ ଫୁଲ, ବୋଉ କଲେ । ୭ ।
ତଲେ ଲଜ ନାହିଁ ସେ ବୁଢ଼ା ମୁଖେ, ବୋଉ କଲେ
ବିଭା ହେବ ବୋଲି
ବେଦରେ ବସିଛି
କେମନ୍ତେ ବଳଦ ବାନ୍ଧିଛୁ ପାଖେ, ବୋଉ କଲେ । ୮ ।
( ନରସିଂହପୁର )

## ବାପାଙ୍କ କାନ୍ଦଣା ( ତନ୍ତି )

ପକ୍ଷିରମ୍ଭା ଘୁଣ୍ଟି ମୁଖେ ଥୋଇଲ, ହେ ବାପା
କର୍ପୂର କନାକୁ ପଙ୍କେ ମାଡ଼ିଲ, ହେ ବାପା । ୧ ।
କାବତା ଯେମନ୍ତ ବନେ ଝୁରଇ, ହେ ବାପା
ମୁଁ ତୁମକୁ ଛେଡ଼େଇ ଝୁରି ମରିବି, ହେ ବାପା । ୨ ।
ଶାଳଗ୍ରାମ କାଠ କାଟିଲି ପରି, ହେ ବାପା
ମତେ ତ କାଟିବେ ସେହି ଦେଇପରି, ହେ ବାପା । ୩ ।

(ଅଠଗଡ଼)

## ବୋଉକୁ ଧରି ପଦ୍ମଲି କାନ୍ଦଣା ( ଗୃହ )

ମୋର ଧୂଳିଘର ଖେଳ ସରି ନ ଥିଲା, ଲୋ ମୋ ବୋଉ
ମୋହଲାଗି ଯମ ଜଉଶାଳ କିଏ ଗଢ଼ିଲା, ଲୋ ମୋ ବୋଉ । ୧ ।
ଲହୁଣୀ ଜନ୍ମ ତୁଣ୍ଡମୁନେ ସରୁଛି, ଲୋ ମୋ ଖୁଡ଼ି
ମୋର ଝିଅ ଜନ୍ମ ଏବେ ସରି ଯାଉଛି, ଲୋ ମୋ ଖୁଡ଼ି । ୨ ।
ମେଘ ଠାଣପଣ ପବନ ଭାଙ୍ଗଇ ଲୋ, ମୋ ମାଆମାନେ
ମୋ ଠାଣ ଭାଙ୍ଗିଲେ ମୋ ବାପ ଭାଇ, ଲୋ ମୋ ମାଆମାନେ । ୩ ।
ମୋର ଶାନ୍ତିର ଦିନତ ସରି ଯାଉଛି, ଗୋ ମୋ ଅପା
ଏବେ ଅଶାନ୍ତିର ଦିନ ମାଡ଼ି ଆସୁଛି, ଗୋ ମୋ ଅପା । ୪ ।
ମୁଁ ତ ନନ୍ଦନ କାନନେ ପାରିଜାତ ଥିଲି, ଗୋ ମୋ ଅପା
ହସି ଖେଳି ଦିନ କଟାଉଥିଲି, ଗୋ ମୋ ଅପା । ୫ ।
ଏବେ ପିଞ୍ଜରା ଭିତରେ ଶୁଖି ମରିବି, ଲୋ ମୋ ବୋଉ,
ଚାରିଦିନ ଲାଗି ଅବାଙ୍କ ହେବି, ଲୋ ମୋ ବୋଉ । ୬ ।
ଋଷି ତପସ୍ୟା କରି ଉଇହୁଙ୍କା ହେଲେ, ଲୋ ମୋ ଖୁଡ଼ି
ସେ ତ ହରିଙ୍କ ଦର୍ଶନ ନ ପାଇଲେ, ଲୋ ମୋ ଖୁଡ଼ି । ୭ ।
ମୁଁ ତ ସେହିପରି ମାଟିରେ ମିଶିବି, ଲୋ ମୋ ଖୁଡ଼ି
ତୁମ ସଭିଙ୍କ ଚରଣ ଦର୍ଶନ ନ ପାଇବି, ଲୋ ମୋ ଖୁଡ଼ି । ୮ ।

ମଲେ ତ ରହିବ ବସୁଧା ତଳେ, ଲେ ମୋ ଖୁଡ଼ି
ଥିଲେ ତ ରହିବ ସେ ଯମପୁରେ, ଲେ ମୋ ଖୁଡ଼ି ।୯।
କୃଷ୍ଣ ମାୟା କଲେ ଗୋପୀଙ୍କ ପାଇଁ, ଲେ ମୋ ବୋଉ
ବାପା ମାୟା କଲେ ମୋହର ପାଇଁ, ଲେ ମୋ ବୋଉ ।୧୦।
ମୋ ଲାଗି ରାତିରେ ନିଦ ନ ଥିଲା, ଲେ ମୋ ବୋଉ
ଦିନରେ ତ ଭୋକ ହେଉ ନ ଥିଲା, ଲେ ମୋ ବୋଉ ।୧୧।
କେଉଁ ଦୂର ରାଜ୍ୟ ମୋତେ ପେଷିଲୁ, ଲେ ମୋ ବୋଉ
ଏବେ ଅଚିନ୍ତାରେ ଦିନ କାଟିବୁ, ଲେ ମୋ ବୋଉ ।୧୨।
ଫୁଲ ଶୁଖିଗଲେ ମାଳିକି ଚିନ୍ତା ଲେ ମୋ ବୋଉ
ମୋ ମୁହଁ ଶୁଖିଲେ ତୋହର ଚିନ୍ତା, ଲେ ମୋ ବୋଉ ।୧୩।
ଭୋକିଲା ପେଟ ମୋ ଦେଖୁ ନ ଥିଲୁ, ଲେ ମୋ ବୋଉ
ଶୁଖିଲା ମୁହଁ ମୋ ଗୃହୁଁ ନ ଥିଲୁ, ଲେ ମୋ ବୋଉ ।୧୪।
ଦିବସ ରଜନୀ ମୋ ଲାଗି କରୁଥିଲୁ ଚିନ୍ତା, ଲେ ମୋ ବୋଉ
ଏବେ ସବୁ ଦିନ ଲାଗି ହେବୁ ଅଚିନ୍ତା, ଲେ ମୋ ବୋଉ ।୧୫।
ଦାରୁ ସିନା ସହେ କରତ ଧାର, ଲେ ମୋ ବୋଉ
ଦୂବ କି ସହିବ କରତ ଭାର, ଲେ ମୋ ବୋଉ ।୧୬।

ପାଳଧୂଆ କାଠେ କରତ ଘାଆ, ଲେ ମୋ ବୋଉ
ଝର ଝର ଝରି ପଡ଼ଇ ତାହା, ଲେ ମୋ ବୋଉ ।୧୭।
ତୋର କଅଁଳ ବଚନେ ମୁଁ ବଢ଼ିଥିଲି, ଲେ ମୋ ବୋଉ
ପରଙ୍କ ନିଠୁର ବଚନେ ପଡ଼ିବି ଝରି, ଲେ ମୋ ବୋଉ ।୧୮।
ମାଛ ସିନା ଜାଣେ ଜଳ ଗଭୀର, ଲେ ମୋ ବୋଉ
ତୁହି ସିନା ଜାଣୁ ମନ ମୋହର, ଲେ ମୋ ବୋଉ ।୧୯।
ତୁ ତ ପିଠି ଅଉଁସିଲେ ପେଟ ପୂରଇ, ଲେ ମୋ ବୋଉ
ପର ପିଠି ଅଉଁସିଲେ ଛାତି ଫାଟଇ, ଲେ ମୋ ବୋଉ ।୨୦।

( କନିଆଁ ହେବାଦିନ ପହିଲି କାନ୍ଦଣା, ପୁରୀ-ଖୋର୍ଦ୍ଧା )

## ହାଣ୍ଡିମଙ୍ଗୁଳା କାନ୍ଦଣା . ( ପାଞ୍ଚ )

ମରଗଲେ ନୂଆ ହାଣ୍ଡି ହୁଅଇ, ଲୋ	ମୋ ବୋଉ
ନୂଆ ଲୁଗା କଣା ହୋଇ ଆସଇ, ଲୋ	ମୋ ବୋଉ । ୧ ।
ମୁହିଁ ତ ଜୀଇଛୁ କେବେ ଦେଖୁଚୁ, ଲୋ	ମୋ ବୋଉ
ନୂଆ ହାଣ୍ଡି ନୂଆ ଲୁଗା କରୁଚୁ, ଲୋ	ମୋ ବୋଉ । ୨ ।
ମଙ୍ଗଳ ବେଳରେ ମଙ୍ଗଳ କଥା, ଲୋ	ମୋ ବୋଉ
କାହିଁ କରୁ ଏଇ ଅମଙ୍ଗଳ କଥା, ଲୋ	ମୋ ବୋଉ । ୩ ।
ଜୀଇଲା ଗଛକୁ କାଟି ଦେଉଚୁ, ଲୋ	ମୋ ବୋଉ
ବଞ୍ଚିଥିଲା ଜୀବ ମାର ଦେଉଚୁ, ଲୋ	ମୋ ବୋଉ । ୪ ।
ଜନମ ବେଳେ ଅନ୍ତୁଡ଼ି ଶାଳରୁ, ଲୋ	ମୋ ବୋଉ
ଚଣ୍ଟି କାଟି ଯାହା ମାର ନ ଦେଲୁ, ଲୋ	ମୋ ବୋଉ । ୫ ।

( ପୁରୀ-ଖୁର୍ଦ୍ଧା )

## ବରଧରା ଯିବାବେଳେ କାନ୍ଦଣା ( ଛଅ )

ଯାହା ଅବାଟକୁ ବାଟ କର ଚାଲିବ, ହେ	ମୋ ଭାଇ
ଅଦେଶକୁ ଦେଶ ମଣି ଆସିବ, ହେ	ମୋ ଭାଇ । ୧ ।
ତୁମ ପଦ୍ମପାଦ ଅତି ପବିତ୍ର, ହେ	ମୋ ଭାଇ
ଅପବିତ୍ର ରାଜ୍ୟ ହେବ ପବିତ୍ର, ହେ	ମୋ ଭାଇ । ୨ ।
ମରୁ ଭୂଇଁରେ ବୃକ୍ଷ ଥାପି ଆସିଲ, ହେ	ମୋ ଭାଇ
ପାଷାଣରେ ପଦ୍ମ ଫୁଟା ଥୋଇଲ, ହେ	ମୋ ଭାଇ । ୩ ।

( ପୁରୀ-ଖୁର୍ଦ୍ଧା )

## ବରଧରା ଫେରିଲାବେଳ କାନ୍ଦଣା ( ସାତ )

ଅଦେଶକୁ ଦେଶ କର ଆସିଲ, ହେ	ମୋ ଭାଇ
ଅବାଟକୁ ବାଟ କର ଫେରିଲ, ହେ	ମୋ ଭାଇ । ୧ ।

ଅପବାଦ ରାଜ୍ୟ ହେଲ ପରବଶ, ହେ ମୋ ଭାଇ
ଅପାଶକୁ କଲ ତୁମେ ସୁପାଶ, ହେ ମୋ ଭାଇ । ୨ ।
ଅରଣ୍ୟରେ ଅଗ୍ନିକୁଣ୍ଡ ଖୋଳିଲ, ହେ ମୋ ଭାଇ
ତା ଭିତରେ ମତେ ଆହୁତ ଦେଲ, ହେ ମୋ ଭାଇ । ୩ ।

( ପୂର୍ବ-ଖୁର୍ଦ୍ଦା )

## ବର ଆସିବାବେଳ କାନ୍ଦଣା ( ୪୦ )

ଯମଗଣମାନେ ମାଡ଼ି ଆସିଲେ, ହେ ନୂଆବୋହୂ
ବନ୍ଧୁଗଣମାନେ ଅଡ଼େଇ ଗଲେ, ହେ ନୂଆବୋହୂ । ୧ ।
କେତେ ପ୍ରକାରେ ତ ବାଜେ ବାଜଣା, ହେ ନୂଆବୋହୂ
ଶୁଣି ଫାଟିଯାଏ ମୋ ଛାତି ସିନା, ହେ ନୂଆବୋହୂ । ୨ ।
ଦ୍ରୌପଦୀଙ୍କ ଲଗି ଦ୍ରୁପଦ ରାଜା, ହେ ନୂଆବୋହୂ
ବରଣ କରାଇଲେ ଲକ୍ଷେକ ରାଜା, ହେ ନୂଆବୋହୂ । ୩ ।
ଏବେ ମୋହଲଗି ବାପ ଭାଇ ମୋର, ହେ ନୂଆବୋହୂ
ବର ଆଣିଛନ୍ତି ଲକ୍ଷେ ଅସୁର, ହେ ନୂଆବୋହୂ । ୪ ।
ସପ୍ତଋଷି ଯେବେ ବର ଥାଆନ୍ତେ, ହେ ନୂଆବୋହୂ
ଶଙ୍ଖଚକ୍ର ଚିହ୍ନ ସିନା ପାଇ ଥାଆନ୍ତେ, ହେ ନୂଆବୋହୂ । ୫ ।
ଜାରି ଶବରକୁ ଧରି ଆଣିଲେ, ହେ ନୂଆବୋହୂ
ତାକୁ ଝାଡ଼ ଜଙ୍ଗଲରୁ ଆଣି କି ସୁଖ ପାଇଲେ, ହେ ନୂଆବୋହୂ ।୬।

( ପୂର୍ବ-ଖୁର୍ଦ୍ଦା )

## କନକ ଆଞ୍ଜୁଳି କାନ୍ଦଣା ( ୪୧ )

ଭିକ୍ଷା ନେଉଅଛୁ ହାତ ପତାଇ ଲୋ, ମୋ ବୋଉ
ଭିକ୍ଷା ଦେଉଛୁ ମୁଁ ତୋତେ କପାଳି ଲୋ, ମୋ ବୋଉ । ୧ ।
ସବୁ ସ୍ନେହ ଯାକ ଦେଲୁ ପାସୋରି ଲୋ, ମୋ ବୋଉ
ଏଡ଼ିକି ପାଷାଣ ଦେହ ତୋହରି ଲୋ, ମୋ ବୋଉ । ୨ ।

ଜନ୍ମ କରିଥିଲୁ ଝିଅ କାହିଁକି ଲୋ, ମୋ ବୋଉ
ଦୟା ମାୟା ଟିକେ ତୋର ନାହିଁକି ଲୋ, ମୋ ବୋଉ । ୩ ।
ଏତେ କଲବଲ କରୁ କିପାଇଁ ଲୋ, ମୋ ବୋଉ
ଶତ୍ରୁ ବୋଲି ଅବା ଦେଲୁ ଭସାଇ ଲୋ, ମୋ ବୋଉ । ୪ ।

ଏବେ ମାଆ ହୃଦ ତୋର କେତେ ହେଲା
ସତ ବଳୁଛି ଲୋ, ମୋ ବୋଉ
ଆଜଠାରୁ ମୋର ଅଳ ସରୁଛି ଲୋ, ମୋ ବୋଉ । ୫ ।
ଆଜଠାରୁ ସ୍ନେହ ସବୁ ସରିଲା ଲୋ, ମୋ ବୋଉ
ତୋ ମୁଣ୍ଡରୁ ସବୁ ଜଞ୍ଜାଳ ଗଲା ଲୋ, ମୋ ବୋଉ । ୬ ।
( ପୁରୀ-ଖୁର୍ଦ୍ଧା )

## ଲବଣଚଉଁରୀ କାନ୍ଦଣା ( ଦଶ )

ତୁମ ଝିଅ ହୋଇ ଥାଆନ୍ତି ଯେବେ ହେ ମାମୁଁ
ଏପରି କଲବଲ କର ନ ଥାନ୍ତ ତେବେ ହେ ମାମୁଁ । ୧ ।
ମାଇପି ଧରମ ରଖିବ ବୋଲି ହେ ମାମୁଁ
ମୋର ଅମୂଲ୍ୟ ଜୀବକୁ ଦେଉଚ ଜାଳି, ହେ ମାମୁଁ । ୨ ।
( ପୁରୀ-ଖୁର୍ଦ୍ଧା )

## ଲବଣ ଚଉଁରୀ ପକାଇ ଫେରନ୍ତ କାନ୍ଦଣା ( ଏଗାର )

ମୋର ସୁଖର ଦିନ ସବୁ ସରି ଆସିଲାଣି ଲୋ ମାଆମାନେ
ଏବେ ଅଶାନ୍ତିର ଦିନ ଦେଖା ଗଲାଣି ଲୋ ମାଆମାନେ । ୧ ।
ମନ୍ତ୍ର ପଢ଼ିଲେ ମୁଁ ଗୁରୁସେବିବି ଲୋ ମାଆମାନେ
ତୁମମାନଙ୍କ ଚରଣ ଦର୍ଶନ ଆଉ ନ ପାଇବି, ଲୋ ମାଆମାନେ । ୨ ।
( ପୁରୀ )

## ବେଦୀକୁ ଯିବାବେଳେ କାନ୍ଦଣା ( ବାର )

ମୋ ଦେହରେ କଅଁଳ କରଣ ପଡ଼ଲେ
ସହୁ ନ ଥିଲୁ ଲୋ ମୋ ବୋଉ
ଏବେ ଅଗ୍ନି ତେଜକୁ କେମନ୍ତେ
ଛାଡ଼ ତୁ ଦେଲୁ ଲୋ ମୋ ବୋଉ ।୧।
ମୋତେ ତ ଦାଣ୍ଡ ପହଣ୍ଡକୁ ଛାଡ଼ୁ ନ ଥିଲୁ ଲୋ ମୋ ବୋଉ
ଏବେ ଶତ୍ରୁ ପାଶେ ଛାଡ଼ ଅଚିନ୍ତା ହେଲୁ ଲୋ ମୋ ବୋଉ ।୨।
ମୋ ଚିନ୍ତା ତୋହର ସର ଯାଉଛ ଲୋ ମୋ ବୋଉ
ଏବେ ମୃଗୁଣୀ ସଙ୍କଟ ମାଡ଼ ଅସୁଛି ଲୋ ମୋ ବୋଉ ।୩।
( ପୁସ୍ପ-ଖୁର୍ଦ୍ଧା )

## ବେଦୀ ଫେରନ୍ତ କାନ୍ଦଣା ( ତେର )

ଶଙ୍ଖେ ପାଣି ଟେକ ଦେଇ ହେଲ ଅଚିନ୍ତା, ହେ ବାପା
ଉମ କନ୍ୟାକୁ ଯାହା ଯୋଗୀ ହାତରେ ଦେଲ ଭିକ୍ଷା, ହେ ବାପା ।୧।
ଯୋଗୀ କପଟ କେବେ ଜାଣି ନ ପାରିଲ, ହେ ବାପା
ଲିଭ ତୁମ୍ବାରେ ରତ୍ନଗୁଣ୍ଡି ଯାଚ ଭରିଲ, ହେ ବାପା ।୨।
ସମୁଦ୍ର ମନ୍ଥିଲେ ସିନା ମିଳେ ଅମୃତ, ହେ ବାପା
ମନ୍ଥନରୁ ସଙ୍ଗ ପାଇ ଥାଅନ୍ତ, ହେ ବାପା ।୩।
ଏବେ ଗଉଡ଼ଅ କାହିଁକ ଖୋଜ ବସିଲ, ହେ ବାପା
କୁଜ ଗେଣ୍ଡାଟିଏ ସିନା ପାଇଲ, ହେ ବାପା ।୪।
ଲକ୍ଷେ ଶାଳଗ୍ରାମ ମଣିଲ ତାକୁ ହେ ବାପା
ଏତେ ସମ୍ପଦ କୁଜ ଗେଣ୍ଡାଟାକୁ ହେ ବାପା ।୫।
ମୋ ଲାଗି ଥିଲ ତୁମର ଜଞ୍ଜାଳ ହେ ବାପା
ଏବେ ଜଞ୍ଜାଳରୁ ମୁକ୍ତ ହୋଇଲ ହେ ବାପା ।୬।
ଭାରତ ମଣ୍ଡଳ ତୁମକୁ ଜଣା ହେ ବାପା
ମୋହ ଲାଗି ସବୁ ହେଲା ଅଜଣା, ହେ ବାପା ।୭।
ଚଉଦଗଡ଼ାକ ବୁଲି ଅସିଲ ହେ ବାପା
ମତେ ପଦକୁଡ଼ଅରେ ଅଶବ ଦେଲ, ହେ ବାପା ।୮।

ଗଜ ହୋଇ ଗଧ ପାଦ ଧରିଲ ହେ ବାପା
ସିଂହ ହୋଇ ଶୃଗାଳ ସଙ୍ଗରେ କୀର୍ତ୍ତି ଅର୍ଜିଲ, ହେ ବାପା । ୯ ।
ରାଜ ମୁକୁଟକୁ ଗୋଡ଼େ ଦଳୁଚ ହେ ବାପା
ଯାଳ ପାଣ୍ଡୋଇକୁ ଶିରେ ଲଦୁଚ ହେ ବାପା ।୧୦।

( ପୁରୀ-ଖୁର୍ଦ୍ଧା )

## ବେଦୀ ଫେରନ୍ତ କାନ୍ଦଣା ( ଚଉଦ )

ଯେ ସବୁ ନୃହନ୍ତି ପାଦ ତଳକୁ ହେ ଭାଇ
ତାଙ୍କୁ ଯୋଗ୍ୟ କଲ ସିଂହାସନକୁ ହେ ଭାଇ । ୧ ।
କଣ୍ଟକ ବଳରେ ବିରାଟ ରାଜା ହେ ଭାଇ
ତୁମ ବଳରେ ମୁଁ ଥିଲା ଥିଲି ରାଜା ହେ ଭାଇ । ୨ ।
ନୀଚ ଲୋକ ସଙ୍ଗରେ ସମାନ କଲ ହେ ଭାଇ
ଘର ନୀଚ ଲୋକକୁ ସମର୍ପି ଦେଲ ହେ ଭାଇ । ୩ ।
ନୃପଗଣଙ୍କ ସିଂହ ସମାନ, ହେ ଭାଇ
ଶୃଗାଳ କେବେ କି ହେବ ଭାଜନ, ହେ ଭାଇ । ୪ ।
ତୁମ ଶ୍ରୀ ଚରଣ ଧୂଳି ସମାନ ହେ ଭାଇ
ଅଜ୍ଞ କେହି କେବେ ହେବ ଭାଜନ, ହେ ଭାଇ । ୫ ।
ମନ କରିଥିଲେ ସ୍ୱର୍ଗରୁ ପାରିଜାତ ହେ ଭାଇ
ଆକାଶୁ ନକ୍ଷତ୍ର ତୋଳି ଆଣିଥାନ୍ତ ହେ ଭାଇ । ୬ ।
ଏବେ କେଡ଼େ ବଡ଼ ଅକାର୍ଯ୍ୟ କଲ ହେ ଭାଇ
ବାଉ ପୋକଶୁଙ୍ଘାକୁ ପାରିଜାତ ମଣିଲ ହେ ଭାଇ । ୭ ।
ମଲ୍ଲି ଚମ୍ପାଫୁଲ ଗୋଡ଼େ ଦଳିଲ ହେ ଭାଇ
ଗୁଳୁଣ୍ଡା ଫୁଲକୁ କଣ୍ଠହାର କରିଲ ହେ ଭାଇ ।୮।
ଆକାଶର ତାରା କେତେ ଗଣିଚ ହେ ଭାଇ
କେତେ ବରଷାର ଧାରା ସୁମାରି କରିଚ, ହେ ଭାଇ । ୯ ।
ସମୁଦ୍ର ଲହଡ଼ା କେତେ ଗଣିଲ ହେ ମୋ ଭାଇ
ମୋ ଲାଗି ସବୁ ତ ଭୁଲିଣ ଗଲ ହେ ମୋ ଭାଇ ।୧୦ ।
ବସିଲା ଚଢ଼େଇର ପକ୍ଷୀ କପାଇଁ ହେ ମୋ ଭାଇ
କାହିଁପାଇଁ ଗଣି ପାରିଲ ନାହିଁ, ହେ ମୋ ଭାଇ । ୧୧ ।

କହୁଥିଲେ ଲୋକେ ତୁମେ ମୋ ପାଇଁ ହେ　　ମୋ ଭାଇ
ସାତଖଣ୍ଡ ରାମାୟଣ ପାରିବ ଗାଇ, ହେ　　ମୋ ଭାଇ । ୧୨ ।
ମୋ କରମକୁ ସାତ ଅକ୍ଷର ହେ　　ମୋ ଭାଇ
ପୂର୍ଣ୍ଣ ଯାହା ତୁମେ କରି ନ ପାରିଲ ହେ　　ମୋ ଭାଇ । ୧୩ ।
ପରଙ୍କ ବୁଦ୍ଧିରେ ପ୍ରଳୟ ହେଲା ହେ　　ମୋ ଭାଇ
ମୋ ବେଳକୁ ବୁଦ୍ଧି କିଏ ହରିଲା, ହେ　　ମୋ ଭାଇ । ୧୪ ।

(ପୁରୀ—ଖୁର୍ଦ୍ଧା)

## ବେଦୀ ଫେରନ୍ତା କାନ୍ଦଣା ( ପନ୍ଦର )

ଲହ୍ୱା ଜନ୍ମ ତୁଣ୍ଡିମୁନେ ସରୁଛି ଲୋ　　ମୋ ବୋଉ
ମୋ ସ୍ୱାଧୀନ ଧନତ ସରି ଯାଉଛି ଲୋ　　ମୋ ବୋଉ । ୧ ।
ଯେଉଁପରି ସୀତା ଅଗ୍ନି ପରୀକ୍ଷା ଦେଲେ ଲୋ　　ମୋ ବୋଉ
ବେଦୀରେ ସେହିମତ ମୋହଠୁ
　　ଅଗ୍ନି ପରୀକ୍ଷା ନେଲେ ଲୋ　　ମୋ ବୋଉ । ୨ ।
ରାବଣ ତ ଥିଲା ରାମଙ୍କ ବଇରି ଲୋ　　ମୋ ବୋଉ
ବଇରି ମୁଁ ତ ହୋଇଥିଲି ତୁମ ସଭିଁରି ଲୋ　　ମୋ ବୋଉ । ୩ ।
ରାବଣକୁ ମାରି ରାମ ଅଣିଲା ଲୋ　　ମୋ ବୋଉ
ମୋତେ ବିଦା ଦେଇ ହେବୁ ଅଣିଲା ଲୋ　　ମୋ ବୋଉ । ୪ ।
ମୋ ଲାଗି ଶହେ ଯୋଡ଼ା ନାଗ ବନ୍ଧନେ ଥିଲୁ ଲୋ ମୋ ବୋଉ
ଏବେ ଶହେ ଯୋଡ଼ା ମକ୍ଷୀହାର ଲମ୍ବେଇବୁ ଲୋ ମୋ ବୋଉ । ୫ ।

(ପୁରୀ—ଖୁର୍ଦ୍ଧା)

## ବିଦାହେବାବେଳ କାନ୍ଦଣା ( ଷୋହଳ )

ପର ବୋଲି ମୋତେ ଭାବିବ ନାହିଁ　　ହେ ନୂଆବୋହୂ
ପର କଲେ ମୁଁ ତ ପର ନୁହଇ　　ହେ ନୂଆବୋହୂ । ୧ ।
ଦେଲେ ନେଲେ ସିନା ହେବ ଦରିଦ୍ର　　ହେ ନୂଆବୋହୂ
ଭଣ୍ଡି ସ୍ନେହଠାର ସଂସାରେ ସାର　　ହେ ନୂଆବୋହୂ । ୨ ।

ସତେ ଭ୍ରଇଙ୍କ କଣ୍ଠରେ ସରସ୍ୱତୀ ବସିବେ,　　ହେ ନୂଆବୋହୂ
ଅଜଣା ପୁରରୁ ମୋତେ ଅଣିବେ,　　ହେ ନୂଆବୋହୂ । ୩ ।
ଗୋପପୁରେ ମୋର ଅଳ ସରଲ,　　ମୋ ମାଆମାନେ
ଏବେ ଯମପୁରକୁ ତ ଡକରା ହେଲା,　　ମୋ ମାଆମାନେ । ୪ ।
ଇନ୍ଦ୍ର କୁହୁଡ଼ରେ ଚନ୍ଦ୍ର ସୂର୍ଯ୍ୟ ଛପିଲ ପର,　　ମୋ ମାଆମାନେ
ମାୟା କୁହୁଡ଼ରେ ଛପି ରହିବ ମୁଁ ସେହିପର,　ମୋ ମାଆମାନେ । ୫ ।
ଅଜ ଏତେବେଳେ ତୁମର କୋଳେ,　　ମୋ ମାଆମାନେ
କାଲି ଏତେବେଳେ ଥିବ ଯମର ପୁରେ,　　ମୋ ମାଆମାନେ । ୬ ।
ଆଜ ଏତେବେଳେ ରାମ ନାମ ପଦେ ଶୁଣୁଛୁ ଅଛୁ, ମୋ ମାଆମାନେ
କାଲି ଏତେବେଳେ କାଉଁଙ୍କ କର୍କଶ ସ୍ୱରରେ
　　କାନ ବଧିରା ହେଉଥିବ　　ମୋ ମାଆମାନେ । ୭ ।
ମୁଁ ତ ଅଜ ଏତେବେଳେ ଯାହାକୁ ଦେଖୁଛୁ
　　ଅଷ୍ଟଦିଗପାଳ ତରୁଲତା ଆଦ ସମସ୍ତେ ମୋର ମୋ ମାଆମାନେ
କାଲି ଏତେବେଳେ ଯାହାକୁ ଦେଖିବ
　　ବସୁଧାତ ଅଦ ସମସ୍ତେ ପର,　　ମୋ ମାଆମାନେ । ୮ ।
ଏରଣ୍ଡି ତେଲିଲେ ମୁହଁ ଛପିବ,　　ମୋ ମାଆମାନେ
ଧାଁଆ ତେଲିଲେ ତ ନାଁ ଲୁଚିବ,　　ମୋ ମାଆମାନେ । ୯ ।
ମୋତେ ବଇକୁଣ୍ଠପୁରରେ ଦେଲ ଜନମ　　ମୋ ମାଆମାନେ
ଏବେ ଯମ ଜଉଶାଳେ ହେବ ମରଣ　　ମୋ ମାଆମାନେ । ୧୦ ।
ମଲେ ତ ରହିବ ବସୁଧା ତଳେ　　ମୋ ମାଆମାନେ
ସତେ କ ଫେରିବ ଅଯୋଧ୍ୟାପୁରେ　　ମୋ ମାଆମାନେ । ୧୧ ।

( ଜ୍ୟେଷ୍ଠ ଭଉଣୀମାନଙ୍କ ଧର )

ଯାଉ ଅସୁ ଡାକ ସର ଯାଉଛୁ　　ଲୋ ଧନମାଳୀମାନେ
ଏବେ ଯମ ଯନ୍ତ୍ରଣା ତ ମାଡ଼ି ଅସୁଛୁ ଲୋ ଧନମାଳୀମାନେ । ୧୨ ।
ଅଜଠୁ ଜାଣିବ ଅପା ମଲଣି　　ଲୋ ଧନମାଳୀମାନେ
ଅଜଠୁ ମତେ ତ ଦେବ ମେଲଣି　　ଲୋ ଧନମାଳୀମାନେ । ୧୩ ।

ଗାପ୍ୟାଲ ଭାଙ୍ଗର ଗାଈଙ୍କ ମେଳ ଲୋ ଧନମାଳୀମାନେ
ବାପ ଭାଇ ଭାଙ୍ଗିଲେ ତୁମ ଅମ ମେଳ ଲୋ ଧନମାଳୀମାନେ । ୧୪ ।
ରଜ ଉଚ୍ଛନ୍ଦନ ଶିବ ଜାଗର ଲୋ ଧନମାଳୀମାନେ
ହସିଖେଳ ଦିନ ଯାଏ ଅସ୍ମର ଲୋ ଧନମାଳୀମାନେ । ୧୫ ।
ଭାଦ୍ରବ ମାସରେ ଖୁଦିରକୁଣି ଲୋ ଧନମାଳୀମାନେ
ମନେ ପଡ଼ିବ ଅପାକୁ ପୁଣି ଲୋ ଧନମାଳୀମାନେ । ୧୬ ।
ଜଳେ ବୁଡ଼ି କୂଳେ ଦେବ ବାଲୁଙ୍କା ଲୋ ଧନମାଳୀମାନେ
ସେତେବେଳେ ଭାବିବ ମଲଣି ଅପା ଲୋ ଧନମାଳୀମାନେ । ୧୭ ।

ଝିଅର ପୁତ୍ତୁଳିଙ୍କ ଧର—

ତୋର ଗୁଲୁପି ଅଧର ନେନେ ଲଗିବ ଲୋ ମୋ ବାଇଅଣି
ତୋ ଗୁଲୁଗୁଲୁ କଥା ପିଜସୀ
କେମନ୍ତେ ଭୁଲିବ ଲୋ ମୋ ବାଇଅଣି । ୧୮ ।
ତୋ ଠକଠକ ଗୁଲି କେମନ୍ତେ ଭୁଲିବି ରେ ମୋ ବାଇଆ
ତୋ ଉଁ ଉଁ କଥା କେମନ୍ତେ ମୁର୍ଚ୍ଛିବି ରେ ମୋ ବାଇଆ । ୧୯ ।
କଳାମେଘ ଦେଖି ଯେମନ୍ତେ ନାଚନ୍ତି ରେ ମୋ ବାଇଆ ବାଇଅଣି
ମୟୂର ମୟୂରୀ ଭଙ୍ଗି ଦେଖନ୍ତି ରେ ମୋ ବାଇଆ ବାଇଅଣି । ୨୦ ।
ତେମନ୍ତ ତୋ ଚରଣପଦ୍ମ ନାଚିବ ରେ ମୋ ବାଇଅଣି
ମୋ ଆଖି ଆଗରେ ନୃତ୍ୟ କରିବ ରେ ମୋ ବାଇଅଣି । ୨୧ ।
କାଗଜରେ କାଳି ଲୁଚିଲି ପରି ରେ ମୋ ବାଇଆ
ତୋ ମୁଖ କିଏସେ ଦିଅନ୍ତା ଲୁଚି ରେ ମୋ ବାଇଆ । ୨୨ ।
( ଖୁର୍ଦ୍ଧା—ପୁରୀ )

## ହରିଜନ କାନ୍ଦଣା ( ସଉର )

ମେଘ ଘଡଘଡ଼ି ଦୁଆରେ ରଡ଼ି ମୋହ ବାପା
ଯମ ବସିଅଛୁ ଦୁଆର ମାଡ଼ି, ମୋହ ବାପା । ୧ ।

ପର୍ବତ ଶିଖରେ ଭୁଭୁରି ଖାଇ, ମୋହର ବାପା
ଝାଇ ଆଣିଅଛୁ ପତ୍ରିଲ ଝାଉ, ମୋହର ବାପା । ୨ ।
ପତ୍ରିଲ ଝାଉରେ ନିଆ ଛଅଟା, ମୋହର ବାପା
ଫୁଙ୍କି ଦେଲେ ତା' ଉଡ଼ ଯାଅନ୍ତା, ମୋହର ବାପା । ୩ ।
ନୂଆ ସଡ଼କରେ ଯାଉଛୁ ବଗି, ମୋହର ବାପା
ଶହେ ଘୋଡାଖିଆ ଅଠର ଦାଗି, ମୋହର ବାପା । ୪ ।
କପା ବୋଇଗଲେ ପଣି କାଟନ୍ତି, ମୋହର ବାପା
ତାଙ୍କ ବୋହୂଟିଏ ଖଲି ଗୁଠନ୍ତି, ମୋହର ବାପା । ୫ ।
ବାର ପଛଅଡ଼େ ଜଜାଙ୍ଗି ଲଠି, ମୋହର ମାମୁଁ
ଭୁଜା ଚୁଡ଼ା ଖାଇ ମାଡ଼ିଲ ତଣ୍ଟି, ମୋହର ମାମୁଁ । ୬ ।
ଉବ ଉବ ବାଜା ବାଜି ଯାଉଛୁ, ମୋହର ମାମୁଁ
କେଳା ଖାଇ ପୁଅ ଗୃଲ ଯାଉଛୁ, ମୋହର ମାମୁଁ । ୭ ।

ଦୂର ଦୂର ବନ୍ଧୁ ଜମେଇ ଥିଲ, ମୋହର ମାମୁଁ
ପାଖ ପାଖ ବନ୍ଧୁ ଫେରେଇ ଦେଲ, ମୋହର ମାମୁଁ । ୮ ।
ବାର ପଛଅଡ଼େ ଗଞ୍ଜେଇ ପୁଅ, ମୋହର ମାମୁଁ
କ୍ୱାଁ କରଅଛ ମାଙ୍କଡ଼ଛୁଆ, ମୋହର ମାମୁଁ । ୯ ।
ଅରୁଆ ଗୃଉଳ ମୁଠିକି ମୁଠି, ମୋହର ମାମୁଁ
ବାର ଦ୍ୱାରଅଙ୍କୁ ମାର ଗୋଇଠି, ମୋହର ମାମୁଁ । ୧୦ ।
ଅରୁଆ ଗୃଉଳ ମୁଠିକି ମୁଠି, ହେ ଭାଇ
ଲୁଗା ଝାଉ ଧର' ଯାଉ ଲେଉଟି, ହେ ଭାଇ । ୧୧ ।
ଯାହାକୁ ନ ମିଳେ କୋଡାଲ କଣି, ହେ ଭାଇ
ସେ କାହୁଁ ଆଣିବ ମଥାକୁ ମଣି, ହେ ଭାଇ । ୧୨ ।
କାନ କାନଫୁଲ ଅଣି ଥାଅନ୍ତା, ମୋହର ନାନୀ
ଦାଣ୍ଡ ପଉରଷ ପାଇ ଥାଅନ୍ତା, ମୋହର ନାନୀ । ୧୩ ।
ବାଡ଼ ପଛପଟେ ଡେଙ୍ଗା ଗଞ୍ଜେଇ, ମୋହର ଖୁଡ଼ି
ବୁଢ଼ାବର ସଙ୍ଗେ ଦେଲ ଗଞ୍ଜେଇ, ମୋହର ଖୁଡ଼ି । ୧୪ ।
କଣରେ ଯେମନ୍ତ ସୋଲହ ଭାସଇ, ମୋହର ଖୁଡ଼ି
ମୋତେ ସେହିପର ଦେଲ ଭସେଇ ମୋହର ଖୁଡ଼ି । ୧୫ ।

ବାଡ଼ ଗେଞ୍ଛିଦେଲ ଭାଡ଼ ତଳକୁ,   ମୋହ ଖୁଡ଼ୀ
ମୋତେ ପେଲି ଦେଲ ଯମପୁରକୁ,   ମୋହ ଖୁଡ଼ୀ । ୧୬ ।

ଜାଣି ଦାନ୍ତକାଠି ବଉଳ ବେଣୀ,   ସାଙ୍ଗ ସରସେ
ଗାଧୁଆ ତୋଠକୁ ସମସ୍ତେ ଜାଣି,   ସାଙ୍ଗ ସରସେ । ୧୭ ।
କଅଁଳା ବାଛୁରୀ ଲଞ୍ଜ ହଲେଇ,   ସାଙ୍ଗ ସରସେ
ତା ବଡ଼ ଝିଅ କାପ ହଲେଇ,   ସାଙ୍ଗ ସରସେ । ୧୮ ।
ଗୁଉଳ ମାଣିଏ ରନ୍ଧେଇ ଦେବେ,   ସାଙ୍ଗ ସରସେ
ବଡ଼ ବଡ଼ କଂସା ମାଗି ଅଣିବେ,   ସାଙ୍ଗ ସରସେ । ୧୯ ।
ଚଉକାନ୍ତ ଅଖି ବୁଲେଇ ନେବେ,   ସାଙ୍ଗ ସରସେ
ଦେଲୁ କି ନ ଦେଲୁ ମନ ବଢ଼ବେ,   ସାଙ୍ଗ ସରସେ । ୨୦ ।
ଚଢେଇ କାନ୍ଦଲେ ଅହାର ଦେବ,   ସାଙ୍ଗ ସରସେ
ମୋ ମାତା କାନ୍ଦଲେ କି ବୋଧ ଦେବ,   ସାଙ୍ଗ ସରସେ । ୨୧ ।

ଗାଈ ମୁଲେଇଲ ସଭାରେ ବସି,   ମୋହ ଖୁଡ଼ୁତା
ଝିଅ ମୁଲେଇଲ କୋଠାରେ ବସି,   ମୋହ ଖୁଡ଼ୁତା । ୨୨ ।
ଗାଈ ମୁଲେଇଲ ଠଙ୍କା ଧଇଲ,   ମୋହ ଖୁଡ଼ୁତା
ଝିଅ ମୁଲେଇଲ କି ଫଳ ପାଇଲ,   ମୋହ ଖୁଡ଼ୁତା । ୨୩ ।
ବାଝ ପଛଅଡ଼େ କଦଳୀ ପୁଅ,   ମୋହ ଖୁଡ଼ୁତା
କ୍ଷାଇଁ କରଅଛ ତେଲ ଅଖିଅ,   ମୋହ ଖୁଡ଼ୁତା । ୨୪ ।

ଉଠିଲୁ ସବାର ବସିଲୁ ନାହିଁ,   ମୋହ ମାଅ
ଅଉ ବାପଘର ଦଣିଲୁ ନାହିଁ,   ମୋହ ମାଅ । ୨୫ ।
ନୂଆବନ୍ଧ ପାଣି ବଡ଼ ଉଠାଣି,   ମୋହ ମାଅ
କେମନ୍ତେ କାଢ଼ିବି ଯୋଡ଼ାର ପାଣି,   ମୋହ ମାଅ । ୨୬ ।
କାଢ଼ି ନ ଜାଣିବି ଝୁଣ୍ଟେଇ ଦେବି,   ମୋହ ମାଅ
ହେଥେରେ ବୋଲଣା କେତେ ସହିବି,   ମୋହ ମାଅ । ୨୭ ।
ହାତୀ ମଙ୍ଗେ ନାହିଁ ହାତୀଶାଳକୁ,   ମୋହ ମାଅ
ମୁହିଁ ମଙ୍ଗେ ନାହିଁ ରନ୍ଧାଶାଳକୁ,   ମୋହ ମାଅ । ୨୮ ।
ରନ୍ଧାଶାଳ ସିନା ବନ୍ଦ ଦେଉଳ,   ମୋହ ମାଅ
ରୋହିମାଛ ଲେଖେଁ ବୋହିବି ଝାଳ,   ମୋହ ମାଅ । ୨୯ ।

ମେଘ ଝିପି ଝିପି ବାଟ ଖସରା, ମୋ ମଉସା
ତମ ଛତା ବାଡ଼ ମୋତେ ଆଶରା, ମୋ ମଉସା । ୩୦ ।
ଆଗରେ କରଣା ପଛେ ଗୃଲବ, ମୋ ମଉସା
ସଜନା ଗଛରୁ ଡେଙ୍ଗେ ଅଣିବ, ମୋ ମଉସା । ୩୧ ।
ଆଗରେ ଚଲାଇ ପଛେ ଗୃଲବ, ମୋ ମଉସା
ଗୋଡ଼ ଧୂଳିଯାକ ପାଦେ ରଖିବ, ମୋ ମଉସା । ୩୨ ।
କୁଡ଼ମା ଠି ସିନା କୁଢ଼େ ଘଟିବ, ମୋହ ନୂଆବୋହୂ
ଗୋଡ଼ଧରା ବନ୍ଧୁ କସ କରବ, ମୋହ ନୂଆବୋହୂ । ୩୩ ।
ନନାକୁ ପଠେଇ ମତେ ଅଣିବେ, ମୋହ ନୂଆବୋହୂ
ନନା ପହଞ୍ଚିବେ ଦ'ପହରେ, ମୋହ ନୂଆବୋହୂ । ୩୪ ।
ଗୋଡ଼ ଧୋଇଦେବ ପାଚେରୀ ତଳେ, ମୋହ ନୂଆବୋହୂ
ମୋ ଅକଲ କହ୍ବ ନିଛଳ ବେଳେ, ମୋହ ନୂଆବୋହୂ । ୩୫ ।
ଅଣ୍ଟା ମଚ ମଚ ବାଉଁଶ କଳା, ମୋହ ନୂଆବୋହୂ
ଗାଧୁଆ ଡୋଠକୁ ସମସ୍ତେ ମେଳ, ମୋହ ନୂଆବୋହୂ । ୩୬ ।

(ହୃଦୋଳ)

**ବାରମାସୀ କାନ୍ଦଣା** ( ଅଠର )

ଅଷାଢ଼ ମାସରେ ମେଘ ଗର୍ଜନ, ବାପା ହେ
ଭାଙ୍ଗି ଦେଲ କୋଇଲର ଗୁମାନ, ବାପା ହେ । ୧ ।
ଝଡ଼ ବଡ଼ି ହେଲା ଶ୍ରାବଣ ମାସ, ବାପା ହେ
ଜଳ ବହଳରେ ପଦ୍ମ ନିରାଶ, ବାପା ହେ । ୨ ।
ଝିଇଁ ଝିଇଁ ବାଜେ ଭେଦୁଅ ଖରା, ବାପା ହେ
ପେଟରେ ରହ୍ନ ପାଟ ପୋକରା, ବାପା ହେ । ୩ ।
ଅଶିଣ ଗୁହଦମୀ କେଡ଼େ ଉଜ୍ଜ୍ୱଳ, ବାପା ହେ
ତମ ଗୁହ ବନ୍ଦ ହବ ଅନ୍ଧାର ଘର, ବାପା ହେ । ୪ ।
କାର୍ତ୍ତିକର ନଈ ପୋଖରୀ ପାଣି, ବାପା ହେ
ଭୁଲିବ କେମନ୍ତେ ରାଧିକାରାଣୀ, ବାପା ହେ । ୫ ।

ମଗୁଣିର ଧାନ କିଅସ୍ତି ବାସ, ବାପା ହେ
ତୁମ ଲକ୍ଷ୍ମୀ ଗଲ ଦୂର ବିଦେଶ, ବାପା ହେ । ୬ ।
ପଉଷ ମାସର ଶୀତ କାକର, ବାପା ହେ
କାହା ବେଳେ ଦେବ ମୁକୁତା ହାର, ବାପା ହେ । ୭ ।
ଏଡ଼େ ବଡ଼ ଜାଡ଼ ମାଘ ମକର, ବାପା ହେ
ଗେହ୍ଲା ଜେମାଟିକୁ କରିଲ ପର, ବାପା ହେ । ୮ ।
ଫଗୁଣେ ଫଗୁଆ ଦୋଳଗୋବିନ୍ଦ, ବାପା ହେ
ଜଣିକ ପାର୍ବଣିକ ହୋଇଲ ମନ୍ଦ, ବାପା ହେ । ୯ ।
ଚଇତ ମଲ୍ୟ ନିମ୍ବଇ ମିଠା, ବାପା ହେ
ବଣିକୁ ପେଲିଲ ଦୁଲଣି ସାଠା, ବାପା ହେ । ୧୦ ।
ବଇଶାଖ ମାସେ ଲୋଡ଼ା ଚନ୍ଦନ, ବାପା ହେ
ଚନ୍ଦନ ବୃକ୍ଷରେ ସର୍ପ ଅସ୍ଥାନ, ବାପା ହେ । ୧୧ ।
ଜ୍ୟେଷ୍ଠ ମାସ ଖରା ପ୍ରଚଣ୍ଡ ଅତି, ବାପା ହେ
ଦୂରେ ମେଲି ଦେଲ ତୁମ ସାବିନୀ, ବାପା ହେ । ୧୨ ।

( କାନ୍ଦଣା ବାରମାସୀ, ଢଗିରିଆ )

**ପଦ୍ମଲପାଳ ତଥି କାନ୍ଦଣା** ( ଓଣିଶ )

ଜାଗର ଦ୍ୱିତୀୟା ଗଡ଼ଣି ଗଲ, ବାପା ହେ
ଅକ୍ଷୟତୃତୀୟାକୁ ଯୋଗ ନ ହେଲ, ବାପା ହେ । ୧ ।
ରୁକୁଣୀ ବିଭା ତ ଶୁଝିଲ ନାହିଁ, ବାପା ହେ
ହେରା ପଞ୍ଚମୀକୁ ଦିନ ନ ଅଣ୍ଟଇ, ବାପା ହେ । ୨ ।
ହରଶୟନରେ ଯାତ୍ରା ନିଷେଧ, ବାପା ହେ
ପ୍ରଥମାଷ୍ଟମୀକୁ ନ ଥିଲ ଯୋଗ, ବାପା ହେ । ୩ ।
ମାଘ ଶ୍ରୀପଞ୍ଚମୀ ଜନମ ମାସ, ବାପା ହେ
ତ୍ରୟୋଦଶୀ ତଥି ଫଗୁଣ ଶେଷ, ବାପା ହେ । ୪ ।
ଶଙ୍ଖ ହୁଳହୁଳି ଶବ୍ଦ ଭରି, ବାପା ହେ
ଗଉଡ଼େ ସଜିଲ ହେଲେ ଧରି ସବାରି, ବାପା ହେ । ୫ ।

ମତେ ଛାଡ଼ି ଦେଲେ ହେବ ନିଶ୍ଚିନ୍ତ, ବାପା ହେ
ବନସ୍ତ ମଝିରେ ବର ଅଶ୍ୱତ୍ଥ, ବାପା ହେ । ୬ ।
ମୋ ଶନ୍ତାରେ ତୁମେ ଶୋଇ ନ ଥିଲ, ବାପା ହେ
ଏବେ ଅଶନ୍ତାରେ ବେଳ କାଟିବ, ବାପା ହେ । ୭ ।
ନିମ୍ବ ଫଳ ପିନା ଗଛକୁ ପିତା, ବାପା ହେ
ମୁଁ କଷା ହୋଇଲି ତୁମ୍ଭଙ୍କୁ ପିତା, ବାପା ହେ । ୮ ।
ପିଅର ବଚନେ-ବନ ଗମନ, ବାପା ହେ
ମତେ ପେଲି ଦେଲି ଯମଭୁବନ, ବାପା ହେ । ୯ ।
ଏତେ ଗେହ୍ଲାକରି ବଢ଼େଇ ଥିଲ, ବାପା ହେ
ଦୂରନ୍ତ ଦେଶନ୍ତେ ମେଲଣି ଦେଲ, ବାପା ହେ । ୧୦ ।
ପୁଞ୍ଜି ପୁଞ୍ଜି ତରୀ ମେଘକୁ ସୁନ୍ଦର, ବାପା ହେ
ଖେଳୁଥିଲି ସଙ୍ଗ ସଙ୍ଗାତ ମେଳ, ବାପା ହେ । ୧୧ ।
**ଆମ** ଖେଳ ଭାଙ୍ଗି କବା ଯଶ ଅର୍ଜିଲ, ବାପା ହେ
କ'ସେଇଙ୍କ ଛଡ଼ା ବଉଳି ଦେଲ, ବାପା ହେ । ୧୨ ।

( ଖଣ୍ଡପଡ଼ା )

## **ଖଣ୍ଡେଇତ ଘର କାନ୍ଦଣା** ( କୋଡ଼ଏ )

ହାଡ଼ି ତଳେ ବେଙ୍ଗ ବେଙ୍ଗୁଲି ବସା, ମୋ ମାଆରାଣୀ
ଭାତ ନ ବାଢ଼ିବେ ପୂରେଇ କଂସା, ମୋ ମାଆରାଣୀ । ୧ ।
କଥା ନ କହିବେ ମୁହଁକୁ ଗୃହିଁ, ମୋ ମାଆରାଣୀ
ବଚନ କହିବେ ମୁହଁ ଫୁଲେଇ, ମୋ ମାଆରାଣୀ । ୨ ।
ପାହାନ୍ତି ପଖାଳ ସପନ ହେବ, ମୋ ମାଆରାଣୀ
ବାଳ ବାନ୍ଧିବାକୁ ତେଲ ନ ଥିବ, ମୋ ମାଆରାଣୀ । ୩ ।
କାଖରେ ମାଠିଆ ମୁଣ୍ଡରେ ହାଣ୍ଡି, ମୋ ମାଆରାଣୀ
ଯୋଡ଼ି ଯୋଡ଼ି ପାଣି କେ ଦେବ ଆଣି, ମୋ ମାଆରାଣୀ । ୪ ।
ବାଡ଼ରେ କଇଁଆ ସବୁ ପଥର, ମୋ ମାଆରାଣୀ
ନ ଥିଲା ଝିଅର କେଉଁ ଗୃହର, ମୋ ମାଆରାଣୀ । ୫ ।

ହାତରେ ପାଞ୍ଚଣ ଲଙ୍ଗଳ କଣ୍ଟି, ଗୋ — ମୋ ମାଆରାଣୀ
ଧାନ କୁଟି ଗୋଡ଼ ହୋଇବ ବଣ୍ଟି, ଗୋ — ମୋ ମାଆରାଣୀ । ୬ ।
ବୁଢ଼ା ଜୋଇଁଠାରେ ଶରଧା କଲୁ, ଗୋ — ମୋ ମାଆରାଣୀ
ଧନ ଦେଖି ମତେ ଭସେଇ ଦେଲୁ, ଗୋ — ମୋ ମାଆରାଣୀ । ୭ ।

କୁଅଁର ପୁନଅଁ ଉଜଳଚନ୍ଦ, ଗୋ — ମୋ ମାଆରାଣୀ
ମୋ ପେଇଁ ବାଆ ପାଖିଲେ ମନ୍ଦ, ଗୋ — ମୋ ମାଆରାଣୀ । ୮ ।
ସୁନ୍ଦର କଣିଅଁ ବାଉଁଶ ଗଛ, ଗୋ — ମୋ ମାଆରାଣୀ
ଠାକର୍ ଗାଲରେ ପାଚଲା ନଶ, ଗୋ — ମୋ ମାଆରାଣୀ । ୯ ।
ମାଣେ ନାହିଁ ଜମି ବାଟିଏ ଗୁଷ, ଗୋ — ମୋ ମାଆରାଣୀ
କଣେ ନାହିଁ ଓହ ଡେଙ୍ଗା ଉଆସ, ଗୋ — ମୋ ମାଆରାଣୀ ।୧୦।
ମାଣିକଅ ମୁଣ୍ଡର ବଡ଼ ଗୁଡର, ଗୋ — ମୋ ମାଆରାଣୀ
କଥା ଶୁଣି ଛାତ ହେବ ପଥର, ଗୋ — ମୋ ମାଆରାଣୀ ।୧୧।
ଟିକି ଟିକି କୋଲ୍ଲ ପଣସ କୋଷା, ଗୋ — ମୋ ମାଆରାଣୀ
ହଲ ଲଙ୍ଗଳରେ ତାର ବେଉଷା, ଗୋ — ମୋ ମାଆରାଣୀ ।୧୨।
ମୟୂର ସାପର ଭେଟ ଯେପର, ଗୋ — ମୋ ମାଆରାଣୀ
ମୋର ତାର ଭେଟ ହେବ ସେପର, ଗୋ — ମୋ ମାଆରାଣୀ ।୧୩।
ପାନ ପିକଦାନ ମୁଣ୍ଡଶାଳକୁ, ଗୋ — ମୋ ମାଆରାଣୀ
ମୋହର ଜନମ ଡିଙ୍କି ଶାଳକୁ, ଗୋ — ମୋ ମାଆରାଣୀ ।୧୪।

ମୁହଁରେ କହିବେ କୋକିଳ ବାଣୀ, — ମୋ ମାଆରାଣୀ
ପଛରେ ସିଞ୍ଚିବେ ଗୋବର ପାଣି, — ମୋ ମାଆରାଣୀ ।୧୫।
ସାଲ୍ ପଡ଼ଶାର ବଚନ ଅଣ୍ଟା, — ମୋ ମାଆରାଣୀ
ଏକା ଶାଶୁଙ୍କ ବଚନ୍ କରବ ଗୁଣ୍ଡା, — ମୋ ମାଆରାଣୀ ।୧୬।
ମୁହଁରେ ଗରଳ ପେଟରେ ବିଷ, — ମୋ ମାଆରାଣୀ
ମଉଡ଼ମଣିଙ୍କ ମୁହଁ ବିରସ, — ମୋ ମାଆରାଣୀ ।୧୭।
କେଳା ଜାତରେ ସେ ସାପୁଆ କେଳା, — ମୋ ମାଆରାଣୀ
ଜୀଇଁ ଥାଉ ଥାଉ କାଟିବେ ଗଳା, — ମୋ ମାଆରାଣୀ ।୧୮।

ଉବ ଉବ ବାଜେ ଯୋଡ଼ି ନାଗରା, ମୋ ମାଆରାଣୀ
ମୋ ପେଇଁ ଥୋଇବେ କାଇଁ ଖପରା, ମୋ ମାଆରାଣୀ ।୧୯।
ରଜା ବଜେ କଲେ ଯୋଡ଼ି କାହାଳୀ, ମୋ ମାଆରାଣୀ
ମୋ ପେଇଁ ବାଜିବ ଶଙ୍ଖ ମହୁରୀ, ମୋ ମାଆରାଣୀ ।୨୦।
ଛିକ ଛିକ ଆମ୍ବ ଗଛରେ ପାଚେ, ଗୋ ମୋ ମାଆରାଣୀ
ଛିକ ଝିଅ ଡାକ ଶିରରେ ନାଚେ, ଗୋ ମୋ ମାଆରାଣୀ ।୨୧।
ଷାଠିଏ ହାତର ଗଭୀର କୂଅ, ଗୋ ମୋ ମାଆରାଣୀ
ଲୁଗା ଶକା ଘରେ ବିକଲ ଝିଅ, ଗୋ ମୋ ମାଆରାଣୀ ।୨୨।
ଥିର ଥିର ପାଣି ପଥର କାଟେ ଗୋ ମୋ ମାଆରାଣୀ
ବାଆ ପାଣି ସିନା ମୁହଁକୁ ଛୁଟେ ଗୋ ମୋ ମାଆରାଣୀ ।୨୩।

( ଢେଙ୍କାନାଳ )

## ବାପା ହେ ( ଏକୋଇଶ )

କଣଥିଲ ଝିଅ ଗେଲବସର, ବାପା ହେ
ଧନେ ମଅ ବୋଲି କର ନ ପର, ବାପା ହେ । ୧ ।
କେମନ୍ତେ ପରଚି ମୁରୁଛି ଦେଲ, ବାପା ହେ
ଅମଣିଆ ବେକେ ଜୁଆଳି ଦେଲ, ବାପା ହେ । ୨ ।
କି ମନ୍ତ୍ରର ଜାଣେ କେଳା କୁହୁକ, ବାପା ହେ
ଦଣ୍ଡକେ ଭୁଲିଗଲ କୋଇଲି ଡାକ, ବାପା ହେ । ୩ ।
ବାଘ ମହୁରିଆ ଛାଡ଼ିଲେ ରଡ଼ି, ବାପା ହେ
ଡରରେ ପ୍ରାଣ ଯାଏ ପିଣ୍ଡୁ ବାହାରି, ବାପା ହେ । ୪ ।
ତମେ ଘରେ ଥିଲେ କେଡ଼େ ନଡର, ବାପା ହେ
ଏଡ଼େ ଡରକୁଳିକୁ କଲ ଅନ୍ତର, ବାପା ହେ । ୫ ।
କେମନ୍ତେ ବଞ୍ଚିବ ସେହି ପରାଣୀ, ବାପା ହେ
ବାପା ମାଆଙ୍କର ଗେହ୍ଲା ଦୁଲଣୀ, ବାପା ହେ । ୬ ।
ଆଙ୍ଗୁଠି ଗେଞ୍ଜିଲ ସାପ ଗାତରେ, ବାପା ହେ
ଗେଣ୍ଠ ବାନ୍ଧିଗଲ ଅଜାଣତରେ, ବାପା ହେ । ୭ ।

ଝଡ଼ିଲ କୁଣ୍ଡଳୁ ମୁକୁତା ଫୁଲ,　　ବାପା ହେ
ମଣି ସଙ୍ଗେ କାଚ ଜଡ଼ଉ କଲ,　　ବାପା ହେ । ୮ ।
ଆଡ଼ ରଙ୍ଗା ଚୂଡ଼ ମାଣିକ ଯୋଡ଼ି,　　ବାପା ହେ
ବାପ ସଙ୍ଗୁ ହିଅର କଣ ଛଡ଼ା ଛଡ଼ି,　　ବାପା ହେ । ୯ ।
ଲାଉଡଙ୍କ ପିଢ଼ା ଉପରେ ବଢ଼ି,　　ବାପା ହେ
କେତେ କର୍ଭପୁରେ ଯାଉଛୁ ମାଡ଼ି,　　ବାପା ହେ । ୧୦ ।
ଲାଉଡଙ୍କ ଠାରୁ ହୋଇଲି ହୀନ,　　ବାପା ହେ
ପର ପିଢ଼ାରେ ମୋ ଯିବ ଜୀବନ,　　ବାପା ହେ । ୧୧ ।
ଭଇଁର କଣ୍ଠାରେ ମାଳତୀ ଫୁଲ,　　ବାପା ହେ
ଶଅର କରବ ମାଣିକ ମୂଲ,　　ବାପା ହେ । ୧୨ ।
ଗୋବର ଗାଡ଼ରେ ପଦ୍ମ ଫୁଟିବ,　　ବାପା ହେ
ଘୁଷୁର ପାଚଲା ରମ୍ଭା ଖାଇବ,　　ବାପା ହେ । ୧୩ ।
ଅନ୍ଧ ହସ୍ତେ ରତ୍ନ ମୁଦର ଶୋଭା,　　ବାପା ହେ
କୁଜ କାଣି ମୁଣ୍ଡେ ମାଳତୀ ଗଭା,　　ବାପା ହେ । ୧୪ ।
ବେଗୁନିଅ ଡାଟିକି ରତ୍ନ ପାଚେର,　　ବାପା ହେ
ପେଚ୍ଛ ଚଢ଼େଇ କି ରତ୍ନ ପଞ୍ଜୁରୀ,　　ବାପା ହେ । ୧୫ ।
କନକ ପଦ୍ମକୁ ପଣ୍ଡା ଗୁହାଳ,　　ବାପା ହେ
ଲଙ୍କା ଛେଳି ବେକେ ସେବତୀ ମାଳ,　　ବାପା ହେ । ୧୬ ।
ମୁରାଡ଼ ଚଖେଇଲ ବୁଢ଼ା ବଗକୁ,　　ବାପା ହେ
ଅମୃତକୁଣ୍ଡରେ ରଖିଲ ସାପକୁ,　　ବାପା ହେ । ୧୭ ।
କଳାକତରାର ମୁହ ଗୁହିଁଲ,　　ବାପା ହେ
କଳାହୁଡ଼ି ଶାଗୁ ଫାନ୍ଦେ ପଡ଼ିବ,　　ବାପା ହେ । ୧୮ ।
କାଳିକାନ୍ତ ଭାବ କଲ କି ଏହା,　　ବାପା ହେ
କେବେ ତ ତୁମ ପାଦପଦ୍ମରେ ନ ହେଲି ଦ୍ରୋହୀ, ବାପା ହେ । ୧୯ ।
ତେବେ ମୋତେ କିପାଇଁ କଲ ଏମନ୍ତ,　　ବାପା ହେ
ଦୂରେ ଠେଲି ଦେଲ ଶତ୍ରୁ ଯେମନ୍ତ,　　ବାପା ହେ । ୨୦ ।
ଭଗାରି କି ତମେ ହୋଇଚ ଭଲ,　　ବାପା ହେ
ଅଣ ଭଗାରରେ ହୋଇଲି ସଲ,　　ବାପା ହେ । ୨୧ ।

ମାସକରେ ଧନେ ଗୁହିଁ ବସିବୁ, ବାପା ହେ
ନ ହେଲେ ଜହର ମହୁରା ନଷ୍ଟେ ଖାଇବି, ବାପା ହେ । ୨୨ ।

( ନୂଆଗଡ଼ )

**ମୋ ବୋଉ** ( ବାଲିଶି )

ବନ ପକ୍ଷୀ ଭଳି ବଢ଼େଇ ଥିଲୁ, ଲେ ମୋ ବୋଉ
ବେଳ କାଳ ଦେଖି ଉଡ଼େଇ ଦେଲୁ, ଲେ ମୋ ବୋଉ । ୧ ।
ପକ୍ଷୀ ଉଡ଼ିପଳେଲ ପଞ୍ଜୁରି ତୁଚ୍ଛା, ଲେ ମୋ ବୋଉ
ମୋତେ ଛାଡ଼ି ଦେଲେ ତୋ କୋଠା ତୁଚ୍ଛା, ଲେ ମୋ ବୋଉ । ୨ ।
ନ ଖାଇଥିଲେ ଖାଆ ବୋଲି କିଏ ବୋଲିବ, ଲେ ମୋ ବୋଉ
ଶୋଇଥିଲେ କିଏ ଉଠେଇ ଦବ, ଲେ ମୋ ବୋଉ । ୩ ।
ପିଠିକି ଜାଣିବ ପେଟର ବଥା, ମୋ ବୋଉ
ପରକି ଜାଣିବ ମୋ ମନ କଥା ମୋ ବୋଉ । ୪ ।
ଛୋଟ ଛୋଟ କଥା ଦେବେ ବଢ଼େଇ, ମୋ ବୋଉ
ପୁରୁଷଙ୍କ ମାଡରେ ଦେବେ ଉଡ଼େଇ ମୋ ବୋଉ । ୫ ।
କେତେ ଲୋକ କେତେ କଥା କହିବେ, ମୋ ବୋଉ
ହାଡ଼ରୁ ମାଉଁସ ଝଡ଼େଇ ଦେବେ, ମୋ ବୋଉ । ୬ ।
ଆମ୍ଭଗଛେ ଚଢ଼େ ଆମ୍ଭ ଡାହାଣୀ, ମୋ ବୋଉ
ମତେ ତ ବୋଲିବେ ଧନ ରକ୍ଷଣୀ, ମୋ ବୋଉ । ୭ ।
ଅନ୍ଧାର ଘରକୁ ମୁଁ ଡରୁଥିଲି, ମୋ ବୋଉ
ଏକୁଟିଆରେ ଅନ୍ଧାରେ ରହିବ ବୋଲି, ମୋ ବୋଉ । ୮ ।
ହାତୀ ଭାଙ୍ଗି ଖାଏ କଦଳୀ କନ୍ଧା, ମୋ ବୋଉ
ଆଜଠାରୁ ଗଲା ମୋହର ଧନ୍ଦା, ମୋ ବୋଉ । ୯ ।
ବାଡ଼ରେ ଫୁଟିଲା ରଙ୍ଗ ମନ୍ଦାର, ମୋ ବୋଉ
ଆଜଠାରୁ ତୋହର ଘର ଅନ୍ଧାର, ମୋ ବୋଉ ।୧୦।
ଓଠ ପାଣି ଖାଏ ଲମ୍ବେଇ ବେକ, ମୋ ବୋଉ
ଆଜ ନ କରିବୁ ଝିଅ ସୋହାଗ, ମୋ ବୋଉ ।୧୧।

( ଖଲ୍ଲିକୋଟ, ଗଞ୍ଜାମ )

## ହେ ନୂଆବୋହୂ (୧)—( ଢେଙ୍କଣି )

ଥିର ଥିର ପାଣି ପଥର କାଟେ, ହେ ନୂଆବୋହୂ
ଥିର ଥିର କଥା କଲଜା କାଟେ, ହେ ନୂଆବୋହୂ । ୧ ।
ପିଣ୍ଡା ଦାଢ଼େ ବାଠ ଗୁଲି ନ ଥିଲି, ହେ ନୂଆବୋହୂ
ଖଣ୍ଡା ଦାଢ଼େ ବାଠ ଗୁଲିବ ବୋଲି, ହେ ନୂଆବୋହୂ । ୨ ।
ବନସ୍ତ ପୋଡ଼ିଲେ ଲୋକେ ଜାଣିବେ, ହେ ନୂଆବୋହୂ
ହୃଦୟ ପୋଡ଼ିଲେ କେହି ନ ଜାଣିବେ, ହେ ନୂଆବୋହୂ । ୩ ।
ଖରାରେ ଠିଆ ହେଲେ କିଏ ଡାକିବ, ହେ ନୂଆବୋହୂ
ଭୋକ କଲେ ଭାତ କିଏ ଖୁଆଇବ, ହେ ନୂଆବୋହୂ । ୪ ।
କୋଇଲିର ମେଳ ଅମ୍ବ ଡୋଠାରେ ହେ ନୂଆବୋହୂ
ଆମର ମେଳ ତ ରଜ କୋଠାରେ ହେ ନୂଆବୋହୂ । ୫ ।

ଏକା ମହାନଦୀ ପଚୁଶ କୋଶ, ହେ ନୂଆବୋହୂ
ମତେ ଛାଡ଼ିଦେଲି ଦୂର ବିଦେଶ, ହେ ନୂଆବୋହୂ । ୬ ।
ଭାତ ଖାଇ ହାତ ଧୋଇ ଜାଣି ନ ଥିଲି, ହେ ନୂଆବୋହୂ
ହାଣ୍ଡିରେ ଭାତ ସିଝେଇବ ବୋଲି, ହେ ନୂଆବୋହୂ । ୭ ।
ରାବଣ ଅହଲ୍ୟା ସୀତାୟୀ ଠାରେ, ହେ ନୂଆବୋହୂ
ଶାଶୁଘର ବାଦ ମୋହର ଠାରେ, ହେ ନୂଆବୋହୂ । ୮ ।
ସୁନାର କେତକୀ ରତନ ଛତା, ହେ ନୂଆବୋହୂ
ତୁମେ ପାଟ ରାଣୀ ଜଗତଜିତା, ହେ ନୂଆବୋହୂ । ୯ ।
କୋଉ ଭବିଷରେ ମଣ୍ଡାଇ ଦେଲି, ହେ ନୂଆବୋହୂ
ଲଙ୍କା ବଣେ ଅଗ୍ନିକୁଣ୍ଡ ଖୋଳିଲି, ହେ ନୂଆବୋହୂ । ୧୦ ।
ଅଗ୍ନିକୁଣ୍ଡେ ମୋତେ ଦେଲି ଆହୁତ, ହେ ନୂଆବୋହୂ
ଦଣ୍ଡକେ ଘେନିଯିବ ଅସୁର ଯେତ, ହେ ନୂଆବୋହୂ । ୧୧ ।
କଅଁଳ ବଚନ କହନ୍ତି କେତେ, ହେ ନୂଆବୋହୂ
ମୁରୁ ମୁରୁ ହସ ହସନ୍ତି ଯେତେ, ହେ ନୂଆବୋହୂ । ୧୨ ।

ନଈ ପାର ହେଲେ ନଇଁବ ପିଠି, ହେ ନୂଆବୋହୂ
ସର୍ପ ବିବରରେ ତୁଳସୀ କଣ୍ଟି, ହେ ନୂଆବୋହୂ । ୧୩ ।

ନିମ୍ବ ବାଟିକାରେ ହେବ ମରଣ, ହେ ନୂଆବୋହୂ
ଝୁରି ମଲେ କେହି ନାହିଁ ଶରଣ, ହେ ନୂଆବୋହୂ । ୧୪ ।
ଶୋଷେଇଲେ କେହି ଗୁହିଁବେ ନାହିଁ, ହେ ନୂଆବୋହୂ
ଭୋକେଖେଇଲେ ମୁହଁ ଦେବେ ଶୁଖାଇ; ହେ ନୂଆବୋହୂ । ୧୫ ।
ବାଜୁଛି ସକାଳ ଧୂପର ଘଣ୍ଟା, ହେ ନୂଆବୋହୂ
ମୁଁ କି ହୋଇପାରେ ତୁମଠି କଣ୍ଟା, ହେ ନୂଆବୋହୂ । ୧୬ ।

କିଆଁ ତଡ଼ି ଦେଉଚ ଦୂର ଅରଣ୍ୟ, ହେ ନୂଆବୋହୂ
ସାପ ଗାତେ ରୋପି ଦେଲ ଚନ୍ଦନ, ହେ ନୂଆବୋହୂ । ୧୭ ।
ଭୂଇଁ ଦଳନରେ ମାଡ଼ୁଛି କଣ୍ଟା, ହେ ନୂଆବୋହୂ
ବୃନ୍ଦାବନ ତେଜି ଯାଏ ରାଧିକା, ହେ ନୂଆବୋହୂ । ୧୮ ।
ଖାଲି ତୁଣ୍ଡରେ ମତେ ପଗୁରୁଥିବ. ହେ ନୂଆବୋହୂ
ବାରିକ ହାତରେ ଖବର ଦେବ, ହେ ନୂଆବୋହୂ । ୧୯ ।
ଧରଇ ଚରଣ ପଡ଼ଇତଲେ, ହେ ନୂଆବୋହୂ
ଦୋଷମାନ ଷେମ ଏତକ ବେଳେ, ହେ ନୂଆବୋହୂ । ୨୦ ।

କାହୁଁ ଆସି କାହିଁ ଯାଉଚ କହ, ହେ ନୂଆବୋହୂ
କାହିଁ ଥିଲ କାହିଁ ରହିବ କହ, ହେ ନୂଆବୋହୂ । ୨୧ ।
ଯେତେ ଦୋଷ କରଚ କରିବ ଷମା ହେ ନୂଆବୋହୂ
ମୁଁ ପରା ତୁମର ଅଲ୍ଲାଳି ଜେମା, ହେ ନୂଆବୋହୂ । ୨୨ ।
କମଳ ଫୁଟିଲେ ଦେବାଳୟକୁ, ହେ ନୂଆବୋହୂ
ଝିଅଙ୍କ ଜନମ ପର ଘରକୁ, ହେ ନୂଆବୋହୂ । ୨୩ ।
ଅଦିନେ ବଉଳ କେଣ୍ଡା ସୁନ୍ଦର, ହେ ନୂଆବୋହୂ
ଅଦିନିଆଁ କଥା ବଡ଼ କଅଁଳ, ହେ ନୂଆବୋହୂ । ୨୪ ।
ଢ଼ପରୁ ଚଢ଼େଇଙ୍କ ସୁବର୍ଣ୍ଣ ପଞ୍ଜୁରୀ, ହେ ନୂଆବୋହୂ
ନିତି ଝୁରୁଥାଏ ବଣ ସୁମର, ହେ ନୂଆବୋହୂ । ୨୫ ।

(ଉମପଡ଼ା)

# ହେ ନୂଆବୋହୂ (୬)—(ଚଉଶ)

ପଦ୍ମଫୁଲ ମାଳ ସର୍ପ ବେକକୁ, ହେ ନୂଆବୋହୂ
ମୋତେ ଫିଙ୍ଗି ଦେଲ ଯମ ଅଳକୁ, ହେ ନୂଆବୋହୂ । ୧ ।
ଯମପୁରେ ବେଙ୍ଗ ବେଙ୍ଗୁଲି ବସା, ହେ ନୂଆବୋହୂ
ଗରଳ ଉଠୁଛି କଂସାକୁ କଂସା, ହେ ନୂଆବୋହୂ । ୨ ।
ନଣନ୍ଦ ହୋଇଲ ବଡ଼ ଅଡୁଆ, ହେ ନୂଆବୋହୂ
ଶରଧାରେ କରିଥିଲ ବଡ଼ିଆ, ହେ ନୂଆବୋହୂ । ୩ ।
ଜହର ମନ୍ଥୁରି ନ ଦେଲ ତୁଣ୍ଡେ, ହେ ନୂଆବୋହୂ
ପେଲି ଦେଲ ଯମ ନରକ କୁଣ୍ଡେ, ହେ ନୂଆବୋହୂ । ୪ ।
ଗଲା ମଲା କଣ ନୁହେ ସମାନ, ହେ ନୂଆବୋହୂ
ଦଣ୍ଡକେ ପୋଛିଲ ମୋ ସନମାନ, ହେ ନୂଆବୋହୂ । ୫ ।
ଆଉ କେ ଡାକିବ କନକ ଲଟା, ହେ ନୂଆବୋହୂ
କାହା ସଙ୍ଗେ ହେବ ଗୁପତ କଥା, ହେ ନୂଆବୋହୂ । ୬ ।

ଚନ୍ଦ୍ରମାବଦନୀ ଭାଉଜ ଧଣୀ, ହେ ନୂଆବୋହୂ
ତୁମ ସର ଆଉ ନେବ ଦେଖିନେ, ହେ ନୂଆବୋହୂ । ୭ ।
କେମନ୍ତେ ଦୂରୁଛି ହିବ ତ କହ, ହେ ନୂଆବୋହୂ
ତୁମକୁ ନ ଦେଖି ସହିବ ଦହ, ହେ ନୂଆବୋହୂ । ୮ ।
କେତେ ଗେଲ କଲ ଅଳପଦନେ, ହେ ନୂଆବୋହୂ
ଭଲ ଭଲ ଶାଢ଼ୀ ଦେଲ ଯତନେ, ହେ ନୂଆବୋହୂ । ୯ ।
ତମ ଦେହଠର ଗୁପତ ବାଣୀ, ହେ ନୂଆବୋହୂ
ଝୁରି ମରୁଥିବ ମରମ ହାଣି, ହେ ନୂଆବୋହୂ । ୧୦ ।

କହିଲ ବଧଟି ଅତି ସୁନ୍ଦର ହେ ନୂଆବୋହୂ
ଅତି ପରପଞ୍ଚ ଶାଶୁ ଶଶୁର, ହେ ନୂଆବୋହୂ । ୧୧ ।
ଅତି ପରପଞ୍ଚ ନଣନ୍ଦ ଯାଆ, ହେ ନୂଆବୋହୂ
କେମନ୍ତେ କହ ତ ହୋଇବ ଠିଆ, ହେ ନୂଆବୋହୂ । ୧୨ ।
ମାନହୀନ ହେବ ଉଗାର ଘରେ, ହେ ନୂଆବୋହୂ
କେତେ ଗେହ୍ଲାଥିଲ ତୁମ କୋଡ଼ରେ, ହେ ନୂଆବୋହୂ । ୧୩ ।

କାଲିଣି କାକୁଡ଼ ମୁଣ୍ଡିରି ପିତା, ହେ ନୂଆବୋହୂ
କାହିଁ ଖଂଜ ଦେଲ ମୋ ମୁଣ୍ଡରେ ଚିତା, ହେ ନୂଆବୋହୂ । ୧୪ ।
ପରଘର ଚିତା ହେଲା ବଷିପିତା, ହେ ନୂଆବୋହୂ
ଶୁଭୁଚ ଗଉଡ଼ଙ୍କ କଥା ବାରତା, ହେ ନୂଆବୋହୂ । ୧୫ ।
ଦାଣ୍ଡକେ ସବାର ଭଡ଼ଣ ଦେବେ, ହେ ନୂଆବୋହୂ
କେଉଁ ପୁରେ ନେଇ ଛାଡ଼ ଆସିବେ, ହେ ନୂଆବୋହୂ । ୧୬ ।

( ବଡ଼ାମ୍ମା )

## ହେ ନୂଆବୋହୂ (୩)—(ପଚଣି)

ତୁମକୁ ଗଞ୍ଜିଲ ବଡ଼ ସବୁଗେ, ହେ ନୂଆବୋହୂ
ହସ ହସ କୁଣ୍ଡା ତାଳୁରେ ଲଗେ, ହେ ନୂଆବୋହୂ । ୧ ।
ତୁମ ହସ ହସ କଥା ବାରତା, ହେ ନୂଆବୋହୂ
ଅଉ କି ଶୁଣିବ ମରମ କଥା, ହେ ନୂଆବୋହୂ । ୨ ।
ନୂଆ ଖଡ଼ଖଡ଼ ଆସିଲା ଦନ୍ତୁ, ହେ ନୂଆବୋହୂ
ଝର ଝର ପାଣି ଝରିଲା ଘନ୍ତୁ ହେ ନୂଆବୋହୂ । ୩ ।
ଭୁଲେଇ କହିଲ ପର ବସାଦ, ହେ ନୂଆବୋହୂ
ମୋ'ଠେଇ ଥିଲା ତୁମର ବାଦ, ହେ ନୂଆବୋହୂ । ୪ ।
ସାଙ୍ଗ ହୋଇ କର ଗାଧୋଉଥିଲେ, ହେ ନୂଆବୋହୂ
ଏକାଥାଳି ଭାତ ଖାଉଣ ଥିଲେ, ହେ ନୂଆବୋହୂ । ୫ ।
ନନା ନ ଥିଲେ ଏକାଠି ଶୋଇ, ହେ ନୂଆବୋହୂ
କେତେ ଗୀତ ମତେ ଦଅ ଶିଖେଇ, ହେ ନୂଆବୋହୂ । ୬ ।
ଶରଦ ରାତରେ ଜହ୍ନ ନିର୍ମଳ, ହେ ନୂଆବୋହୂ
ବଡ଼ ପୋଖରୀରେ ପଦ୍ମ କମଳ, ହେ ନୂଆବୋହୂ । ୭ ।
ଗୋପ ମଥୁରାରେ ରାଧିକା ରାଣୀ, ହେ ନୂଆବୋହୂ
ଘରକୁ ସୁନ୍ଦର ତୁମେ ଘରଣୀ, ହେ ନୂଆବୋହୂ । ୮ ।
ବାରୁଣୀ ସ୍ନାହାନ ଗଙ୍ଗାରେ ଯୋଗ, ହେ ନୂଆବୋହୂ
ତୁମ ସାଙ୍ଗ ସୁଖ ନ ହେବ ଭୋଗ ହେ ନୂଆବୋହୂ । ୯ ।

ଏକା ଦାନ୍ତକାଠି ତୁମେ ଘଷିବ, ହେ ନୂଆବୋହୂ
ଏକା ହୋଇ ଭାତଖାଇ ବସିବ, ହେ ନୂଆବୋହୂ । ୧୦ ।

ତୁମ ଯୋଡ଼ା ବେଣୀ କିଏ ପକାଇ ଦେବ, ହେ ନୂଆବୋହୂ
ଭଉଜ ରାଣୀ ଡାକ ଆଉ ନ ଶୁଭିବ, ହେ ନୂଆବୋହୂ । ୧୧ ।
ବିରସ ମନରେ ବୋହୂଲେ ଲୁହ, ହେ ନୂଆବୋହୂ
କିଏ ସମ୍ଭାଳିବ ତୁମର କୋହ, ହେ ନୂଆବୋହୂ । ୧୨ ।
ମଥାକୁ ଅର୍ପିବ ସରଗଗ୍ରନ୍ଥ, ହେ ନୂଆବୋହୂ
ଧନା କେତେ ବାଜେ ହେବେ ଗୋବିନ୍ଦ ହେ ନୂଆବୋହୂ । ୧୩ ।
ଶୁଭ ଶଙ୍ଖ କିଏ ଫୁଙ୍କିବ କହ, ହେ ନୂଆବୋହୂ
ପାଦ ମଞ୍ଜାଳିବ ହେଲେ ଦୁର୍ବହ, ହେ ନୂଆବୋହୂ । ୧୪ ।

ଉଷୁନା ଧାନ ତ ନହେବ ଗଜା, ହେ ନୂଆବୋହୂ
ସୁଅର ବଢ଼ିଲେ ଉଠିବ ମଜା, ହେ ନୂଆବୋହୂ । ୧୫ ।
ଜଳ ଛାଡ଼ି ମୀନ ମରିବ ଶୁଖେ, ହେ ନୂଆବୋହୂ
ତୁମକୁ ମୁଁ ଛାଡ଼ି ମରିବ ଦୁଃଖେ, ହେ ନୂଆବୋହୂ । ୧୬ ।
ରଥରେ ଲଗିଲାଣି ରଥ ଦଉଡ଼ି, ହେ ନୂଆବୋହୂ
ଦଣ୍ଡକରେ ରଥ ଯିବ ତ ଉଡ଼ି, ହେ ନୂଆବୋହୂ । ୧୭ ।
ବାପା, ବୋଉ, ନନା, ରହିବେ କାହିଁ, ହେ ନୂଆବୋହୂ
କୋଉ ଦୂର ରାଜ୍ୟେ ରହିବ ଗୃହିଁ, ହେ ନୂଆବୋହୂ । ୧୮ ।
ରାଜ୍ୟ ପାଇଗଲେ କିଏ ତୋଳିବ, ହେ ନୂଆବୋହୂ
ବଦନେ ବଦନ ଲଗାଇ ଦେବ, ହେ ନୂଆବୋହୂ । ୧୯ ।
କାହାଠୁ ଶିଖିବ ଗୁରୁ ବଚନ, ହେ ନୂଆବୋହୂ
କାହା କୋଳେ ଶୋଇ କରିବ ମାନ, ହେ ନୂଆବୋହୂ । ୨୦ ।
ଗାଳି ଖାଉଥିଲେ କିଏ ତୋଷିବ, ହେ ନୂଆବୋହୂ
ଅପଣା ଅଙ୍ଗକୁ ମୋ ଦୋଷ ନବ, ହେ ନୂଆବୋହୂ । ୨୧ ।
ଯେତେ ପାଚି ଥିଲେ କଦଳୀ କଷା, ହେ ନୂଆବୋହୂ
ତୁମଠୁ କେମନ୍ତ ଛାଡ଼ିବ ଅଶା, ହେ ନୂଆବୋହୂ । ୨୨ ।
ଏଡ଼େ ସିନେହ କାହିଁ ମୁଛିବ କହ, ହେ ନୂଆବୋହୂ
ଛାଡ଼ିଯିବ କେବେଁ ନ ବଳେ ଦେହ, ହେ ନୂଆବୋହୂ । ୨୩ ।

ଅଲ୍ଅଲ କଲ ବେଲକୁ ବେଳ,        ହେ ନୂଆବୋହୂ
ଅଧିଙ୍କୁ ଅଧିକେ ଭୁଲେଇ ଦେଲ,        ହେ ନୂଆବୋହୂ । ୨୪ ।
କହୁଲ ତୁମେ ଗୋ ବରୁଣ ଯେମା,        ହେ ନୂଆବୋହୂ
ବଣିକୁ ପେଲୁଛ ହୋଇ କ ବଣା,        ହେ ନୂଆବୋହୂ । ୨୫ ।
ବାରମାସ ତେର ପରବ ଯାତ,        ହେ ନୂଆବୋହୂ
କେତେ ସଜବାଜ ହେଉଥିଲେ ତ,        ହେ ନୂଆବୋହୂ । ୨୬ ।
ଗୃହିଣୀ ଗୃହ ତ ହେବ ଅନ୍ଧାର,        ହେ ନୂଆବୋହୂ
କିବା ଲୋଡ଼ା କହ ସେ ଅଲଙ୍କାର,        ହେ ନୂଆବୋହୂ । ୨୭ ।
ମନ କଥା ମନେ ମାରି ରହିବ,        ହେ ନୂଆବୋହୂ
ତମ ଗୁଣଗ୍ରାମ ଝୁରି ମରିବ,        ହେ ନୂଆବୋହୂ । ୨୮ ।
ମାୟା ଜାଲେ ତୁମେ ଦେଲ ପକାଇ,        ହେ ନୂଆବୋହୂ
ଦୁଧସର କଣ ଦେଲ ଚିହ୍ନାଇ,        ହେ ନୂଆବୋହୂ । ୨୯ ।
ରତନ ସୁନ୍ଦର ନାଁ ପଢ଼ାଇ,        ହେ ନୂଆବୋହୂ
ତମଠୁ ଏ ହୃଦ ଦେଲ ଛଡ଼ାଇ,        ହେ ନୂଆବୋହୂ । ୩୦ ।
ପିଲା ବୁଦ୍ଧି ମୋର ଛଡ଼ାଇ ନେଲ,        ହେ ନୂଆବୋହୂ
ଦୂର ଦରିଆରେ ପେଲିଣ ଦେଲ,        ହେ ନୂଆବୋହୂ । ୩୧ ।

( କଟକ )

## ମୋ ଅପାମାନେ, ମୋ ବୋଉ ( ଛବଣ )

ତୁଅଁଠାରୁ ଲୁହା ଜନ୍ମ ସରୁଛି,        ମୋ ଅପାମାନେ
ଆଜଠୁ ମୋ ଝିଅ ଜନ୍ମ ସରୁଛି,        ମୋ ଅପାମାନେ । ୧ ।
ମୁଁ ତ ଖାଇ ଖେଳ ଅଲୀଳ ଥିଲି,        ମୋ ଅପାମାନେ
ଆନ ଚିନ୍ତା କେବେ ଜାଣି ନ ଥିଲି,        ମୋ ଅପାମାନେ । ୨ ।
ଜଞ୍ଜାଳ ମୋହଠି ପୂରେଇ ଦେଲ,        ମୋ ଅପାମାନେ
ଏବେ ମୋହଲାଗି ଅଚିନ୍ତା ହେଲ,        ମୋ ଅପାମାନେ । ୩ ।
ଦିନେ ସାଇ ବୁଲି ଘଡ଼ି ନ ଥିଲୁ, ଲୋ        ମୋ ବୋଉ
ଯମଶାଳ ପେଲି ଅଚିନ୍ତା ହେଲୁ, ଲୋ        ମୋ ବୋଉ । ୪ ।

ମୋଠୁ ଠୋପେ ଝାଳ ଗଲେ ତୋଠୁ
ରକତ ଯାଏ, ଲୋ — ମୋ ବୋଉ
କେମନ୍ତେ ସହିବୁ ନିଷ୍ଠୁର ହୃଦୟେ ଲୋ — ମୋ ବୋଉ । ୫ ।
ମଝି ଦରିଆରେ ପକେଇ ଦେଇ ଲୋ — ମୋ ବୋଉ
ଏ କୂଳ ସେ କୂଳ ପାଇବି ନାହିଁ ଲୋ — ମୋ ବୋଉ । ୬ ।

ଫୁଲ ପରି କରି ବଢ଼େଇ ଥିଲୁ, ଲୋ — ମୋ ବୋଉ
ପଥର ପରାୟେ କଟୁଡ଼ ଦେଲୁ, ଲୋ — ମୋ ବୋଉ । ୭ ।
ବାଡ଼ଅଡ଼େ ଗଛ ଅଣସୋଦ୍‌ଷା, ଲୋ — ମୋ ବୋଉ
ମତେ ନ କରବେ ସାଙ୍ଗ ସରସା, ଲୋ — ମୋ ବୋଉ । ୮ ।
ଫୁଲର ଭାର ତ ସହି ନ ଥିଲି, ଲୋ — ମୋ ବୋଉ
ପଥର ଭାର ତ ସହିବି ବୋଲି, ଲୋ — ମୋ ବୋଉ । ୯ ।
ଝିଅ ନୋହି ଶତ୍ରୁ ଜନମି ଥିଲି, ଲୋ — ମୋ ବୋଉ
ଶତ୍ରୁ ନୋହି ଶତ୍ରୁ ସାଧିଲ ମଲି, ଲୋ — ମୋ ବୋଉ । ୧୦ ।
ମୋର ଅଲଅଲ ଭାଙ୍ଗି ଦେଇଚୁ, ଲୋ — ମୋ ବୋଉ
ଭଗାର ପୁଚକୁ ପେଲି ଦେଉଚୁ, ଲୋ — ମୋ ବୋଉ । ୧୧ ।
ବନସ୍ତ ଭିତରୁ ଓସ୍ତ ବାହାର, ଲୋ — ମୋ ବୋଉ
ସଂସାର ଝିଅରୁ ମୁଁ ତ ବାହାର, ଲୋ — ମୋ ବୋଉ । ୧୨ ।
କା ଭାଗ୍ୟରୁ କିଏ ସୁଖ ଭୋଗୁଛି, ଲୋ — ମୋ ବୋଉ
ପର୍ବତ ଶିଖରେ ପଦ୍ମ ଫୁଟୁଛି ଲୋ — ମୋ ବୋଉ । ୧୩ ।
ମୋ ଭାଗ୍ୟ ସିନା ଭୋଗିବି ମୁହିଁ, ଲୋ — ମୋ ବୋଉ
ପଙ୍କ ନାଲେ କଇଁ ଫୁଟଇ ନାହିଁ, ଲୋ — ମୋ ବୋଉ । ୧୪ ।
କାହା ଭାଗ୍ୟ କିଏ ସୁଖ ଭୋଗୁଛି, ଲୋ — ମୋ ବୋଉ
ଅମାବସ୍ୟା ନିଶିରେ ଚନ୍ଦ୍ର ଉଇଁଛି, ଲୋ — ମୋ ବୋଉ । ୧୫ ।
ମୋ ଭାଗ୍ୟ ସିନା ମୁହିଁ ଭୋଗୁଛି, ଲୋ — ମୋ ବୋଉ
ପୂନିଅଁରେ ଚନ୍ଦ୍ର ଛପି ରହୁଛି, ଲୋ — ମୋ ବୋଉ । ୧୬ ।
ଝିଅ ଡାକ ଅହିଁ ସପନ ହେବ, ଲୋ — ମୋ ବୋଉ
ବନସ୍ତେ କପୋତ ଝୁରି ମରିବ, ଲୋ — ମୋ ବୋଉ । ୧୭ ।

ଉଡ଼ନ୍ତା ପକ୍ଷୀଙ୍କ ଯେ ବାଠ ଭୁଡ଼ଚ, ଲୋ ମୋ ବୋଉ
ମୋ ପାଇଁ ହୋଇଲା ସେ ବାଠ ଥିର ଲୋ ମୋ ବୋଉ । ୧୮ ।
(କନିଅଁ ହେବା ଧନର କାନ୍ଦଣା-ପୁରା)

## ମାଆ ମଲା ଝିଅ କାନ୍ଦଣା ( ସତେଇଶ )

( କନିଅଁ ହେବା ଧନ )

ଲୁହାର କଳଣି ଦେଇଛୁ କେଉଁ, ଲୋ ମୋ ବୋଉ
ଆସି ପାରୁନାହୁଁ ତାକୁ ଫିଟେଇ ଲୋ ମୋ ବୋଉ । ୧ ।
ପଦ୍ମ ପାଖୁଡ଼ା ତୋ ହାତ କଅଁଳ, ଲୋ ମୋ ବୋଉ
ଲୁହା କଳଣି ଫିଟେଇବାକୁ କାହିଁ ତୋ ବଳ ଲୋ ମୋ ବୋଉ । ୨ ।
କେତିତ ସ୍ନେହ ଦେଇ ବଢ଼େଇ ଥିଲୁ, ଲୋ ମୋ ବୋଉ
ମୁଛୁଛୁ ତୋ ଝିଅକୁ ଯାହା ନ ଦେଖିଲୁ, ଲୋ ମୋ ବୋଉ । ୩ ।
ସମସ୍ତେ କହନ୍ତି ମାଆ ତ ନାହିଁ, ଲୋ ମୋ ବୋଉ
ମା'ଛେଉଣ୍ଡ କହିଲେ ମୋତେ ବଡ଼ ବାଧଇ, ଲୋ ମୋ ବୋଉ । ୪ ।
କେତେ ସ୍ନେହେ ନେଏ କଜଳ ଦେଇ, ଲୋ ମୋ ବୋଉ
ପୟରେ ଅଳତା ରଞ୍ଜନ୍ତି ନେଇ, ଲୋ ମୋ ବୋଉ । ୫ ।
ଅଷ୍ଟ ଅଳଙ୍କାର ଜୁଡ଼ାରେ ଜବା, ଲୋ ମୋ ବୋଉ
ମା ମଲା ଝିଅର କେଉଁଠି ଶୋଭା, ଲୋ ମୋ ବୋଉ । ୬ ।
କଏମେ ଅଣ୍ଡିଣି ଧେନବ କୋଳେ, ଲୋ ମୋ ବୋଉ
ନ ଖାଇଲେ କଏ ଖୁଆଇବ ବଳେ, ଲୋ ମୋ ବୋଉ । ୭ ।
ପଦ୍ମବନ ହସ୍ତୀ କରୁଛୁ ଜୁର, ଲୋ ମୋ ବୋଉ
ବେଣୀ ଅହଲ୍ୟା ମୋ ଠେଇଁ ଯମର, ଲୋ ମୋ ବୋଉ । ୮ ।
ସପନରେ ଧନେ ନ ଦେଲୁ ଦେଖା, ଲୋ ମୋ ବୋଉ
ସପନ ରାଜ୍ୟକୁ ଯାଉଛୁ ଏକା, ଲୋ ମୋ ବୋଉ । ୯ ।

( କନିଅଁ ହେବା ଧନର କାନ୍ଦଣା, ପୁରା )

## ହେ ମୋ ବାପା ( ଅଠେଇଶ )

ଦୂର ଟଂଇଜରେ ମେଲଣି ଦେଲ, ହେ ମୋ ବାପା
କୁରଙ୍ଗୀ କି ବ୍ୟାଘ୍ର ମୁଖେ ଥୋଇଲ, ହେ ମୋ ବାପା । ୧ ।
ମତେ ତଡ଼ବ ବୋଲି ଗଧ ପାଦ ଧଇଲ, ହେ ମୋ ବାପା
ପାଠ ହୁଡ଼ା ହୋଇ ପଙ୍କେ ଲେଠିଲ, ହେ ମୋ ବାପା । ୨ ।
ତୀର୍ଥ ଦେଖି ସ୍ନାନ କରୁ ଥାଅନ୍ତ, ହେ ମୋ ବାପା
ବିପ୍ର ଦେଖି ଦାନ ଦେଇଥାଅନ୍ତ, ହେ ମୋ ବାପା । ୩ ।
ଦେବତାଙ୍କୁ ଫୁଲ ଭେଟି ଥାଅନ୍ତ, ହେ ମୋ ବାପା
ତେବେ ଯଶକୀର୍ତ୍ତି ଲଭି ଥାଅନ୍ତ, ହେ ମୋ ବାପା । ୪ ।
ତମେ ଥିଲ ବାପା ଅତି ସରଳ, ହେ ମୋ ବାପା
ତମଠି କିଏ ମିଶାଇଲା ଗରଳ, ହେ ମୋ ବାପା । ୫ ।
ତମେ ପଦକ କଥାରେ ଜବାବ ଦେଲ, ହେ ମୋ ବାପା
କନକ ପ୍ରତିମା ଜଳେ ମେଲିଲ, ହେ ମୋ ବାପା । ୫ ।
ମୋ ଲାଗି ପୋଖରୀକ ପାଣି ଘେନିଲ, ହେ ମୋ ବାପା
ତହିଁ ଖଣ୍ଡେ ନବାତକୁ ଗୋଳି ବସିଲ, ହେ ମୋ ବାପା । ୭ ।
ଶଙ୍ଖ ପାଇଁ ସମୁଦ୍ର ନ ମନ୍ଥିଲ, ହେ ମୋ ବାପା
ଗାଡ଼ିଆ ମନ୍ଥିଣ ଗେଣ୍ଡା ପାଇଲ, ହେ ମୋ ବାପା । ୮ ।
ତମେ ନୀଳଚକ୍ର ଚୁହିଁ ନିୟମ କଲ କି, ହେ ମୋ ବାପା
ଝିଅ ଘରୁ ଗଲେ ଭାତ ଖାଇବ ବୋଲିକି, ହେ ମୋ ବାପା । ୯ ।
ଗଛର ଫଳ କି ଗଛକୁ ଭାର, ହେ ମୋ ବାପା
ତମକୁ ମୁଁ ବିଷ ପିତା ହେଲି କପର, ହେ ମୋ ବାପା । ୧୦ ।

( ପୁଷ୍ପ ଠାକୁର )

## ମୋ ଭାଇ, ମୋ ଦାଦା, (ଅଣତିରିଶ)

ଉଡ଼ନ୍ତା ପକ୍ଷୀ କି ଯେ ପଥ ଅଦୃଶ୍ୟ ହେଲା, ମୋ ଭାଇ
ତୁମ୍ଭଙ୍କୁ ସେ ପଥ କାହୁଁ ଦର୍ଶିଲା, ମୋ ଭାଇ । ୧ ।

ଯୋଉ ତୋଟା ପାଣି ଲୁଣି ଜହର, ମୋ ଭାଇ
ତୁମ୍ଭେ ସେହ ତୁଠ ପାଣି କଲ ଅହାର, ମୋ ଭାଇ । ୨ ।
କଏ ପାନ ସଙ୍ଗେ ଗଦ ଭରଲ, ମୋ ଭାଇ
କ୍ଷୀର ସଙ୍ଗେ ମଦ ପିଆଇ ଦେଲା, ମୋ ଭାଇ । ୩ ।
କଥା ପଦକରେ ଭୁଲି ପଡ଼ିଲ, ମୋ ଭାଇ
ବିଷ କି ପୀୟୂଷ ଜାଣି ନ ପାରିଲ, ମୋ ଭାଇ । ୪ ।
ପାଣି ବୋଲି କୁହୁଡ଼ରେ ପହଁରି ଗଲ, ମୋ ଭାଇ
ମୋ ଲାଗି ମହାକାଳ ଫଳ ବାଛୁ ଅଣିଲ, ମୋ ଭାଇ । ୫ ।
ମୁଁ ତ ଚରଣ ଧରି ଶରଣ ମାଗଇ, ମୋ ଭାଇ
ମତେ ସ୍ନେହରୁ ତ ଊଣା କରିବ ନାହିଁ, ମୋ ଭାଇ । ୬ ।
ମୋ ବୋଉକୁ ମୁଁ କେବେ ନୁହଇ ଭାରି, ମୋ ଦାଦା
ଦାଣ୍ଡେ ଗୁଲଗଲେ ଦଣହଜାରି, ମୋ ଦାଦା । ୭ ।
ଦଣ ହଜାରର ମୁଁ ତ ଝିଅରେ, ମୋ ଦାଦା
ନ ଦଶିଲି ଦାଣ୍ଡେ ଝିଅର ପରି, ମୋ ଦାଦା । ୮ ।
ରାଜ ଦରବାର ଭାଙ୍ଗି ଆସୁଛ, ମୋ ଦାଦା
ମୋ ପାଇଁ ବାପାଙ୍କୁ ପଦେ ନ କହୁଛ, ମୋ ଦାଦା । ୯ ।
ଆଖୁ ସ୍ୱାଦ କାହୁଁ ଆଖୁ ପତରେ, ମୋ ଦାଦା
ଝିଅ ସ୍ନେହ କାହୁଁ ଝିଅରଟାରେ, ମୋ ଦାଦା । ୧୦ ।

( ପୁରୀ ଝାଉନ୍ )

## ମୋ ସାଙ୍ଗଭଉଣୀ ( ତରଣ )

ଯୋଉ ଯୋଉ ଫୁଲ ଯେମନ୍ତ ଛନ୍ଦା, ମୋ ସାଙ୍ଗ ଭଉଣୀ
ତୁମ ସ୍ନେହ ଦଉଡ଼ିରେ ମୋ ମନ ବନ୍ଧା ମୋ ସାଙ୍ଗ ଭଉଣୀ । ୧ ।
କୁଆଁର ପୁନଅଁରେ ମତେ ମନେ କରିବ, ମୋ ସାଙ୍ଗ ଭଉଣୀ
ମଲ ଗଲ ତଳେ ନାସ୍ତେ ଲେଖିବ, ମୋ ସାଙ୍ଗ ଭଉଣୀ । ୨ ।
ଖୁଦୁରକୁଣି ଓଷାରେ ମତେ ମନେ ପକେଇବ, ମୋ ସାଙ୍ଗ ଭଉଣୀ
ମୋ ପେଇଁ ବାଲୁକା ନେଇ ଜଳେ ମାଡ଼ିବ, ମୋ ସାଙ୍ଗ ଭଉଣୀ । ୩ ।

ରଙ୍ଗ ମଜା ଆଉ କାହୁଁ ପାଇବ, ମୋ ସାଙ୍ଗ ଭଉଣୀ
ତୁମ ଲାଗି ଝୁରି ଝୁରି ମରିବ, ମୋ ସାଙ୍ଗ ଭଉଣୀ । ୪ ।
ମୋ ପେଇଁ ଦୋଳିରେ ବସିବେ ମିତ, ମୋ ସାଙ୍ଗ ଭଉଣୀ
ମୋ ପେଇଁ ଗାଇବେ ସେ ଦୋଳି ଗୀତ , ମୋ ସାଙ୍ଗ ଭଉଣୀ । ୫ ।
ତାସ, କଉଡ଼ି ଖେଳିଲା ବେଳେ, ମୋ ସାଙ୍ଗ ଭଉଣୀ
ଆଗ ଝାଣି ନବ କାହାକୁ ବଳେ, ମୋ ସାଙ୍ଗ ଭଉଣୀ । ୬ ।
ମିଛେ ଆମ ଘରେ ଆସିବ ଡାକିବ, ମୋ ସାଙ୍ଗ ଭଉଣୀ
ନ ଦେଖି ମରିଛୁ ବୋଲି ଜାଣିବ, ମୋ ସାଙ୍ଗ ଭଉଣୀ । ୭ ।
କାଉଙ୍କ ମେଳନ ଅମ୍ବ ତୋଟାରେ, ମୋ ସାଙ୍ଗ ଭଉଣୀ
ଆମରି ମେଳନ ରଜ କୋଠାରେ, ମୋ ସାଙ୍ଗ ଭଉଣୀ । ୮ ।
ଠାକୁର ମେଳନ ଦୋଳ ପୁର୍ଣ୍ଣୀରେ, ମୋ ସାଙ୍ଗ ଭଉଣୀ
ଆମରି ମେଳନ ହୁରି ଖେଳରେ, ମୋ ସାଙ୍ଗ ଭଉଣୀ । ୯ ।
ବାପା ଦଦା ମନେ ଦେଲେ ବିଦେଶ, ମୋ ସାଙ୍ଗ ଭଉଣୀ
ହସ ଖେଳ ଆଜି ହୋଇଲା ଶେଷ, ମୋ ସାଙ୍ଗ ଭଉଣୀ ।୧୦।

( ପୁଷ୍ପ ଝାଉନ୍ )

## ସାନ ଭଉଣୀକୁ ଧରି କାନ୍ଦଣା ( ଏକତରଣ )

କ୍ଷୀର ନୀର ସାଙ୍ଗେ ଅଛି ପ୍ରଭେଦ, ଲୋ ମୋ ବାୟାଣି
ତୋ ମୋ ଭିତରେ ନଥିଲା ଭେଦ, ଲୋ ମୋ ବାୟାଣି । ୧ ।
ତୁହି ତ ଥିଲୁ ମୋ ଜୀବ ଜୀବନ, ଲୋ ମୋ ବାୟାଣି
ଅଲଗା ହୋଇଯିବ ପିଣ୍ଡରୁ ପ୍ରାଣ, ଲୋ ମୋ ବାୟାଣି । ୨ ।
କାୟା ସାଙ୍ଗରେ ଛାୟାର ଭେଦ ନାହିଁ, ଲୋ ମୋ ବାୟାଣି
ପ୍ରାଣ ବିନା ପିଣ୍ଡ କେମନ୍ତେ ରହିବଇ, ଲୋ ମୋ ବାୟାଣି । ୩ ।
ତୋ ବିନା ମୁଁ କ୍ଷଣେ ବଞ୍ଚିବ ନାହିଁ, ଲୋ ମୋ ବାୟାଣି
ତତେ ଭାବି ଭାବି ପ୍ରାଣ ତେଜିବଇ, ଲୋ ମୋ ବାୟାଣି । ୪ ।
ସୀତା ବନବାସ ଚଉଦ ବର୍ଷ, ଲୋ ମୋ ବାୟାଣି
କାଳ କାଳକୁ ମୋହର ବନବାସ, ଲୋ ମୋ ବାୟାଣି । ୫ ।

ବସନ୍ତରେ ଯେତେ ପଲ୍ଲବ ଉଠେ, ଲୋ ମୋ ବାସୁଣି
ତୋ ଅପା ଡାକରେ ମୁଁ ଉଲୁସି ଉଠେ, ଲୋ ମୋ ବାସୁଣି । ୬ ।
ପଦ୍ମ କଢ଼ି ଜଳେ ଯେମନ୍ତ ଟଳେ, ଲୋ ମୋ ବାସୁଣି
ଟଳ ଟଳ ଦିଶୁ ମୋହର କୋଳେ, ଲୋ ମୋ ବାସୁଣି । ୭ ।
ତୋର ଅପା ଅପା ଡାକ ନିତ ଶୁଣଇ, ଲୋ ମୋ ବାସୁଣି
ଅମୃତ ଠାରୁ ବଳି ସ୍ୱାଦ ଲଗଇ, ଲୋ ମୋ ବାସୁଣି । ୮ ।
ଅପା ଡାକ ଅଛୁଁ ଲୁଚି ତ ଯିବ, ଲୋ ମୋ ବାସୁଣି
ହସ ହସ ମୁହଁ ଆଉ ନ ଦିଶିବ, ଲୋ ମୋ ବାସୁଣି । ୯ ।
ଦଣ୍ଟେଟି ବଚନ ଶୁଣିବ ସତେ, ଲୋ ମୋ ବାସୁଣି
ଜୀବ ଥାଉ ଥାଉ ନ ହୁଏ ମୃତେ, ଲୋ ମୋ ବାସୁଣି ।୧୦।

( ପୁରୀ ଟାଉନ୍ )

## ମଉସା, ମାଉସୀ, ପିଉସା ପିଉସୀ ( ବଡଣ )

ଯେଉଁଠାରେ ପାଦ ପଡନ୍ତା ନାହିଁ, ହେ ମୋ ମଉସା
ସେହିଠାରେ ମୁଣ୍ଡ ଦେଲ ବକେଇ, ହେ ମୋ ମଉସା । ୧ ।
ତମେ ଗଜ ହୋଇ ଗଧପାଦ ଧଇଲ, ହେ ମୋ ମଉସା
ସିଂହ ହୋଇ ଶୃଗାଳ ପାଖକୁ ଗଲ, ହେ ମୋ ମଉସା । ୨ ।
କେଉଁ ଅମାର ଖମାର ଦେଖି ନ ଥିଲ, ହେ ମୋ ମଉସା
କଣ ଦେଖିକରି ଭୁଲି ପଇଲ, ହେ ମୋ ମଉସା । ୩ ।
କାହିଁକି କଣ ପାଇଁ କଲ ଏମନ୍ତ, ହେ ମୋ ମଉସା
ଆକାଶରେ ଅଛାଳ ତୋଳି ଥାଆନ୍ତ, ହେ ମୋ ମଉସା । ୪ ।
ସ୍ୱର୍ଗରୁ ପାରିଜାତ ଆଣି ଥାଆନ୍ତ, ହେ ମୋ ମଉସା
ଜାଣୁ ଜାଣୁ ଦେଲ ଦୂର ଦେଶନ୍ତ, ହେ ମୋ ମଉସା । ୫ ।
ଚନ୍ଦ୍ର ସୂର୍ଯ୍ୟ କୋଉ ଦେଖି ନ ଥିଲ ହେ ମୋ ପିଉସା
ଜୁଳୁଜୁଳା ପୋକ ଦେଖି ଭୁଲିଲ, ହେ ମୋ ପିଉସା । ୬ ।
ମଣିମୁକ୍ତା ହାର କୋଉ ଦେଖି ନ ଥିଲ, ହେ ମୋ ପିଉସା
କାଚର କାଚକୁ ଦେଖି ଭୁଲିଲ, ହେ ମୋ ପିଉସା । ୭ ।

| | |
|---|---|
| ବାପାଙ୍କ ସାଥିରେ ଗୋଟିଏ ହୋଇ, | ଲୋ ମୋ ପୀଉଷି |
| ପାଣି ବୋଲି କୁହୁଡ଼ରେ ଦେଲି ପହଁରେଇ, | ଲୋ ମୋ ପୀଉଷି । ୮ । |
| କପଟ କରଲି ଝିଅଗୁ ଠାରେ, | ଲୋ ମୋ ମାଉସୀ |
| ନିଷ୍କପଟ ସ୍ନେହ ଥିଲା ମୋଠାରେ, | ଲୋ ମୋ ମାଉସୀ । ୯ । |

( ଧୁଗ )

## ଖୁଡ଼ୀ ଝିଅାରୀ କାନ୍ଦଣା ( ତେଡଣ )

| | |
|---|---|
| ମୋହ ଲଗି ବାପ ଦାଦାଙ୍କୁ ନିତ୍ୟାନି କହୁ, | ମୋ ଖୁଡ଼ି |
| ଦିନରେ କ୍ଷୁଧା ତ ଲଗିଲା ନାହିଁ, | ମୋ ଖୁଡ଼ି । ୧ । |
| ଏବେ ଯମପୁର ଘଡ଼ ଅଚିନ୍ତା ହେବ, | ମୋ ଖୁଡ଼ି |
| ଝିଅଗୁର ଅଳ ଅଉ ନ ଶୁଣିବ, | ମୋ ଖୁଡ଼ି । ୨ । |
| ଶୁକ ରାମନାମ ଶୁଣି ନିସ୍ତରୁ ଥାଏ, | ମୋ ଖୁଡ଼ି |
| ମୁଁ ତ ଝିଅ ଡାକ ଶୁଣି ନିସ୍ତରୁ ଥାଏ, | ମୋ ଖୁଡ଼ି । ୩ । |
| ଆଜଠାରୁ ଝିଅ ନାଁ ଲୋପ ହୋଇବ, | ମୋ ଖୁଡ଼ି |
| କେତେ ଖଜାପିଠା ବାସି ହୋଇବ, | ମୋ ଖୁଡ଼ି । ୪ । |
| ମତେ ଜନ୍ମାଲେ ପୂରେଇ ଅଚିନ୍ତା ହେଲ, | ମୋ ଖୁଡ଼ି |
| ମହି ଦରିଆରେ ବୁଡ଼େଇ ଦେଲ, | ମୋ ଖୁଡ଼ି । ୫ । |
| ନିଷ୍ଟେ ମହି ଦରିଆରେ ବୁଡ଼ି ମରିବ, | ମୋ ଖୁଡ଼ି |
| ସମସ୍ତଙ୍କ ବଡ଼ ଅଡ଼ୁଆ ଥିଲି, | ମୋ ଖୁଡ଼ି । ୬ । |
| ଆଜ ମଲେ କାଲିକି ଦିଦିନ ହେବ, | ମୋ ଖୁଡ଼ି |
| ମୁଁ ମଲେ ଛ ବାରତା ନ ପାଇବ, | ମୋ ଖୁଡ଼ି । ୭ । |
| ମରିଛି ବୋଲି ମୁଁ ପଛେ ଜାଣିବ, | ମୋ ଖୁଡ଼ି |
| ଅଗ ମାଛଭାତ ଖାଇ ପଛେ ମୁଣ୍ଡ ଧୋଇବ, | ମୋ ଖୁଡ଼ି । ୮ । |

( ଧୁଗ )

---

# ଗାଆଣି ମଙ୍ଗଳ ବୋଲି

## ପ୍ରଥମ ଭାଗ



### ୧ । ବ୍ରତ ମଙ୍ଗଳ

ଗୁର ଡଅଁଣ ଭାତ    କିଏସେ ରାନ୍ଧଇ ରେ
ବଳା ଗୋ ଜ୍ୟେଷ୍ଠ ଭଉଣୀ
ଗୁର ଡଅଣ ଭାତ    କିଏସେ ପରଶଇ ରେ
ବଳା ଗୋ ଜ୍ୟେଷ୍ଠ ମଉଳାଣି । ୧ ।
ବେଦୀ ଉପରେ ଭିକ୍ଷାଥାଳ    କିଏସେ ଠେକଇ ରେ
ବଳା ଗୋ ଜ୍ୟେଷ୍ଠ ମଉଳା
ସୁବର୍ଣ୍ଣ ମୁକୁଟ, ମାଳ    କିଏସେ ବନ୍ଧାଏ ରେ
ବଳା ଗୋ କନିଷ୍ଠ ମଉଳା । ୨ ।
ଛତା ପାଣ୍ଡୋଇ ଫେଣ୍ଟା    କିଏସେ ବନ୍ଧାଏ ରେ
ବଳା ଗୋ ଜ୍ୟେଷ୍ଠ ମାଉସୀ
ସୁବର୍ଣ୍ଣ, କଙ୍କଣ, ନୋଳି    କିଏସେ ବନ୍ଧାଏ ରେ
ବଳା ଗୋ ଜ୍ୟେଷ୍ଠ ପିଉସୀ । ୩ ।
ହଳଦୀ ପନ୍ଧଣ ନିମନ୍ତ୍ରଣ ଗୁଆ    କିଏସେ ବାଣ୍ଟଇ ରେ
ବଳା ଗୋ କନିଷ୍ଠ ଖୁଡ଼ୁତା
କନିଷ୍ଠ ଖୁଡ଼ ହସି ବନ୍ଧାନ୍ତି ରେ
ରତ୍ନମୁଦ୍ର ସାଙ୍ଗରେ ସୁବର୍ଣ୍ଣ ପଇତା । ୪ ।

ଚହ ଚହ ମହ ମହ ରେ
ଋଷି ଅଣି କଏସେ କରଇ ରେ
ବଲା ତୋ ସାଇ ପଡ଼ଶା
ବାଟଯାକ ଫୁଲ ପଇସା କଏସେ ଫିଙ୍ଗଇ ରେ
ବଲା ତୋ ଜ୍ୟେଷ୍ଠ ମଉସା । ୫ ।
ସୁନା ଥାଳରେ ତୋତେ ଅନ୍ନ କେ ଭୁଞ୍ଜାଏ ରେ
ବଲା ତୋ ଭାଉଜ ରାଣୀ
ଛେଉଣ୍ଡ ବୋଲି କଏ ନୟନୁଁ ନୀର ନିଗାଡ଼ଇ ରେ
ବଲା ତୋ ଗର୍ଭଧାରଣୀ । ୬ ।
(ରଣପୁର)

## ୨ । ପୁଅବାହା ମଙ୍ଗଳ

ନ ଖାଇବୁ ବାବୁ ତୁରେ ପୋଡ଼ମୋଡ଼ା ଶାଗ
କନିଅଁର ମାଆ ତତେ ପରଶିବ ଅଗ । ୧ ।
ନଖାକଟା ପନେ ବାବୁ ଦେଇଥିବେ ଲୁଣ
ଜାଣିଶୁଣି ବାବୁ ତୁରେ କରବୁ ଭୋଜନ । ୨ ।
ନ ଖାଇବୁ ବାବୁ ତୁରେ ଖିରସାର ପାଣି
କନିଅଁର ମାଆ ତତେ ପରଶିବ ଅଣି । ୩ ।
ନ ଖାଇବୁ ବାବୁ ତୁରେ କଲଜକା ଗୁଆ
ଶାଳୀମାନେ ଖଡେଇବେ ମାଇପ ଗୁଟୁଆ । ୪ ।
ନ ଖାଇବୁ ବାବୁ ତୁ ରେ ହୁମତଳ ମହୁ
ଜାଣି ଶୁଣି ବଭିହେବୁ ଦଶରଥ ବୋହୂ । ୫ ।
ନ ଖାଇବୁ ବାବୁ ତୁରେ ହୁମତଳ ଘିଅ
ଜାଣି ଶୁଣି ବଭିହେବୁ ଜନକର ଝିଅ । ୬ ।
ନ ଖାଇବୁ ବାବୁ ତୁରେ 'ଉଛୁ'ର ଚକୁଲି
ଜହ୍ନୁର ହୋଇଲେ ବାବୁ ଦେବେଟି ରେ ଗାଳି । ୭ ।

ନ ଖାଇବୁ ବାବୁ ତୁ ରେ ଚଉଠି କାକରା
ସଭାର ତଳରେ ତୋତେ କରିବେ ନାକରା । ୮ ।
ନ ଖାଇବୁ ବାବୁ ତୁ ରେ ପାଞ୍ଚଦନ ମଣ୍ଡା
ଗୁହାଳ କଣରେ ତୋତେ କରଦେବେ ମେଣ୍ଡା । ୯ ।
ନ ଖାଇବୁ ତୁ ରେ ଛଦନ ଚତୋଉ
ଚଉ ଜାଣି ଗଢିଥିବେ ନ ଅସିବୁ ଆଉ । ୧୦ ।
ନ ଖାଇବୁ ବାବୁ ତୁ ରେ ସାତଦନ ଠୋଲ
ସମସ୍ତେ ବୋଲିବେ ତୁହ ଅଟୁ ବଲବଲ । ୧୧ ।
ପୁଅ— ଅଞ୍ଜୁଳ ଗୃଉଳ ବୋଉ କରଥିବୁ ଖିର
ଗାଆଁର ମାଇପିଯାକ ଖାଉଥିବେ ଘେର । ୧୨ ।

( ନୂଆଗଡ଼ )

## ୩ । ଜନ୍ମ ମଙ୍ଗଳ

ଭାଦ୍ରବ ମାସ ଅଷ୍ଟମୀ ଅଧରାତ
ଜାତପତ ନନ୍ଦନନ୍ଦନ
ସର୍ଗରୁ ଅଧିକ ଶୋଭା ପାଉଚ ଗୋ
ଦେଖ ସଖି ନନ୍ଦଭୁବନ । ୧ ।
ମିତଣି, ଦେଖିଲଟିକ କୃଷ୍ଣକଳା
ଅମ୍ଭେ ଦେଖି ଅଇଲୁଁ ନନ୍ଦବଳା ।
ଦର୍ଶନ ମାନବେ ମୁକତ ଲଭିଲେ
ଦୁଃଖଦାରିଦ୍ର୍ୟ ପାର ଗଲା । ୨ ।
ନନ୍ଦ ଯଶୋଦାଙ୍କ ଭାଗ୍ୟ ଦେଖିଣ ଋଷିଏ
ଆନନ୍ଦ ହୋଇଲେ
ନନ୍ଦରାଏ ବହୁତ ଦାନ ଧର୍ମ କଲେ
ସର୍ବ ଋଷି କଲ୍ୟାଣ ସେ କଲେ ।
ଶିରରେ ଅକ୍ଷତ ବରଷିଲେ । ୩ ।

ନୀଳାଚଳେ ବିଜେ ଯଦୁପତି
ଶ୍ୟାମଘନ ସୁନ୍ଦର ମୂରତି
ଶିରେ ଶୋହେ ଦୟୂଣାର ଗଭା
ହୃଦେ କଉସ୍ତୁଭ ମଣିଶୋଭା । ୪ ।
ଜନମ ମଙ୍ଗଳ ଗାଆଣିଏ ଗାଇ
ଅଷ୍ଟଚକ୍ର ଘେନିଗଲେ ଆନନ୍ଦେ ବଧାଇ
ଜନମ ମଙ୍ଗଳ ହେଲା ଶେଷ
ମୋ ପ୍ରଭୁ କମଳାବିଳାସ । ୫ ।
( ସେରଗଡ଼ )

## ୪ । ନାଭିକଟା ମଙ୍ଗଳ

ଶୁଣ ହେ ସୁଜନେ ରାମ ଜନମ ବିଧାନ
ଯହୁଁ କଉଶଲ୍ୟା ଗର୍ଭୁ ଜନ୍ମିଲେକ ରାମ । ୧ ।
ମୃଦୁସୁଲି ଧାଇଁଯାଇ କହେ ରାଜା ଆଗେ
କଉଶଲ୍ୟା ପ୍ରସବିଲେ ବିଜେ କର ବେଗେ । ୨ ।
ଶୁଣି ଦଶରଥ ରାଏ୍ତେ କଲେକ ଗମନ
ଯାଇଣ ଦେଖିଲେ ରାଏ ଶ୍ରୀରାମ ବଦନ । ୩ ।
ଶୁଣି ମୃଦୁସୁଲି ଯାଇ କହିଲେ ରାଜନ
ପୁଣି ତନପୁତ୍ର ହେଲେ ଶୁଣିବା ବହନ । ୪ ।
ବଶିଷ୍ଠଙ୍କୁ ଗୃହିଁ ବୋଲୁଛନ୍ତି ଦଶରଥ ରାଜ
ଅତି ଆନନ୍ଦରେ ମୋର ହୋଇଲେ ତନୁଜ । ୫ ।
ନାଭିଚ୍ଛେଦନ ହେବ ଅନୁକୂଳ କର
ଶୁଣି ବଶିଷ୍ଠଙ୍କର ଉଲ୍ଲସେ ଶରୀର । ୬ ।
କୁଶ ପାଣି ନେଇ ଦଶରଥ ହାତେ ଦେଲେ
ଅନୁକୂଳ ହେବ ବୋଲି ବଶିଷ୍ଠ କହିଲେ । ୭ ।
ଶୁଣି ରାଏ ଭିତରେ ପ୍ରବେଶ ହେଲେ ଯାଇ
ନାଭିଚ୍ଛେଦ ହୋଇ ମୃଦୁସୁଲି ଆଗେ କହି । ୮ ।

ଶୁଣି ମୁଦୁସୁଲ ବେଗେ ଧାଇଁଣ ଅସିଲେ
ନାଭିଛେଦ ଦୋଳି ରାଣୀ ସ୍ମୁରେ କହୁଲେ । ୯ ।
ଲକ୍ଷେ ବାଦ୍ୟ ଲକ୍ଷେ ଶଙ୍ଖ ଲକ୍ଷେକ ମହୁରୀ
ଗୀତ ହୁଳହୁଳରେ ବ୍ରହ୍ମାଣ୍ଡ ଅଛୁ ପୂରି । ୧୦ ।
ନାଭିଛେଦନ ସାରଣ ସ୍ନାହାନ ସାରଲେ
ପାଞ୍ଚପଡମୀରେ ତହିଁ ଏନୁଡ଼ି ପାରିଲେ । ୧୧ ।

( ପୁସ୍ତ )

## ୫ । ଷଠୀଘର ମଙ୍ଗଳ

ଶ୍ରୀକୃଷ୍ଣ ଜନମ ହେଲେ ଗୋପ ନବରର
ଛ ଦନ ସ୍ତରରେ ତହିଁ ହେଲା ଷଠୀ ଘର । ୧ ।
ଗୋପପୁଜ୍ ନାରୀମାନେ ଅନନ୍ଦ ହୋଇଲେ
ଶ୍ରୀନବର ଷଠୀଘର ମଣ୍ଡଣି ସେ କଲେ । ୨ ।
ଷଠୀ ଦେବୀ ପୂଜା କଲେ ଅର୍ଦ୍ଧ୍ୟ ନାରୀ ମିଳି
ବନ୍ଦାଇଲେ ଷଠୀଦେବୀ ଗୁଆ ଘୃତ ଜାଳି । ୩ ।
ଗାଅଣିଏ ଗୀତ ଗାଇ ଦେଲେ ହୁଳହୁଳି
ଷଠୀ ପୂଜା ସାରି ବିଦା ହେଲେ ସର୍ବବାଳୀ । ୪ ।

( ରଚନା—ମହୁରୀ )

## ଯୁବତୀଙ୍କ ଚମାଳୀ

ଜଣ ଜଣ କରି ବଧାଇ ନ ଦେଲେ
ଗୋ୍ରାଇ ନେବୁ ଶିରୀପଡ । ୦ ।
ଅତ ଅନନ୍ଦ ହୋଇଣ ନନ୍ଦରାଏ
ଶ୍ରୀଅଙ୍ଗୁ ଉଢ଼ାଉ କାଢ଼ିଲେ
ଭଣ୍ଡାର ଘରେ ଯେତେ ଧନ ଥିଲା
ଜଣ ଜଣଙ୍କେ ବାଣ୍ଟିଦେଲେ । ୧ ।

ନାଭି କାଟି ଏନ୍ଧୁର ଉଗ୍ଲାଇଲେ
ରନ୍ଧୁ ଶାମୁକାରେ ଘଷି
ନାନା ଘଟିମାନ ଶ୍ରୀ ଅଙ୍ଗରେ ବୋଳ
ଗାଧୁଅନ୍ତି ଉଷୁମ ପାଣି । ୨ ।
ଏହ୍ମଟି ମିତଣି ମଥୁପୁରେ ଥିଲି
ନାଭି ନ କାଟୁ ପଳାଇଲି
ଗ୍ଗେରପଣେ ଯାଇ ରାଧିକାପୁରରେ
ଗୋଇଠା ମାଡ଼ ସେ ଖାଇଲି । ୩ ।
କୃଷ୍ଣ ଗାଧୋଇଲି ପାଣି ଗୋ ମିତ
ମତେ ଅଗୋଚର ଲାଗିଲି
ତେତିଶ କୋଟି ଦେବତା କପୋଳକୁ
ମାଲି ଶଡା ତ ନ ଅଣ୍ଟିଲି । ୪ ।
ନାଭି କାଟି କର
ଏନ୍ଧୁର ଉଚ୍ଛାଇ
ଚନ୍ଦନ କାଠରେ ଅତର୍,
ଛନାପୁର ଲୋକ
ରୁଣ୍ଡ ହୋଇଚନ୍ତି
ଦେଖ ନନ୍ଦ ଘରେ ଯାତର୍ । ୫ ।

( ରଚନା—ଗାଙ୍ଗପୁର )

## ୭ । ଉଠିଆର୍ ସ୍ନାହାନ ମଙ୍ଗଲ

ମର୍ଦ୍ଦଳ କଂସାଳ ଯେ ବାଜେ ଶଙ୍ଖ ଭେରୀ
ମେଘା ଦୁନ୍ଦୁଭି ଶବଦେ ନଗ୍ର ଉଠେ ପୂରି । ୧ ।
ମୃଦୁସୁଲି କହୁଛନ୍ତି କଉଶଲ୍ୟା ଅଗେ
ମଙ୍ଗୁଳଣି ହାଣ୍ଡି ବସାଇବା ହେଉ ବେଗେ
ଶୁଭ ଲଗ୍ନ ପରବେଶ
ନୃପତି ଗ୍ଳମ୍ବରେ ଜଣାଇଲେ ଜଉତିଷ । ୨ ।

ଶୁଣି ଦଶରଥ ରାଣୀ ମନରେ ସନ୍ତୋଷ
ମହାଦେଈମାନଙ୍କୁ ରାଇଲେକ ପାଶ ।
ଅହ୍ୟ ଯୁବତୀଏ ମିଳି
ମଙ୍ଗଳାତ ହାଣ୍ଡି କରେ ଘେନ ଅର୍ଘ୍ୟଥାଳୀ । ୩ ।
ଧଉଳଲେ ବଚନ କରଣି ସାତ ନାରୀ
ବେଢ଼ାଇଣ ଦେଲେ ବସ୍ତ୍ର ନବତନ କରି
ଘେନଣ ସାତ ଯୁବତୀ
ଶୁଭ ଲଗ୍ନ ଘେନ ଭଲ ଠାବରେ ରଖନ୍ତି । ୪ ।
ବିଧିବନ୍ତ କରଣ ଯେ କୁମ୍ଭ ବସାଇଲେ
ତଣ୍ଡୁଳ ଶ୍ରୀଫଳ ଭାଣ୍ଡ ମଧ୍ୟରେ ଥୋଇଲେ
ଚନ୍ଦନ ସିନ୍ଦୂର ଦେଇ
ଦୂର୍ବାକ୍ଷତ ଘେନ ବନ୍ଦାଇଲେ ମହାଦେଈ । ୫ ।
ବାହୁଡ଼ି ପୁରକୁ ସର୍ବ ବିଧାନ ଥୋଇଲେ
ପାଟରାଣୀ ଶୁଣି ଧାଇଁ ମାଡ଼ଣ ବସିଲେ । ୬ ।
ଶ୍ରୀରାମଚନ୍ଦ୍ରଙ୍କୁ ଧାଇ କୋଡ଼ରୁ ଧଇଲେ
ରତ୍ନଥାଳି ଏକ ନେଇ ସେଠାରେ ଥୋଇଲେ । ୭ ।
ଶ୍ରୀରାମଚନ୍ଦ୍ରଙ୍କ ଶିରେ ଅଭଙ୍ଗ ଉଞ୍ଛିଲେ
ନାନା ଘଟିମାନ ନେଇ ଶ୍ରୀଅଙ୍ଗେ ବୋଳିଲେ । ୮ ।
ଘଟି ଉକୁଟାଇଣ କୁଙ୍କୁମ ଲାଗି କଲେ
ଶ୍ରୀରାମଙ୍କ ଅଙ୍ଗେ ଯେ ଅଳଟ ରଞ୍ଜିଲେ । ୯ ।
ବାହାରକୁ ବଜେ କରାଇଲେ ଦାଶରଥି
ସର୍ବ ଲୋକେ ମିଳି ତହିଁ ଆନନ୍ଦେ ଦେଖନ୍ତି । ୧୦ ।
ରତ୍ନ ପିଢ଼ାଏକ ଧରି ମାଡ଼ଣ ବସିଲେ
ରଘୁକୁଳନାଥଙ୍କୁ ଯେ କୋଳରେ ଧଇଲେ । ୧୧ ।

ଗାଅ ଲୋ ଗାଆଣି ଗୀତ ଦିଅ ହୁଳହୁଳି
ଉଠିଅଇ ସ୍ନାହାନ କରନ୍ତି ଦେବ ହରି । ୧୨ ।
ଶ୍ରୀରାମ ଶିରରେ ଧାଇ ସୁଗନ୍ଧ ଢଳିଲେ
ମଣିମା ମଣିମା ବୋଲି କଳ ନହୁଡ଼ିଲେ । ୧୩ ।

ରନ୍ଧ ଗରଅରେ ଗଙ୍ଗା ପାଣି ଢେନ୍ତା ଗଲେ
ଦାସୀ ପରବାସୀ ଢେନ ଶ୍ରୀଅଙ୍ଗେ ଢାଳିଲେ । ୧୪ ।
ଝିନବାସ ଢେନ ବାଳୀ ଶ୍ରୀଅଙ୍ଗ ପୋଛିଲେ
ଶ୍ୟାମଲ ସୁନ୍ଦର ରାମ ସୁନ୍ଦର ଦଶିଲେ । ୧୫ ।
ସ୍ନାହାନ ସାରଣ ରାମ ବନ୍ଦାପନା ହେଲେ
ଧର୍ମ୍ମଦେବତାଙ୍କୁ ପୁଣ ଦରଶନ କଲେ । ୧୬ ।
ଇଷ୍ଟ ଦେବତାଙ୍କୁ ଓଲଗି ଅନ୍ତଃପୁର ନେଲେ
ମାତାଙ୍କ କୋଳରେ ଦାଶରଥି ବିଜେ ହେଲେ । ୧୭ ।
ଦେଖି ମହାଦେଈ ମନେ ଆନନ୍ଦ ହୋଇଲେ
ସରୁ ଝିନବାସ ଢେନ ଶ୍ରୀମୁଖ ପୋଛିଲେ । ୧୮ ।
ଲଲାଟ ପାଟିରେ ଗୋରୋଚନା ଚିତା ଦେଲେ
ଶ୍ୱେତପଦ୍ମ ଡୋଳାରେ ଯେ କଜ୍ଜ୍ୱଳ ରଞ୍ଜିଲେ । ୧୯ ।
କ୍ଷୀର ପାନ କରି ସାରି ଅବକାଶ ହେଲେ
ଉଠିଅରି ସ୍ନାନ ଗୀତ ଗାଅଣି ଭଣିଲେ । ୨୦ ।

( ମୟୂରଭଞ୍ଜ )

## ୭ । ସ୍ୱନକ୍ଷତ୍ର ମଙ୍ଗଳ

ରାଜା ପଟ୍ଟରାଣୀ ମହାଦେଈ
ବରଷ ପୂରିଲା ରଘୁସାଇଁ । ୧ ।
ଜନମ ନକ୍ଷତ୍ର କାଲି ହେବ
ଅନ୍ତଃପୁରେ କରାଅ ଉତ୍ସବ । ୨ ।
ସ୍ୱନକ୍ଷତ୍ର ବର୍ଦ୍ଧମାନ କର
କାଲି ବନ୍ଦାପନା ଯେ ମଙ୍ଗଳ । ୩ ।
ଏତେ କହି ବାହାରେ ବିଜୟେ
ଶୁଣି ପାତ୍ର ଅରୁଣ ଉଦୟେ । ୪ ।
ରାଜାରୁ ଉଭା ମହଲରେ ଥାଇ
ସିଂହଦ୍ୱାରେ ବାଜଣା ବାଜଇ । ୫ ।

ଗହଳ ଚହଳ ପୁର ମଧ୍ୟେ
ସର୍ବ ଶବ୍ଦ ସୁମନ୍ତ୍ର ସଂପାଦେ । ୬ ।
କାନ୍ଥମାନ ଚକରେ ଲେଖନ୍ତି
ମଣ୍ଡପେ ମଣ୍ଡନ ନାନାରତ୍ନ । ୭ ।
ଉପରେଣ ବାନ୍ଧିଲେ ଚୃନ୍ଦୁଆ
ପୂର୍ଣ୍ଣକୁମ୍ଭ ଶ୍ୱେତ ଚେପ ପାରୁଆ । ୮ ।

ପାଟ ବସନ ଖରଡ଼ ଦେଇ
ଗୁଆ ଘୃତେ କାଗର ଜଳାଇ । ୯ ।
ଋଷି ବିପ୍ର ଧର ସଙ୍ଗେ ରାଏ
ବିଘ୍ନରାଜ ପୂଜା ସେ କରାଏ । ୧୦ ।
ଅନ୍ତଃପୁରେ ପୁତ୍ରଙ୍କୁ ଜନନୀ
ସୁବେଶ କରନ୍ତି ରତ୍ନମଣି । ୧୧ ।
ପିନ୍ଧାଇଲେ ନବତନ ବାସ
ବିବିଧ କୁସୁମ ଖଞ୍ଜି କେଶ । ୧୨ ।
ଶ୍ୱେତ ଦୂବ ଶ୍ୱେତ ପଦ୍ମ ଖୋସି
କର୍ପୂର ମିଶାଇ ଗନ୍ଧ ଘସି । ୧୩ ।
ବାଳ ସଜ କରନ୍ତି ରାମଙ୍କୁ
ଧାଇ ନେଲ ରାଜାଙ୍କ ସାମ୍ମୁଖ୍ୟକୁ । ୧୪ ।
ପୁତ୍ରଙ୍କୁ ନୃପତ କୋଳେ ଧର
ବାଜିଲ ବାଦ୍ୟ ଶଙ୍ଖ ମହୁରୀ । ୧୫ ।

ଜନମ ନକ୍ଷତ୍ର ବିଧି ମନ୍ତ୍ର
ବଶିଷ୍ଠ ଉଚ୍ଚାରିଲେ ସମସ୍ତ । ୧୬ ।
ପୂଜା ସାର ବନ୍ଦାପନା କଲେ
ଆଶୀର୍ବାଦ ରାମ ଶିରେ ଦେଲେ । ୧୭ ।
ଦଶରଥ ବୋଲନ୍ତି ହେ ବାବୁ
ଗୁରୁଙ୍କର ପାଦେ ଓଳଗିବୁ । ୧୮ ।
ଶୁଣି ରାମ ପିତା କୋଳୁ ଗଲେ
ବଶିଷ୍ଠଙ୍କ ପାଦେ ଓଳଗିଲେ । ୧୯ ।

କାଖ କର ମୂଦୁସ୍ବଲ୍ ନେଲା
ଭିତରେ ବନ୍ଦାଣ ପୁଣି ହେଲା । ୨୦ ।
ବନ୍ଦାଣର ବାଧ୍ୟ ଯନ୍ତୁ ସର
ଜନମାଙ୍କୁ କଲେ ନିଉଛାଳ । ୨୧ ।
ମୁହଁ ଗୁହାଁ ଶନ୍ନ ମାଏ ଦେଇ
ଧନ ଦାସୀ ସଂପାଦଲେ ପାଇ । ୨୨ ।
କୋଳେ ଧର କରନ୍ତ ଭୋଜନ
ମାଏ କରାଇଲେ ଅଚମନ । ୨୩ ।
( ତାଳଚେର )

## ୮ । ନାଉଳ ମଙ୍ଗଳ ( ୧ )

ରଜା ପଗୁରନ୍ତ ମହାଦେଈ
କେତେକ ବରଷ ରଘୁସାଇଁ । ୧ ।
ଦୁଇବରଷ ସଂପୂର୍ଣ୍ଣ ହେଲା
ଅଡ଼ାଇ ସେ ପ୍ରବେଶ ହୋଇଲା । ୨ ।
ଅଷାଢ଼ରେ କର୍ଣ୍ଣବନ୍ଧା ହୋଇ
ମହାଦେଈ ରଜାଙ୍କୁ ଜଣାଇଁ । ୩ ।
ଶୁଣିଣ ରାଏ ହରଷ ହେଲେ
ବାହାରେ ଅବକାଶ ହେଲେ । ୪ ।
ଲୋକ ପେଷି ପୁରୋହିତ ହକାର
ଜଉତଷ ଖଡ଼ିକାର କର । ୫ ।
ଶୁଭେ ଶ୍ରୀରାମଙ୍କୁ ପୁରେ ନେଲେ
ମହାଦେଈ ସୁବେଶ କରଲେ । ୬ ।
ନିମୁଣ୍ଡି ବାନ୍ଧଣ ବେଶକଲେ
ନାନା ଜାତ ପୁଷ୍ପ ସେ ଖଞ୍ଜିଲେ । ୭ ।
କସ୍ତୁର ତିଳକ କପୋଳରେ
ପଦ୍ମଦଳ ନୟନ କଜ୍ଜଳେ । ୮ ।

ଲଲାଟରେ ଶୋହେ ଗୁରୁ ରେଖ
ହୃଦରେ ଲମ୍ବାଇଲେ ପଦକ । ୯ ।
ବାହୁରେ ବାହୁଟି ଯେ ସୁନ୍ଦର
ହୀରକ କଙ୍କଣ ମନୋହର । ୧୦ ।
ପୟରରେ ଖଞ୍ଜିଲେ ନୂପୁର
ଶୁଣିଲେ ଶୁଭଇ ସୁମଧୁର । ୧୧ ।
ମାଧବନ୍ନ କାଛ ପିନ୍ଧାଇଲେ
ଶ୍ରୀଅଙ୍ଗରେ ଚନ୍ଦନ ବୋଳିଲେ । ୧୨ ।
ଶ୍ୟାମଳ ସୁନ୍ଦର ଶୋଭା କାନ୍ତ
ଘନେ କି ବିଜୁଳି ଝଟକନ୍ତ । ୧୩ ।
ଛାମୁଁମଣ୍ଡପରେ ଦଶରଥ
ପୁତ୍ର ଘେନି ବିଜେ ନରନାଥ । ୧୪ ।
ପୁରୋହିତ ବଶିଷ୍ଠ ଯେ ମୁନି
ଅଗ୍ନି ସମ୍ପାଦିଲେ ମନ୍ତ୍ର ଘେନି । ୧୫ ।
ଦଶରଥ କୋଳରେ ଧଇଲେ
ରଘୁନାଥ କର୍ଣ୍ଣ ବିନ୍ଧାଇଲେ । ୧୬ ।
ଦେବ ଋଷି ବ୍ରହ୍ମଋଷିମାନେ
ମଙ୍ଗଳ ପଢ଼ନ୍ତି ଅନୁକ୍ଷଣେ । ୧୭ ।
ଦେବସିଦ୍ଧ, ଅକ୍ଷତ ଯେ ଦେଲେ
ଅପସରୀ ମିଳି ନୃତ୍ୟ କଲେ । ୧୮ ।
ସିନ୍ଦୁର ଗୁଣ୍ଡି କର୍ଣ୍ଣରେ ଦେଲେ
ଶିରରେ ମୁକୁଟ ବାନ୍ଧିଲେ । ୧୯ ।
ଲକ୍ଷେ ବାଜା ଲକ୍ଷେକ ମହୁରୀ
ହୁଳହୁଳି ଶବ୍ଦେ ମହୀ ପୂରି । ୨୦ ।
ପଣ୍ଡିତଙ୍କ ଭିତରେ ଯେ ପୁଣି
ସାରିଲେ ସମସ୍ତ ବିଧି କର୍ମ । ୨୧ ।
ନାଉଳି ମଙ୍ଗଳ ହେଲା ପୂର୍ଣ୍ଣ
ଗୋପୀନାଥ ମୋ ଜୀବ ଜୀବନ । ୨୨ ।

( ବଡ଼ାମ୍ମା )

## ୯। ନାଉଳ ମଙ୍ଗଳ ( ୨ )

ଶୁଣ ସାଧୁଜନମାନେ ବଚନ ରହସ୍ୟ
ରଘୁବଂଶେ ଜାତ ରାମ ପରମ ପୁରୁଷ । ୧ ।
ଏକ ଦୁଇ ଯାଇ ତିନ ବରଷ ହୋଇଲେ
କର୍ଣ୍ଣବେଧ କର ବୋଲି ବଶିଷ୍ଠ ବୋଇଲେ । ୨ ।
ଶୁଣି ରାଜା ଦଶରଥ ହରଷ ମନର
ହକାରାଇ ଆଣିଲେ ସୁମନ୍ତ୍ର ମନ୍ତ୍ରୀବର । ୩ ।
କହନ୍ତି ନୃପତି ଶୁଣ ମନ୍ତ୍ରୀ ଚୂଡ଼ାମଣି
ଚୂଡ଼ାକର୍ମ ହେବ ମୋର ରାମରଘୁମଣି । ୪ ।
ଯେତେ ଛନ୍ତି ରାଜଋଷି ବ୍ରହ୍ମଋଷିଗଣ
ଗୁରୁଗଣ ପେଷି ବେଗେ କର ନିମନ୍ତ୍ରଣ । ୫ ।
ଅସନ୍ତୁ ସାମନ୍ତ ପାତ୍ର ବନ୍ଧୁବର୍ଗମାନେ
ପୁଅଙ୍କ ମଉଳା ଅଜା ଆଉ ଗୁରୁଜନେ । ୬ ।
ନଗ୍ରରେ ଘୋଷଣା ଦିଅ ବାଜୁ ବାରଦାଜା
ନିମନ୍ତ୍ରଣ କରି ଆଣ ମନ୍ତ୍ରୀ ଲକ୍ଷେ ରଜା । ୭ ।
ଆଜ୍ଞା ପାଇ ମନ୍ତ୍ରୀବର ବେଗେ ଚଳିଗଲେ
ଦୋସାଧି ଡକାଇ ନଗ୍ରେ ଘୋଷଣା ଯେ ଦେଲେ । ୮ ।

ପୁରେ ପୁରେ ଉତ୍ସବ ମଣ୍ଡଣି କର ଘର
ଦ୍ୱାରେ ଦ୍ୱାରେ ରମ୍ଭାବୃକ୍ଷ ପୂର୍ଣ୍ଣ ନଟିକାଳ । ୯ ।
ପିଢ଼ା ଉପରେ ସୁବର୍ଣ୍ଣ କଳଶ ଚାରାଳ
ଚୂତପତ୍ର ତୋରଣା ମୁକୁତା ମାଳ ମାଳ । ୧୦ ।

କଟକ ଛଟକ କି ଅମରାବତୀ ଜିଣି
ରାଜାର ନବର କଲେ ଅପୂର୍ବ ମଣ୍ଡଣି । ୧୧ ।
ନବର ମଧ୍ୟରେ ରତ୍ନ ବେଦିଏ ରଚିଲେ
ବିଶ୍ୱକର୍ମା ଶିଳ୍ପି ଏ ମଣ୍ଡପ ନିର୍ମା କଲେ । ୧୨ ।
ବସନ ଭୂମଙ୍କ ଯୋଗେ କଲେକ ମଣ୍ଡଣି
ପାଞ୍ଚ ଗୋଟି ସ୍ୱର୍ଣ୍ଣକୁମ୍ଭ ବସାଇଲେ ଆଣି । ୧୩ ।

ଚୂତପନସ ନାରକେଳ ରମ୍ଭା ଗୁଆଗଛ
ସ୍ଫଟିକର ବେଦିକାରେ ମର୍କତ ପାବଚ୍ଛୁ । ୧୪ ।
ସୂର୍ଯ୍ୟବଂଶ ପୁରୋହିତ ବଶିଷ୍ଠ ମହର୍ଷି
କରମ ଆରମ୍ଭ କଲେ ମଣ୍ଡପରେ ବସି । ୧୫ ।

ବ୍ରହ୍ମାଦି ସହିତେ ଯେ ସକଳ ଋଷିଗଣ
ଉଚ୍ଚେ ବେଦ ପଢ଼ୁଛନ୍ତି ସୁବେଦୀ ବ୍ରାହ୍ମଣ । ୧୬ ।
ଜନକଠାରୁ ରାମ ଗନ୍ଧସୀ ହୋଇଥିଲେ
ମାର୍ଜ୍ଜନ ହୋଇବେ ବୋଲି ବଶିଷ୍ଠ ବୋଇଲେ । ୧୭ ।
ନବରତ୍ନ ପୀଠ ପରେ ନବରତ୍ନ ବାସ
ଅଷ୍ଟ ଗୋଟି ଥାପି ତହିଁ ନବୀନ କଳଶ । ୧୮ ।
ଗଙ୍ଗାଜଳେ ସର୍ବୌଷଧି ଅଷ୍ଟ ଗନ୍ଧ ଗୋଳି
ଚୂତ ଡାଳ ଦୂର୍ବାଙ୍କୁର ଦେଲେ କୁଶ ବିଡ଼ା । ୧୯ ।
ପୀଠ ପରେ ନେଇ ବିଜେ କରାଇଲେ ରାମ
ମହାବାକ୍ୟ ପଢ଼ି ଦ୍ୱିଜେ କରନ୍ତି ମାର୍ଜ୍ଜନ । ୨୦ ।
ତହୁଁ ଆସି ଭିତର ନବରେ ବିଜେକଲେ
ସୁବର୍ଣ୍ଣ ପିଢ଼ା ଉପରେ ନେଇ ବସାଇଲେ । ୨୧ ।
ହରଡ଼ା ବାହାଡ଼ା ଅଁଳା ତ୍ରିଫଳା ଜଳରେ
ମିଳି ତାଙ୍କୁ ମାତାଗଣେ ସ୍ନାନ କରାଇଲେ । ୨୨ ।
ଦେବାଙ୍ଗ ବସନ ନେଇ ଶ୍ରୀଅଙ୍ଗ ପୋଛିଲେ
ମାଧବନ କାଛ ଉଞ୍ଚି କୁଞ୍ଚି ପିନ୍ଧାଇଲେ । ୨୩ ।
ରତ୍ନଜଡ଼ିତ ପାଦୁକା ଦାସୀ ଦେଲେ ନେଇ
ସୁବେଶ କରନ୍ତି ମାଏ ଆସନେ ବସାଇ । ୨୪ ।
ତ୍ରିମୁଣ୍ଡି ସଙ୍ଗୋଇଣ ବାନ୍ଧିଲେ ଦିବ୍ୟଚୂଳ
ସୀତ ପୀତାରୁଣ ଯେ ଖଞ୍ଜିଲେ ପୁଷ୍ପମାଳ । ୨୫ ।
ନୟନେ କଜ୍ଜ୍ୱଳ ଭାଲେ ଗୋରୋଚନା ଟୀକା
ବେଶକୁ ବଢ଼ାଇ ଉଭା ହେଲେ ଜଗୁଜ୍ଜିତା । ୨୬ ।
ବାଜିଲକ ବାଦ୍ୟମାନ ଢେମକ ନିଶାଣ
ସଭାରେ ସଭବେ ଯେ ପୂରିଲେ ରାଜଗଣ । ୨୭ ।

ଗହଗହ ଶବଦ ଯେ ଶୁଭଇ ଚହଳ
ଆକାଶରେ ପୁଷ୍ପବୃଷ୍ଟି କଲେ ଆଖଣ୍ଡଳ । ୨୮ ।
ପିତାଙ୍କ କୋଳରେ ରାମ ବସିଲେକ ଯାଇ
ନାଉଳି ମଙ୍ଗଳ ଶେଷ ରାମ ପଦ ଧ୍ୟାୟି । ୨୯ ।
( ଧରାକୋଠ )

## ୧୦ । ମଙ୍ଗଳାରୋପଣ ମଙ୍ଗଳ

ନାନା ଯତ୍ନ କରି ଅଗଣାମାନଙ୍କେ
କଲେକ ଅକାଶ ମଣ୍ଡଣି
ରାତ୍ରୁ ରାମର ରାନ୍ଧୁଅମାନଙ୍କ
ଫଣୀଆ କେ ପାତ୍ରବ ଗଣି । ୧ ।
ସ୍ତମ୍ଭମାନଙ୍କରେ ଦ୍ରବ୍ୟ ପାଠମାନ
ବାନ୍ଧିଲେ ଗଜ ବନ୍ଧରେ ଖଞ୍ଜି ଥାନ । ୨ ।
ପେଣ୍ଡା ପେଣ୍ଡା କରି ଲମ୍ବାଇଲେ ନାରକେଳ
ସୁପକ୍ୱ କଦଳୀ ଗୁଆ ବରକୋଳି ଡାଳ । ୩ ।
ଉର୍ଣ୍ଣି ଉର୍ଣ୍ଣି ପୀତବାସ ପିନ୍ଧାଇଲେ କାଚ୍ଛ
ନବତନ ରାନ୍ଧୁଅ ଯେ ବାନ୍ଧିଲେକ ବାଚ୍ଛ । ୪ ।
ପାଡ଼ିଲେ ପାହାଡ଼ପନ୍ତି ପଥରେ ବହନ
ଦରଛଡ଼ା ଫୁଲ କୋଳି ବର୍ଣ୍ଣିଲେ ବହନ । ୫ ।
ମନ୍ତ୍ରର ସାଉର ଦ୍ରବ୍ୟଗର୍ଭ ହେମ କୁଅ
ହେମ ସୂକ୍ଷ୍ମ ଖଞ୍ଜି ଅଣି ଅଗେ କଲେ ଠିଆ । ୬ ।
ସ୍ଥମ୍ଭରେ ଯେ ଦଧିମାଛ ପୂର୍ଣ୍ଣକୁମ୍ଭମାନ
ଦଧିଗୁଡ଼ ଶାକର ଯେ ବାଢ଼ିଲେ ବହନ । ୭ ।
ରାମଚନ୍ଦ୍ରଙ୍କ ମାଜଣା ଯତନରେ ସାରି
ପିତାଙ୍କ ପାଖକୁ ନେଲେ ମହୋତ୍ସବ କରି । ୮ ।
ରତ୍ନ ମଣ୍ଡପରେ ବିଜେ କଲେ ରାମଚନ୍ଦ୍ର
ବେଢ଼ିଣ ବସିଲେ ଯେ ସକଳ ଋଷିବୃନ୍ଦ । ୯ ।

ବାଜଇ ବିବିଧ ବାଦ୍ୟ ଶଙ୍ଖ ଯେ ମହୁରି
ନଗର ଭିତରେ ଯେ ପଡ଼ଇ ହୁଳହୁଳି । ୧୦ ।
ବରୁଣଙ୍କ ପୂଜା ସାରି ମଙ୍ଗଳାରୋପଣ
ଶିରେ ଦୂର୍ବାକ୍ଷତ ଦେଇ କରନ୍ତି କଲ୍ୟାଣ । ୧୧ ।
ଅଷ୍ଟ ଯେ ଉତ୍ତର ଦୂବ ଶିରେ ନେଇ ଦ୍ୟନ୍ତି
ସହସ୍ରେ ବ୍ରାହ୍ମଣ ମିଳି କଲ୍ୟାଣ ଚାହିଁନ୍ତି । ୧୨ ।
ବନ୍ଦାପନା ସାରି ରାମ ବାହାରକୁ ଯାନ୍ତି
ଦେବତାଙ୍କ ଅଳେ ଯାଇ ପ୍ରବେଶ ହୁଅନ୍ତି । ୧୩ ।
ବର୍ଣ୍ଣମାଳା ନେଇ ରାମ କଣ୍ଠେ ଲମ୍ବାବନ୍ତି
ସେଠାରେ ବ୍ରାହ୍ମଣେ ମିଳି ମନ୍ତ୍ର ଉଚ୍ଚାରନ୍ତି । ୧୪ ।
( ସୁରଙ୍ଗି )

## ୯୯ । ବ୍ରତ କୋଇଲିବୁଢ଼ି

ପାହିଲା ରଜନୀ ଯହୁଁ ଉଠିଲେ ଜନନୀ
ସ୍ନାହାନ କରିବେ ରାମ ଦିଅ ତୋଳି ପାଣି । ୧ ।
କର୍ପୂର କସ୍ତୁରୀ ଗନ୍ଧେ ସୁବାସିତ ପାଣି
ସ୍ନାହାନ କରିବେ ମୋର ରଘୁକୁଳମଣି । ୨ ।
ପାଣି ନହୁଡ଼ନ୍ତି ଶିରେ ଦେଇ ହୁଳହୁଳି
ଶିରେ କୁମ୍ଭ ତାଳି ଦାସୀ କରନ୍ତି ଚମାଳି । ୩ ।
ସ୍ନାହାନ ସାରଣ ଝିନ ପୋଛି ଲାଗି ହେଲେ
ସୁବର୍ଣ୍ଣ କଠାଉ ମାଡ଼ି ଭିତରକୁ ଗଲେ । ୪ ।
ମହାପରସାଦ ଅନ୍ନ ଖଣ୍ଡି ପରକାଶି
ଭୁଞ୍ଜିବାକୁ ଯାଇଣ ସେ କଲେ ପଞ୍ଚଗ୍ରାସି । ୫ ।
ମଣୋହି ସାରଣ ରାମ ଅଚମନ କଲେ
ସୁବର୍ଣ୍ଣ ଚିରୁଣି ଘେନି କେଶ ସଜାଇଲେ । ୬ ।
ଜାଇ ଯୁଇ ମଲ୍ଲିଚମ୍ପା ମାଳ ମାଳ ଗୁନ୍ଥି
ଯୁଇ ଜାଇ ଝୁରିଅନା ଗଭାଲାଗି ହୁନ୍ତି । ୭ ।

ବିଶାଖା ସିନ୍ଦୁର ମାଏ ଦେଲେ ଲମ୍ବନାଶି
ନୀଳ ମେଘୁ ଚନ୍ଦ୍ରମା କି ଖସି ପଡ଼େ ଜାଣି । ୮ ।
କେଉଁ କୁମାରୀ ଯା ଲାଗି ହୋଇଅଛୁ ଜାତ
ଗଙ୍ଗାରେ ଝାସିଲେ ସିନା ଏ ହେବ ପ୍ରାପତ । ୯ ।
କୁମାର କୋଇଲିବୁଡ଼ ଦେଖିଲେ ନୟନେ
ପୁନହ୍ନାନା ନ ହୁଅଇ ନାରୀ ଜନ୍ମେ ଜନ୍ମେ । ୧୦ ।

( ମହୁସୀ )

## ୧୬ । ବ୍ରତ ମଙ୍ଗଳ

ଦଶରଥ କହୁଛନ୍ତି ବଶିଷ୍ଠଙ୍କୁ ଚାହିଁ
ତୁଙ୍ଗ ଅନୁକୂଳ ବ୍ରତ ହେବେ ରଘୁସାଇଁ । ୧ ।
ଶୁଣି ହସ ହସ ହୋଇ ବଶିଷ୍ଠ କହିଲେ
ବ୍ରତ ଯୋଗ ଅଛୁ ରାଜା ଏହି ନିକଟରେ । ୨ ।
ଶୁଣି ରାଏ ସୁମନ୍ତ୍ରକୁ କହନ୍ତି ଅନାଇଁ
ନ କରଣ ହେଲା ସର୍ବ ବିଧି କର ତୁହି । ୩ ।
ରତ୍ନଦନ ମଧ୍ୟରେ ସକଳ ସଜ୍ଞା ହେବ
ଡଗର ପେଷି ନୃପଙ୍କୁ ବରଣ ଆଣିବ । ୪ ।
କଉଶଲ୍ୟା କଇକେୟୀ ସୁମିତ୍ରାଙ୍କ ଭ୍ରାତ
ମଉଳାମାନେ ଆସିବେ ରାମ ହେବେ ବ୍ରତ । ୫ ।
ଆଜ୍ଞା ଶୁଣି ସୁମନ୍ତ୍ର ଯେ ଦୂତ ବରଗିଲେ
ବ୍ରତର ବିଧାନମାନ ଭିଆଣ ସେ କଲେ । ୬ ।
ମଙ୍ଗଳ ଦିବସ ଯହୁଁ ହୋଇଲା ପ୍ରବେଶ
ଅନ୍ତଃପୁରେ ଉତ୍ସବ କରନ୍ତି ରାଣୀହଂସ । ୭ ।
ଲଗ୍ନ ବୁଝି ଶ୍ରୀରାମଙ୍କୁ ଗନ୍ଧଷଣ କଲେ
ପ୍ରଭାତରୁ କୋଇଲି ସ୍ନାହାନ କରାଇଲେ । ୮ ।
ମଙ୍ଗୁଳିଲେ ହଳଦୀ ଗନ୍ଧ ବୋଳି ଅଙ୍ଗରେ
କୁଶ ହସ୍ତ ହୋଇ ରାମ ବସିଲେ କର୍ମରେ । ୯ ।

ଗନ୍ଧ ଗନ୍ଧ ଅସ୍ଥାନରେ ପୂରିଲେ ବ୍ରାହ୍ମଣ
ବାଜନ୍ତ୍ର ବିବିଧ ବାଦ୍ୟ ମଙ୍ଗଳ ଛନ୍ଦେଣ । ୧୦ ।
ମଉଳାମାନେ ଅଇଲେ ସୁବେଶ ଯେ ହୋଇ
ଗୃହକର୍ମ୍ମ ବିଧାନ କରନ୍ତି ନରସାଇଁ । ୧୧ ।
ପିତା ପାଶେ ରଘୁନାଥ ଅଛନ୍ତି ଯେ ବସି
ମନ୍ତ୍ରପଢ଼ି ହୋମ ଯେ କରନ୍ତି ବ୍ରହ୍ମଋଷି । ୧୨ ।
କର୍ମ୍ମ ଯନ୍ତୁଁ ସରନ୍ତି ସ୍ନାହାନ ରାମ କଲେ
ପୁଣି ଯାଇ ପିତା କୋଳେ ଆସ୍ଥାନେ ବସିଲେ । ୧୩ ।
ବଶିଷ୍ଠ ବୋଇଲେ ରାଣୀ ବହନ ଅସନ୍ତୁ
ବାଳ କର୍ମ୍ମ ବିଧି ଅସି ବହନ କରନ୍ତୁ । ୧୪ ।
ରାଜା ଆଜ୍ଞା ଦେଲେ ମୁଦ୍ରସୁଳି ବେଗେ ଯାଅ
ଶ୍ରୀରାମ ମାତାଙ୍କୁ ଗୋ ବହନ ଜଣାଅ । ୧୫ ।
ମୁଦ୍ରସୁଳି ସେହିକ୍ଷଣି ଯାଇ ଜଣାଇଲା
ସୁବେଶ ହୋଇଣ ଯେ ଅଇଲେ କଉଶଲ୍ୟା । ୧୬ ।
ଶାଢ଼ୀ ବାନ୍ଧି ଭିତରେ ବିଜୟେ କଲେ ରାଣୀ
କର୍ମ ବାକ୍ୟେ ରାମଙ୍କୁ ଉଦରେ ଧରେ ଆଣି । ୧୭ ।
ଜନମ ହୋଇଲେ ରାମ ବାଳୁତ ଯେ ହୋଇ
କୁଶ ବାନ୍ଧି ନାଭି ଯେ କାଟିଲେ ମହାଦେଇ । ୧୮ ।
ତାହା ଦେଖି ମନେ ମନେ ହସେ ରଘୁବାଳା
ମଞ୍ଚେ ଜାତ ନୋହି କାହୁଁ ଦେଖନ୍ତି ଏ ଲୀଳା । ୧୯ ।
ସରନ୍ତି ଜନ୍ମ ବିଧାନ ସ୍ନାହାନ ଯେ କଲେ
ପୀତାମ୍ବର ଫେଟା ପିନ୍ଧି ମଣ୍ଡପେ ବସିଲେ । ୨୦ ।
ଚୂଡ଼ାକର୍ମ୍ମ ଉପ୍ଯୁକର୍ମ୍ମ ସମସ୍ତ ସାରିଣ
ବଶିଷ୍ଠ ଯେ ମନ୍ତ୍ର ଦୀକ୍ଷା କହିଲେ କର୍ଣ୍ଣେଣ । ୨୧ ।
ଚେତେବେଳେ ଯେଉଁ କର୍ମ୍ମ ସେ ବାକ୍ୟ ଉଚ୍ଚାରି
କୁଶହସ୍ତ ହୋଇ ହୋମ କଲେ ଗୃହଧାରୀ । ୨୨ ।
ଅପସରାଗଣ ନୃତ୍ୟ କରନ୍ତି ଆନନ୍ଦେ
ଶ୍ରୀରାମଙ୍କ ବ୍ରତ ସର୍ବେ ଦେଖନ୍ତି ଆନନ୍ଦେ । ୨୩ ।

ଭ୍ୟୁକର୍ଣ୍ଣ ବିଧାନ ଭିଆଣି ଋଷି କଲେ
ପାଦ୍ୟ ଧନ ରାମହସ୍ତେ ମଉଳାଏ ଦେଲେ । ୨୪ ।
ସପତ ଶାଖା ମୁକୁଟ ବାନ୍ଧି ଲଲାଟରେ
ନବଗୁଣ ପଇତା ଲମ୍ବିଲା ହୃଦୟରେ । ୨୫ ।

ହଳଦିଆ ବସ୍ତ୍ର ଲାଗି କରାଇଲେ ନେଇ
ଲଉଡ଼ୁବେଣ୍ଣ ଗଣ୍ଠିବାନ୍ଧି କନ୍ଧରେ ଲମ୍ବାଇ । ୨୬ ।
ବେଦ ପୋଥି କାଖେ ଯାକି ରୁଷି ବାହାରିଲେ
ସୈନ୍ୟବଳ ଘେନି ପଛେ ପଛେ ଗୋଡ଼ାଇଲେ । ୨୭ ।
ସୁମନ୍ତ୍ର ମନ୍ତ୍ରୀ ରାମର ହସ୍ତଧରି କହେ
ବିଭା କରାଇବେ ପିତା ଲେଉଟି ଯିବାହିଁ । ୨୮ ।
ଅଜା ଆଗେ ଓଗାଳଣ କରନ୍ତି ଚମାଲି
ହସି ରଘୁନାଥ ଯେ ଲେଉଟି ବିଜେକର । ୨୯ ।
ପୁଣି ଆସି ବ୍ରତ ମଣ୍ଡପରେ ଉଭା ହୋଇ
ରଘୁକୁଳନାଥଙ୍କୁ ଯେ ସୁବେଶ କରାଇ । ୩୦ ।

ପୁଣି ଯେଉଁ କର୍ମ ଥିଲା ଲେଉଟିଣି କଲେ
ବଶିଷ୍ଠ ଜାବାଳୀ ମିଳି ବନ୍ଦାପନା କଲେ । ୩୧ ।
ଭିକ୍ଷାପାତ୍ରେ ରାଜା ନେଇ ଦେଲେ ନାନାରତ୍ନ
ନୃପଗଣେ ଅନୁରୂପେ କଲେ ସନମାନ । ୩୨ ।
ଭିକ୍ଷା ଘେନି ଭିତରକୁ ବିଜେ ରଘୁମଣି
ମାତାମାନେ ଦେଲେ ଆଣି ନାନା ରତ୍ନମଣି । ୩୩ ।
ମୁହିଁରୁହାଁ ନାନାରତ୍ନ ଯେ ଯାହାର ନେଇ
ବନ୍ଦାପନା ଶ୍ରୀରାମଙ୍କୁ କଲେ ମହାଦେଈ । ୩୪ ।
ବନ୍ଦାଣ ସାରଣ ରାମ ଠାଆରେ ବସିଲେ
କର୍ପୂର ବଡ଼ଆ ଭୁଞ୍ଜି ନିଶ୍ଚିନ୍ତେ ରହିଲେ । ୩୫ ।
ସପତ ମଙ୍ଗଳା ସାରି ମଉଳାଏ ଗଲେ
ଶ୍ରୀରାମଙ୍କୁ ଘେନି ରାଜା ଶୁଭେ ଦେଶ ପାଳେ । ୩୬ ।

( ଧରାକୋଠ )

## ୧୬୩ । ଶସ୍ତ୍ରବିଦ୍ୟା ମଙ୍ଗଳ

ଶ୍ରୀଜଗନ୍ନାଥ ନାମ ଧରଣି ଅନୁକୂଳ
ହେବେଟି ଶତ୍ରୁକ୍ଷୟ ରଖିବେ ଆଦ୍ୟମୂଳ । ୧ ।
ଶ୍ରୀମଧୁସୂଦନ ନାମ କରିବ **ପଶୁପନ୍ଦ**
ଶତ୍ରୁଙ୍କୁ କ୍ଷୟ କରି ନାଶିବ ତାରି ଗୋନ୍ଦ । ୨ ।
ମନଙ୍କୁ **ଧନୁ** କରି ଆଗରେ ଥୋଇ ଦେବ
ଗୋବିନ୍ଦ ନାମ ଧରି ସଳଖେ ବାନ୍ଧିଦେବ । ୩ ।
ଶତ୍ରୁଙ୍କୁ କ୍ଷୟ କରି ଅଟିବ ସେହି କ୍ଷଣ
ଏ କଥା ଅଟେ ସତ ଶୁଣ ହେ ସାଧୁଜନ । ୪ ।
ନୃସିଂହ ନାମ ଗୋଟି ମନରୁ ସ୍ନେହେ ଯୋଗି
କରିବ **ଫେରିଫନ୍ଦା** ଶ୍ରୀହରି ପଦ୍ମମୁଖୀ । ୫ ।

ଅଭୟ ପଞ୍ଜରର **ବାନାକୁ** ଶିରେ ଢାଙ୍କି
ମଥାକୁ **ଟୋପର** ଯେ ଅନନ୍ତ ପଦ୍ମଆଖି । ୬ ।
**ମୁରୁଚ୍ଚ** କରିବ ମୁଁ ପଞ୍ଜର ଆଗେ କରି
ଶ୍ରୀ ମହାବାହୁ **ନଳ** କରରେ ଥିବ ଧରି । ୭ ।
ଶ୍ରୀ ଚକ୍ରଧର **ଚେମ୍ବଟ** ପକାଉଥିବ ଅଣ୍ଟେ
ଶ୍ରୀ ନାରାୟଣ **ଗଜ** ପୂରାଇ ନଳ ବାଟେ । ୮ ।
ଶ୍ରୀବାସୁଦେବ ନାମ **ରଞ୍ଜକ** କରି ଠୁଳ
ବଳ ଶ୍ରୀପୀତବାସର **ବଳତା** ଅନଳ । ୯ ।
ଦାଇତ୍ୟାରି **ଭଣ୍ଡାରେ** ଲକ୍ଷ୍ମୀଣ ବନ୍ଧିଦେବ
ମରିବେ ଶତ୍ରୁମାନେ ଏକଥା ଅଟେ ଧ୍ରୁବ । ୧୦ ।

ଶ୍ରୀରଘୁନାଥ ନାମ କରିବ **ବ୍ରହ୍ମଶର**
ସେ ଶରଘାତେ ଶତ୍ରୁ ମରିବେ ଛଇପର । ୧୧ ।
କେଶବ ନାମେ **କାଣ୍ଡ** ଗିରିଜା ଶର **ବାଡ଼**
ଇକ୍ଷୁଦଣ୍ଡ ପରାୟେ ଶତ୍ରୁଙ୍କୁ ଦେବ ପୋଡ଼ । ୧୨ ।

ଅନନ୍ତ ନାମ ଗୋଟି କରିବ **ଖଣ୍ଡା କାଣ୍ଡ**
ମାଇଲେ ଶତ୍ରୁଙ୍କର ପଡ଼ିବ ଛିଣ୍ଡି ମୁଣ୍ଡ । ୧୩ ।

ଶ୍ରୀଚକ୍ରପାଣି ନାମ କରଣ ଥିବ **ଫୁଳ**
ନୃସିଂହ ନାମ ଚିତ୍ର ଫୁଟାଇ ଦେବ ନଳ । ୧୪ ।
ନିରାକାର **ଭଣ୍ଡାକୁ** ଦେଖିବ ବେଳ ନେଇ
ତ୍ରୈଲୋକ୍ୟ କର୍ତ୍ତା **ଢାଲ** ଘୋଡ଼ାଇ ଥିବ ଗାଏ । **୧୫** ।
ଶ୍ରୀଧର ନାମ ଗୋଟି **ଗଦା ତୋଉ** କରିବ
ମୁରାରି ନାମ ଧରି **କଟାରି** କରିଥିବ । ୧୬ ।
ପୁରୁଷୋତ୍ତମ ନାମ କରଣ **ଖେଳ କୁନ୍ତ**
ପେଷିଲେ ଏକଶରେ ହୋଇବ ଶତ୍ରୁ ହତ । ୧୭ ।
ପରମେଶ୍ୱର ନାମ କରିକ **ବଡ଼ଗୁଣ୍ଡ**
ପେଷିବା ମାତ୍ରେ ଶତ୍ରୁ ହୋଇବେ ଖଣ୍ଡ ଖଣ୍ଡ । ୧୮ ।
ଶ୍ରୀକୃଷ୍ଣ ନାମ ଗୋଟି କରଣ **ବ୍ରହ୍ମଶକ୍ତି**
ଶତ୍ରୁର ବେକ ମୋଡ଼ି ପୋଡ଼ିବ ଦିବାରାତି । ୧୯ ।
ବିଷ୍ଣୁଙ୍କ ନାମ ଶର ଥିବ ଯା ହୃଦଗତେ
ତାହାକୁ ଶତ୍ରୁ ଲାଗି କି କରିପାରେ ନିତ୍ୟେ । ୨୦ ।
( ବାଞ୍ଛି )

## ୧୪ । ପୁଅବିଭା ଅଲଙ୍କାର ଗଢ଼ା ମଙ୍ଗଳ

ଅନୁକୂଳ ବେଳ ଯହୁଁ ହୋଇଲାକ ଆସି
ଲଗ୍ନବେଳ ବାର ଖୋଜି କହେ ପାଠକୋଷୀ । ୧ ।
'ଭଲ ଦିନ ଆଜ ଅଲଙ୍କାର ଗଢ଼ା ହେବ
ବାଣିକୁ ଡାକ ରାମହସ୍ତ କଣ୍ଠି ନେବ' । ୨ ।
ଶୁଣି ମନ୍ତ୍ରୀବର ପୁର ମଣ୍ଡଣି ଯେ କଲେ
ଶତଦଳ ପଦ୍ମ କାଟି କୁମ୍ଭ ବସାଇଲେ । ୩ ।
ମାଣିକ୍ୟର ଦୀପାବଳୀ ଜାଳିଲେକ ତହିଁ
ସୁବର୍ଣ୍ଣ ଥାଳରେ ସଞ୍ଚା ବାଢ଼ିଲେକ ନେଇ । ୪ ।
ମଧୁ ଯେ ସାକର ଚୂତପତ୍ର ବରକୋଳି
ବରୁଣ ପୂଜା ବିଧାନ କଲେ ବିପ୍ର ମିଳି । ୫ ।

ରନ୍ ଖରଡ଼ରେ ବଟେଇ କଲେ ରଘୁବୀର
ଶ୍ରୀଭୁଜ ପାଖକୁ ଆଉଜାଇ ଅପସର । ୬ ।
ବନ୍ଧାଣି କୁମର ପାଦେ ଶିର ଲଗାଇଲେ
ଅନାମିକା ଅଙ୍ଗୁଷ୍ଠି ଚଣ୍ଡିରୁ କଣ୍ଟ ନେଲେ । ୭ ।
ଗାଇଲେ ମଙ୍ଗଳ ଗୀତ ଅନ୍ତଃପୁର ନାରୀ
ବାଦ୍ୟ ନାଦ ଶବଦରେ କମ୍ପୁଅଛୁ ପୁରୀ । ୮ ।
ଚନ୍ଦନ କାଠରେ ଭଗ୍ନଶାଳ ନର୍ମ୍ମି କଲେ
ସାତ ମାଢ଼ କାମ୍ବୁନଦ ସୁନା ଫୁଙ୍କାଇଲେ । ୯ ।
ସୀତା ଶୁଦ୍ଧ ସୁନା ରାମ କଷଟିପଥର
ଏହି ଭାବେ କଷିଲେ ସେ ବନ୍ଧାଣି କୁମର । ୧୦ ।
ଶ୍ରୀରାଘବ ନାମକୁ ଫୁଟରେ ପୁଟଦେଲେ
ମହୀ ସ୍ଥଳ ଅଙ୍ଗକାନ୍ତି ଝଲରେ ଝାଳିଲେ । ୧୧ ।
ଦଶ ଅବତାର ହାର ଗଢ଼ିଲେ ବନ୍ଧାଣି
ମତ୍ସ୍ୟ ଅବତାର ମୁଦ ଖଞ୍ଜିଦେଲେ ଆଣି । ୧୨ ।
ଶାଢ଼ୀ ପରସାଦ ପାଇ ନିଜପୁର ଗଲେ
ରଘୁନାଥ ଅଙ୍ଗ କାନ୍ତି ଉଝଟ ଦଶିଲେ । ୧୩ ।

( ମହୁରୀ )

## ୧୪ । ପାଆପିଠା ମଙ୍ଗଳ (୧)

ଏଥୁ ଅନନ୍ତରେ କଥା ଶୁଣ ସାଧୁଜନ
କଉଶଲ୍ୟାଙ୍କୁ କହିଲେ ଅଯୋଧ୍ୟା ରାଜନ । ୧ ।
'ଶୁଭଲଗ୍ନ ବେଳ ଆସି ହୋଇଲାକ ପୁଣି
ପାଦ ପିଠାଇ ବସିବେ ରଘୁକୁଳମଣି' । ୨ ।
ପୁଣି ଦଶରଥ ରାଜା ବେଗେ ଚଳିଗଲେ
ବଶିଷ୍ଠଙ୍କୁ ହକାରଣ ଲଗ୍ନ ଖୋଜାଇଲେ । ୩ ।
ବଶିଷ୍ଠ କହିଲେ, 'ତୁମ୍ଭେ ଶୁଣ ନୃପବର,
ପାଦପିଠା ବେଳ ଆସି ହେଲା ଅନୁକୂଳ' । ୪ ।

ଦଶରଥ ଆଜ୍ଞାଦେଲେ 'ମୃଦୁସୁଲ୍ ଯାଅ
ପାଦଫିଠା ବଧି ତୁମ୍ଭେ ବହନ କର୍‌ଅ' । ୫ ।
ମୃଦୁସୁଲ୍ ଜଣାଇଲେ 'ମହାଦେଈ ଅଗ
ପାଦ ଫିଠା ବେଳ ହେଲା କର ଉଦଯୋଗ' । ୬ ।

ଶୁଣି ମହାଦେଈମାନେ ହୋଇଣ ଉତ୍ସୁକ
ରତ୍ନମଣ୍ଡପ ସଜାଡ଼ ବହନ କଲେକ । ୭ ।
ଇନ୍ଦ୍ର ଗୋବିନ୍ଦର ପାଟଗୃନ୍ଦୁଆ ଟାଣିଲେ
ମୁକୁତା ତୋରଣ ଚଉକଡ ଲମ୍ବାଇଲେ । ୮ ।

ରତ୍ନ କଳଶ ବସାଇ ଚୂତପତ୍ର ଡାଳେ
ଦଧିଘୃତ ସାକର ଯେ ବାଢ଼ିଲେ ସକଳେ । ୯ ।
ରତ୍ନ ଖରଡ଼ ପକାଇ ଜାଳି ରତ୍ନଦୀପ
ପାଦ ଫିଠାଇ ବସିବେ ରଘୁକୁଳ ନୃପ । ୧୦ ।

ବାଜଇ ବିବିଧ ବାଦ୍ୟ ଶଙ୍ଖ ହୁଳହୁଳି
ବାଦ୍ୟନାଦ ଶବଦରେ ବ୍ରହ୍ମାଣ୍ଡ ଉଚ୍ଛୁଳି । ୧୧ ।
ସୁଲକ୍ଷଣୀ ନାପିତୁଣୀ ବସିଲାକ ଯାଇ
ରଘୁନାଥ ପାଦପଦ୍ମ ଫିଠାଇବା ପାଇଁ । ୧୨ ।
ପାଦ ଫେଇ ସାର୍ ରଙ୍ଗ ଅଳତା ଲିହିଲା
ରଘୁନାଥ ପାଦପଦ୍ମ ସୁନ୍ଦର ଦିଶିଲା । ୧୩ ।
ଦ୍ରବ୍ୟ ବସ୍ତ୍ର ନଧି ଘେନି ଗଲା ସୁଲକ୍ଷଣୀ
ବରବେଶ ହୋଇଣ ବସିଲେ ରଘୁମଣି । ୧୪ ।

( ଅଜ୍ଞା )

## ୧୬ । ପାଆଫିଠା ମଙ୍ଗଳ (୨)

ବସିଲେ ଶ୍ରୀରାମଚନ୍ଦ୍ର ରତ୍ନ ଖରଡ଼ର
ଶ୍ରୀଭୁଜ ପାଖକୁ ଆଉଜାଇ ଅପସର । ୧ ।
ଶ୍ରୀଚରଣ ଧରେଣ ନାପିତ ପାଶେ ବସି
ପାଆ ଫିଠା ବଧିମାନ ମଣ୍ଡପକୁ ଆସି । ୨ ।

ଦଧିଗୁଡ଼ ସଞ୍ଚାମାନ ପାଇଁ ମନ ଭରି
ପୂର୍ଣ୍ଣକୁମ୍ଭ ଥାପିଲେ ଶ୍ରୀଫଳ ଚୂତକେରି । ୩ ।
ବାନ୍ଧଣି ବଟବ ଇନ୍ଦ୍ରଗୋବନ୍ଦ ଗୁନ୍ଧୁଆ
ରତ୍ନଦୀପ ଜଳଇ ହସନ୍ତ ମାରି ଶୁଆ । ୪ ।
ସୁରଙ୍ଗ ପତନ କୁଆଁ ଲମ୍ବାଇ ବହୁତ
ଶ୍ୱେତ ଯେ ବସନ୍ତ ରଙ୍ଗ ଉଡ଼େ ଧ୍ୱଜ୍ୟନେତ । ୫ ।
ନାନା ଯତ୍ନେ ମାଣିକ୍ୟ ମୁକୁତା ଗୁନ୍ଥି କରି
ନେଇ ଚଉପାଶେ ଲମ୍ବାଇଲେ କେରି କେରି । ୬ ।
ପାଟନେତ ଗୃମର ମଣ୍ଡଣି କ କହିମା
ସ୍ୱର୍ଗପୁରୁ ଆସି କବା ପଡ଼ିଲେ ସୁଧର୍ମା । ୭ ।
କର୍ପୂର କସ୍ତୁରି ଗନ୍ଧ ଘେନଣି କାମିନୀ
ଚନ୍ଦନ ପିଟକା ମାରି ପନ୍ନଅର ପାଣି । ୮ ।
ସକଳ କାମିନୀ ମିଳି ହୁଳହୁଳି ଦ୍ୟନ୍ତି
ସୁଲକ୍ଷଣୀ ସୁଲଳିତେ ମଙ୍ଗଳ ଗାବନ୍ତି । ୯ ।
ଲକ୍ଷେ ଶଙ୍ଖ ମହୁରି ବାଜଇ ବାଦ୍ୟନାଦ
ସ୍ୱର୍ଗରେ ଗନ୍ଧର୍ବ କଲେ ଦୁନ୍ଦୁଭି ଶବଦ । ୧୦ ।
ଶ୍ରୀପଦ୍ମ ପୟରକୁ ନାପିତ କରେ ଧରି
ଅଳତା ଦଅଇ ପାଦ ଶୋଭା ଅନୁସରି । ୧୧ ।
ଇନ୍ଦ୍ରଗୋପ ଜିତ ରଙ୍ଗ ଚରଣର ପ୍ରଭା
ପଙ୍କୁରନ୍ତ ଯୋଗେ ପଦ୍ମ ଫୁଟିଲା କି ଅବା । ୧୨ ।
ହୀରା ନୀଳା ମାଣିକ୍ୟ ପ୍ରବାଳ ଚନ୍ଦ୍ରକାନ୍ତି
ଏକା ରାମଚନ୍ଦ୍ର ବଂଶ ଚନ୍ଦ୍ରେ ଶୋଭା ପାନ୍ତି । ୧୩ ।
ଆଉ ଏକ ଚନ୍ଦ୍ର ରାମ ଶ୍ରୀମୁଖ ମାଧୁରୀ
ଉଭା ହେଲେ ରାମଚନ୍ଦ୍ର ପାଅ ପିଢା ସାରି । ୧୪ ।
ଶ୍ୟାମଳ ଅଙ୍ଗେ ଚନ୍ଦନ ପୟରେ ଅଳତା
ଉଭା ହୋଇଛନ୍ତି ପ୍ରଭୁ ଜଗତକରତା । ୧୫ ।
କଟୀ ପୀତବସ୍ତ୍ରେ ଶୋହେ କନ୍ଧରେ ପଇତା
ଲଲାଟେ ଚନ୍ଦନ ବିନ୍ଦୁ ଗୋରୋଚନା ଚିତା । ୧୬ ।

ଅଧରେ ତାମ୍ବୁଳ ରାଗ ନୟନେ ଅଞ୍ଜନ
ଅଭିନବ ଶ୍ୟାମ ମୂର୍ତ୍ତି ନବୀନ ମଦନ । ୧୭ ।
ଜୟ ଜୟ ଶବଦ ଶୁଭଇ କୋଳାହଳ
ଆକାଶରେ ପୁଷ୍ପ ବୃଷ୍ଟି କଲେ ଆଖଣ୍ଡଳ । ୧୮ ।
( ବରୋଳ )

## ୧୭ । ପନାଅର ଲଗି ମଙ୍ଗଳ

ଏଥୁ ଅନନ୍ତରେ ଶୁଣ ଅପୂରୁବ ବାଣୀ
ପନାଅର ଲଗି ହେବେ ରଘୁକୁଳମଣି । ୧ ।
ବାଜିଲକ ଶଙ୍ଖଭେରୀ ମଙ୍ଗଳ କାହାଳୀ
ଗାଇଲେ ମଙ୍ଗଳ ଗୀତ ଦେଲେ ହୁଳହୁଳି । ୨ ।
ଶତଦଳ ପଦ୍ମ କାଟି କୁମ୍ଭ ବସାଇଲେ
ମାଣିକ୍ୟର ଦୀପ ନେତ ବଳିତା ଜାଳିଲେ । ୩ ।
ସୁବର୍ଣ୍ଣ ଥାଳିରେ ସଞ୍ଜା ଘୃତୁରେଣ ଥୋଇ
ଦଧି ଘୃତ ଗୁଡ଼ ମଧୁ ତହିଁ ଦେଲେ ନେଇ । ୪ ।
ପାଟର ଖରଡ଼େ ବିଜେ କଲେ ରଘୁବୀର
ଶ୍ରୀଭୁଜ ପାଖକୁ ଆଉଜାଇ ଅପସର । ୫ ।
ରତ୍ନ ଖଟିଆ ମଧ୍ୟରେ ପନାଅର ଗୋଳି
ଚନ୍ଦନ ସହିତେ ତହିଁ ଥୋଇଲେକ ବାଲି । ୬ ।
ବସିଲେ ଶ୍ରୀରାମଚନ୍ଦ୍ର ରତ୍ନ ଚଉକୀର
କରଯୋଡ଼ି ନାପିତ କମ୍ପଇ ଥରହର । ୭ ।
କମ୍ପମାନ ହୋଇଣ ଯେ କହଇ ବଚନ,
'ଆଜ୍ଞା ହେଲେ ନିମୁଣ୍ଡି ମୁଁ କରିବି ମଣ୍ଡନ' । ୮ ।
ଶୁଣିଣ ରାଘବ ବିଜେ ହସ ହସ ହୋଇ
କହିଁତ ଅବଧାନ ଯେ ନାପିତକୁ ଚାହିଁ । ୯ ।
ସୀଉକାର ପାଇ କର ଶିରେ କର ଦେଇ
ମୁଠି ଧେନା ଶ୍ରୀଘୃତୁରେ ବସିଲକ ଯାଇ । ୧୦ ।

ସୁବର୍ଣ୍ଣର ଖୁର ହୀରା ସାହାଣେ ସାଜିଲା
ମଧୁ ଯେ ଶାକର ନେଇ ନଇବେଦ୍ୟ ଦେଲା । ୧୧ ।
ତହିଁ ଉତ୍ତାରେ ସିମୁଣ୍ଡି କଲାକ ବପନ
କଲା ଘନେ ଖେଳୁଛ୍ଛ କି ଦ୍ୱିତୀୟାର ଜହ୍ନ । ୧୨ ।
ଅଧାଚନ୍ଦ୍ର କପୋଳେ ରେଖିଲା ଯତ୍ନ କରି
ପଦ୍ମ ବେଢ଼ି ବସିଲେ କି ଚଞ୍ଚରିକ ଧାଡ଼ି । ୧୩ ।
କସ୍ତୁରୀ ରଞ୍ଜିଲା ନାଶ ମଧ୍ୟରେ ରଖିଲା
ଗଣ୍ଡସ୍ଥଳେ ଗାଲମୋଗ୍ରୁ ମୁଗିର ରଖିଲା । ୧୪ ।
କର୍ଣ୍ଣ ମୂଳେ ଲଲିପି ଝୁଲଇ ମନ୍ଦବାଏ
ସଂପୂର୍ଣ୍ଣ ଚନ୍ଦ୍ରକୁ ରାହୁ ଗ୍ରାସିଲା ପରାୟେ । ୧୫ ।
ଭ୍ରୂଲତାରେ ଥିଲା କାଣି ପ୍ରଖର କତୁରୀ
ତାର ଶୋଭା କି କହିବା ମାରଧନୁ ପରି । ୧୬ ।
କଣ୍ଠ ଦେଶେ ରୋମାବଳୀ ରେଖା ତାର ଥିଲା
କରପଦ୍ମ ଲଖପଦ୍ମ ନଖ ସମାର୍କିଲା । ୧୭ ।
ପାଦେ ଓଲଗି ନାପିତ ହୋଇଲା ମେଲାଣି
ପନ୍ୟର ଲାଗି ମଙ୍ଗଳ ଏକେଶ୍ୱର ଭଣି । ୧୮ ।

( ଜୟପୁର )

## ୧୮ । ସ୍ନାନ ମଙ୍ଗଳ

ପାହିଲା ରଜନୀ ଯହୁଁ ଉଠିଲେ ଜନନୀ
ସ୍ନାହାନ କରିବେ ମୋର ରଘୁକୁଳମଣି । ୧ ।
ଶତଦଳ ପଦ୍ମ କାଟି କୁମ୍ଭ ବସାଇଲେ
ମାଣିକ୍ୟର ଦୀପାବଳି ଘୁମୁରେ ଜାଳିଲେ । ୨ ।
ସୁବର୍ଣ୍ଣ ଥାଳିରେ ସଞ୍ଜା ସେଠାରେ ବାଢ଼ିଲେ
ହୁଳହୁଳି ଦେଇ ଦାସୀ ମଙ୍ଗଳ ଗାଇଲେ । ୩ ।
ସୁବର୍ଣ୍ଣ ପିଢ଼ା ଉପରେ ରାମ ବିଜେକଲେ
ନବ ଗୁହ ଗନ୍ଧ ନେଇ ମଥାରେ ବୋଳିଲେ । ୪ ।

ଥୋକାଏ ଯୁବତୀ ମିଳି କୁଙ୍କୁମ ଲେପିଲେ
ଥୋକାଏ ଯୁବତୀ ମିଳି ହୁଳହୁଳି ଦେଲେ । ୫ ।
ରତ୍ନ ଗଉଅରେ ନୀର ଯୋଗାଡ଼ିଲେ ନେଇ
ସ୍ନାହାନ କରବେ ପ୍ରଭୁ ରଘୁକୁଳସାଇଁ । ୬ ।
ସ୍ନାହାନ କରଣ ରାମ ଶ୍ରୀଅଙ୍ଗ ପୋଛିଲେ
ସୁବର୍ଣ୍ଣ କଠାଉ ମାଡ଼ି ଭିତରକୁ ଗଲେ । ୭ ।
ସୁବର୍ଣ୍ଣ କଠାଉ ମାଡ଼ି ଭିତରକୁ ବିଜେ
ନୟନମାଳୀ ଶ୍ରୀରାମ ପଦକଞ୍ଜ ଭଜେ । ୮ ।

( ଝିଙ୍କଲି )

## ୧୯ । ପୁଅ ବଗ୍ର କୋଇଲିବୁଡ଼ ମଙ୍ଗଳ

ପାହିଲା ରଜନୀ ଯହୁଁ ଉଠିଲେ ଜନନୀ
ସ୍ନାହାନ କରବେ ମୋର ରଘୁକୁଳମଣି । ୧ ।
ସ୍ନାହାନ କରବେ ମୋର ରଘୁକୁଳସାଇଁ
ସୁବର୍ଣ୍ଣ ଝରରେ ନୀର ଯୋଗାଡ଼ିଲେ ନେଇ । ୨ ।
କର୍ପୂର କସ୍ତୁରୀ ଅଁଳା ନର୍ଭୀକର ଆଣି
ସ୍ନାହାନ କରବେ ରାମ ଦିଅ କୌଳି ପାଣି । ୩ ।
ଅନେକ ଯୁବତୀ ମିଳି ମଙ୍ଗଳ କରନ୍ତି
ଥୋକାଏ ଯୁବତୀ ତହିଁ କୁଙ୍କୁମ ଲେପନ୍ତି । ୪ ।
କୁଙ୍କୁମ ଲେପନ୍ତି ବାଳୀ ଶିରେ କୁମ୍ଭ ଢାଳି
ଶିରେ କୁମ୍ଭ ଢାଳି ବାଳୀ ଦେଲେ ହୁଳହୁଳି । ୫ ।
ସ୍ନାହାନ ସାରଣ ଝିନ ପତନି ପିନ୍ଧିଲେ
ସୁବର୍ଣ୍ଣ କଠାଉ ମାଡ଼ି ଭିତରକୁ ଗଲେ । ୬ ।
ଦଧିଗୁଡ଼ ଅନ୍ନ ମାଏ ଶ୍ରୀମୁଖରେ ଦେଲେ
ଭୁଞ୍ଜିବାକୁ ରଘୁନାଥ ବୋଲଣ ବୋଇଲେ । ୭ ।
ମଣୋହି ସାରଣ ରାମ ଅଚମନ କଲେ
କର୍ପୂର ତାମ୍ବୂଳ ଦାସୀ ନେଇ ଭୁଞ୍ଜାଇଲେ । ୮ ।

( କୁଜଙ୍ଗ )

## ୨୦ । ମଙ୍ଗୁଳୁତଭୁଞ୍ଜା ମଙ୍ଗଳ

କହୁଛନ୍ତି ଦଶରଥ କୌଶଲ୍ୟାଙ୍କୁ ଚାହିଁ
ବତ୍ସ ଯେ ନିକଟ ହେଲା ଶୁଣ ମହାଦେଈ । ୧ ।
ବତ୍ସର ମଙ୍ଗଳ ମଙ୍ଗୁଳାତ ବଧି କର
କାଲି ଅନୁକୂଳ ହେବ ପହରେ ଭିତର । ୨ ।
ଶୁଣି କଉଶଲ୍ୟା ମନେ ହୋଇଲେ ଆନନ୍ଦ
ମୁଖ ପ୍ରକାଶଇ ଯଥା ପୂର୍ଣ୍ଣମୀର ଚାନ୍ଦ । ୩ ।
ମଙ୍ଗୁଳୁତ ଭୁଞ୍ଜିବାକୁ ଅନୁକୂଳ କଲେ
ସୁବର୍ଣ୍ଣର ପୂର୍ଣ୍ଣକୁମ୍ଭ ଆଗରେ ଥୋଇଲେ । ୪ ।
ମାଣିକ୍ୟର ଦୀପାବଳୀ ବସାଇଲେ ନେଇ
ଦଧିମାଛ ପୂର୍ଣ୍ଣକୁମ୍ଭ ସମ୍ମୁଖରେ ଯେ ଥୋଇ । ୫ ।
ଲକ୍ଷେ ବାଦ୍ୟ ଲକ୍ଷେ ଶଙ୍ଖ ଲକ୍ଷେକ ମହୁରୀ
ଗୀତ ହୁଳହୁଳିରେ ବ୍ରହ୍ମାଣ୍ଡ ଅଛି ପୂରି । ୬ ।
ପୂର୍ଣ୍ଣ କୁମ୍ଭ ବଇଠକ ବୋଲି ଏବେ ଜାଣ
ଚୂତପତ୍ର ତୁଳସୀ ଚୂଳକୁ ପରମାଣ । ୭ ।
ପୂର୍ଣ୍ଣକୁମ୍ଭ ଉପରେ ଯେ ଶ୍ରୀଫଳ ଅଛଇ
ନାସିକା ବର୍ତ୍ତୁଳକୁ ଶ୍ରୀଫଳ ବୋଲି କହି । ୮ ।
ରମ୍ଭାତରୁ ବେଣୀଭୁଜ ବେଣୀଜାନୁ ଶୋଭା
ଦନ୍ତପନ୍ତି ତଣ୍ଡୁଳ ଯେ କି ଉପମା ଦେବା । ୯ ।
ରୋହିଣୀନନ୍ଦନ ଚନ୍ଦ୍ର କର ଅନୁକୂଳ
ବାରବ୍ରତ ତୀର୍ଥ ଯୋଗ ସେହି ସିନା ମୂଳ । ୧୦ ।
ରେବତୀବଲ୍ଲଭ ଯେବେ ହୋଇଥିବେ ସାହା
କି କରିବ ବାର ତିଥି ଯୋଗ ଲଗ୍ନ ରାହା । ୧୧ ।

( ବାମଣ୍ଡା )

## ୨୧ । ବନ୍ଦାପନା ମଙ୍ଗଳ

ଜଗନ୍ନାଥ ପ୍ରଭୁଙ୍କର ବନ୍ଦାପନା ବେଳେ
ସ୍ୱର୍ଗର ଦେବତାମାନେ ମିଳିଲେ ସକଳେ । ୧ ।
ଶ୍ରୀମୁଖକୁ ଚାହିଁ କର ଶିରେ କର ଦ୍ୟନ୍ତି
ନମସ୍ତରଲୁଁ ବୋଲି କର ଦେବେ ଡାକ ଦ୍ୟନ୍ତି । ୨ ।
ବେଶ ହୋଇଛନ୍ତି ଯେ କମଳା ଦେବୀ ନାହା
ବସନ୍ତ କେଦାର ପାଗ ଶ୍ରୀମୁଖକୁ ଶୋଭା । ୩ ।
ହୀରା ନୀଳା ମୋତି ମାଣିକ୍ୟରେ କଣ୍ଠିମାଳ
ରତ୍ନ ଚିହ୍ନ ରେଖା ଶୋଭା କର୍ଣ୍ଣରେ କୁଣ୍ଡଳ । ୪ ।
ଶ୍ରୀଗଣ୍ଡ କପୋଳେ ଛଟା ରତ୍ନ କାମଶୋଭା
ଦେଖି ସୁରନର ମନ ହେଉଅଛି ଲୋଭା । ୫ ।
ଲଲାଟେ ଅଳକା ବୋଲି ହୀରାରେ ଖଞ୍ଜିଣି
ଶ୍ରୀମୁଖମଣ୍ଡଳ ଜିଣି ଦଶେ ଶୋଭା ଠାଣି । ୬ ।
ମରକତ ପଦକ ଶୋଭଇ ହୃଦୟରେ
ବାଘ ନଖ ଖଞ୍ଜିଦେଲେ ସୁବର୍ଣ୍ଣ ଖୋଳରେ । ୭ ।
ଡମ୍ବରୁମଝାକୁ ଓଢ଼ଣୀ ଶୋହାବନ
ବାହାରେ ବାହୁଟି ପ୍ରଭୁ ଶ୍ରୀଭୁଜେ କଙ୍କଣ । ୮ ।
ଶ୍ରୀପଦ୍ମରେ ନୂପୁର ଖଞ୍ଜଣି ପୀତବାସ
ଦେଖି ବଶ ହେଉଛନ୍ତି ସକଳ ତ୍ରିଦଶ । ୯ ।

ଦେବାଙ୍ଗ ପଟନ୍ତ ମନ୍ତ୍ରୀ ଗାଇ ଘେନ ଆସି
ସିଦ୍ଧ ରଘୁନାଥ ବୀର ଅସ୍ଥାନରେ ବସି । ୧୦ ।
ବେଢ଼ି ମାତାଏ ମିଳଣ ସୁବେଶ କରନ୍ତି
ନାନାରତ୍ନ ମଣି ଅଙ୍ଗେ ମଣ୍ଡଣି କରନ୍ତି । ୧୧ ।
ଦୂର୍ବାକ୍ଷତ ଘେନଣ ବନ୍ଦାନ୍ତି ସର୍ବ ମାଏ
ସ୍ୱର୍ଗେ ସୁର ବ୍ରହ୍ମା ମିଳି କଲେ ଜୟେ ଜୟେ । ୧୨ ।
ଭୁଞ୍ଜିବା ଠାବରେ ମାଏ ବସାଇଲେ ନେଇ
ନାନା ବର୍ଣ୍ଣ କ୍ଷୀରିପିଠା ପରସନ୍ତି ତହିଁ । ୧୩ ।

ଭୋଜନ ସମ୍ପୂର୍ଣ୍ଣେ ଆଚମନ ବଢ଼ାଇଲେ
କର୍ପୂର ତାମ୍ବୂଳ ମାଏ ବେଗେ ଯୋଗାଇଲେ । ୧୪ ।
ମଙ୍ଗଳ କର ବାଳୀଏ ଗାଅନ୍ତୁ ଦିବ୍ୟବାଣୀ
ସର୍ବ ମଙ୍ଗଳ ହୋଇବ ରାମ ରାମ ବାଣୀ । ୧୫ ।

( ଢଗିରିଆ )

## ୨୨ । ଅନୁକୂଳ ମଙ୍ଗଳ (୧)

ଜୟ ଜୟ ଜଗନ୍ନାଥ ସର୍ବ ଯେ ମଙ୍ଗଳ
ଲକ୍ଷ୍ମୀ ନରସିଂହ ଧ୍ୟାୟି ହୁଅ ସେ ବାହାର । ୧ ।
ଦୁର୍ଗାମାଧବଙ୍କ ନାମ ଯାତ୍ରା ଯୋଗେ ସାର
ଦଧିବାବନ ସୁମର ହୁଅ ସେ ବାହାର । ୨ ।
ମଙ୍ଗଳ ମଧୁସୂଦନ ବିଘ୍ନବିନାଶନ
ମଙ୍ଗଳ ପୁଣ୍ଡରୀକାକ୍ଷ ଗରୁଡ଼ଆସନ । ୩ ।
ମତ୍ସ୍ୟ, କଚ୍ଛ, ବରାହ ତ୍ରିବିକ୍ରମ କେଶରୀ
ପର୍ଶୁରାମ ବଳରାମ ନାମ ନରହରି । ୪ ।
ବଉଦ୍ଧ କଲକୀ ଦଶ ଅବତାର ନାମ
ହୃଦେ ଧରି ଯାତ୍ରା କର ଚଲ ହେ ସୁଜନ । ୫ ।
ବାର ତିଥି ତାର ଚନ୍ଦ୍ର ଯୋଗ ଲଗ୍ନ ତିଥି
କିଛି ନ ବିଗୁର ମନେ ଶନ୍ତି ଲକ୍ଷ୍ମୀପତି । ୬ ।

( ଢଗିରିଆ )

## ୨୩ । ଅନୁକୂଳ ମଙ୍ଗଳ (୨)

ଅନୁକୂଳକୁ ମଙ୍ଗଳ କମଳାର ସାଇଁ
କମଳ ବଦନ ମୁଖ ପରମୁଣ୍ଡା ଯାଇ । ୧ ।
ଦଧିରସ ଅଭ୍ର ଜଣି ଦଶେ ବେନି ବାହା
ମାଛ ପ୍ରାୟ ବେନି ଚକ୍ଷୁ ଧୀର କରି ଗୁହାଁ । ୨ ।

ବସନ୍ତପତନୀ କଣ୍ଠୀ ମେଖଳାକୁ ସାଜେ
ବୀରବେଶ ହୋଇ ରତ୍ନ ସିଂହାସନେ ବିଜେ । ୧୦ ।
ବନ୍ଧାପନା ବେଶକୁ ଉପମା ଅଉ ନାହିଁ
ଦେଖି ସୁର ନର ମନ ହେଉଅଛି ମୋହି । ୧୧ ।
ସୁନ୍ଦରତର ଶୋଭା ବେଶ ଦର୍ଶନ ମୁଁ କଲି
ବନ୍ଧାପନା ସଭାବେଶ ଗୀତରେ ଭଣିଲି । ୧୨ ।
( ପୁରୀ )

## ୨୪ । ବିବାହ ମଙ୍ଗଳ

ଶୁଭ ଅନୁକୂଳେ ରାମ ହୋଇଲେ ବାହାର
ଗହଳ ଚହଳ ଶୁଭେ ଅଯୋଧ୍ୟା ନଗର । ୧ ।
ଶ୍ରୀରାମ ବିଭା ହୋଇବେ ଜନକଦୁଲଣୀ
ଲକ୍ଷେ ରଜା ସଙ୍ଗତରେ ଯେଉଁ ରଘୁମଣି । ୨ ।
ହସ୍ତୀ ଅଶ୍ୱ ପଦାତି ଯେ ଗଜ ମଦମତ୍ତ
ମୁକ୍ତା ମଣ୍ଡିତ ଶୁଣ୍ଢ ନେତବନ୍ଧା ଦନ୍ତ । ୩ ।
ଝଁକ ଝଁକ ହୋଇ ଯେ ରାଉତେ ଝଁଲକନ୍ତି
ଚନ୍ଦ୍ରଦୀପ ଦହୁଡ଼ି ଜଳଇ ପନ୍ତି ପନ୍ତି । ୪ ।
ବାଜଇ ଢମକ ଯେ ନିଶାଣ ବଜେ ଘୋଷ
ବୀରବାଦ୍ୟ ଶବଦରେ କମ୍ପଇ ଆକାଶ । ୫ ।
ଲକ୍ଷେ ଶଂଖ ବାଜଇ ଯେ ଲକ୍ଷେକ ଶରାଳ
ଲକ୍ଷ ଲକ୍ଷ ହୋଇ ରାଜେ ଆଲମ୍ବ ବିମଳ । ୬ ।
ଲକ୍ଷେକ ଶ୍ୱେତ ଚାମର ଚମକ ଚହଟ
ଲକ୍ଷେକ ମୁରଲୀ ବାଜେ ନିଭାର ମୁରାଠ । ୭ ।
ଲକ୍ଷ ଲକ୍ଷ ଛତ୍ର ଯେ ଟେକାଇ ରଘୁମଣି
ଛତ୍ରଙ୍କ ଛାୟାରେ ଯେ ଅଦୃଶ୍ୟ ଦିନମଣି । ୮ ।
ଲକ୍ଷ ଲକ୍ଷ ଭାଟ ପୁଣ କରନ୍ତି ଗାୟନ
ଠାବେ ଠାବେ ଝଁଝଁର ଫୁଟେ ରଙ୍ଗାବାଣ । ୯ ।

ଚକ୍ରବାଣ ଚନ୍ଦ୍ରବାଣ ଭୂମି ଯେ ହାବେଳା
ଆକାଶେ ଗର୍ଜନ୍ତ ବାଣ ଜଣି ତାରାବଳା । ୧୦ ।
ଅଶ୍ୱ ହ୍ରେଷା ରାବ ପୁଣି ଗଜ ଘଣ୍ଟ ଧ୍ୱନି
ଗହଗହ ଶବଦେ ଯେ କମ୍ପଇ ମେଦିନୀ । ୧୧ ।
ପାତ୍ର ସାମନ୍ତ ଅମାତ୍ୟ ବିପ୍ରଗଣମାନେ
କେ ରଥ କେ ଗଜ ଅଶ୍ୱ ଅରୋହି ଗହଣେ । ୧୨ ।
ଆଗ ପଛୁଅରେ ଦଶରଥ ନୃପବର
ଲକ୍ଷେ ଶ୍ୱେତ ଛତ୍ର ଉଡ଼ୁଅଛୁ ଯାର ଶିର । ୧୩ ।
ଶ୍ୱେତ ମତ୍ତଗଜ ପରେ ବିଜୟେ ନରେନ୍ଦ୍ର
ସ୍ୱର୍ଗତେଜ ମହୀରେ କି ବିହରନ୍ତି ଇନ୍ଦ୍ର । ୧୪ ।
ଗଜପରେ ପତାକା ଯେ କରପରେ ଛତ୍ର
ଓଟପରେ ଦମାଲ୍ ଯେ ଅଶ୍ୱମୁଣ୍ଡେ କାତ୍ର । ୧୫ ।
ରଥରେ ଝମକ ବାଜେ ସିନ୍ଧୁଘୋଷ ଜଣି
ମଧ୍ୟ ଘୋର ସମ୍ଭାରେ ବିଜୟେ ରଘୁମଣି । ୧୬ ।
ସଙ୍ଗେ ଘେନି ଭରତ ଲକ୍ଷ୍ମଣ ଶତ୍ରୁଘନ
ଗୁରୁଙ୍କର ବରବେଶ ଅପୂର୍ବ ଶୋଭନ । ୧୭ ।
ପଡ଼ଇ ଯେ ହୁଳହୁଳି ଗାବନ୍ତି ଗାଆଣି
ଆଗେ ବିପ୍ରେ ମିଳି କରୁଛନ୍ତି ବେଦ ଧ୍ୱନି । ୧୮ ।
ଶ୍ୱେତପାଟ ରାଜହଂସ ସୁଲଭ କାମିନୀ
ଶିରେ ପୂର୍ଣ୍ଣକୁମ୍ଭ ଘେନି ଆଗେ ଅଗୁଆଣି । ୧୯ ।
ଅବିରତ କୁସୁମ ଯେ ହେଉଅଛୁ ବୃଷ୍ଟି
ଭଲଟି ପଡ଼ିବ କି ଏ ନବଖଣ୍ଡ ସୃଷ୍ଟି । ୨୦ ।
ସର୍ବ ଶୁଭେ ସୁମଙ୍ଗଳେ ବିଜେକର ଗଲେ
ଜନକ ନଗରେ ଯାଇ ପ୍ରବେଶ ହୋଇଲେ । ୨୧ ।

( ସାନଖେମୁଣ୍ଡି )

## ୨୫ । ଦୁଧଭରଣ ମଙ୍ଗଳ

ଦଶରଥ ଘରେ ନାମ୍ବି ସମସ୍ତେ ଅନନ୍ଦ
କାଲି ବଡ଼ୀ ହେବେ ପ୍ରଭୁ ରଘୁକୁଳଚନ୍ଦ୍ର । ୧ ।
ଉତ୍ସବ ଅନନ୍ଦ ପୁରେ ଶୁଭେ ହୁଳହୁଳି
ବାଜଇ ବିବିଧ ବାଦ୍ୟ ପଠାଳ ମହୁରୀ । ୨ ।
ଏଥୁ ଅନନ୍ତରେ ଯେ ତୃତୀୟ ଦିନ ଗଲା
ଚତୁର୍ଥ ଦିନରେ ଦୁଧଭରଣ ହୋଇଲା । ୩ ।
ରାଜ୍ୟରେ ଗଉଡ଼ ଯେ ଯେତେକ ଘରମାନ
ସକଳେ ଅନନ୍ଦ ହୋଇ ମିଳିଲେ ବହନ । ୪ ।
ସକଳ ଗୋପାଳେ ଦୁଇ ଭାର କରି ଦେଲେ
ରାଜନ ମନ୍ଦରେ ଦୁଧଭରଣ ଯେ କଲେ । ୫ ।
ମାଆଙ୍କୁ ଯେଉଁ ଅଞ୍ଜୁଳି ଦେଇଥିଲେ ରାମ
ସେହି ଗୃଉଳେ ଭରଣ କଲେ ହର୍ଷ ମନ । ୬ ।
ଅମୃତ ମଣୋହି କରି ମୁଛି ଦେଉଛନ୍ତି
ଦୁଧଭରଣ ଯେ ନଗ୍ରବାସିଏ ନିଅନ୍ତି । ୭ ।
ସମସ୍ତ ନଗ୍ର ବାଳୁତେ ଘେରି ରହିଛନ୍ତି
ଅନେକ ଅନନ୍ଦ ହୋଇ ସରବେ ନାଚନ୍ତି । ୮ ।

ଅଯୋଧ୍ୟା କଟକେ ମାଏ ଉତ୍ସବ ଭିଆଇ
କୋଟିଏ ନଗରବାସୀ ଅନନ୍ଦ ଯେ ହୋଇ । ୯ ।
ଦୁଧଭରଣ ନେଇଣ ନଗରେ ଉତ୍ସବ
ଯହିଁ ଜନମି ଅଛନ୍ତି ଶ୍ରୀହରି ରାଘବ । ୧୦ ।
ସୁଜନେ ଶୁଣିଣ ଦୋଷ ନ ଧରିବ ମୋର
ପଦ୍ମାବତୀ କେମା ଧ୍ୟାନ କରେ ରଘୁବୀର । ୧୧ ।

( ହରିହରପୁର )



# ହୁଳହୁଳି ମଙ୍ଗଳ ବୋଲି

## ଦ୍ୱିତୀୟ ଭଗ

---

### ୧ । ଜାତକଦେଖା ମଙ୍ଗଳ

ଏଥୁ ଅନନ୍ତରେ କଥା ଶୁଣ ଦବ୍ୟରସ
ଜନକ ନଗରେ ଜଉତଷ ପରବେଶ । ୧ ।
ଦ୍ୱିଜବର ଅସିଅଚ୍ଛ ଜନକ ନବର
ଯୋଗ ଢେନ ଅସିଅଚ୍ଛ ଶୁଭ ଶ୍ରୀରାମର । ୨ ।
ଜନକ କହନ୍ତ ଅସି ରାଣୀଙ୍କ ଅଗର,
'ଜାନକୀକୁ ରଘୁନାଥ ଅନୁରୂପ ବର । ୩ ।
ହୁଳହୁଳି ଦେଇଣ ଉତ୍ସବ କର ପୁରେ
ରଘୁନାଥ ଜାତକ ଗଣିବେ ଦ୍ୱିଜବରେ । ୪ ।
ଜାନକୀକୁ ବଞ୍ଚ ହେବେ ରଘୁକୁଳମଣି
ଯୋଗ ଲଗ୍ନ ଦେଖିଣ ଜାତକ ଯିବେ ଗଣି' । ୫ ।

ଏତେ କହି ଜନକ ଯେ ବାହାରେ ବିଜୟେ
ମୃଦୁସୁଲକ ହକାର ଜାନକୀଙ୍କ ମାଏ । ୬ ।
'ଅନୁକୂଳ ବେଳେ ଲୋ ମଙ୍ଗଳ ଗୀତ ଗାଅ
ଅହ୍ୟ ନାରୀମାନଙ୍କୁ ବହନ ଡାକ ଯାଅ । ୭ ।

ରନ୍ନ ଦୀପାବଳୀ ଜାଳ ପୂର୍ଣ୍ଣକୁମ୍ଭ ଥାପ
ଏହା କହି ବଜାଯେ କରବେ ପୁରୋହିତ । ୮ ।
ଇନ୍ଦ୍ର ଗୋବନ୍ଦ ଗୁନ୍ଦୁଆ ବାନ୍ଧ ବେଗେ ଛାଣି
କୁଣ୍ଡିକର ଲମ୍ବାଅ ଲୋ ସୁରଙ୍ଗ ପତନି । ୯ ।
ଜାନକୀ ଜାତକ ଏବେ ହୋଇବଟି ଗଣା
ଘରେ ଘରେ ଲମ୍ବାଅ ଲୋ ଅମ୍ବର ତୋରଣା’ । ୧୦ ।

ଆଜ୍ଞା ପରମାଣେ ଦାସୀ ମୃଦୁସ୍ୱନ ଗଲେ
ବଚନ କରଣ ତହୁଁ ପୁରକୁ ମଣ୍ଡିଲେ । ୧୧ ।
ନାନା ପ୍ରସାଦର ଅତଣ୍ଡ୍ରଳ ଶୀରଫଳ
ଥୋଇଲେକ ନାରୀମାନେ କରଣ ମଙ୍ଗଳ । ୧୨ ।
ରାଜର୍ଷି ଜନକ ବଶିଷ୍ଠ ମହାଋଷି
ସର୍ବ ଦ୍ୱିଜବରମାନେ ଏକ ଠାବେ ବସି । ୧୩ ।
ସୀତା ରାମ ନାମ ରାଶି ଗଣି ଦ୍ୱିଜବର
କୋଠି କାଟି ଦେଖିଲେ ନକ୍ଷତ୍ର ଲଗ୍ନ ଭଲ । ୧୪ ।
ରାମ ନାମ ରାଶିକ ଜାନକୀ ନାମ ରାଶି
ଖଡ଼ି କର ଆନନ୍ଦ ହୁଅନ୍ତି ମହାଋଷି । ୧୫ ।
ସୀତା ଶ୍ରୀରାମ ଜାତକ ଗଣୁଛନ୍ତି ଋଷି
ଚାରପାଦେ ସୁଝିଲେ ରାମକୁ ଶୁଭକେଶୀ । ୧୬ ।
ଯେବଣ ନକ୍ଷତ୍ର ରାମ ନାଡ଼ ଶୁଭ ଯୋଗ
ଜାନକୀଙ୍କୁ ଚଉପାଦେ ସୁଝିଲେ ରାଘବ । ୧୭ ।
ଶ୍ରୀରାମ ରାଶିକ ସୀତା ଜାତକ ସୁଝିଲା
ଜନକ ମହାଋଷିଙ୍କି ବଶିଷ୍ଠ କହିଲା । ୧୮ ।
ଯେତେ ନାଡ଼ ନକ୍ଷତ୍ର ଯେ ନ ପଡ଼ିଲା ନାହିଁ
ସର୍ବ ଶୁଭେ ରାମଙ୍କୁ ସୁଝିଲେ ବଇଦେହୀ । ୧୯ ।
ବଶାଖଥି ବୈଶାଖକୁ କାଳ ଦଶମୀରେ
ବଶିଷ୍ଠ କହନ୍ତି ହସି ଜନକ ଛାମୁରେ । ୨୦ ।
‘ସର୍ବଗୁଣେ ସୁଲକ୍ଷଣା ଅଟେ ତୋର ଝିଅ
ଶୁଭେ ବଭାକର ରାମ ଦଶରଥପୁଅ । ୨୧ ।

ସର୍ବ ମହାଋଷି ହରି ବୋଲ୍ ଡାକ ଦେଲେ
ମହାପ୍ରସାଦ ମିଥିଲା ନଗ୍ରେ ବଟାଇଲେ । ୨୨ ।

ଶ୍ରୀରାମ ରାଣୀଙ୍କ ସୀତା ଜାତକ ସୂଚିଲା
ଫେର ଦଶରଥ ରାଜ୍ୟେ ବଶିଷ୍ଠ କହିଲା । ୨୩ ।
ପୁରୋହିତ ଜାତକକୁ ଆଣି କରେ ଦେଲ
ଶୁଣିଣ ଆନନ୍ଦ ହେଲେ ରାଣୀ ମହାଦେଈ । ୨୪ ।
ଶ୍ରୀରାମ ଜାନକୀ ପଦେ ରହୁ ସର୍ବ ଚିତ୍ତ
ଜାତକ ମଙ୍ଗଳ ସର୍ବ ଶୁଭେ ହେଲା ଗୀତ । ୨୫ ।

( ଝଙ୍କଡ଼ )

## ୬ । ବେଦ ଅନୁକୂଳ ମଙ୍ଗଳ

ଏଥୁ ଅନନ୍ତରେ ଶୁଣ ଅପୂରୁବ ରସ
ବେଦ ଅନୁକୂଳ ଯୋଗ କହେ ଜଗତେଷ । ୧ ।
ବୈଶାଖ ଶୁକ୍ଳ ଯେ ପଞ୍ଚମୀ ଗୁରୁବାର
ଶୁଭ ଲଗ୍ନ ଚନ୍ଦ୍ର ବରକନ୍ୟାର ସମ୍ଭାର । ୨ ।
ଭିତର ନବରେ ବେଗେ ପ୍ରବେଶ ହୋଇଲେ
ଉତ୍ସବ କରିଣ ବେଗେ ରାଣୀଙ୍କି କହିଲେ । ୩ ।
ଶୁଣି ମହାଦେଈ ଦାସୀ ପେଷି ହକାରଇ
ସାତ ଅହ୍ୟ ଅଇଲେକ ବେଦକୁ ବନ୍ଧାଇ । ୪ ।
ନବର ପାଠ ପ୍ରାଙ୍ଗଣ ମଧ୍ୟେ ଶୁଦ୍ଧ ଭୂମି
ଗୋମୟ ଲେପି ମୁରୁଜ ଲେଖିଲେ କାମିନୀ । ୫ ।
ପୂର୍ଣ୍ଣକୁମ୍ଭ ଚୂତପତ୍ର ନାରିକେଳ ଥାପି
ନଡିକାଳ ସହିତେ କଦଳୀଗଛ ରୋପି । ୬ ।
ସପ୍ତମୁଖି ଦୀପାବଳୀ ଘୃତ ପୂର୍ଣ୍ଣ କରି
ନେତର ବଳିତା ନେଇ ଜାଳିଲେ ଚତୁରୀ । ୭ ।
ସୁବର୍ଣ୍ଣ ପାଳିକା ଶୁକ୍ଳ ଧାନ ଯେ ତଣ୍ଡୁଳ
ମହାପରସାଦ ଗଙ୍ଗାମାଟି ଶୁକ୍ଳ ଫୁଲ । ୮ ।

ଶୁଦ୍ଧ ଦେଶ ମୃତ୍ତିକା ପଲ୍ଲବ ମେଳେ ଥୋଇ
ଦଧିଗୁଡ଼ ସଞ୍ଚା ବାଳୀ ଥୋଇଲେକ ନେଇ । ୯ ।
ନବତନ ବାସ ଦୂର୍ବା ପତ୍ର ବରକୋଳ
ବରୁଣ ପୂଜା ଆରମ୍ଭ କଲେ ବିପ୍ର ମିଳ । ୧୦ ।
ଗାଇଲେ ଗାଅଣି ଗୀତ ବାଜିଲା ବାଜଣା
ଢୋଲ୍ ଦମା ଝମକ ନିଶାଣ ଯନ୍ତ୍ର ବୀଣା । ୧୧ ।
ହୁଳହୁଳ ଦେଉଛନ୍ତି ସୀମନ୍ତିନୀ ବାଳୀ
ଶଙ୍ଖନାଦ ଶବଦରେ କୁରୁମ ଉଚ୍ଛୁଳ । ୧୨ ।
ବରୁଣ ପୂଜା ବଢ଼ାଇ ବିପ୍ରେ ଯହୁଁ ଗଲେ
ସାତ ଅହ୍ୟ ସଙ୍ଗେ ମହାଦେଈ ବିଜେ କଲେ । ୧୩ ।
ସାତ ସାତ ଅଞ୍ଜୋଳ ଯେ ପକାଇଲେ ମାଟି
ବନ୍ଦାପନା ସାରି ବାଳୀ ଅଇଲେ ଲେଉଟି । ୧୪ ।
ଶ୍ରୀରାମ ସୀତାଙ୍କ ବିଭା ଅନୁକୂଳ ଗୀତ
ବେଦ ଅନୁକୂଳ ଏବେ ହୋଇଲା ସମାପ୍ତ । ୧୫ ।

( ଅଠଗଡ଼—ଗଞ୍ଜାମ )

## ୩ । ବେଦ ତିଆରି ଅନୁକୂଳ ମଙ୍ଗଳ

ଏଥୁ ଅନନ୍ତରେ ଶୁଣ ଅପୂର୍ବ କାହାଣୀ
ବିଶ୍ୱକର୍ମା ରାଇ ଅଜ୍ଞା ଦେଲେ କୁଶପାଣି । ୧ ।
ବହନ ଚଳସି ତୁମ୍ଭେ ମିଥିଲା ନଗର
ଶ୍ରୀରାମ ସୀତା ମଣ୍ଡପ ବେଗେ ନିର୍ମାକର । ୨ ।
ବ୍ରହ୍ମା ଅଜ୍ଞା ପାଇ ବିଶ୍ୱକର୍ମା ଚଳିଗଲେ
ମିଥିଲା ନଗରେ ଯାଇ ପ୍ରବେଶ ହୋଇଲେ । ୩ ।
ରାଜାଙ୍କ ଜଣାଇଁ ପାଠ ପ୍ରାଙ୍ଗଣେ ପ୍ରବେଶ
ସୂତାଧର ସୂତ୍ରକାଗି କଣ୍ଟି ଚଉପାଶ । ୪ ।
ସ୍ଫଟିକର ସୁରଖମ୍ଭ ପୋତିଲେକ ନେଇ
ବୈଦୁର୍ଯ୍ୟ ଶ୍ରେଣୀରେ ପଦ୍ମରାଗ ଲୁଅ ଦେଇ । ୫ ।

ଜମ୍ବୁନଦ ବତା ଲଇ ରଙ୍ଗ ପାଟସୂତା
ତୁଣ୍ଡିଆଟ ଗୋମେଦ ମାଣିକ୍ୟର ଧାଡ଼ି ବତା । ୬ ।
ତେଜପତ୍ର ସ୍ଥାପଣୀ ଯେ ମୁକୁତା ତୋରଣା
ସୁବର୍ଣ୍ଣ କଳଶ ପୁଷ୍ପ ବିମାନକୁ ଜଣା । ୭ ।

ଶୁଦ୍ଧ ସୁବର୍ଣ୍ଣର ବେଦ ମର୍କତ ପାବଚ୍ଛି
ସୁବର୍ଣ୍ଣର ପୂର୍ଣ୍ଣକୁମ୍ଭ ହୀର ବେହିମାଛ । ୮ ।
ମର୍କତର ରମ୍ଭାବୃକ୍ଷ ପୋତିଲେକ ନେଇ
ସୁନ୍ଦର ନିମନ୍ତେ ନଟିକାଲ ବେଢ଼ିଅଇ । ୯ ।
ମୁକୁତାର ଚୂନ ନେଇ ବେଦ ଧଉଳିଲେ
ଶତଦଳ ପଦ୍ମ କାଟି କୁମ୍ଭ ବସାଇଲେ । ୧୦ ।
ନାରକେଳ ଫଳ ଚୂତପତ୍ର ଦୂର୍ବାଙ୍କୁର
ନବରତ୍ନ ବାସ ଦେଲେ ଶ୍ରୀଫଳ ତଣ୍ଡୁଳ । ୧୧ ।
ସୁବର୍ଣ୍ଣର ମାଅରୁଖା ଗୁଆ ଘୃତ ଭରି
ନେତର ବଳିତା ମାଣିକ୍ୟର ଦୀପାବଳୀ । ୧୨ ।

ମଣ୍ଡିଲେ ବିଚିତ୍ର ଯୋଗେ ବାନ୍ଧିଲେ ଚନ୍ଦୁଆ
ଦର୍ପଣ ଚାମର ଦାସୀ ନେତମାନ ନୂଆ । ୧୩ ।
କଳଶ ଉପରେ ନେଇ ବାନ୍ଧିଲେ ଚିତ୍ରାଳ
କେଉ କେଉ ଲମ୍ବାଇଲେ ମୁକୁତାର ମାଳ । ୧୪ ।
ସୁରଙ୍ଗ ପତନି କୁଞ୍ଜ ବାନ୍ଧିଲେକ ନେଇ
କି ଜାଣି ଦଣ୍ଡଇ ଦେବ ଉଡ଼ଣି ମୁଣ୍ଡାଇ । ୧୫ ।
କି ଅବା ସୁଧର୍ମ୍ମା ଆସି ବସିଣ ପଡ଼ିଲେ
କି ଚନ୍ଦ୍ରମଣ୍ଡଳ ରଥ ମହୀରେ ଖସିଲେ । ୧୬ ।
ଯହିଁ ଲକ୍ଷ୍ମୀନାରାୟଣ ହୋଇବେକ ବିଭା
ତହିଁ ବିଶ୍ୱକର୍ମ୍ମା ଶିଳ୍ପୀ କି ଉପମା ଦେବା । ୧୭ ।

( ଢାଳଭେର )

## ୪ । ମଣ୍ଡପଧଉଳା ମଙ୍ଗଳ

ଧଉଳାଲେ ରତ୍ନବେଦୀ ବାନ୍ଧଲେ ଗୃନ୍ଦୁଆ
ଚଉପାଶେ ନିର୍ମାଣିଲେ ପାଟ ଘୁମୁଣ୍ଡିଆ । ୧ ।
ମୁକୁତା ଗୃମର ଯେ ମୁକୁତା ଧଣ୍ଡାମାଳ
ତୋରଣରେ ନେଇଣ ଖଞ୍ଜିଲେ ସିନ୍ଦୁଫଳ । ୨ ।
ତଥି ପାଶେ ଦେବାଙ୍ଗ ପଟ୍ଟାମାନ ଦେଇ
ପତାକା ବାନ୍ଧନ୍ତି ନାରୀ ହୁଳହୁଳି ଦେଇ । ୩ ।
ମୁକୁତା ଚୂନରେ ବାଳୀ ଧଉଳି ମଣ୍ଡପ
ତଥି ପାଶେ ନେଇଣ ଜାଳିଲେ ସାତଦୀପ । ୪ ।
ଦଧି ମାଛ ପୂର୍ଣ୍ଣକୁମ୍ଭ ରାଜହଂସ ଥୋଇ
ଦଧିଗୁଡ଼ ମହାପ୍ରସାଦ ନେଇଣ ବାଢ଼ଇ । ୫ ।

ରତ୍ନଚଉକୀ ତଥି ପାଖରେ ଥୋଇଲେ
ଆନନ୍ଦ ହୋଇଣ ନାରୀ ବେଗେ ଚଳିଗଲେ । ୬ ।
ପ୍ରବେଶ ହୋଇଲେ ଯାଇ ମହାଦେଈ ପାଶ
ସମସ୍ତ ସଜଡ଼ା ହେଲା ଶୁଣ ପାଟହଂସ । ୭ ।
ଶୁଣି ପାଟରାଣୀ, ରାଣୀ ହରଷ ହୋଇଲେ
ନାପିତ ଦୁଲଣୀକି ଡାକିଣ ଆଜ୍ଞା ଦେଲେ । ୮ ।
ଶୁଣିକରି ନାପିତ ତରୁଣୀ ଚଳିଗଲା
ସାତ ଅହ୍ୟମାନଙ୍କୁ ଯେ ବହନ ଆଣିଲା । ୯ ।
ରାଣୀଙ୍କ ସମ୍ମୁଖରେ ଯାଇ ପ୍ରବେଶ ହୋଇଲେ
ଦେଖି ମହାଦେଈ ମନେ ହରଷ ହୋଇଲେ । ୧୦ ।

ବୋଲନ୍ତି ସେ ପାଟରାଣୀ ଶୁଣ ଗୋ ତରୁଣୀ
'ସ୍ନାନ କରାଅ ନେଇଣ ସୀତା ସୁଲକ୍ଷଣୀ' । ୧୧ ।
ଏହା ଶୁଣି ରାଣୀମାନେ ଜାନକୀଙ୍କୁ ନେଲେ
ଚଉକ ଉପରେ ତହିଁ ବଜେ କରାଇଲେ । ୧୨ ।
ବଜେ କଲେ ସୀତା ବାଳୀ ଚଉକରେ ଯାଇ
ଅନ୍ତଃପୁରେ ହୁଳହୁଳି ଚହଳ ଶୁଭଇ । ୧୩ ।

ନାନା ତୀର୍ଥ ଗଙ୍ଗାଜଳ ଶିରେ ନହ୍ଲଉଲେ
ବେଦତଳେ ଉଭାହୋଇ ବେଶ ସଜାଇଲେ । ୧୪ ।
ଶ୍ରୀଅଙ୍ଗରେ ହଳଦ କୁଙ୍କୁମ ବୋଳି ଦ୍ୟନ୍ତି
ଝିନବାସ ଘେନି ସୀତା ଶ୍ରୀଅଙ୍ଗ ପୋଛନ୍ତି । ୧୫ ।
ଶ୍ରୀଅଙ୍ଗ ସୁବେଶ କରି ନବରକୁ ନେଲେ
ବେଦ ତଳେ ଉଭାହୋଇ ଚକ ବନ୍ଧାଇଲେ । ୧୬ ।
ଚକ ବନ୍ଧାଇ ସାରଣ ଧଉଳାଲେ ହାଣ୍ଡି
ଚନ୍ଦନ ସିନ୍ଦୂର ଦେଇ କୁମ୍ଭେ ବସ୍ତ୍ର ମଣ୍ଡି । ୧୭ ।

ସେଠାରୁ ଚଳିଲେ ସର୍ବବାଳୀ ବେଗ ହୋଇ
ସାତ ଅର୍ଘ୍ୟ ହସ୍ତେ ସାତଗୋଠା କୁମ୍ଭ ଦେଇ । ୧୮ ।
ପ୍ରବେଶ ହୋଇଲେ ଯାଇ ଈଶାନଙ୍କ ପାଶ
ଇଷ୍ଟଦେବତାଙ୍କୁ ତହିଁ କରନ୍ତି ସୁବେଶ । ୧୯ ।
ଗାଇଁଲେ ଗାଆଣି ଗୀତ ଦେଲେ ହୁଳହୁଳି
ବାହାରେ ବାଜଇ ବାଦ୍ୟ ମଙ୍ଗଳ ମହୁରୀ । ୨୦ ।
ଥାପିଲେକ ପୂର୍ଣ୍ଣକୁମ୍ଭ ବାନ୍ଧିଲେକ ବେଶ
ଚନ୍ଦନ ସିନ୍ଦୂର ଦେଇ ଈଶାନଙ୍କ ପାଶ । ୨୧ ।
ଓଳଗି ହୋଇଣ ମାଏ ବନ୍ଦାଇଲେ ଦୂବ
ଯୁଗେ ଯୁଗେ ସୀତା ମୋର ଅର୍ଘ୍ୟ ହୋଇଥିବ । ୨୨ ।
ବନ୍ଦାଇଲେ ଦୀପ ମାଏ ଓଳଗି ହୋଇଣ
'ଯୁଗେ ଯୁଗେ ସୀତା ସ୍ୱାମୀ ସେବିବ' ବୋଲିଣ । ୨୩ ।
ଓଳଗି ହୋଇଣ ମାଏ ଚନ୍ଦନ ଲେପନ୍ତି
ଜନ୍ମେ ଜନ୍ମେ ସୀତା ମୋର ହେଉ ଭାଗ୍ୟବନ୍ତି । ୨୪ ।
ଓଳଗି ହୋଇଣ ମାଏ ମନେ ମନାସନ୍ତି
ଯୁଗେ ଯୁଗେ ସୀତା ମୋର ହେଉ ପୁତ୍ରବନ୍ତି । ୨୫ ।
ଓଳଗି ହୋଇଣ ମାଏ ମଣୋହି ବାଢ଼ିଲେ
ନାନା ବର୍ଣ୍ଣ କ୍ଷୀରପିଠା ନେଇ ଯୋଗାଣିଲେ । ୨୬ ।
ମଣୋହି ବଢ଼ାଇ ମାଏ ଭିତରକୁ ଗଲେ
ଉତ୍ସବ ଆନନ୍ଦେ ବାଳୀ ନିଶି ପୁହାଇଲେ । ୨୭ ।

ଶ୍ରୀରାମ ସୀତାଙ୍କ ବନ୍ଧୁ ନ ଜାଣଇ ଆନ
ହେମାମଣି ନୀଳମଣି ସେପାଦେ ଶରଣ । ୨୮ ।
( କେନ୍ଦୁଝର )

## ୫ । ବଡ଼ପକା ଅନୁକୂଳ ମଙ୍ଗଳ

ଶୁଭ ଯୋଗେ ଅନୁକୂଳ କରନ୍ତି କାମିନୀ
ହୁଳହୁଳି ଦେଇ ଗୀତ ଗାଇଲେ ଗାୟନି । ୧ ।
ପୂର୍ଣ୍ଣକୁମ୍ଭ ଥାଳ ଦୀପାବଳୀ ବସାଇଲେ
ମୁକୁତା ଚୂନରେ ବାଲୀ କାନ୍ଥ ଧଉଳଲେ । ୨ ।
ସିନ୍ଦୁର କଜ୍ଜ୍ୱଳ ଯେ ଚନ୍ଦନ ଶତା ଦେଇ
ଅକ୍ଷତ ତଣ୍ଡୁଳ ନେଇ ଶ୍ରୀମୁଖ ବନ୍ଦାଇ । ୩ ।
ନାବଛନ ଶୃଙ୍ଗଡ଼ା ଯେ ଯୋଗାଇଲେ ଦାସୀ
ଅନୁକୂଳ ବଡ଼ ତହିଁ ପାର ଶୁଭ୍ରକେଶୀ । ୪ ।
ସିନ୍ଦୁର କଜ୍ଜ୍ୱଳ ଦୀପ ଶୁକ୍ଳ ପୁଷ୍ପ ଦେଲେ
ନଇବେଦ୍ୟ ଦେଇ ବାଲୀ ବନ୍ଦାପନା କଲେ । ୫ ।
ଶ୍ରୀଦଧିବାବନ ଚନ୍ଦ୍ର ଶ୍ରୀପଦ୍ମଚରଣ
ବଡ଼ପକା ଅନୁକୂଳ ହୋଇଲା ସମ୍ପୂର୍ଣ୍ଣ । ୬ ।
( ବଡ଼ାମ୍ବା )

## ୬ । ହଳଦୀକୁଟା ଅନୁକୂଳ ମଙ୍ଗଳ

ଶୁଣିବା ସୁବୁଦ୍ଧି ସୁଜ୍ଜନରେ
ଉତ୍ସବ ଅନନ୍ଦ ଦ୍ୱାରକାରେ । ୧ ।
ବିଭା ହେବେ ଶ୍ରୀକୃଷ୍ଣ ରୁକ୍ମଣୀ
ହଳଦୀ କୁଟନ୍ତି ସୁଲକ୍ଷଣୀ । ୨ ।
ପୂର୍ଣ୍ଣ କୁମ୍ଭ ଥାପିଲେ ସୁନ୍ଦରୀ
ତଣ୍ଡୁଳ ଶ୍ରୀଫଳ ନେଇ ଭରି । ୩ ।

ଚନ୍ଦନ ସିନ୍ଦୁର କରେ ଦେଇ
ନବତନ ବସ୍ତ୍ର ଗୁଡ଼ଅଇ । ୪ ।
ଦେବକୀ ରୋହିଣୀ ଯଶୋବନ୍ତୀ
ଏହିମନ୍ତେ ସକଳ ଯୁବତୀ । ୫ ।
ହଳଦୀ କୁଟନ୍ତି ଶୁଭ ଯୋଗେ
ଗାବନ୍ତି ଗୀତ ମଙ୍ଗଳ ରାଗେ । ୬ ।

ବାହାରେ ବାଜଇ ନାନା ବାଦ୍ୟ
ଗର୍ଜନ କି ଶୁଭେ ମେଘନାଦ । ୭ ।
ଏ ବଧୂରେ କୁଙ୍କୁମ କୁଟିଣ
ରଖିଲେ ଯତନେ ନାରୀଗଣ । ୮ ।
ସେ କାଳ ଆନନ୍ଦ କହୁ ଅବା
ଯହିଁ ଲକ୍ଷ୍ମୀନାରାୟଣ ବଭା । ୯ ।
ସେ ବେଳ ପଦ୍ମର ମନେ ଶାନ୍ତି
ଲୋଭେ ଗୁଣେ ଶିବପ୍ରିୟାମତି । ୧୦ ।

( ନୀଳଗିରି )

## ୭ । ବାଟଘସ (୧)

( ମୁଗକାଇବାର ମଙ୍ଗଳ )

ଏଥୁ ଅନନ୍ତରେ ଗଲା କେତେହେଁକ କାଳ
ଲଗ୍ନ ବୁଝି ଜଉତଷ କହେ ଅନୁକୂଳ । ୧ ।
ଜାନକୀର ବ୍ରୀହି ମୁଗ ଭୁରା ବଧମାନ
ବାଜଇ ବବଧ ବାଦ୍ୟ ପୁର ଯେ ଉଛୁଳ । ୨ ।
ଦଧି ଗୁଡ଼ ସଞ୍ଜାମାନ ଛାମୁରେ ବାଢ଼ିଲେ
ହୁଳହୁଳି ଦେଇ ନାରୀ ମଙ୍ଗଳ ଗାଇଲେ । ୩ ।
ପାଟ ଖରଡ଼ ଦାସୀଏ ପକାଇଲେ ଆଣି
ଇନ୍ଦ୍ରଗୋବନ୍ଦ ଗୃନ୍ଦୁଅ ବାନ୍ଧିଲେକ ଠାଣି । ୪ ।

ପୂର୍ଣ୍ଣକୁମ୍ଭ ଥାପି ନାରୀ ଚୂତ ପତ୍ର ଦେଲେ
ଅହ୍ୟ ନାରୀମାନଙ୍କୁ ସେ ବହନ ଡାକଲେ । ୫ ।
ସୀତା ଦେବୀ ବଳେ କଲେ ଧବ୍ୟ ବେଶ ହୋଇ
ବସିଲେ ଖରଡ଼େ ସୀତା ପୁର ଶୋଭା ପାଇ । ୬ ।
ମାତାଗଣ ମିଳି ତହିଁ ଅନନ୍ଦ ହୋଇଲେ
ହୁଳହୁଳି ଦେଇ ଦାସୀ ମଙ୍ଗଳ ଗାଇଲେ । ୭ ।
ଶିଳ ଶିଳପୁଆ ନାରୀ ଥୋଇଲେକ ଅଣି
ମିଳିଲେ ବହୁତ ନାରୀ ଅହ୍ୟ ଯେ ବ୍ରାହ୍ମଣୀ । ୮ ।
ଶିଳରେ ଗୁଆ ଥୋଇଣ ଛେଚଲେକ ବାଳୀ
ଚୂରିଲେକ ବ୍ରୀହି ମୁଗ ସାତ ଅହ୍ୟ ମିଳି । ୯ ।
ମାଆ ଖୁଡ଼ି ଅହ୍ୟ ଯେ ବ୍ରାହ୍ମଣୀ ସାତ ଅସି
ସାତ ପେଡ଼ା ହଳଦୀ ଛେଚଲେ ଅହ୍ୟେ ମିଶି । ୧୦ ।
ପଦ୍ମ ବିକଶିଲା ପ୍ରାୟେ ସୀତା ମୁଖ ଦିଶି
ବେଗେ ଗଲେ ସର୍ବ ନାରୀ ହଳଦୀ ଯେ ପେଷି । ୧୧ ।
ହଳଦୀ କୁଟିବା ବିଧି ବିଧାନ ସାରିଲେ
ଅହ୍ୟ ବ୍ରାହ୍ମଣୀମାନଙ୍କୁ ସିନ୍ଦୂର ବାଣ୍ଟିଲେ । ୧୨ ।
ଯେ ଯାହା ପୁରକୁ ନାରୀମାନେ ଗଲେ ଯହୁଁ
ଶକୁନ୍ତଳା ଦେବୀଙ୍କୁ ରଖନ୍ତୁ ମହାବାହୁ । ୧୩ ।

( ଗଞ୍ଜାମ—ଅଠଗଡ଼ )

## ୮ । **ବାଟଘସ** (୧୨)

( ହାଣ୍ଡିମଙ୍ଗଳନ )

ରତ୍ନବେଦ ଧଉଳଣ ବାନ୍ଧଲେ ଗୁନ୍ଦୁଆ
ଚଉପାଶେ ସଜାଉଲେ ପାନ ଖଣ୍ଡୁଆ । ୧ ।
ରତ୍ନଦୀପ ଜାଳି ପୂର୍ଣ୍ଣକୁମ୍ଭେକ ଥାପିଲେ
ମଙ୍ଗୁଳଣ ହାଣ୍ଡି ନେଇ ବେଦିରେ ଥୋଇଲେ । ୨ ।

ପାଞ୍ଚକୁମ୍ଭ ପାଞ୍ଚରୁଖା ପାଞ୍ଚଦୀପ ଜାଳି
ସାତଗୋଟି ହାଣ୍ଡି ତହିଁ ଥୋଇଲେକ ବାଳି । ୩ ।
ବାହାରେ ବାଜନ୍ତୁ ନାନା ବାଦ୍ୟ ଶଂଖ ଧ୍ୱନି
ଘରେ ଘରେ ଅହ୍ୟଙ୍କୁ ଡାକଇ ଭଣ୍ଡାରୁଣୀ । ୪ ।
ଅସ ଗୋ ସକଳ ଦେଖି ସାତ ଅହ୍ୟଗଣ
ମୈଥିଳୀର ଗନ୍ଧଷଣ ହାଣ୍ଡି ମଙ୍ଗୁଳଣ । ୫ ।

ଅସନ୍ତ ସକଳ ନାରୀ ହୋଇଣ ସୁବେଶ
ବହନ ମିଳିଲେ ଯାଇ କୁମ୍ଭାରୁଣୀ ପାଶ । ୬ ।
ନୂଆ ବସନ ପିନ୍ଧାଇ କୁଙ୍କୁମ ଲଗାଇ
ସାତ ଅହ୍ୟ ବେଦ ତଳେ ଉଭାହେଲେ ଯାଇ । ୭ ।
ନୟନେ କେ ଦେଲେ ନେଇ କଜ୍ଜ୍ୱଳର କଳା
କପୋଳରେ ଦେଲେ ନେଇ ସିନ୍ଦୂର ମୁଣ୍ଡଳା । ୮ ।
ସକଳ ଯୁବତୀ ତହିଁ ହୋଇ କଉତୁକ
ବେଦରେ ପ୍ରବେଶ ହୋଇ ବନ୍ଧାଇଲେ ଚକ । ୯ ।
ମୁକୁତା ଚୂନରେ ନାରୀ ହାଣ୍ଡି ମଙ୍ଗୁଳନ୍ତି
ହୁଳହୁଳି ଦେଇ ନାରୀ ମଙ୍ଗଳ ଗାବନ୍ତି । ୧୦ ।

ଅକ୍ଷତ ଦୂର୍ବାରେ ନାରୀ କୁମ୍ଭ ବନ୍ଦାଇଲେ
ସାତଅହ୍ୟ ହାଣ୍ଡି ଘେନି ନବରକୁ ଗଲେ । ୧୧ ।
ମଙ୍ଗୁଳଣ ହାଣ୍ଡି ଘେନି ଯାଇ ମହାଦେଈ
କଜ୍ଜ୍ୱଳ ସିନ୍ଦୂର କର ଇଷ୍ଟ ପାଖେ ଥୋଇ । ୧୨ ।
ନୂତନ ବସ୍ତ୍ର ଘୋଡ଼ାଇ ତଣ୍ଡୁଳ କୁଢ଼ାଇ
ଫୁଲ ତାଳପତ୍ର ଦେଇ ହାଣ୍ଡିକି ବସାଇ । ୧୩ ।
ନଡିକାଳ ନୂଆହାଣ୍ଡି ଭିତରେ ରଖିଲେ
ସିଦ୍ଧ ଗ୍ରନ୍ଥମନ୍ତ୍ରାକୁ ଓଲଗିଣ ସ୍ତୁତି କଲେ । ୧୪ ।
ଓଲଗି ହୁଅନ୍ତି ମାଏ ମନେ ମନାସନ୍ତି
'ଯୁଗେ ଯୁଗେ ଆୟୁବନ୍ତ ହେଉ ସୀତାପତି' । ୧୫ ।
ମାଏ ମନାସିଲେ ମନେ ବନ୍ଦାଇଲେ ଦୂବ
'ଯୁଗେ ଯୁଗେ ଅହ୍ୟ ସୁଲକ୍ଷଣୀ ସୀତା ହେବ' । ୧୬ ।

ସାତପୁତ୍ରୀ ଅହ୍ୟ ସୁଲକ୍ଷଣୀ ସୀତା ହେବ
ରାମଚନ୍ଦ୍ରଠାରେ ସୀତା ଦାନ କାଳ ଯିବ' । ୧୭ ।
ହାଣ୍ଡି ବସାଇଲେ ମାଏ ତହୁଁ ଚଳିଗଲେ
ଅହ୍ୟ ନାରୀମାନଙ୍କୁ ସେ ବିନୟି କହିଲେ । ୧୮ ।
'ଆଶୀର୍ବାଦ ଦେଇ ଅସ ସର୍ବ ଅହ୍ୟ ନାରୀ
ଚିରଜୀବୀ ହୋଇଥାଉ ସୀତମ୍ବା ମୋହର' । ୧୯ ।
ଏହା ଶୁଣି ସର୍ବଦେବୀ କରନ୍ତି କଲ୍ୟାଣ
'ପାଟଲ୍ଲ ବାଳରେ ସୀତା ସିନ୍ଦୂର ଘେନମ' । ୨୦ ।
ଏତେକ ବୋଲିଣ ଦେବୀ ଟେହା ଘର ଯାନ୍ତି
ହାଣ୍ଡିମଙ୍ଗୁଳା ବିଧାନ କହେ ଚନ୍ଦ୍ରକାନ୍ତି । ୨୧ ।

( ଅଠଗଡ଼—ଗଞ୍ଜାମ )

## ୯ । ବାଟଘସ (୩)

( ତେଲଉଣି ବସା ମଙ୍ଗଳ )

ଫଗୁମାସ ଦେଲେ ରାଣୀ ପରିବାର ରାଇ
'ଅହ୍ୟ'ନାରୀମାନଙ୍କୁ ଲୋ ଅଣ ବେଗେ ଯାଇ । ୧ ।
ଡାକ ଡାକ ବେଗେ ଦାସୀ ସାଇ ଲୋ ପଡ଼ିଶା
ଆଜି ଶୁଭଯୋଗ ହେବ ତେଲଉଣି ବସା । ୨ ।
ହୋଟି ଓଁଲପଣା ଦେଇ ଅଗ୍ନି ଆରୋପିଣ
ସୁବର୍ଣ୍ଣ ପଲମ ଘୃତ ପୂର୍ଣ୍ଣକର ଅଣ । ୩ ।
ଗାଅ ଲୋ ମଙ୍ଗଳ ଗୀତ ଦଅ ହୁଳହୁଳି'
ଅଜ୍ଞା ପାଇ ତେଲଉଣି ବସାଇଲେ ବାଳୀ । ୪ ।
ଶ୍ରୀପ୍ରଭୁ ସୁମର ସରସ୍ୱତୀଅ ଦୁଆଇ
ଲକ୍ଷ୍ମୀନାରାୟଣ ଲଡ଼ୁ ଦେଲେକ ଭସାଇ । ୫ ।
ଆନନ୍ଦାନନ୍ଦ ଅରସା ମୁରୁର ମୁଗୁଡ଼ି
ନୈବେଦ୍ୟ ଚିପୁର, ନବରସ ପାପୁଡ଼ି । ୬ ।

କୃଷ୍ଣ କେଳାରସ କେଳି କର୍ପୂର ଯେ କେଳ
ବାସୁଦେବ ନାମର କାକସ୍ କଲେ ବାଳୀ । ୭ ।
ଏକୋଇଶ ବର୍ଣ୍ଣ ଲଡ଼ୁ ଯତ୍ନେ ପୂଆଇଲେ
ସାତ ଅଢ୍ୟ ମିଳ ତେଲଡ଼ଣୀ ବନ୍ଧାଇଲେ । ୮ ।
ମେଲାଣି ହୋଇଣ ବାଳୀ ନିଜପୁରେ ଗଲେ
ଯାଉ ଯାଉ ପଥେ ବାଳୀ ହୁଳହୁଳି ଦେଲେ । ୯ ।

( ବଣେଇ )

## ୧୦ । କନ୍ୟା କୋଇଲିବୁଡ଼ ମଙ୍ଗଳ

ଏଥୁ ଅନନ୍ତରେ କଥା ଶୁଣ ଦିବ୍ୟ ସ୍ରୀତ
ବଭିବସ୍ତ୍ର ଶେଷବେଳ ହୋଇଲା ପାହାନ୍ତ । ୧ ।
ରାଣୀ ଅଜ୍ଞା ଦେଉଛନ୍ତି ଦାସୀଗଣ ଚାହିଁ
'ଜାନକୀଙ୍କୁ ଘେନି ଅସ ପହଣ୍ଡ ମଣାଇ । ୨ ।
ବେଗ କର ଦାସୀ ବେଦ କର କ୍ଲେ ମଣ୍ଡଣି
ସ୍ନାହାନ କରବେ ମୋର କୁଳର ଦୁଲଣୀ' । ୩ ।
ଅଜ୍ଞା ପାଇ ଦାସୀଗଣ ବେଗେ ଚଳି ଗଲେ ।
ପାନ ଛାମୁଣ୍ଡିଆ ତଳେ ଗୁନ୍ଦୁଆ ବାନ୍ଧିଲେ । ୪ ।
ସୁବର୍ଣ୍ଣର ପାଞ୍ଚରୁଖା ନେଇଣ ଥୋଇଲେ
ମାଣିକ୍ୟର ଦୀପାବଳୀ ସେଠାରେ ଜାଳିଲେ । ୫ ।
ପାଞ୍ଚଟି ପୂର୍ଣ୍ଣକୁମ୍ଭ ଶ୍ରୀଫଳ ଚୁତ ଡାଳ
ଦଧିନୌତ ରୋହିମାଛ ନଡିକାଳ ଫଳ । ୬ ।
ରମ୍ଭାତରୁ ପାଞ୍ଚଗଛ ନେଇଣ ପୋତିଲେ
ସୁବର୍ଣ୍ଣର କଂସା ନେଇ ବେଦିରେ ଥୋଇଲେ । ୭ ।
କନକ କଉଡ଼ି ନେଇ ତହିଁ ତଳେ ଥୋଇ
ମଧ୍ୟରେ ଜାନକୀ ଦେବୀ ବଜେ କଲେ ଯାଇ । ୮ ।
ପାଦ୍ରପିବ ରାଜ ଅଜ୍ଞା ଦେଲେକ ଜନନୀ,
'ସ୍ନାହାନ କରବେ ସୀତା ଦିଅ କୋଇଲି ପାଣି' । ୯ ।

ହୁଳହୁଳି ଦେଇ ବାଳୀ ମଙ୍ଗଳ ଗାବନ୍ତି
ଚୂଆ କର୍ପୂର ଚନ୍ଦନ କୁଙ୍କୁମ ବୋଳନ୍ତି । ୧୦ ।
କେଶ ପିଠାଇ ମଥାରେ ଗନ୍ଧ ଦେଲେ ବୋଳି
ଶ୍ରୀକରେ ଜନମା କୁମ୍ଭ ଧଇଲେକ ତୋଳି । ୧୧ ।
ଅହ୍ୟ ନାରୀମାନେ ଚଉପାଶେ ବେଢ଼ିଛନ୍ତି
ମଧ୍ୟରେ ଜନକ ଜେମା ସ୍ନାହାନ କରନ୍ତି । ୧୨ ।
ସ୍ନାହାନ କରାଇ ସାର ଶ୍ରୀଅଙ୍ଗ ପୋଛିଲେ
ନବତନ ବାସ ଦାସୀ ଭଞ୍ଜି ଲାଗି କଲେ । ୧୩ ।
ନେତର ଗଣ୍ଡୁଆ ଆଣି ଉପରାଣ ଦେଇ
ସ୍ୱର୍ଣ୍ଣ ଡାହିଆରେ କଇବଲ୍ଲି ଦେଲେ ନେଇ । ୧୪ ।
ଶ୍ରୀକରେ ସେ ଦଧ୍ୟଅନ୍ନ ଘେନ ମହାଦେଈ
ଅଢ଼ାଇ ଗୁଣ୍ଡି ଯେ ଅନ୍ନ ମୁଖେ ଦେଲେ ନେଇ । ୧୫ ।
ଆଚମନ କରାଇ ଗୁବାକ କଲେ ଦେଲେ
ପାହାଡ଼ା ପକାଇ କନ୍ୟା ଭିତରକୁ ନେଲେ । ୧୬ ।
ଖନ୍ଦାଶାଳ ପାଖେ ଆଏ ଲବଣ ଚଳିଁଗ୍ରି
ସଖିମେଳେ ଜେମା ତହିଁ ଆନ୍ତି ବଜେ କରି । ୧୭ ।
( ଢଗିରିଆ )

## ୧୧ । କନ୍ୟା ପାଆପିଠା

ରାଣୀ ଅଜ୍ଞା ଦେଲେ ଆଗୋ ଦାସୀ ମୃଦୁସ୍ୱରି,
'ଲଗ୍ନବେଳ ହେଲା ପୁର ବେଗେ ମଣ୍ଡ ବୋଲି । ୧ ।
ବାନ୍ଧ ଗୋ ଯୁବତୀ ଇନ୍ଦ୍ରଗୋବନ୍ଦ ଗୁନ୍ଦୁଆ
ଏହା ଶୁଭ ଲଗ୍ନରେ ହୋଇବ ପାଆପିଆ । ୨ ।
ରଙ୍ଗପଢଣୀ କୁଞ୍ଚିଣ ଲମ୍ବାଇବ କୁଞ୍ଚା
ହାରମାଳା ମାଣିକ୍ୟ ମୁକୁତା ଝୁମ୍ପା ଝୁମ୍ପା । ୩ ।
ମେଣ୍ଡା ପେଣ୍ଡା ନାଗେଶ୍ୱର ଲେନ୍ତା ଲେନ୍ତା ଗୁଆ
ଚଉପାଶେ ଖଞ୍ଜିବ ସୁବର୍ଣ୍ଣ ସାରି ଶୁଆ । ୪ ।

ଜଗନ୍ନାଥ ନାମ ସାର ଶୁଆ ଭାଷୁଥିବ
ଇନ୍ଦ୍ରଗୋବିନ୍ଦ ଗୃନ୍ଦୁଆ ମଧ୍ୟରେ ଥୋଇବ । ୫ ।
ପୂର୍ଣ୍ଣ କୁମ୍ଭ ଥାପି ଗଙ୍ଗା ନୀର ପୂରାଇବ
ଚୂତପତ୍ର ଦେଇ ତହିଁ ଶ୍ରୀଫଳ ଥୋଇବ' । ୬ ।
ମାଣିକ୍ୟର ଦୀପାବଳୀ ଜାଳି ତହିଁ ନେଇ
ନେତର ବଳିତା ଯୋଗେ ଗୁଆ ଘୃତ ଦେଇ । ୭ ।
ତଣ୍ଡୁଳ ବାଢ଼ିବ ଖଣ୍ଡ ସାକର ମିଶାଇ
ସୁବର୍ଣ୍ଣ ଥାଳିରେ ମହାପ୍ରସାଦ ଯେ ଥୋଇ । ୮ ।
ରତ୍ନ ଖରଡ଼ ପକାଇ ଅପସର ଦେଇ
ପାଖୁଡ଼ା ପାଖୁଡ଼ା କରି ସିଞ୍ଚି ଜାଇ ଯୁଇ । ୯ ।
କର୍ପୂର କସ୍ତୁରୀ ଗନ୍ଧ ଘେନିଣ ଯୁବତୀ
ଚନ୍ଦନର ଟିଚକା ମାଇଲେ ଚଉକତ । ୧୦ ।
ଆଜ୍ଞା ପରମାଣେ ପୁର ମଣ୍ଡିଲେକ ବାଳୀ
ମଙ୍ଗଳ ଗାବନ୍ତ ଦାସୀ ଦେଇ ହୁଳହୁଳି । ୧୧ ।
ଯୋଡ଼ା ଶଙ୍ଖ ଯୋଡ଼ା କମ ବାହାରେ ବାଜଇ
ବାଦ୍ୟ ନାଦ ଶବଦରେ ସିନ୍ଧୁ ଉଚ୍ଛୁଳଇ । ୧୨ ।
ରତ୍ନ ଖରଡ଼ରେ ବିଜେ କଲେ ବଇଦେହୀ
ରମ୍ଭାପତ୍ର ପାଦ ତଳେ ଦାସୀ ଦେଲେ ନେଇ । ୧୩ ।
ଶ୍ରୀପଦ୍ମର ତଳେ ଯେ ଥୋଇଲେ ରତ୍ନଥାଳି
ତଥିପରେ ରମ୍ଭାପତ୍ର ପାରିଲେକ ବାଳୀ । ୧୪ ।
ସାତ ସୁଲକ୍ଷଣୀ ମିଳି ହୁଳହୁଳି ଦେଲେ
ସୁଆଗି ହୋଇବ ବୋଲି ଶାଗ ପାରିଦେଲେ । ୧୫ ।
ସୁନାର ଯେ ନହୁରୁଣୀ ରୂପା ଚମ୍କଢ଼ା
ଚନ୍ଦନ ପନିର ପାଣି ଅଳତା ଟିପୁଡ଼ା । ୧୬ ।
ଭିନ୍ନ ଭିନ୍ନ କରି ରତ୍ନ ତାଟିଆରେ ଥୋଇ
କଳଜକା ଗୁଆ ଗୁଆଘୃତ ଦେଲେ ନେଇ । ୧୭ ।
ଗାଇଲେ ମଙ୍ଗଳଗୀତ ଅନ୍ତଃପୁର ନାରୀ
ବସିଲ ଯେ ନାପିତୁଣୀ ଶ୍ରୀପଦ୍ମ ଧରି । ୧୮ ।

ଦାସୀ ଡାକନ୍ତି 'ପାଦ ବଢ଼ାଇ ଦିଅ ମାଏ
ଲଗ୍ନବେଳ ହୋଇଲାକ' ଆଜ୍ଞା ଦେଲେ ରାଏ । ୧୯ ।
ପଛେ ପାଅ ପିଠା ଅଗୋ ଜନକର ଝିଅ
'କଳେ ଜାକ ଗୁଅ କୁଳୁକୁଆ କର ଘିଅ' । ୨୦ ।
ଦୁଇ କଳେ ଦୁଇଗୋଟି ଗୁଆ ଜାକି ବସି
କୁରଙ୍ଗିନୟନୁଁ ଲୁହ ଯାଉଅଛୁ ଖସି । ୨୧ ।
ଶୋକଭରେ ଅଜ୍ଞାଣ ଅପସରେ ସୀତା
ପାଅ ପିଠାଇଣ ବାଳୀ ଦେଲେକ ଅଳତା । ୨୨ ।
ରତ୍ନ ଖଡ଼ିକାରେ ଯେ ଦିଅନ୍ତି କମ ଯୋଡ଼
ପୁଞ୍ଜି ପୁଞ୍ଜି କର ତହିଁ ଲେଖିଲେ ଘାଗୁଡ଼ି । ୨୩ ।
ହୀରା ଜ୍ୟୋତ ନଖପନ୍ତି ମାଣିକ୍ୟ ଯେସନ
ଅଳତା ଦିଅନ୍ତେ ପାଦ ଦିଶେ ଶୋଭାବନ । ୨୪ ।
ପାଅ ପିଠା ସାର ସୀତା ଉଭା ହୋଇଛନ୍ତି
ସ୍ଥଳ କମଳକୁ ନିନ୍ଦାକରେ ପାଦଜ୍ୟୋତ । ୨୫ ।

( ଶେରଗଡ଼ )

## ୯୬ । ସିଙ୍ଗାର ମଙ୍ଗଳ

ଏଥୁ ଅନନ୍ତରେ କଥା ଶୁଣ ସାଧୁଜନେ
ଜାନକୀଙ୍କୁ ସୁବେଶ କରନ୍ତି ସଖିମାନେ । ୧ ।
ଗାଇଲେ ମଙ୍ଗଳଗୀତ ସୁଲକ୍ଷଣା ବାଳୀ
ବାହାରେ ବାଜଇ ଶଙ୍ଖ ମଙ୍ଗଳ ମହୁରୀ । ୨ ।
ଶତଦଳ ପଦ୍ମ କାଟି ତଣ୍ଡୁଳ ଯେ ଦେଲେ
ସୁବର୍ଣ୍ଣର ସାର ଶୁଆ ମାନ ଉକୁଟଲେ । ୩ ।
ଶ୍ରୀଫଳ ଦେଇଣ ପୂର୍ଣ୍ଣକୁମ୍ଭ ବସାଇଲେ
ମାଣିକ୍ୟର ଦୀପ ଅଣି ସମ୍ମୁଖରେ ଜାଳିଲେ । ୪ ।
ସୁବର୍ଣ୍ଣ ଥାଳରେ ସଞ୍ଚା ନେଇଣ ଥୋଇଲେ
ନବ ଅଷ୍ଟ ଅଲଙ୍କାର ସଜାଡ଼ ରଖିଲେ । ୫ ।

ବସିଲେ ଧାଇ ସିଙ୍ଘାସ୍ତ୍ରୀ ବେଶ କରବାକୁ
ବେଶ କୁହେଁ ବର ଗୋଟି ଦର୍ପ ଖଣ୍ଡିବାକୁ । ୬ ।
ରତ୍ନ ପାନଅଁ ଘେନଣ କେଶ ସମାଳଣ
କେଶ ସଙ୍ଗୋଇଣ ଗଭା ଲେଟଣି ଛନ୍ଦଣ । ୭ ।
ଯୋଡ଼ ବେଣୀ ଛନ୍ଦ ଦବ୍ୟ ଜୁଡ଼ା ପାର ଦେଇ
ଜୁଡ଼ା ମଧ୍ୟେ ଖେଟପନି ଭଡ଼ଲେକ ନେଇ । ୮ ।
ତହିଁ ଅଗ୍ରେ ଭଡ଼ ଦେଲ ହୀର ଗୋଷ୍ଠୁ ପନି
ତହିଁ ପାଶରେ ଶୋଭନ୍ତ ଝଣ୍ଟି କଅଁପନି । ୯ ।
କେତକୀ ପାଖୁଡ଼ା ଚଉପାଶେ ଫୁଟି ଦଶେ
ସୁନା ତର ସୁନା ଦୂବ ଖଞ୍ଜିଦେଲେ ଶେଷେ । ୧୦ ।
ଜାଇ ଯୂଇ ଚମ୍ପା ନାଗେଶ୍ୱର ମାଳା ଆଣି
ବେଢ଼ାଇ ବାନ୍ଧିଲେ ଯତ୍ନେ ସିଙ୍ଘାର ତରୁଣୀ । ୧୧ ।
ମାନଅ ବେତ ବେଢ଼ାଇ ଅଳକା ଖଞ୍ଜିଲେ
ଅଳକା ଖଞ୍ଜିଣ ଜାଲି ତଥିପରେ ଦେଲେ । ୧୨ ।

ଚନ୍ଦ୍ରଝୁମ୍ପା ମଧ୍ୟେ ମଥାମଣି ଲମ୍ବାଇଲେ
କର୍ଣ୍ଣ ତଟେ ହୀରାରତ୍ନ କାପ ଖଞ୍ଜିଦେଲେ । ୧୩ ।
ଶ୍ୟାମା କଣ୍ଠେ ଲମ୍ବାଇଲେ ହୀରାର ପଦକ
ମୁକୁତାର ଗୁପସର ଶୋଭେ ତଥି ପାଶେ । ୧୪ ।
ମୃଣାଳ ଭୁଜକୁ ଶୋଭା ଦଶେ ହୀରା ତାଡ଼
ଅଙ୍ଗୁଷ୍ଠିମାନଙ୍କେ ହେମ ମୁଦ୍ରିକାର ଭିଡ଼ । ୧୫ ।

କଟୀତଟେ ଓଡ଼ଆଣି ଅତହିଁ ଶୋଭନ
ଶ୍ରୀପଦ୍ମରେ ବାଜେଣି ନେପୁର ଶୋଭାବନ । ୧୬ ।
ସ୍ୱର୍ଗେ ଦେବତାଏ ଦେଖି ହୁଅନ୍ତି ଆନନ୍ଦ
ମଞ୍ଚେ କି ଉଦୟ ହେଲା ଆକାଶର ଚୁନ୍ଦ । ୧୭
ବେଶ ସାର ଅଙ୍ଗେ ଚଉସମ ଦେଲେ ବୋଳ
ଗଣ୍ଡ ଦେଶେ ମକର ଲେଖିଲେ ଚିତ୍ର କରି । ୧୮ ।
କୁରଙ୍ଗ ନୟନେ ବାଳୀ କଜ୍ଜଳ ରଞ୍ଜିଲେ
କସ୍ତୁରିର ରେଖା ଦେଲେ ଭ୍ରୂଲତା ଯୁଗଳେ । ୧୯ ।

ଗୁଆ କର୍ପୂର ମିଶାଇ ଅତର ଘେନିଣ
ସରୁ ଛିନ ପତନରେ ଶ୍ରୀମୁଖ ପୋଛିଣ । ୨୦ ।
କପୋଳେ କୁଙ୍କୁମ ବିନ୍ଦୁ ବିଳାସ ରଚିଲେ
ସୁଛିନ ବସନ ଉଣ୍ଟି ଯତ୍ନେ ପିନ୍ଧାଇଲେ । ୨୧ ।
ସୁରଙ୍ଗ ନେତ ଖଣ୍ଡୁଆ ଉପହାର ଦେଲେ
ସୁବେଶ ହୋଇଣ ସୀତା ମୁଖ ନୁଆଁଇଲେ । ୨୨ ।
( ସୋନପୁର )

## ୧୩ । ରତ୍ନଚୁଡ଼ି ଲଗି ମଙ୍ଗଳ

ରତ୍ନଚୁଡ଼ି ଲଗି ହେବେ ଜନକର ବାର୍ତ୍ତା
ବେଢ଼ି ସପତ ତରୁଣୀ ଦୀନ୍ତ ହୁଳହୁଳି । ୧ ।
ଶ୍ରୀହସ୍ତ ବଢ଼ାଇ ଦେଲେ ଜନକର ଜେମା
କଳଙ୍କ ଥିବାରୁ ସର ନୋହିଲା ଚନ୍ଦ୍ରମା । ୨ ।
କାଚ ଲଗି ସାର ସୀତା କପାଳେ ସିନ୍ଦୁର
ଇଷ୍ଟ ଦେବତା ସୁମର କଲେ ଅନୁକୂଳ । ୩ ।
କାଚ ଲଗି ସାର ସୀତା ମାନ୍ୟ ଧର୍ମ୍ମ କଲେ
ଅହ୍ୟ ସୁଲକ୍ଷଣୀ ହୁଅ ମାଏ ଆଜ୍ଞା ଦେଲେ । ୪ ।
( ବଉଳ )

## ୧୪ । ବାଟବରଣ ମଙ୍ଗଳ

ବର ଅସୁଛନ୍ତି ବୋଲି ବ୍ରାହ୍ମଣେ କହିଲେ
ଏଥୁ ଅନନ୍ତରେଣ ଯେ ଅନୁକୂଳ କଲେ । ୧ ।
'ବେଗ ହୋଇ ଯାଅ ବର ବର ଅଣ ଯାଇ'
ଜନକ ବୋଲନ୍ତି କୁଶଧ୍ୱଜ ମୁଖ ଗୁହିଁ । ୨ ।
ଜନକ ବୋଲନ୍ତି ଜଉଛପ ହକରାଇ,
'ଲଗ୍ନ ବେଳ ହେଲା ବର ବର ଅଣ ଯାଇ' । ୩ ।

ସଜହୋଇ କୁଶଧର ହସ୍ତଲଗି ହେଲେ
ବର ବରଗିବାକୁ ଯେ ବ୍ରାହ୍ମଣ ଚଳିଲେ । ୪ ।
ବରଣ ଯୋଗାଡ଼ ଘେନି ଜାନକୀଙ୍କ ଭାଇ
ରାମ କଣ୍ଠେ ବର୍ଣ୍ଣମାଳା ଲମ୍ବାଇଲେ ନେଇ । ୫ ।
ସେଠାରେ ବ୍ରାହ୍ମଣେ ମିଳି ବାକ୍ୟ ଉଚ୍ଚାରିଲେ
ଶ୍ରୀଫଳ ଚନ୍ଦନ ଗନ୍ଧେ ବର ପୂଜା କଲେ । ୬ ।
କନ୍ୟା ଭାଇ ବାନ୍ଧୁ ବର ନେଲେ ହସି ବରେ
ସପତ ଶାଖା ମୁକୁଟ ମଣ୍ଡିଥାନ୍ତି ଶିରେ । ୭ ।
ରାମ ବାଳୁତ ବୟସ ବରବେଶ ଶୋଭା
ଦେଖି ସର୍ବେ ଆନନ୍ଦିତ ଅତି ମନ ଲୋଭା । ୮ ।
( ଗାଙ୍ଗପୁର )

## ୧୫ । ଶ୍ରୀ ବନ୍ଦେମଙ୍ଗଳ

ଏଥୁ ଅନନ୍ତରେ କଥା ଶୁଣ ସାଧୁଜନ
ଯହୁଁ ସେ ସରଳ ବାଟ ବରଣ ବଧାନ । ୧ ।
ଶ୍ରୀରାମଙ୍କ ମୁଖ ଚାହିଁ ମିଥିଳା ନରେନ୍ଦ୍ର
ଆନନ୍ଦେ ପୁଲକ ହୋଇ ପରମ ସାନନ୍ଦ । ୨ ।
ଶ୍ରୀରାମର ପଦ୍ମକର ଧରି ନରସାଇଁ
ପାଞ୍ଚୋଟି ଅଗଣି ରାଜା ପହଞ୍ଚ ମଣୋଇଁ । ୩ ।
ଅଗେ ବର ପଛେ ବୀର ଲକ୍ଷ୍ମଣ ଠାକୁର
ଦକ୍ଷିଣେ ସୁମନ୍ତ୍ର ଚାଲୁଛନ୍ତି ସେ ଶୁମର । ୪ ।
ଶିରେ ବୀର ଛନ୍ଦ ଟେକିଛନ୍ତି ଚନ୍ଦସେନ
ଅଗେ ବନ୍ଦ୍ୟଜନ ବେଦ କରନ୍ତି ଅଧାନ । ୫ ।
ମଣିମା ମଣିମା ବୋଲି ଖଣ୍ଟିଆ ଡାକନ୍ତି
ଅଗେ କୁମାରୀଏ ରତ୍ନଗୁମର ଚାଳନ୍ତି । ୬ ।
ରଘୁବଂଶ ତିଳକ ରୂପରେ ଗରୁହସ
ଲକ୍ଷେ ରଜା ଉପରେ ଠାକୁର ରଘୁବଂଶ । ୭ ।

ଧୀର ଧୀର ହୋଇ ବଜେ କରଣ ଅସନ୍ତ
ମତ୍ତ ମତଙ୍ଗଜ ପରି କୁମର ଦଶନ୍ତ । ୮ ।
ଶ୍ରୀ ଜଗମୋହନ ଗୃହ୍ଲ ବଙ୍କିମ କେଶରୀ
ପଦ୍ମ-ଦଳ-ଲୋଚନ ଚଳଇ କର୍ଣ୍ଣ ସରି । ୯ ।
ଭ୍ରୂଲତା ଯୁଗଳ କିବା ଅନଙ୍ଗ କମାଣ
କଟାକ୍ଷ ଗୃହାଣୀ କି ସେ ପଞ୍ଚଶର ବାଣ । ୧୦ ।
ବାମେଣ କୋଦଣ୍ଡ ଯେ ଦକ୍ଷିଣେ ତୀକ୍ଷ୍ଣ ଶର
ବଜେକଲେ ରାମ ବଜ୍ର ମଣ୍ଡପ ଅପର । ୧୧ ।
ବଶିଷ୍ଠ ଜାବାଳୀ ବାମଦେବ ପୁରୋହିତ.
ସଙ୍ଗତରେ ଘେନି ବଜେ କଲେ ଦଶରଥ । ୧୨ ।
ଦଶରଥ ରାଜାଙ୍କୁ ଜନକ ଦୂରୁଁ ଗୃହିଁ
ପାଖେ ଛନ୍ତି ଅଣୋନ୍ତ ରାଜା କୃତକୃତ୍ୟ ହୋଇ । ୧୩ ।
ରାଜରଷି, ବ୍ରହ୍ମରଷି, ପୁରୋହିତଗଣ
ଯଥାବିଧି ମାନ୍ୟ କରି ଦେଲେକି ଆସନ । ୧୪ ।
କୃତାଞ୍ଜଳି ହୋଇଣ ଜନକ ମହାରଷି
ଦଶରଥ ନୃପତଙ୍କୁ କହୁଛନ୍ତି ହସି । ୧୫ ।
ତୁମ୍ଭେ ଅଟ ଦଶରଥ ଅଯୋଧ୍ୟା ନୃମଣି
ଶ୍ରୀରାମଙ୍କ ପିଅର ବୀରଙ୍କ ଚୂଡ଼ାମଣି । ୧୬ ।
ପବିତ୍ର କୁଳରେ ତୁମ୍ଭେ ସୂର୍ଯ୍ୟବଂଶେ ଜାତ
ତୁମ୍ଭ ସଙ୍ଗେ ବନ୍ଧୁପଣେ ମୁଁ କୁହେଁ ସମର୍ଥ । ୧୭ ।
ବିଶ୍ୱାମିତ୍ର ପ୍ରସାଦେ ମୁଁ କୃତାର୍ଥ ହୋଇଲି
ପବିତ୍ର ବୋଲିଣ ମୁହିଁ ଶରଣ ପଶିଲି । ୧୮ ।
ଆଜୁଁ ସେ ମିଥିଳାପୁର ହୋଇଲା ତୁମ୍ଭର
ଦୋଷାଦୋଷ କ୍ଷମା କରିବ ଟି ଜାନକୀର । ୧୯ ।
ହସ ହସ ହୋଇଣ ଅଯୋଧ୍ୟା ଦଣ୍ଡଧାରୀ
ଜନକ ମୁଖ ଗୃହିଁ କହନ୍ତି ପୁରଃସର । ୨୦ ।

ଶ୍ରୀରାମ ଅଟନ୍ତି ମୋର ଜ୍ୟେଷ୍ଠ ଯେ କୁମର
ତୁମ୍ଭ ଦୁହିତାକୁ ସେହି ଅନୁରୂପ ବର । ୨୧ ।

ସର୍ବ ଧନେ ହେବେ ସେହୁ ଈଶ୍ୱର୍ଯ୍ୟ ଈଶ୍ୱର
ବିଧାତା ସମାନ ତୁମ୍ଭେ ଅଛ ମୁନିବର । ୨୨ ।
ଏହିରୂପେ ଦୁହିଙ୍କି ଯେ ଦୁହେଁ ପ୍ରଶଂସିଲେ
ଦୁଇକୁଳ ବଂଶାବଳୀ ବଶିଷ୍ଠ କହିଲେ । ୨୩ ।

ବାଜିଲା କାହାଳ ଭେରି ପଟହ ମଧୁରେ
ଜନକନନ୍ଦିନୀ ବିଜେ ହେଲେ ଗହଣରେ । ୨୪ ।
ସହସ୍ର ସଜନୀ ସଙ୍ଗେ ଆସୁଥାନ୍ତି ଚଳି
ବରିଲେ ଶ୍ରୀରାମଚନ୍ଦ୍ରେ ନେତ୍ରପଦ୍ମ ଢାଳି । ୨୫ ।
ସ୍ୱସ୍ତି ଉଚ୍ଚାରିଲେ ବିପ୍ରେ ପଢ଼ି ସାମ ବେଦ
ଗହ ଗହ ମହ ମହ ଶୁଭିଲା ଚୌଦିଗ । ୨୬ ।

( ମଞ୍ଜୁଷା )

## ୧୬ । ବର ବନ୍ଦାପନା ମଙ୍ଗଳ

ରାମଚନ୍ଦ୍ର ପ୍ରଭୁଙ୍କର ବନ୍ଦାପନା ବେଳେ
ସ୍ୱର୍ଗର ଦେବତାମାନେ ମିଳିଲେ ସକଳେ
ରାମ ଶ୍ରୀମୁଖକୁ ଚୁହିଁ
ନିସ୍ତରିଲୁଁ ବୋଲି ଦେବେ ଡାକୁଛନ୍ତି ରହି । ୧ ।

କର୍ଣ୍ଣରେ ଚଉକ ରାମ ହୃଦେ କଣ୍ଠିହାର
ଶ୍ରୀଭୁଜେ ବାହୁଟି ରାମ ପଦ୍ମରେ ନେପୁର
କରେ କଙ୍କଣ ଶୋଭଇ
ସୁବର୍ଣ୍ଣର ଅଣ୍ଟା ସୁତା ଅଣ୍ଟାରେ ଅଛଇ । ୨ ।

ରାମ ଦଶ ଅଙ୍ଗୁଷ୍ଠିରେ ଶୋହେ ହୀରା ମୁଦି
ସୁବର୍ଣ୍ଣର ଗୁନ୍ଥା ସୁନା ଜରପାଗ ବାନ୍ଧି
ରାମ ଦଶନ୍ତି ସୁନ୍ଦର
ଶୋଭା ପାଉଛନ୍ତି ରାମ ବନ୍ଦାପନାଠାର । ୩ ।

କପୋଳେ ସିନ୍ଦୂର ଗ୍ରମ ନୟନେ କଜ୍ଜ୍ୱଳ
ପଦ୍ମରେ ଅଲତା ଗ୍ରମ ଅଧରେ ତାମ୍ବୁଲ
ପିନ୍ଧ ସୁନ୍ଦିନ ଅମ୍ବର
ବଜେ କରଛନ୍ତି ଗ୍ରମ ବନ୍ଦାପନାଥାର । ୪ ।

ଶଙ୍ଖର ଶବଦେ ପୁର ହୋଇଲା ଉଛୁଳ
ବେଦବାକ୍ୟ ପଢୁଛନ୍ତି ସକଳ ବ୍ରାହ୍ମଣ
ପୁରନାରୀ ହୁଳହୁଳି
ଶବଦେ ଜନକପୁରୀ ଯାଉଛି ଉଚ୍ଛୁଳି । ୫ ।

ଧୂପଦୀପେ ବନ୍ଦାପନା କରଲେ କୁମାରୀ
ସୀତସ୍ନା ସ୍ନାନ ମଣ୍ଡପ ସୁସଜ୍ଜିତ କର
ବନ୍ଦାପନା କଲେ ଶେଷ
ମନ୍ଦ ମନ୍ଦ ହସୁଥାନ୍ତି ବିଶ୍ୱାମିତ୍ର ଶିଷ୍ୟ । ୬ ।

( ଟିକ୍ଲ )

## ୧୭ । ବରୁଣପୂଜା ମଙ୍ଗଳ

ଏଥୁ ଅନନ୍ତରେ ଗଲା କେତେହେଁକ ବେଳ
ବରୁଣ ପୂଜାକୁ ବପ୍ରେ କଲେ ଅନୁକୂଳ । ୧ ।
ମହା ବସ୍ତୁ ଆଦ ଇଷ୍ଟଦେବ ପୂଜା କଲେ
ଗଙ୍ଗା ଆଦ ପୁଣ୍ୟ ତୀର୍ଥମାନ ସୁମରଲେ । ୨ ।
ଏହିରୂପେ ବେଦରେ ବରୁଣ ପୂଜା କଲେ
ନବରତ୍ନ ମାଳା ବର କଣ୍ଠେ ଲମ୍ବାଇଲେ । ୩ ।
ଶିରକୁ ହେମ ମୁକୁଟ କଟୀକି ମେଖଳା
ବାହାକୁ ବାହୁଟି ଯେ ହୃଦକୁ ଜଗଦଳା । ୪ ।
କର୍ଣ୍ଣରେ ରତ୍ନକ କଣ୍ଠେ ନବରତ୍ନ ହାର
ଶ୍ରୀପଦ୍ମର କରେ ଧର ଖଞ୍ଜିଲେ ତୋଡ଼ର । ୫ ।
ଚନ୍ଦନ ଅକ୍ଷତ ପୁଷ୍ପ ଶିରପରେ ଦେଲେ
କୃତାଞ୍ଜଳି ହୋଇ ପାଦେ ଅର୍ଘ୍ୟ ବନ୍ଦାଇଲେ । ୬ ।

ଗୃହ ଯେ କାପଡ଼ା ଗୃହ ହଣ୍ଡଆର ଥୋଇ
ବରବାସ ବୋଲି ଦ୍ରବ୍ୟ ପାଠ ଦେଲେ ନେଇ । ୭ ।

କହୁଛନ୍ତି ଜନକ ଯେ ହୋଇ ସ୍ନେହଭର
ରଘୁବଂଶନାଥଙ୍କୁ କି ଦେବି ଉପହାର । ୮ ।
ପାଅଧୁଆ ବିଧାନ ଆରମ୍ଭ କଲେ ତହିଁ
ରାମ ପାଦ ଧୋଇ ଦେବେ ସୀତା ସାନଭାଇ । ୯ ।
ବରୁଣତନୟ ହରପାଦ ପଖାଳିଲେ
ତେଣେ ସୀତା ଭାଇ ରାମ ଚରଣ ପୂଜିଲେ । ୧୦ ।
ଛାମୁ ମଣ୍ଡପରେ ରାମ ପ୍ରବେଶ ହୋଇଲେ
ଶଳା ମାର ଘେନି ରାମ ପୟର ଧୋଇଲେ । ୧୧ ।
ଶଳା ମୁଖ ଚାହିଁ ରାମ ମନ୍ଦ ମନ୍ଦ ହସି
ବୀରବର ବୀରକେଶ ଦଅନ୍ତି ଆଉଁସି । ୧୨ ।
ଦ୍ୱିତୀୟ ବରଣ ଯହୁଁ ସରିଲା ବେଦରେ
ଦ୍ୱିଜ ଘେନି ରଘୁନାଥ ବସିଲେ ସଭାରେ । ୧୩ ।
ମାତୃକା ପୂଜା ବିଧାନେ ବିଜେ ତହିଁ କଲେ
ବରଘର କନ୍ୟାବାସ ବିଧି ଆରମ୍ଭିଲେ । ୧୪ ।
ଦ୍ରବ୍ୟ ଗନ୍ଧା ଶୃଙ୍ଗାରେ ଅଳଙ୍କାରମାନ
ନବରତନ ପାଠ ମନ୍ତ୍ରୀ ଦେଲେକ ବ୍ରାହ୍ମଣ । ୧୫ ।
ଶ୍ରୀଯୁଭ ସୁନ୍ଦର ବସ୍ତ୍ର ଦାସୀକରେ ଦେଲେ
ବସ୍ତ୍ର ଘୋଡ଼ାଇଣ ଦାସୀ ଭିତରକୁ ନେଲେ । ୧୬ ।
ମାତାଙ୍କ ଛାମୁରେ ନେଇ ଦେଲେ କନ୍ୟାବାସ
ଦେଖି ମହାଦେଈମାନେ ହୋଇଲେ ସନ୍ତୋଷ । ୧୭ ।
ରଘୁନାଥ ରଘୁବୀର କୌଶଲ୍ୟାନନ୍ଦନ
ଜାନକୀ ହୃଦୟକୁ ସେ କର୍ପୂର ଚନ୍ଦନ । ୧୮ ।

( ପାରଳାଖେମୁଣ୍ଡି )

## ୧୮ । ସନ୍ତାଧର୍ମ ମଙ୍ଗଳ

ଏଥୁଅନନ୍ତରେ ମୃଦୁମ୍ଭଳ ଚଳଗଲେ
ବିପ୍ରଗଣେ ଆସି ମନ୍ତ୍ର ସୂତା ଯେ ଧରିଲେ । ୧ ।
ତାହା ଶୁଣି ପାଞ୍ଚ ମହାଦେଇ ଚଳଗଲେ
ସକଳ କାମିନୀମାନେ ହୁଳହୁଳି ଦେଲେ । ୨ ।
ବିପ୍ରଗଣ ମିଳି ଅଶୀର୍ବାଦ ଉଚ୍ଚାରିଣ
ଗୃହକୋଣେ ଗୃହବିପ୍ର ଉଭା ହେଲେ ଜାଣ । ୩ ।
ତଥିତଳେ ମୁଗ ପୋତ ବସିଛନ୍ତି ବାଳୀ
ବଶିଷ୍ଠଙ୍କ ପୁତ୍ର ଗୋତ୍ର ଉଚ୍ଚାରଣ କରି । ୪ ।
ଇଷ୍ଟ ଦେବତାଙ୍କ ବାକ୍ୟ ପବିତ୍ର ଅଶେଷ
ମନ୍ତ୍ର ପଢ଼ି ଗୁଆଘୃତ ଢାଳିଲେ ବିଶେଷ । ୫ ।
କାନ୍ଥେ ବସୁଧାର ସାତେ ଗନ୍ଧ ପୁଷ୍ପ ଦେଲେ
ଅଷାଢ଼ୁଆ ସୂତା ମନ୍ତ୍ର ପଢ଼ିଣ ବାନ୍ଧିଲେ । ୬ ।
ମସ୍ତକରେ ବିପ୍ରବରେ ତଣ୍ଡୁଳ ସିଞ୍ଚିଲେ
ବାହୁଡ଼ି ବିଭା ମଣ୍ଡପେ ପ୍ରବେଶ ହୋଇଲେ । ୭ ।
ଜନକପୁରେ ଆନନ୍ଦ କି କହିବା ଅବା
ଯେଉଁ ଦେଶେ ଲକ୍ଷ୍ମୀଦେବୀ ହେଉଛନ୍ତି ବିଭା । ୮ ।

ହରଷ ହୋଇଣ ନରେ ସୁନ୍ଦର ଶ୍ରୀହରି
ଦିବ୍ୟସିଂହ ଗଜପତି କେମା ତା କିଙ୍କରୀ ।

( ପୁସ୍ତି )

## ୧୯ । କୌତୁକସୂତ୍ର ବନ୍ଧନ ମଙ୍ଗଳ

କଉତୁକ କଥା ଶୁଣ ହୋଇ ଏକ ମନ
କଉତୁକ ସୂତ୍ର ବନ୍ଧା ବିଧିର ବିଧାନ । ୧ ।
ଚଉଦିଗେ ବେଦୀକାରେ ବେଢ଼ିଣ ବ୍ରାହ୍ମଣ
ସୂତ୍ର ଘେନି ଜପୁ ଜପୁ କଲେ ସାତଗୁଣ । ୨ ।

ନିଗୁଣ କରଣ ସୂତ୍ର ମନ୍ତ୍ରୀ କରେ ଧରି
ଦୂର୍ବାଙ୍କୁର ତଣ୍ଡୁଳ ଯେ ପତର ବଦରୀ । ୩ ।
ନବ ଦୂର୍ବାଙ୍କୁର ନବ ସୂତ୍ରରେ ଗୁନ୍ଥିଣ
ମନ୍ତ୍ର ବାକ୍ୟେ ବରହସ୍ତେ କଲେକ ବନ୍ଧନ । ୪ ।
ତଦନ୍ତରେ କନ୍ୟାପୁରେ ପ୍ରବେଶ ହୋଇଲେ
ମଙ୍ଗଳ ଗାଇଣ ଦାସୀ ହୁଳହୁଳି ଦେଲେ । ୫ ।
ପୂର୍ଣ୍ଣକୁମ୍ଭ ପରେ ଦେଲେ ନେଇ କନ୍ୟା କର
କୌତୁକସୂତ୍ର ବନ୍ଧନ କଲେ ଦ୍ୱିଜବର । ୬ ।
( ପୁଷ୍ପ )

## ୬୦ । ଲବଣଚଉଁରୀ ମଙ୍ଗଳ

ମାଏ ଆଜ୍ଞା ଦେଲେ ଆସ ସର୍ବେ ବେଗ କରି
ସୀତାସ୍ତା ପୂଜିବେ ମୋର ଲବଣଚଉଁରୀ । ୧ ।
ତାହା ଶୁଣି ସଖିମାନେ ବେଗେ ଚାଲିଗଲେ
ସୁବର୍ଣ୍ଣର ପୂର୍ଣ୍ଣକୁମ୍ଭ ଯତନେ ଥାପିଲେ । ୨ ।
ଜାନକୀ ଶ୍ରୀକରେ ଦେଲେ ତଣ୍ଡୁଳ ଲବଣ
ପୂଜିଲେ ଜନକ ଜେମା ମୁଖକୁ ପୋଡଣି । ୩ ।
ଶୋକଭର ହୋଇ ମାଏ ବୋଲନ୍ତି ବଚନ
ପୂଜ ଲବଣ ଚଉଁରୀ ମୋ ଜୀବ ଜୀବନ । ୪ ।
ଉଚ୍ଛୁର ହୋଇବ ଅଉ ନ କର ତୁ ଶୋକ
ଅଞ୍ଚଳେ ପୋଛନ୍ତି ମାଏ ଜାନକୀ ଲୋତକ । ୫ ।
ଲୁଜ ଲୁଜ ହେଉଛନ୍ତି ଅତି ଶୋକଭରେ
ଗୁଉଳ ମୁଠିଏ ସୀତା ଧଇଲେ ଶ୍ରୀକରେ । ୬ ।
ଲୁଣ ଚଉଁରୀ ଗୁଉଳ ଧରି ବଇଦେହୀ
କୋଠି କାଟି ସାତମୁଠି ଖେଳାବନ୍ତି ସଖୀ । ୭ ।
ସାତ ଥର ଖେଳାଇଲେ ସାତ ଅନ୍ୟ ନାରୀ
ବସନ୍ତ ଜାନକୀ ଦେବୀ ମଥା ପୋଛିକରି । ୮ ।

ଲବଣ ଚଉଁରୀ ପୂଜା ଜାନକୀ ସାରିଲେ
ମୁଠିଏ ଧରିଣ ବାଳା ବେଗେ ଉଭା ହେଲେ । ୯ ।
ଧୀର ଧୀର ହୋଇକରି ବିଜେକଲେ ବାଳୀ
ମଣ୍ଡପର ତଳେ ଉଭା ଜନକଦୁଲାଳୀ । ୧୦ ।
ଭ୍ରାତା ତାଙ୍କ ବୀରଭଦ୍ର ଠେକା ଦେଲେ ଶାଢ଼ୀ
ଫିଙ୍ଗି ଦେଲେ ସୁଲକ୍ଷଣୀ ଲବଣ ଚଉଁରୀ । ୧୧ ।
ପଡ଼ିଲା ଲୁଣ ଚଉଁରୀ ଶ୍ରୀରାମ ଉପରେ
ହସ ହସ ହେଲେ ଦଶରଥଙ୍କ କୁମରେ । ୧୨ ।
ବାହୁଡ଼ିଣ ନୃପଜେମା ନବରେ ପ୍ରବେଶ
ପୂର୍ଣ୍ଣମୀର ଚନ୍ଦ୍ରପ୍ରାୟେ ଶ୍ରୀମୁଖ ହରଷ । ୧୩ ।
ସଖିଗଣେ ବେଢ଼ିଣ ମାରନ୍ତି କରତାଳି
ଏ ଗୀତ ରଚିଲେ ରାଜସିଂହଙ୍କ ଦୁଲାଳୀ । ୧୪ ।
(ନରସିଂହପୁର)

## ୨୧ । ଗନ୍ଧଷଣମଙ୍ଗଳ

ଶୁଣ ହେ ସୁଜନେ ରାମ ଗନ୍ଧଷଣ ବିଧି
ଗନ୍ଧସି ହୋଇବେ ରାମ କର ସର୍ବ ସିଦ୍ଧି । ୧ ।
ସାତ ସୁଲକ୍ଷଣୀ ଅସି ହୋଇଲେ ପ୍ରବେଶ
ଗନ୍ଧସି ହୋଇବେ ରାମ ପରମ ସନ୍ତୋଷ । ୨ ।
ସାତ ସୁଲକ୍ଷଣୀ ଅସି ପ୍ରବେଶ ହୋଇଲେ
ଗନ୍ଧସି ହୋଇବା ପାଇଁ ରାମଙ୍କୁ ଅଣିଲେ । ୩ ।
ଦଧି ମାଛ ପୂର୍ଣ୍ଣକୁମ୍ଭ ସେଠାରେ ଥୋଇଲେ
ମାଣିକ୍ୟର ଦୀପ ଜାଳି ନେଇ ବସାଇଲେ । ୪ ।
ସପତ ତାମ୍ବୁଲ ପତ୍ର ରାମଣିରେ ଦେଲେ
ଅଭଙ୍ଗ ଭିତରେ ଶିଳଚୁଆ ବଢ଼ାଇଲେ । ୫ ।
ଗନ୍ଧଷଣ ସରିଲା ଯେ ଶୁଣ ହେ ସୁଜନେ
ଶରଣ ପଶିଲି ମୁହିଁ ଶ୍ରୀରାମ ଚରଣେ । ୬ ।
( ହିନ୍ଦୋଳ )

## ୨୨ । ହାତଗଣ୍ଠି ମଙ୍ଗଳ

ଶ୍ରୀହସ୍ତ ଯୋଡ଼ଣ ବେଳ ହୋଇଲାକ ଯହୁଁ
ନୃପତି ବୋଇଲେ ଦଣ୍ଡେ ବାଦ୍ୟମାନ ରହୁ । ୧ ।
ଶ୍ରୀରାମର ହସ୍ତେ ଦେଲେ ଜାନକୀର କର
କୁଶରେ କର ବନ୍ଧନ କଲେ ଦ୍ୱିଜବର । ୨ ।

ବାକ୍ୟ— ଯଥା ଇନ୍ଦ୍ରସ୍ୟ ଇନ୍ଦ୍ରାଣୀ
ଯଥା ଗୌତମସ୍ୟ ଅହଲ୍ୟା
ଯଥା ଚନ୍ଦ୍ରଦେବସ୍ୟ ରୋହିଣୀ
ଯଥା କନକଚନ୍ଦ୍ରସ୍ୟ ଗୌରୀ
ଯଥା ଲକ୍ଷ୍ମୀଦେବୀ ଧନମଣ୍ଡୌ
ତଥା ସୀତା ଦେବୀ ରଘୁମଣ୍ଡୌ ।

କୁଶ ପାଣି ଦାନ ଦେଇ, ଅଇଲେ ଯୁବତୀ
ଫେଡ଼ ତୁମ୍ଭେ କୁଶଗଣ୍ଠି ବୋଇଲେ ନୃପତି । ୩ ।
ସୀତା ଶ୍ରୀରାମ ହସ୍ତକୁ ବସ୍ତ୍ର ଯୋଡ଼ି ଦେଲେ
କୁମାରୀ ସୁନ୍ଦରୀ ଏକ ଗଣ୍ଠି ପିଟାଇଲେ । ୪ ।
ଅନ୍ୟ ରମଣୀ ସେ ହସ୍ତଗଣ୍ଠି ପିଟାବନ୍ତି
ଯୋଡ଼ ଶଙ୍ଖ ନାଦେ ପୃଥ୍ୱୀ କମ୍ପିତ ହୁଅନ୍ତି । ୫ ।
ଶ୍ରୀରାମ ଅଙ୍ଗୁଷ୍ଠି କରେ ଧେନଣ ଜାନକୀ
ବୁଲି ଯାଇ ବାମପାଶେ ବସିଲେ ତଡ଼ିତ । ୬ ।
ବେଦଜନଙ୍କର ଗୋତ୍ର ଉଚ୍ଚାରଣ କଲେ
ଶଙ୍ଖେ ପାଣି ଧେନ ଯୌତୁକମାନ ଦେଲେ । ୭ ।

ଦାସୀ ଦାସ ବେଶ ଘୋଷ ଦେଲେକ ଜନକ
ଲକ୍ଷେକ ସୁନାଅଁ ରାମେ ଦେଲେ ଯଉତୁକ । ୮ ।
ଶ୍ରୀରାମ ଶ୍ରୀମୁଖ ଚାହିଁ ବୋଲନ୍ତି ରାଜନ
ଯୌତୁକ ଦେବାକୁ ମୁହିଁ ନୁହଇ ଭାଜନ । ୯ ।
ଏତେ ବୋଲି ରାଜନ ଯେ ଶୋକଭରେ ହୋଇ
ବେନି ନୟନରୁ ଲୁହ ଯାଉଅଛି ବହି । ୧୦ ।

ଶିଶୁମତି ଅଟଇ ମୋ ବାଳୁତ କୁମାରୀ
ଦଶ ଦୋଷ କଲେ କ୍ଷମା କରବ ଏହାର । ୧୧ ।
ଜାନକୀ ଅଟଇ ମୋର କୁଳର ଦୁଲଣୀ
ଯେତେ ଦୋଷ କଲେ ରାମ କରିବକି କ୍ଷମା । ୧୨ ।
ଜନକଙ୍କୁ ଦଶରଥ କରନ୍ତି ଉତ୍ତର
ମିଥିଲା ଅଯୋଧ୍ୟା ଅଟେଁ ଏକଇ ନବର ।
ଶିଳ ଅବରୋହଣେ ବର କନ୍ୟାଏ ବସିଲେ
ଧନଜନ କନ୍ୟା ସୁତ ମନେ ମନାସିଲେ । ୧୪ ।
ଠିଆ ହୋଇ ବରକନ୍ୟା ଶିଳେ ଉଭାହୋଇ
ବେନିକର ଯୋଡ଼ ହୋମେ ପକାଇଲେ ଖଇ । ୧୫ ।
( ଅଠଗଡ଼, ଗଞ୍ଜାମ )

## ୬୩ । ହୋମ ମଙ୍ଗଳ

ଜାନକୀ ଶ୍ରୀରାମ ବେନିଏ ହୋଇ ଅତି ସୁବେଶ
ହୋମ ନିମନ୍ତେ ଯେ ମଣ୍ଡପେ ହେଲେ ବେଗ ପ୍ରବେଶ । ୧ ।
ରତ୍ନ ଖଟଉପରେ ବିଜୟେ କଲେ ଶ୍ରୀ ରାମଚନ୍ଦ୍ର
ବାମ ପାଶେ ବଇଦେହୀଙ୍କି ସର୍ବେ ଦେଖି ଆନନ୍ଦ । ୨ ।
ଗାର୍ଗବ, ଇନ୍ଦ୍ର, ଦ୍ୱିବେଦପଣ୍ଡ୍ୟୁ ମୁନି କପିଳ ମିଳି
ରାମଚନ୍ଦ୍ର ହୋମ ନିମନ୍ତେ ନାନା ଉତ୍ସବ କରି । ୩ ।
ସ୍ୱାବ ମଣ୍ଡପେ ମାଳା ଝାଳ ରାହୁରେଖ ଯେ ଦେଲେ
ରାମଙ୍କୁ ବସାଇ ମଣ୍ଡପେ ମନ୍ତ୍ରୀ ହୋମ ବିହ୍ନିଲେ । ୪ ।
ଜାବାଳି, କାଶ୍ୟପ, ଅଙ୍ଗିରା ସର୍ବ ଋଷିଙ୍କ ସଭା
ହୋମ ପାର୍ଶ୍ୱଶେ ଚକାଚନ୍ଦ୍ର ଦେଖି ମୁନିଏ ଲୋଭା । ୫ ।
ଗୁଆ ଘୃତେ ବାସ ଚନ୍ଦନ ହୋମ ପାତ୍ରେ ଯୋଗାଡ଼
ରତନ ଶ୍ରୁବରେ ଆହୁତି ଦେଲେ କାଷ୍ଠେ ଅଜାଡ଼ । ୬ ।
ଈଶ୍ୱର, ଇନ୍ଦ୍ର, ଋଷିବୃନ୍ଦ, ଦଶରଥ ନୃପତି
ରାମଚନ୍ଦ୍ର ହୋମ ଦେଖିଣ ହେଲେ ପ୍ରଫୁଲ୍ଲମତି । ୭ ।

ବିଷ୍ଣୁ, ଇନ୍ଦ୍ର, ଋଷି ବ୍ରହ୍ମାଙ୍କୁ ଦଶରଥ ନମିଲେ
ଦଶରଥ କର ଯୋଡ଼ନ୍ତେ ବିଷ୍ଣୁ ମେଲାଣି ହେଲେ । ୮ ।

( ଚକ୍ରାଠୀ )

## ୨୪ । ଜଗନ୍ନାଥ ମଙ୍ଗଳ

ଜୟ ଜୟ ଜଗନ୍ନାଥ ନୀଳଗିରି ପତି
ଅଭିନବ ଜଳଧର ସୁନ୍ଦର ମୂରତି । ୧ ।
ସୁସଞ୍ଜ ଠାଣିରେ ଶୋହେ ସୁବର୍ଣ୍ଣ ପଇତା
ଚୂଳରେ ଦମୁଣା ଗର୍ଭା କସ୍ତୁରୀର ଟିଥା । ୨ ।
ଝଳ ଝଳ ଦିଶଇ ମୁକୁତା କଣ୍ଠମାଳ
ଶ୍ରବଣ ପୁଟରେ ବେନି ମର୍କତ କୁଣ୍ଡଳ । ୩ ।
ନବ ରତ୍ନ ପଦଗୋଟି ହୃଦେ ଭଲ ସାଜେ
ବଳାଣି ମର୍କତ ଭୁଜେ କଙ୍କଣ ବିରାଜେ । ୪ ।
ଡମ୍ବରୁମଟ୍'କୁ ହେମ ଦିବ୍ୟ ଓଢ଼ଆଣି
ଶ୍ରୀଅଙ୍ଗେ ଚନ୍ଦନ ଲେପି ନ ତେଜ ଉଛୁଣି । ୫ ।
ରୂପକୁ ନୁହଇ ଲକ୍ଷ କୋଟିଏ ମଦନ.
ରଙ୍ଗ ଅଧରକୁ ଶୋଭି ଡାଳିମ୍ବ ଦଶନ । ୬ ।
କାଛଟି ବାହୁଟି ହେ ବିବଧରନ୍ତେ ଜଡ଼ି
ଦମୁଣାର ଧଣ୍ଡାମାଳ ହୃଦପାଏ ପଡ଼ି । ୭ ।
କଳା ମୁଖ ଗୋଟିକି ସୁନ୍ଦର ଚକାଡୋଳା
ପଦ୍ମ ଫୁଲ ଭିତରେ କି ଭୃଙ୍ଗ କରେ ମେଳା । ୮ ।
ଶଙ୍ଖଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଶୋହେ
କୋଟିଏ କନ୍ଦର୍ପ ରୂପ ଜଗଜ୍ଜନ ମୋହେ । ୯ ।
ଭଗତ ଜନ ସଙ୍ଗାଳି ମୁକତିର ଘର
ତାହାଙ୍କ ଶରଣାଗତ କୃଷ୍ଣ ଦାସ ଛାର । ୧୦ ।

( ରଣପୁର )

## ୨୫ । ଶ୍ଳୋକ ମଙ୍ଗଳ

ଷଡବର ଶ୍ରୀ ପୁରୁଷୋତ୍ତମେ ନରହର
ଦାରୁବ୍ରହ୍ମ ରତ୍ନ ସିଂହାସନେ ବଜେକର । ୧ ।

### ଶ୍ଳୋକ

ନୀଳଉତ୍ପଳ ମଲ୍ଲୀରଙ୍ଗଣୀ ପାରିଜାତକ ସାଜିତଂ
ଭାଲେ ମାଳ କମାଣ କସ୍ତୁରୀ ଇନ୍ଦୁ ବିନ୍ଦୁ ବିରାଜିତଂ,
ରାହୁ ରେଖା ନିର୍ମିତ କଟୀଦାମିନୀ ମୋତିପନ୍ତି ସୁଶୋଭିତଂ
ଅହେ ନକ୍ଷତ୍ରଗଣ ମଧ୍ୟରେ ନବଘନ ବିରାଜିତଂ । ୨ ।
ଅମର ତାଣ୍ଡବ ତାଳ ମର୍ଦ୍ଦଳ ବଜାଇ
ତନକୋଟି ଶଂଖଧ୍ୱନି ବ୍ରହ୍ମଲୋକେ ପାଇ । ୩ ।
ମକରାକୃତ କୁଣ୍ଡଳା ମୂର୍ତ୍ତି ବେଶ ଶେଷ ଶୋଭାକର
ମୁଖପଦ୍ମ କଞ୍ଜ ପଦ୍ମଲୋଚନ ସନ୍ଦମନ୍ଦର ବେହାର
ମଧୁକାଧର ଭଗତ ସ୍ୱଦର ମୁକତାଦାୟକ ଶୋଭାକର
ପଦ୍ମରାଗ ମାଣିକ୍ୟ ମର୍କତ ଉର ହାରଂ ।
ମଙ୍ଗଳ ଗୁର୍ଜ୍ଜରୀ ରାଗେ କର ବୀଣା ବାଣୀ ହେ
ଶଙ୍ଖ କୌମୁଦୀ କଙ୍କଣ ମୁଦ୍ରି ଶରଣାପଞ୍ଜର ବାହୁକଂ
ଅଙ୍ଗେ ଅଙ୍କିତ ଅଘୋର ଚନ୍ଦନ ବୀରନେତ ଉଡ଼ାଉକଂ
କ୍ଷୀନ କଟିତ ପୀତ ପଟିତ ହେମ ଘଣ୍ଟି ତଡ଼ାଉକଂ
ମୁକୁନ୍ଦଦେବ ତନୟା ପଦ୍ମମାଳୀ ପଦ୍ମପାଦେ ଧ୍ୟାଉକଂ । ୪ ।

( ପୁରୀ )

## ୨୬ । ଗୀତଗୋବନ୍ଦ ମଙ୍ଗଳ

ପଦ୍ମାପୟୋଧରତଟୀପରିରମ୍ଭଲଗ୍ନ
କାଶ୍ମୀରମୁଦ୍ରିତମୁରୋ ମଧୁସୂଦନସ୍ୟ
ବ୍ୟକ୍ତାନୁରାଗମିବ ଖେଲଦନଙ୍ଗଖେଦ
ସ୍ୱେଦାମ୍ବୁପୂରମନୁପୂରୟତୁ ପ୍ରିୟଂ ବଃ ।

ପଦ୍ମା ପୟୋଧର ତଟ ଅଲିଙ୍ଗନ କରି
ହୃଦୟ କୁଙ୍କୁମାଙ୍କିତେ ପ୍ରମୋଦ ମୁରାରୀ । ୧ ।
ମନୁ ଅନୁରାଗ କଏ ହୋଇଛୁ ବାହାର
କାମ ଖେଦ କଳେବରେ ପୂରେ ସ୍ୱେଦ ନୀର । ୨ ।
କୋଟି ମନମଥ ଗଞ୍ଜେ ଲବଣ୍ୟ ବଦନ
ଚତୁର୍ଦ୍ଦଶ ଲୋକ ଆଲୋକିତ ଯାର ଧ୍ୟାନ । ୩ ।
ସେ କୃଷ୍ଣ ଚରଣେ ମନ ଦିଅ ସାଧୁଜନ
ହରିରସ ବିନୁ ଏହି ଦିବସ ଦୁର୍ଦ୍ଦିନ । ୪ ।

## ୬୭ । ବୁଢ଼ାକଳସ

ଦନ୍ତୁଛନ୍ତି ସଖିମାନେ ବାନ୍ଧବୀରେ ଯାଇ
ଭଲ ବର ଖୋଜି ପିତା ଆଣିଲେ ଗୋ ସହି । ୧ ।
କେତେ କାଳୁ ସମ୍ପାଦଣ କରିଲେ ଏ ବର
ଜାମ୍ବବ ପରାୟେ ସଖି ବୟସ ତାହାର । ୨ ।
ବର ଆସିବାର ଶୁଣି ଦେଖିଲୁଁ ଗୋଡ଼ାଇ
ମଥା ପୋଡ଼ି ବସି ବୁଢ଼ା ଚଳୁଅଛୁ ମହି । ୩ ।
ଲଜ୍ଜା ଭରେ କାହାକୁ ସେ ନ କହେ ବଚନ
ଝାଳୁଅ ଚେପେଟା ନାକ ବାଙ୍କ ଯେ ବଦନ । ୪ ।
ନଡ଼ିଆ ଖୋଳ ପରାୟେ ଦିଶେ ତାର ଆଖି
ଡୋଳା ଦୁଇଗୋଟା ଚିମା ଭୟକଲୁଁ ଦେଖି । ୫ ।

ଖଣା ଖାଲ ପ୍ରାୟେ ପେଟ ଯାଇଅଛୁ ପଶି
ଲମ୍ବ ଲମ୍ବ ହାତ ଗୋଡ଼ ଶିରମାନ ଦିଶି । ୬ ।
ଝୋଟ ପ୍ରାୟେ ପାଚଣ ଅଛଇ ଜଣ ଦାଢ଼ୀ
ଦନ୍ତ ବଡ଼ ଓଷ୍ଠ କି ପ୍ରତ୍ୟକ୍ଷେ ବଡ଼ ଢୋଢ଼ । ୭ ।
କପାଳ ଅଟଇ ଉଚ୍ଚ କର୍ଣ୍ଣ ଦେଖ ସାନ
କେନ୍ଦୁକାଠ ପରାୟେ ଦିଶଇ ରୂପ ବର୍ଣ୍ଣ । ୮ ।

ଦେଖିବା ମାତ୍ରକେ ସଖି ଚକ୍କିତ ହୋଇଲୁଁ
ଗୋଦର ଗୋଡ଼ ଦେଖିଣ ଭୟେ ପଳାଇଲୁଁ । ୯ ।
ଲଜ ନାହିଁ ବୁଢ଼ା ପୁଣି ଘେନଛ୍ଛି କଜ୍ଜ୍ୱଳ
ଯା ମସ୍ତକେ ବିରାଜଇ ଶ୍ୱେତ ବର୍ଣ୍ଣମାଳ । ୧୦ ।
ଲଉଫୁଲେ ମାଳା ରଚି ହୃଦେ ଲମ୍ବାଇଛି
ଲଜ ନାହିଁ ପାକୁଆ ଯା ପାନ ଚୋବାଉଛି । ୧୧ ।
ଦଶହାତ ଉଚ୍ଚ ଦେଶେ ବସିଲ ଉପରେ
କାଇବସ୍ତ୍ର ଖଣ୍ଡେ ବୁଢ଼ା ବାନ୍ଧିଛି କଟିରେ । ୧୨ ।
ଗୋଡ଼ ହାତ ଶୂନ୍ୟ ଫୁଲ ପଡ଼ୁଛି ନୟନେ
ନାସାରୁ ସିଙ୍ଘାଣି ବହୁଅଛି ଅନୁକ୍ଷଣେ । ୧୩ ।
ଭଣ୍ଡାର ଯେ ନ ମିଳିଲ ଏଡ଼େ ମଙ୍ଗଳରେ
ବାଙ୍କ କରି ବୁଢ଼ା ଜୁଡ଼ା ପାରିଛି ପଛରେ । ୧୪ ।
ନାଶ ଦାଢ଼ି ବଢ଼ି ତାର ହୃଦରେ ଲଗୁଛି
ପିଠିଅଡ଼େ କୁଜଟାଏ ଉଚ୍ଚ ଦିଶୁଅଛି । ୧୫ ।
ବେଭା ମଣ୍ଡପେ ବସିବା ଶୋଭା ନ ଦିଶଇ
ପଦକ ଚଉକି ଲଇ ହଉଛି ହଲଇ । ୧୬ ।
ପାଗରେ ଗୋ ଖୋସିଅଛି ମୟୂରର ପକ୍ଷୀ
ବରଣି ବେଳକୁ ଲୋକେ ହସୁଛନ୍ତି ଦେଖି । ୧୭ ।

ଘୋଡ଼ାରେ ବସି ନ ପାରି ଘୁମ୍ପାଇଁ ପଡ଼ିଲେ
କାଖେଇ କରି ଲୋକେ ତାକୁ ମଣ୍ଡପକୁ ନେଲେ । ୧୮ ।
ସଙ୍ଗରେ ଗୋ ଆଣିଅଛି ଯେତେକ ବାଇଦ
କୁଲ ପିଟିଲ ପରାୟେ ଶୁଭୁଛି ଶବଦ । ୧୯ ।
ବରଯାତ୍ରୀ ପଣେ ଆସିଛନ୍ତି ଯେତେ ଲୋକ
ତନ୍ତି ହଂସି ପାଟବି କେଉଟ ଭାଟ ରଙ୍କ । ୨୦ ।
ଘର ତାର କନକା ଗୋ କଣ୍ଟା ଯେ ଅଟଇ
ଅତି ଅପ୍ରଚ୍ଛନ୍ନ ବଡ଼ ବୁଢ଼ା ଗୋ ଦିଶଇ । ୨୧ ।

ଲୁଣିଆ କେଉଟର ତୁ ହୋଇବୁ ଘରଣୀ
କେଉଁ ତୀର୍ଥେ ତପ ବୁଢ଼ା କରିଥିଲ ପୁଣି । ୨୨ ।

ଗୁପତ ହୋଇଣ ବୁଢ଼ା କେଉଁ ଦେଶେ ଥିଲା
ମଧ୍ୟସ୍ଥ ଲୋକର କଣୋ ଆଖି କି ନ ଥିଲା । ୨୩ ।
ବର ଆଣି ଗଲା ଯେହ୍ନୁ ଅଟଇ ସେ ଅନ୍ଧ
ନ ଦେଖି ନ ବୁଝି ପିତା କଲେ ଗୋ ସମ୍ବନ୍ଧ । ୨୪ ।
ତମାଳ ଲୋକେ କନ୍ୟାକୁ କରନ୍ତି ତମାଳ
ମୁଖ ପୋତ ତଳକୁ ଅଛଇ ନୃପବାଳୀ । ୨୫ ।
କଉତୁକ ପରିହାସ ଅଟେ ଏ ମଙ୍ଗଳ
ନଣନ୍ଦକୁ ବଧୂମାନେ କରନ୍ତି ତମାଳ । ୨୬ ।
କୃଷ୍ଣଚନ୍ଦ୍ର ଭୁଙ୍ଗ ଜେମାମଣି ଏହା ଭଣି
ପରିହାସ ଏହ୍ନୁ ଗୀତ ଦେଖାଇଲେ ଆଣି । ୨୭ ।

( ତଗିରିଆ

## ୬୮ । ବୁଢ଼ୀକଳସ

କହନ୍ତି କାମିନୀମାନେ ବର ଆଗେ ଯାଇ
ଏଡ଼େ ଅପାଣ୍ଡୁକ କନ୍ୟା କଲେ ବାପ ଭାଇ । ୧ ।
କେଉଁ ଧାଇ ମୃଦୁସ୍ଥଳ ଯାଇଥିଲେ ଦେଖି
ହୋଇଥିଲା ଅନ୍ଧ କି ତାଙ୍କର ବେନି ଆଖି । ୨ ।
ଲାଞ୍ଚ ଖାଇ କନ୍ୟାକୁ ଯେ ଦେଖିଣ ଅଇଲେ
ସୁନ୍ଦର ହୋଇଛି କନ୍ୟା ଗ୍ରାମରେ କହିଲେ । ୩ ।
ଖଦ ଧୋବ ପରାଯ୍ୟେ ଦିଶଇ ମଥା କେଶ
ଖସି ପଡ଼ିଅଛି ଦାନ୍ତ କହିବ ମୁଁ କସ ? ୪ ।
ଭ୍ରୁଲତାର ବାଳ ଯାଇ ଲାଗିଛି କପୋଳ
ନୂଆ ଖଡ଼ି ଧୋବ ପ୍ରାୟେ ଦିଶଇ ଶରୀର । ୫ ।
ନୟନର ଶୋଭା ମୁଁ ଯେ ନ ପାରଇ କହି
ନାସିକା ତ ଦିଶୁଅଛି ଚୁଲିଝିଙ୍କା ଭୂଇଁ । ୬ ।
ଉଇ ଦିଶେ ବେକ ପୁଣି ଦିଶେ ପଖା ହାଡ଼
ହସ୍ତ ଲମ୍ବାଇଲେ ଗଳା ପଡୁଅଛି ଛାଡ଼ । ୭ ।

ଚମ ପ୍ରାୟେ ତଳମା ତା ପଡ଼ୁଛୁ ମଞ୍ଜୁଳି
ଅଣ୍ଟା ବାଜେ ଠକ ଠକ କନ୍ୟା ଗଲେ ଚଳି । ୮ ।
ଦାନ୍ତୁଙ୍କ ଉଚ୍ଚ କପାଳ ପାଚିଲାଣି ବାଳ
କେତେ କାଳୁ ବୁଢ଼ୀ କନ୍ୟା ରଖିଥିଲେ ଘର । ୯ ।

ଖାଇ ଗୁଣ୍ଡି ଛେନା ଝିଣ୍ଟି କେଉଁ ଦେଶେ ଥିଲା
ଅନ୍ନ ନ ପାଇଣ ବୁଢ଼ୀ ଏଠାକୁ ଆସିଲା । ୧୦ ।
ଭିଙ୍କିଣାଳେ ବସି ବୁଢ଼ୀ ଘୁଣ୍ଟୁ ଥିଲା ଖାଇ
ପଦ୍ମନାଭ ହସ୍ତଧର ହେଲେ ମହାଦେଇ । ୧୧ ।
ଖୁଁ ଖୁଁ ଖାସେ ବୁଢ଼ୀ ଆଗେ ପେଲୁଥିଲା ଧରି
ଖରତର ନିଶ୍ୱାସ ମୋ ମଥା ଲାଗେ ଭୂଇଁ । ୧୨ ।
ଦେହଯାକ ବୁଢ଼ୀର ହେ ଯାଦୁ ହୋଇ ଅଛୁ
ଖପରା ଖଣ୍ଡେକେ ବୁଢ଼ୀ କୁଣ୍ଡାଇ ହେଉଛୁ । ୧୩ ।
ଗୋଦର ଗୋଡ଼ରେ ବୁଢ଼ୀ ଅଳତା ଲାଉଛୁ
ପାକୁଆ ପାଟିରେ ବୁଢ଼ୀ ପାନ ଘୋବାଉଛୁ । ୧୪ ।
ନୟନକୁ ନ ଦଶେ କର୍ଣ୍ଣକୁ ନ ଶୁଭଇ
ନିଲଜ୍ଜି ହୋଇ ବେଦୀରେ ବସିଛୁ କପାଇଁ । ୧୫ ।
କନ୍ୟା ଆସିବାର ଶୁଣି ଦେଖିଲେ ହେ ଯାଇ
ମଥା ପୋତ ବସି ବୁଢ଼ୀ ଚଲୁଅଛୁ ଭୂଇଁ । ୧୬ ।

ଲାଜେଣ କାହାକୁ ବୁଢ଼ୀ ନ କହେ ବଚନ
ଝାକୁଆ ଚେପଟା ଗାଲ ବାଙ୍କ ଯେ ବଦନ । ୧୭ ।
ନଡ଼ିଆ ଖୋଲପା ପ୍ରାୟ ଦଶେ ବୁଢ଼ୀ ଆଖି
ଡୋଳା ଦୁଇ ଗୋଟି ଉମା ଭଯ୍ୟୁକଲେ ଦେଖି । ୧୮ ।
ଖଣା ଗାଲ ପ୍ରାୟ ପେଟ ଯାଇଅଛୁ ପଶି
ଲମ୍ବ ଲମ୍ବ ହାତ ଗୋଡ଼ ଶିରମାନ ଦିଶି । ୧୯ ।
କପୋଳ ଦଶଇ ବଡ଼ କର୍ଣ୍ଣବେଣ ସାନ
କେନ୍ଦୁକାଠ ପ୍ରାୟକ ଦଶଇ ରୂପବର୍ଣ୍ଣ । ୨୦ ।
ଦେଖିଲା ମାନବେ ସଖି ଚକିତ ହୋଇଲେ
ଗୋଦର ଗୋଡ଼ ଦେଖିଣ ଭଯ୍ୟେ ପଳାଇଲେ । ୨୧ ।

ଲାଜ ନାହିଁ ବୁଢ଼ୀକି ଗୋ ଘେନିଛୁ କନ୍ଧୁଲ
ଦେଖିକରି କି ବୋଲିବେ ରାଜନ ଅମ୍ବର । ୨୨ ।
ଚନହାତ ଉଇ ଦଶେ ବସିଲେ ବେଦରେ
କାର୍ପିବସ୍ତ୍ର ଖଣ୍ଡେ ବୁଢ଼ୀ ଭିଡ଼ିଛୁ କଟିରେ । ୨୩ ।
ଗୋଡ଼ ହାତ ଶୁନ୍ୟ ଫୁଲା ପଡ଼ିଛୁ ନୟନେ
ନାସାରୁ ସିଙ୍ଘାଣି ବୋହୁପଡ଼େ ଅନୁକ୍ଷଣେ । ୨୪ ।
କନ୍ୟା-ଭାଇ ନଣ ଦାଢ଼ୀ ହୃଦରେ ଲଗିଛୁ
ପିଠି ଅଡ଼େ କୁଜ ଟାଏ ଉଇ ଦଶୁ ଅଛୁ । ୨୫ ।
କନ୍ୟା ଦେଖି ଗଲା ଯେହୁ ଅଟଇ ସେ ଅନ୍ଧ
ନ ଦେଖି ନ ବୁଝି ପିତା କଲେ ଗୋ ସମ୍ବନ୍ଧ । ୨୬ ।
ଖଣ୍ଡିଆ ଗୋଦରୀ ବୁଢ଼ୀ ବସିଛୁ ବେଦର
ଖରତର ନିଶ୍ୱାସ ଗୋ ବୋହୁଛୁ ତାହାର । ୨୭ ।
ଅଶ୍ଳେରେ ଡାକଲେ ତାକୁ ନ ଶୁଭେ କର୍ଣ୍ଣକୁ
ଅଣିକରି କେହୁ ବହୁ ଭେଟାଇଲା ତାକୁ । ୨୮ ।
କହିବା କାମିନୀମାନେ ଏହା ଥିବେ ଜାଣି
କରି ଥିବା ଏ ଗୀତ ଗୋ ବାଦରେ ପ୍ରମାଣି । ୨୯ ।
କଉତୁକ କରି ଝଭା ମଣ୍ଡପେ ଗାଇବ
କଳିଦ୍ୱନ୍ଦ କଲେ ତହିଁ ଛଳ ନ କରିବ । ୩୦ ।

( ନରସିଂହପୁର )

## ୨୯ । କୁଆଖେଳ (୧)

ସୁବର୍ଣ୍ଣ ମଣ୍ଡପ ମଧ୍ୟରେ ରତ୍ନପିଢ଼ା ପକାଇ
ଗଙ୍ଗା ନୀରେ ପାଦ ପଖାଳି ରାମ ବସିଲେ ଯାଇ । ୧ ।
ସୁବର୍ଣ୍ଣ ଖରଡ଼ ପାରଣ ବାଳୀ ଜାନକୀ ଆଗେ
କୁଆ ଖେଳିବାକୁ ବସିଲେ ରାମ ଜାନକୀ ସଙ୍ଗେ । ୨ ।
ଶ୍ରୀରାମ ଧଇଲେ କଉଡ଼ ମୁଠି ଫେଡ଼େ ମୈଥିଳୀ
ବୋଲନ୍ତି ସହାସ୍ୟେ ଶ୍ରୀରାମ ରାଜ୍ୟ ଯାକ ହାରିଲ । ୩ ।

ଜାନକୀଙ୍କୁ ମୁଠି କଉଡ଼ି ଯାକ ଧରାନ୍ତି ବାଳୀ
କାଣି ଅଙ୍ଗୁଷ୍ଠିରେ ଫିଟାଅ ବେଗେ କୋଦଣ୍ଡଧାରୀ । ୪ ।
ଫେଡ଼ି ନ ପାରି ଦାଶରଥି ମଥା ପୋତି ରହିଲେ
ସତ୍ୟ ମୁଁ କଲି ଶତେ ବାର ଯାହା ମାଗ ବୋଇଲେ । ୫ ।
ଦାସୀଏ କହିଲେ ଜାନକୀ ବନ୍ଧୁ ଆନ ନୋହିବ
ସପତ୍ନୀ ବିଭା ନ ହେବ ମାଗୁ ଅଛୁଁ ବିଧବ । ୬ ।
( କେନ୍ଦୁଝର )

## ୩୦ । କୁଅଖେଳ (୨)

ଶୁଣ ହେ ସୁଜନ ଜନ ଦେଇ ମନକର୍ଣ୍ଣ
ଶ୍ରୀରାମ ସୀତାଙ୍କ ଜୁଅ ଖେଳର ବିଧାନ । ୧ ।
ସୁବର୍ଣ୍ଣ ବେଦିକାରେ ଚନ୍ଦନ କୋଠିକାଟି
କି ଅବା କହିବା ସେ ଆସନ ପରିପାଟୀ । ୨ ।
ସୁବର୍ଣ୍ଣ ଖଟଡ଼ି ପରେ ସୁବର୍ଣ୍ଣ ମୁଚୁଳି
ଚଉପାଶେ ମାଣିକ୍ୟର ଦୀପାବଳି ଜାଳି । ୩ ।
ଶ୍ରୀରାମ ବିଜୟ କଲେ ଆନନ୍ଦିତ ମନେ
ସୀତାଙ୍କୁ ବେଢ଼ି ବସିଲେ ସହଚରୀ ଗଣେ । ୪ ।
ପରସ୍ପରେ ଜୁଅ ଖେଳନ୍ତି କଉଡ଼ି ତୋଳି
ଦାସୀଗଣ ମିଳଣି ଦିଅନ୍ତି ହୁଳହୁଳି । ୫ ।
ଶ୍ରୀରାମ ପକାନ୍ତି ଜୁଅ ମୁଦି ପଣ କରି
ସେ ପଣକୁ ଜିତିଲେ ଯେ ଜନକ କୁମାରୀ । ୬ ।
ଦ୍ୱିତୀୟ ମୁଠି ପକାଇ ରାଜୀବଲୋଚନ
ଆପଣାର ରତ୍ନଗଡ଼ୁ ରଖିଲେ କରି ପଣ । ୭ ।
ହାରିଲେ ଆପଣା ଗଡ଼ୁ ଶ୍ରୀ କୋଦଣ୍ଡଧାରୀ
ହୁଳହୁଳି ଶବଦରେ ଉଛୁଳଇ ପୁରୀ । ୮ ।
ତୃତୀୟ ମୁଠି କଉଡ଼ି ଶ୍ରୀରାମ ପକାଇ
ସେ ମୁଠିକ ଜୟ କରି ନେଲେ ବଇଦେହୀ । ୯ ।

ଶ୍ରୀ ରଘୁବୀର ଚତୁର୍ଥ ପଣ ରଖି ଖେଳ
ପଦକ ଗୋଟିକ ନେଲେ ଜନ୍କ କର ବାଳୀ । ୧୦ ।
ପଞ୍ଚମ ମୁଠିରେ ପଣ ହାରର ଚଉକୀ
ଆନନ୍ଦ ହୋଇଲେ ଜିତ ସେ ବାର ଜାନକୀ । ୧୧ ।
ଷଷ୍ଠ ବାର ଖେଳିବାକୁ ମନ କର ସ୍ଥିର
ଜାନକୀକୁ ଘେନ ବସେ ଲକ୍ଷ୍ମଣ ସୋଦର । ୧୨ ।
ଅଯୋଧ୍ୟାକୁ ପଣ ରଖି ଖେଳେ ରଘୁବୀର
ହାରିଲେ ଜାନକୀ ତହିଁ ହୋଇବେ ଈଶ୍ୱର । ୧୩ ।
ଜିତଣ ମନେ ଆନନ୍ଦ ଦେବୀ ମଇଥିଳୀ
ସର୍ବ ସହଚରୀ ଦେଖି ଦେଲେ ହୁଳହୁଳି । ୧୪ ।
ହାରି ରଘୁକୁଳ ଚନ୍ଦ୍ର ମନେ ହେଲେ ଧନ୍ଦା
ପୁଣି ଖେଳି ବସେ ଆପଣାକୁ ରଖି ବନ୍ଧା । ୧୫ ।
ସପ୍ତମ ଖେଳରେ ହାରି ହୋଇଲେ ମଉନ
ସର୍ବ ଅଳି ମିଳି ତହିଁ ବୋଲନ୍ତି ବଚନ । ୧୬ ।
ମନଦେଇ ଶୁଣ ତୁମେ ବୀର ରଘୁମଣି
ମାଗୁଣି ଏହୁ ସୀତାର ନୋହୁ ସପତଣୀ । ୧୭ ।
ହସିଣ ବୋଲନ୍ତି ବୀର ଶୁଣ ସଖୀଗଣେ
ସୀତା ପାଦପଦ୍ମେ ବନ୍ଦ ମୁହିଁ ଶରଧନେ ।
ସେ ଅବା ବିରହ ଦଶା ଦେଇପାରେ ମୋତେ
ନ ତେଜିବି ମୁହିଁ ତାକୁ ମନେକର ପ୍ରତେ । ୧୯ ।
ସକଳ ସଜନୀ ମିଳି ଆନନ୍ଦ ହୋଇଲେ
ଜୁଆଖେଳ ସାରି ଭିତରକୁ ବିଜେ କଲେ । ୨୦ ।

( ଷଡ୍‌ଭୈରବୀ )

## ୩୧ । ପଞ୍ଚୁଗ୍ରାସି ମଙ୍ଗଳ

ବିଭାକର୍ମ ସାରି ଉଭା ହେଲେ ଦାଶରଥି
ଅଗରେ ମୈଥିଳୀ ଘେନି ବିଜୟେ କରନ୍ତି । ୧ ।

ବନ୍ଦାପନା ବଢ଼ାଇ ବଜାଇ୍ୟ ରଘୁସାଇଁ
ପଞ୍ଚୁଗ୍ରାସୀ ମଣୋହି ଥୋଇଲେ ରାଣୀ ନେଇ । ୨ ।
ଏକ ଠାଆ ପିଢ଼ାରେ ଯେ ବରକନ୍ୟା ବସି
ଷଡ଼ରସେ ମଣୋହି କରନ୍ତି ପଞ୍ଚଗ୍ରାସି । ୩ ।
ଦ୍ରବ୍ୟ ଶାର୍ଲାଅନ୍ନ ନାନା ସୁପକ୍ୱ ପଦାର୍ଥ
ସୀତାଙ୍କୁ ଘେନି ମଣୋହି କଲେ ରଘୁନାଥ । ୪ ।
ରତ୍ନଚଉଡ଼ ମଧ୍ୟରେ ଶ୍ରୀରାମ ରୂପ ଦେଖି
ହସ୍ତକୁ ନ କାଢ଼ନ୍ତି ଶରଦଚନ୍ଦ୍ରମୁଖୀ । ୫ ।
ପଞ୍ଚୁଗ୍ରାସି ବଢ଼ାଇଣ ଆଚମନ କଲେ
ଭଞ୍ଜତନୟା ପ୍ରତିମା ଏ ରସେ ଭଣିଲେ । ୬ ।

( ଦଶପଲ୍ଲା )

## ୩୬ । ବାସିବାସୀ କୋଇଲବୁଡ଼ ମଙ୍ଗଳ

ପାହିଲା ରଜନୀ ଯହୁଁ ଉଠିଲେ ଜନନୀ
ସ୍ନାହାନ କରବେ ସୀତା ଶିରେ ଦିଅ ପାଣି । ୧ ।
ବାଜିଲା ବିବିଧ ବାଦ୍ୟ ମଙ୍ଗଳ ମହୁରି
ଜନକ ନଗରବାସୀ ଦେଲେ ହୁଳହୁଳି । ୨ ।
ରତ୍ନବେଦି ଉପରେ କନକ ପିଢ଼ା ଥୋଇ
ଜନକ ନନ୍ଦନୀ ସୀତା ବିଜେ କଲେ ତହିଁ । ୩ ।
ବେଦି ଗୃହପାଖେ ନେଇ ରମ୍ଭାବୃକ୍ଷ ପୋତି
ମଧ୍ୟରେ ଜାନକୀ ଦେବୀ ସ୍ନାନ ଯେ କରନ୍ତି । ୪ ।
କର୍ପୂର କସ୍ତୁରି ଗନ୍ଧ ଶ୍ରୀଅଙ୍ଗେ ଲେପିଲେ
କୋଇଲ ପାଣି ଦାସୀଏ ସୀତା ଶିରେ ଦେଲେ । ୫ ।
ସାନ ସାନ ଦାସୀ ଚଉପାଖେ ବେଢ଼ିଛନ୍ତି
ଚିନବାସ ଘେନି ସୀତା ଶ୍ରୀଅଙ୍ଗ ପୋଛନ୍ତି । ୬ ।
ସ୍ନାହାନ କରଣ ସୀତା ପଡନୀ ବାନ୍ଧିଲେ
ସଖିଗଣ ମିଳି ତାଙ୍କୁ ସୁବେଶ କରିଲେ । ୭ ।

କଜ୍ଜଳ ଦେଇଣ ମାଏ ଦେଲେ ସରୁଲଞ୍ଜି
ଚନ୍ଦନର ଚିତା ମାଏ କପୋଳରେ ରଞ୍ଜି । ୮ ।
ସଖିଗଣ ମଧ୍ୟରେ ଗୃହଲକ୍ଷ୍ମୀ ମଇଥିଳୀ
ମଥାପୋତ ଗୃହଲକ୍ଷ୍ମୀ ଅଳପ ଚଳ ଚଳ । ୯ ।
ଲଜ ଲଜ ହୋଇ ସୀତା ଭିତରକୁ ଗଲେ
ଦଧିଗୁଡ଼ ଭାତ ଭୁଞ୍ଜ ମାଏ ଆଜ୍ଞାଦେଲେ । ୧୦ ।
ଶୋକଭର ହୋଇଣ ବସିଲେ ବଇଦେହୀ
ବେନି ନୟନରୁ ଲୁହ ପଡୁଅଛି ବୋହି । ୧୧ ।
ମାଉସୀ ପିଉସୀ ଅଈ ସାଇ ପଡ଼ୋଶୁଣୀ
ସୀତାଙ୍କ ବେଦନ ଦେଖି କାନ୍ଦନ୍ତି ଭଉଣୀ । ୧୨ ।
ଜାନକୀଙ୍କ ଘେନି ମାଏ ବେଦନ କରନ୍ତି
କୁରଙ୍ଗୀ ନୟନୁଁ ଲୁହ ଅଞ୍ଚଳେ ପୋଛନ୍ତି । ୧୩ ।
ଗଦ ଗଦ ହୋଇ ମଇଥିଳୀ କରେ ଶୋକ
ରୋଦନ କରନ୍ତି ବେଢ଼ି ଅନ୍ତଃପୁର ଲୋକ । ୧୪ ।
(ଅନୁଗୁଳ)

## ୩୩ । ଗୃହ ଆଞ୍ଜୁଳି ମଙ୍ଗଳ

ସଖିଗଣ ଡାକୁଛନ୍ତି 'ବଜେକର ମାଏ
ଲଗ୍ନବେଳ ହୋଇଲାଣି ଆଜ୍ଞାଦେଲେ ମାଏ' । ୧ ।
ଶୁଣିଣ ଦେବୀ ବୈଦେହୀ ଶୋକଭର ହୋଇ
ନୟନୁ ଲୋତକ ଧାର ଯାଉଅଛି ବହି । ୨ ।
ସଖିଗଣ ମଧ୍ୟରେ ଗୃହଲକ୍ଷ୍ମୀ ଦେବୀ ସୀତା
ଧୀରେ ଧୀରେ ବଜେକଲେ ଜନକ ଦୁହିତା । ୩ ।
ଗୃହ ଅଞ୍ଜୁଳି ଗୃହଲ ଘେନି ଜେମାଦେଈ
ଜନନୀ ସମ୍ମୁଖରେ ଉଭାହେଲେ ବେଗେ ଯାଇ । ୪ ।
ଶୋକଭର ହୋଇ ମାଏ ଅଞ୍ଜୁଳି ଧଇଲେ
ହରଷ ହୋଇ ଜାନକୀ ମାତାକୋଳେ ଦେଲେ । ୫ ।

ଦୁହିତାଙ୍କୁ କୋଳରେ ଘେନଣ ମହାଦେଈ
ଶୋକ କଲେ ଜାନକୀକ ଗଳାରେ ଲମ୍ବାଇ । ୬ ।
ଶ୍ରୀଅଙ୍ଗ ଅଉଁସି ମୁଖେ ଦଅନ୍ତି ଚୁମ୍ବନ
କପରେ ମୁର୍ଚ୍ଛିବ ତୋତେ ଜୀବର ଜୀବନ । ୭ ।
ପଞ୍ଚମ ବରଷଠାରୁ କରୁଥାଇ ଚନ୍ତା
ରାବେ ନିଦ୍ରା ନ ମାଡ଼ଇ ଅନାଇଲେ ପିତା । ୮ ।
ଦ୍ୱାଦଶ ବରଷ କର ନୋହିଲି ଲୋ କିଛୁ
ଘରେ ପଶି ରଘୁନାଥ ଘେନି ଯାଉଅଛୁ । ୯ ।
( ଅଠଗଡ଼ )

## ୩୪ । ଗହଣିଆ ମଙ୍ଗଳ

ରହ ରହ ଚନ୍ଦ୍ରମୁଖୀ ନଯା ତୁ କେଣିକି
ନନ୍ଦର କୁମର ଘାଟ ମାଗିବ ଅଟକି । ୧ ।
ନାନାରୂପେ ବିହାର କରଇ ବନମାଳୀ
ପୁଣି କୁଞ୍ଜେ କୁଞ୍ଜେ ପଶି କରୁଥାନ୍ତି କେଳି । ୨ ।
ନ ଯାଅ ଯମୁନା ପଥେ ବାହୁଡ଼ ଗୋ ଘର
କହ୍ନାଇ ଦେଖିଲେ କରବଟି ହରବର । ୩ ।
ସେ ବାଙ୍କଚୂଳିଆ ହର କଦମ୍ବମୂଳିଆ
ଭାବ ବିନୋଦିଆ ହର କାଇଞ୍ଚମାଳିଆ । ୪ ।
ଘେନ ମୋ ବଚନ ସଖୀ ନ ଯାଅ ତେଣିକି
ଭଣେ ଉପଇନ୍ଦ୍ର କୃଷ୍ଣ ପାଦେ ଚିତ୍ତ ରଖି । ୫ ।
( ଅଠଗଡ଼, ଗଞ୍ଜାମ )

## ୩୫ । କନ୍ୟା ଦେଖା ମଙ୍ଗଳ

ସୂର୍ଯ୍ୟବଂଶ ପୁରୋହିତ ବଶିଷ୍ଠ ମହର୍ଷି
ଦଶରଥ ନୃପତଙ୍କୁ କହୁଛନ୍ତି ହସି । ୧ ।

ହୋଇଅଛୁ ଶୁଭବେଳ କନ୍ୟାଦେଖାବଧି
ଦେଖ ତୋର କୁଳବଧୂ ସ୍ତ୍ରୀରତ୍ନ ନିଧି । ୨ ।
ରାଜା ଆଜ୍ଞା ପାଇ ସର୍ବ ସୁଲକ୍ଷଣୀ ବୃନ୍ଦ
ଗାଇଲେ ମଙ୍ଗଳ ଗୀତ ହୋଇଣ ଆନନ୍ଦ । ୩ ।
ବାଜିଲା ବିବିଧ ବାଦ୍ୟ ଯୋଡ଼ା ଶଙ୍ଖଭେରୀ
ବାହାରିଲେ ଦାସୀ କନ୍ୟାଦେଖାବିଧି ଧରି । ୪ ।

କନ୍ୟାଙ୍କ ଥାଳରେ ଭରି ଶ୍ରୀଫଳ ତଣ୍ଡୁଳ
ଶ୍ରୀମହାପ୍ରସାଦ ମାଳ ସିନ୍ଦୁର କଜ୍ଜ୍ୱଳ । ୫ ।
ଚନ୍ଦନ ଅକ୍ଷତ ପୁଷ୍ପ ଦ୍ରବ୍ୟ ଅଳଙ୍କାର
ନବରତନ ପାଟ ଦଶ ଅବତାର ହାର ।୬ ।
ଦଧିପାତ୍ର ପୂର୍ଣ୍ଣକୁମ୍ଭ ଚୂତ, ନଡିକାଳ
ରାଜହଂସ, ଶ୍ୱେତ ପାରା, ଶ୍ୱେତ ଯେ ଚାମର । ୭ ।
ଜଣେ ଜଣେ ଘେନି ସର୍ବେ ସକଳ ସମ୍ଭାର
ଦ୍ରବ୍ୟ ବେଶ ହୋଇ ବାଳୀ ହୋଇଲେ ବାହାର । ୮ ।
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଦ୍ୱିଜଗଣ
ଶୁଭ ଅନୁକୂଳେ ରାଜା କରନ୍ତି ଗମନ । ୯ ।
ଜନକ ନିଆସ ମଧ୍ୟେ ହୋଇଲେ ପ୍ରବେଶ
ଦେଖିଣ ପାଛୋଟି ନେଲେ ମିଥିଳା ନରେଶ । ୧୦ ।
ରତ୍ନ ସିଂହାସନେ ଦଶରଥ ବିଜେ କଲେ
କନ୍ୟାଦେଖା ବିଧିମାନ ସମ୍ମୁଖରେ ଥୋଇଲେ । ୧୧ ।

ସୁବେଶ କରାଇ ସୀତା ଆଣିଲେ ବହନ
ଦେଖି ଆନନ୍ଦ ହୋଇଲେ ଅଯୋଧ୍ୟା ରାଜନ । ୧୨ ।
କୋଳେ ବସାଇଣ ରାୟେ ନିରେଖନ୍ତି ମୁଖ
ଛାଡ଼ିଗଲା ନୃପବର କୋଟିଜନ୍ମ ଦୁଃଖ । ୧୩ ।
ଅଞ୍ଚଳୁ କାଢ଼ିଣ ରାୟେ ଚନ୍ଦ୍ରକାନ୍ତ ମଣି
ଜାନକୀଙ୍କ କପୋଳରେ ଖଞ୍ଜିଦେଲେ ଆଣି । ୧୪ ।
ଚନ୍ଦନ ଅକ୍ଷତ ପୁଷ୍ପ ଶିର ପରେ ଦେଲେ
ଧନ୍ୟ ଧନ୍ୟ ସ୍ତ୍ରୀରତ୍ନ ବୋଲି ପ୍ରଶଂସିଲେ । ୧୫ ।

ଧନ୍ୟ ଧନ୍ୟ ସୂର୍ଯ୍ୟବଂଶ ଧନ୍ୟ ମୋର ତପ
କୁଳବଧୂ ପାଇଲି ମୁଁ ଚଞ୍ଚଳା ସ୍ୱରୂପ । ୧୬ ।
କହନ୍ତି ଅଯୋଧ୍ୟା ନାରୀ ନେତ୍ରାନ୍ତରେ ଠାରି
ଶ୍ରୀରାମଙ୍କୁ ଅନୁରୂପ ଜନକକୁମାରୀ । ୧୭ ।
ଯେତେବେଳେ ଜାନକୀ ବସିବେ ରାମ କୋଳେ
ରତି କାମଦେବ ପ୍ରାୟେ ଦିଶିବ ମଞ୍ଜୁଳେ । ୧୮ ।
ଶୁଣ ସାଧୁଜନମାନେ ଏଥୁ ଅନନ୍ତରେ
ବରଯାତ୍ରୀ କନ୍ୟା ଦେଖି ଚଳିଲେକ ଧୀରେ । ୧୯ ।
ସରବେ ହରଷ ମନ କଲେ ଧନ୍ୟ ଧନ୍ୟ
ରଘୁକୁଳ ଏତେ ଦିନେ ହୋଇଲାକ ଧନ୍ୟ । ୨୦ ।

( ବାମଣ୍ଡା )

## ୩୭ । ବରକନ୍ୟା ଅଣିବା ମଙ୍ଗଳ

ଆଜ୍ଞା ଦେଲେ ଦଶରଥ ରାଜନ
ଅହେ ବାବୁ ରାମ ଅମ୍ଭ ବଚନ ଘେନ । ୧ ।
'ଅତି ଉତ୍ତର ହେଉଅଛୁ ବେଳ
କନ୍ୟା ଅଣିବାକୁ ରାଜପ୍ରେ କର' । ୨ ।
ପିଅର ଆଦେଶ କୁମର ଘେନି
ବରବେଶ ହୋଇ ଚଳେ ତକ୍ଷଣି । ୩ ।
ପୁରକୁ ପେଷିଣ ଘୋଷଣା ଦେଲେ
ଏଣେ ସୈନ୍ୟବଳ ସଜ ହୋଇଲେ । ୪ ।
କୁମର ରାଜପ୍ରେ କନ୍ୟା ପୁରେଣ
ବାଜୁରନ୍ତି ସର୍ବେ ଯିବେ ଏ ପୁଣ । ୫ ।
  ବରକୁ ଦେଖିଣ କନ୍ୟାର ପିତା
  କୋଧଭର ହୋଇ କରନ୍ତି ଚିନ୍ତା । ୬ ।
  ମୃଦୁସୁଲିଙ୍କି ଆଜ୍ଞା ଦେଲେ ବଇ
  ଜେମାଙ୍କୁ ବହନ ଅଣାଅ ଯାଇ । ୭ ।

ଉଠ ଉଠ ଗୋ ଜନକର ଝିଅ
ଅଯୋଧ୍ୟା ଯିବ ବେଗେ ସଜ ହୁଅ । ୮ ।
କନ୍ୟା ନେବାକୁ ଆଇଲେ କୁମର
ଛାଡ଼ କେମାଙ୍କୁ ନ କର ଉଛୁର । ୯ ।
ମୁଦ୍ରସୂଲ ଏହି ଆଜ୍ଞା କହିଲା
ଶୁଣି ମାତାଙ୍କର କ୍ରୋଧ ବଢ଼ିଲା । ୧୦ ।
ସକଳ ଜନନୀ ହୋଇଣ ଠୁଳ
କରନ୍ତି ରୋଦନ କେମା ଛାମୁର । ୧୧ ।
ଦାସୀ ସଖିମାନେ ଚରଣ ଧରି
ରୋଦନ କରନ୍ତି ଗୁଣ ସୁମରି । ୧୨ ।

ବେଦ ପାଶେ ବର ପ୍ରବେଶ ହେଲେ
ଝିଅକୁ ମାତାଏ ସମର୍ପି ଦେଲେ । ୧୩ ।
କେମାର ଦୋଷ ନ ଧରିବ ମୋ'ର
ହେ ବାବୁ ଆଜହୁଁ ହେଲା ତୁମ୍ଭର । ୧୪ ।
ଏଣେ ଦଶରଥ କନ୍ୟା ପିତାଙ୍କୁ
ମେଲଣି ମାଗନ୍ତି ବେଗେ ଯିବାକୁ । ୧୫ ।
ସମ୍ବନ୍ଧଙ୍କ ହସ୍ତ ଧରିଣ ରାଏ
ପ୍ରବୋଧି ବହୁତ ବିନୟି କହେ । ୧୬ ।
ତୁମ୍ଭ ନନ୍ଦନୀ ଅଟଇ ମୋହର
ଏଣୁ ଶ୍ରୀରାମ କୁମର ତୁମ୍ଭର । ୧୭ ।
ଦୁଇ ରାଜ୍ୟରେ ରାଜା ଅଛ ତୁମ୍ଭେ
ମଙ୍ଗଳ ବେଳ କନ୍ୟା ଦିଅ ଏବେ । ୧୮ ।
ସମ୍ବନ୍ଧ ବଚନ ଶୁଣି ଜନକ
କେମା ଗୁଣ ଗୁଣି କାନ୍ଦେ ଅନେକ । ୧୯ ।

ପାଞ୍ଚ ବରଷ କରି କରି ଚିନ୍ତା
ରାନେ ଅନିଦ୍ରା ଅନ୍ଧ ହେଲା ପିତା । ୨୦ ।
ବାର ବରଷ ପାଳି ନୋହିଲି କଷ୍ଟ
କ୍ଷଣକେ ଅନ୍ତର ହୋଇ ଯାଉଛୁ । ୨୧ ।

ଦୁଃଖେ ମରିଥିଲା କରନ୍ତି ଶୋକ
ଅଞ୍ଚଳେ ପୋଛନ୍ତି ମାଏ ଲୋତକ । ୨୨ ।
ଆଉ ଧାଇଁ ମାଏ ସୀତାଙ୍କୁ ଘେନି
ଫିହ ଦୁଆରେ ବସାବନ୍ତି ଆଣି । ୨୩ ।

## ୩୭ । ଉଚ୍ଛଣାଧରା ମଙ୍ଗଳ

ଜୟ ଜୟ ରାମଚନ୍ଦ୍ର ଜୟ ରଘୁପତି
ବାଘ୍ର ବଢ଼ାଇଣ ବିଜେକଲେ ଦାଶରଥି । ୧ ।
ଶ୍ୱେତପାଗ ବାନ୍ଧି ରାମ ହୋଇଲେ ବାହାର
ହସ୍ତୀର ଉପରେ ବିଜେ ସୀତା ରଘୁବୀର । ୨ ।
ଲକ୍ଷେ ଶଙ୍ଖ ଲକ୍ଷେ ବାଦ୍ୟ ଲକ୍ଷେକ କାହାଳୀ
ଢୋଲ୍ ଦମାଲ୍ ନାଦରେ ବ୍ରହ୍ମାଣ୍ଡ ଉଛୁଳି । ୩ ।
ଗାଅ ଲୋ ଗାଅଣି ଗୀତ ଦିଅ ହୁଳହୁଳି
ରାମସୀତା ବିଜେ କଲେ ଅଯୋଧ୍ୟା ନଗରୀ । ୪ ।
ଠାବେ ଠାବେ ଦଧିମାଛ ପୂର୍ଣ୍ଣକୁମ୍ଭମାନ
ଶ୍ୱେତପାରା ରାଜହଂସ ଦେଖନ୍ତି ଏମାନ । ୫ ।
ଜାଇ ଯୁଇ ଚମ୍ପା ଯେ ହାବେଲି ବାଣମାନ
ଚନ୍ଦ୍ରଉଦଅରେ ଚନ୍ଦ୍ର ଉଦୟ ଯେସନ । ୬ ।
ନବର ଦ୍ୱାରରେ ଦୁହେଁ ହୋଇଲେ ପ୍ରବେଶ
ଗଜ ସ୍କନ୍ଧୁ ଉତ୍ତୁରି ବିଜୟେ ରଘୁଶିଷ୍ୟ । ୭ ।
ଗୃହପାଶେ ସଖିମାନେ ଗୁମର ଚାଳନ୍ତି
ଧୀରେ ଧୀରେ ଜାନକୀଙ୍କୁ ବିଜୟ କରାନ୍ତି । ୮ ।
ସର୍ବମାତାମାନେ ଯାଇ ପ୍ରବେଶ ହୋଇଲେ
ପୁତ୍ରବଧୂ ମୁଖ ଦେଖି ଆନନ୍ଦ ହୋଇଲେ । ୯ ।
ଶ୍ରୀରାମ ସୀତାଙ୍କ ଶିରେ ମୁକୁଟ ବାନ୍ଧିଲେ
ଆଗେ ବଇଦେହୀ ପଛେ ରାଘବ ହୋଇଲେ । ୧୦ ।

ତଳକୁ ବଦନ କରି ବିଜେ ବଇଦେହୀ
ଆକାଶର ଚନ୍ଦ୍ର କି ଉଦୟ ହେଲ ମହୀ । ୧୧ ।
ପାଟର ପାହାଡ଼ା ପାରି ନାଗ୍ଧୀ ଘେନି ଗଲେ
ଶ୍ରୀରାମ ସୀତାଙ୍କୁ ତହିଁ ବିଜେ କରାଇଲେ । ୧୨ ।
ଉଛୁଣା ଧରନ୍ତି ସଙ୍ଗ ଦାସୀ ପରିବାସୀ
ଧୀରେ ଧୀରେ ବିଜେ କରୁଛନ୍ତି ଗୃହବାସୀ । ୧୩ ।
ଶ୍ରୀନବରେ ପ୍ରବେଶ ହୋଇଲେ ସୀତାପତି
ଅହ୍ୟ ସୁଲକ୍ଷଣୀ ମିଳି ବନ୍ଦାପନା ଦ୍ୟନ୍ତି । ୧୪ ।

## ୩୮ । ବରକନ୍ୟାଙ୍କୁ ଆଣିବା ମଙ୍ଗଳ

ଆସୁଛନ୍ତି ରାମଚନ୍ଦ୍ର ଜାନକୀଙ୍କୁ ଘେନି
କଉଶଲ୍ୟାଙ୍କ ଆନନ୍ଦ କେ ପାରିବ ବର୍ଣ୍ଣି । ୧ ।
ସିଂହଦ୍ୱାର ପାଶେ ରାମ ଅଗ ଓହ୍ଲାଇଲେ
ଦେଖିବାକୁ ନଗ୍ରଲୋକେ ବାହାର ହୋଇଲେ । ୨ ।
ସିଂହଦ୍ୱାରେ ରହିଛନ୍ତି ରାମର ଘରଣୀ
ବେଗେ ତୁମ୍ଭେ ବୋହୂ ଅଣ କଉଶଲ୍ୟା ରାଣୀ । ୩ ।
ଅନ୍ତଃପୁରେ ରହିଥିଲେ କଉଶଲ୍ୟା ରାଣୀ
ବେଦିରେ ପ୍ରବେଶ ହେଲେ ପୁଅ ବୋହୂ ଘେନି । ୪ ।
ପାହାଡ଼ା ପକାଇ ବରକନ୍ୟା ଘେନିଗଲେ
ସକଳ କାମିନୀ ମିଳି ହୁଳହୁଳି ଦେଲେ । ୫ ।
ପ୍ରଥମ ଦୁଆରେ ଯାଇ ନଣନ୍ଦ ବସିଲେ
ଦଧି ଗୁଡ଼ ଘେନି ସୀତା ଶ୍ରୀମୁଖେ ବୋଲିଲେ । ୬ ।
ଉଠ ଉଠ ନଣନ୍ଦ ଗୋ ଛାଡ଼ିଦିଅ ବାଟ
ତୁମ ପାଇଁ ଆଣିଅଛୁ ଶଙ୍ଖମେଘି ପାଟ । ୭ ।
ଉଠ ଉଠ ନଣନ୍ଦ ଗୋ ନୃପତି ଦୁଲଣୀ
ତୁମ୍ଭ ପାଇଁ ଆଣିଅଛୁ ରତ୍ନ ଓଡ଼ଅଣୀ । ୮ ।

ଉଠ ଉଠ ନଣନ୍ଦ ଗୋ ନୃପତ ଦୁହିତା
ମଥା ପାଇଁ ଅଣିଅଛୁ ମୁକୁତା ସୀମନ୍ତୀ । ୯ ।
ଉଠ ଉଠ ନନ୍ଦଣ ଗୋ ନୃପତ ଦୁଲାଳି
କଣ୍ଠକୁ ଅଣିଛୁ ଦଶଅବତାର ମାଳ । ୧୦ ।
ଉଠ ଉଠ ନଣନ୍ଦ ଗୋ ନ କର ଗୋ ହଠ
ତୁମ୍ଭ ପାଇଁ ଅଣିଅଛୁ ସୁବର୍ଣ୍ଣ କରାଠ । ୧୧ ।
ଉଠ ଉଠ ନଣନ୍ଦ ଗୋ ଉଠି ହୁଅ ଠିଆ
ତୁମ୍ଭ ପାଇଁ ଅଣିଅଛୁ କଞ୍ଚନ ଗାଡିଆ । ୧୨ ।

ପାଟର ଖଟରେ ବର କନ୍ୟା ବସାଇଲେ
ଦଶରଥ ରାଣୀମାନେ ବୋହୂଙ୍କୁ ଦେଖିଲେ । ୧୩ ।
କଉଶଲ୍ୟା ରାଣୀ ହସ୍ତେ ଗୁଆଳ ଅଞ୍ଜୋଳ
ଶିରରେ ପକାନ୍ତ ବାଲି ଦେଇ ହୁଳହୁଳ । ୧୪ ।
ଦେଖ ଦେଖ ଧାଇ ମାଏ ନୂଆବୋହୂ ରୀତ
ଘର ଯାକ ହୋଇଅଛୁ ହାଣ୍ଡି ଲେନ୍ତ ଲେନ୍ତ । ୧୫ ।
ଦେଖ ଦେଖ ଅଈ ମାଏ ନୂଆବୋହୂ ରୀତ
ସୀତା ରାମ ଖେଳଣ ଗୁଆଳ ବରଷନ୍ତ । ୧୬ ।

ଦଧି ନଡ଼ତରେ ସୀତା ହସ୍ତ ପୁରାଇଲେ
ସୁବର୍ଣ୍ଣ ମୁଦ୍ରିକା ତହୁଁ କାଢ଼ିଣ ଅଣିଲେ । ୧୭ ।
ହସ୍ତ ପୁରାଇଣ ସୀତା ରତ୍ନମୁଦ ନେଲେ
କପାଳେ ଲଗାଇ ଅଙ୍ଗୁଷ୍ଠିରେ ଖଞ୍ଜିଦେଲେ । ୧୮ ।
ଦେଖ ଦେଖ ଅଈମାଏ ନୂଆବୋହୂ କଥା
ଘରଯାକ କାଟି ଗଲେ ଶିମୁଳିର ଲତା । ୧୯ ।
ହୁଳହୁଳ ଶଙ୍ଖ ନାଦେ କମ୍ପେ ରାଜପୁରୀ
ବନ୍ଦାଇଣ ଘରେ ନେଲେ ଜନକଙ୍କ ଶୋରୀ । ୨୦ ।

( ନରସିଂହପୁର )

## ୩୯ । ଈଶାଣକୁ ଯିବା ମଙ୍ଗଳ

ଜୟ ଜୟ ଜଗନ୍ନାଥ ଜଗତଗୋସାଇଁ
ବନ୍ଦାପନା ମଣ୍ଡପେ ବିଜୟେ ବଇଦେହୀ । ୧ ।
ଗାର୍ଗବ ଯେ ମହାଋଷି ବନ୍ଦାପନା କଲେ
ସହସ୍ରେ ବ୍ରାହ୍ମଣ ମିଳି ବେଦଧ୍ୱନି କଲେ । ୨ ।
ବନ୍ଦାପନା ସାରଣ ଯେ କଉଶଲ୍ୟା ସତୀ
ଈଶାଣକୁ ବିଜେ ସଙ୍ଗେ ଘେନି ସୀତାସତୀ । ୩ ।
ଲକ୍ଷେ ବାଦ୍ୟ ଲକ୍ଷେ ଶଙ୍ଖ ଲକ୍ଷେକ ମହୁରୀ
ଗୀତ ହୁଳହୁଳିରେ ବ୍ରହ୍ମାଣ୍ଡ ଅଛି ପୂରି । ୪ ।
ଗାଅ ଲୋ ଗାଏଣି ଗୀତ ଦିଅ ହୁଳହୁଳି
ଈଶାଣକୁ ବିଜୟେ କରିବେ ସୀତାବାଳୀ । ୫ ।
ଇଷ୍ଟଦେବ ଦରଶନ କଲେ ଗୃହମୁହାଁ
ପବନ ହୋଇବ କୁଳ ଧନ୍ୟ ହେବ ମୁହିଁ । ୬ ।

ଠାବେ ଠାବେ ଦଧି ମାଛ ପୂର୍ଣ୍ଣକୁମ୍ଭ ଥୋଇ
ରାଜହଂସ ଶ୍ୱେତ ପାରି ଦେଖାଇଲେ ନେଇ । ୭ ।
ନାନାବିଧ ଉତ୍ସବ କରନ୍ତି ସଖିମାନେ
ଚନ୍ଦ୍ର ଉଦଅରେ ଚନ୍ଦ୍ର ଦିଶଇ ଯେସନେ । ୮ ।
ନବର ବାହାର ସୀତା ହୋଇଣ ସୁବେଶ
ଗୃହପାଶେ ବେଢ଼ିଛନ୍ତି ରାଣୀ ପାଟହଂସ । ୯ ।
ଗୃହପାଶେ ସଖିମାନେ ଚାମର ଢାଳନ୍ତି
ଧୀରେ ଧୀରେ ବିଜେ ଈଶାଣକୁ ମହାସତୀ । ୧୦ ।
ସର୍ବ ସହଚରୀ ଆସି ସଙ୍ଗରେ ମିଳିଲେ
ଈଶାଣ ସ୍ତମ୍ଭରେ ଯାଇ ପ୍ରବେଶ ହୋଇଲେ । ୧୧ ।
ଈଶାଣ ସ୍ତମ୍ଭରେ ନେଇ ଶ୍ରୀଫଳ ଥୋଇଲେ
ଝିନ ପଠନରେ ସୀତା ନଉଁଛାଳି କଲେ । ୧୨ ।
ନଉଁଛାଳି କଲେ ସୀତା ଓଳଗନ୍ତି ତହିଁ
ଶାଶୁଙ୍କ ସ୍ତମ୍ଭରେ ପରବେଶ ବଇଦେହୀ । ୧୩ ।

ଇଷ୍ଟ ଦେବତାଙ୍କ ଆଗେ ଭେଟି କରି ଗଲେ
ସାଙ୍ଗାଙ୍କ ବିନତି ତହିଁ ଦେବୀ ଜଣାଇଲେ । ୧୪ ।
ଫେରି ଶାଶୁଙ୍କ ଚରଣେ ଔଲଗି ହୋଇଲେ
'ଅହ୍ୟ ସୁଲକ୍ଷଣୀ ହୁଅ' ମାଏ ଆଜ୍ଞା ଦେଲେ । ୧୫ ।
ତଦନ୍ତେ ରାମ ଜାନକୀ ମଣୋହିରେ ବିଜେ
ନୀଳମଣି ଜେମାଦେଇ ସେ ପାଦରେ ଭଜେ । ୧୬ ।
( କେନ୍ଦୁଝର )

## ୪୦ । ଚତୁର୍ଥୀ ମଙ୍ଗଳ

ଏଥୁ ଅନନ୍ତରେ ଶୁଣ ନରେ ଦିବ୍ୟବାଣୀ
ଅଯୋଧ୍ୟା ପୁରେ ଆନନ୍ଦ ସକଳ ତରୁଣୀ । ୧ ।
ଗୃହବଦନ ଉତ୍ସୁରୁ ଚଉଠି ଘର କରି
ସଞ୍ଜାଧିର ଅଇଲେ ଜନକ ଦଣ୍ଡଧାରୀ । ୨ ।
ବାଜଇ ଯେ ବୀରତୂରୀ ମଙ୍ଗଳ ମହୁରୀ
ନାଦଶ୍ରାବ୍ଦ ବାଢ଼ି ବେଗେ ନୃପତିକୁମାରୀ । ୩ ।
ଜନକ ନୃପତି ଯେ ନବରେ ପରବେଶ
ଦୁଇ ରାଜା ବସି କରି ହେଲେ ହସ ହସ । ୪ ।
କନ୍ୟାଘର ଲୋକଙ୍କୁ ଯେ ସନମାନ କଲେ
ଅଯୋଧ୍ୟା ଲୋକଙ୍କୁ ଯେ ଅମୃତ ଭୁଞ୍ଜାଇଲେ । ୫ ।
କଉଶଲ୍ୟା କହୁଛନ୍ତି ଶୁଣ ଦଣ୍ଡଧର
ଚଉଠି ବନ୍ଦାଣ ଯେ ହୋଇବେ ରଘୁବୀର । ୬ ।
ଏହା ଶୁଣି ଦଶରଥ ବାହାରକୁ ଗଲେ
ବନ୍ଦାପନା ଦ୍ରବ୍ୟ ଯେ ସମସ୍ତ ଅଣାଇଲେ । ୭ ।
ଦାସୀକି ହକାରି ଆଜ୍ଞା ଦେଲେ ପାଟରାଣୀ
'ସୁବର୍ଣ୍ଣ ମଣ୍ଡପ ବେଗେ ମଣ୍ଡ ଗୋ ତରୁଣୀ' । ୮ ।
ଆଜ୍ଞାପାଇ ଦାସୀ ଯେ ବହନ ଚଳିଗଲା
ରତନ ମଣ୍ଡପ ବେଗେ ମଣ୍ଡଣି କରିଲା । ୯ ।

ବେଗେ ଦାସୀ ସଜ କଲେ ଜନକ ଦୁହିତା
ବାହାରେ ଶ୍ରୀରାମଚନ୍ଦ୍ର ପ୍ରବେଶ ହୁଅନ୍ତି । ୧୦ ।
ସୁବର୍ଣ୍ଣର ପୂର୍ଣ୍ଣକୁମ୍ଭ ସ୍ଥାପିଲେକ ନାରୀ
ଚଉଠି ମଣ୍ଡପେ ବରକନ୍ୟା ବିଜେ କରି । ୧୧ ।
ଦ୍ୱିଜଗଣ ମିଳଣ ଯେ ବେଦ ଉଚ୍ଚାରିଲେ
ପରମଲକ୍ଷ୍ମୀ ସ୍ୱହସ୍ତେ ପିତୃଶ୍ରାଦ୍ଧ କଲେ । ୧୨ ।
ବନ୍ଦାପନା ସାରି ଦ୍ୱିଜେ ବାହାରକୁ ଗଲେ
ତଦନ୍ତେ ଜନନୀମାନେ ଯାଇ ବନ୍ଦାଇଲେ । ୧୩ ।
ଦଧିମାଛ ପୂର୍ଣ୍ଣକୁମ୍ଭ ରାଜହଂସ ପନ୍ତି
ଯେତେକ ମଙ୍ଗଳ ବିଧି ସମ୍ମୁରେ ଅଛନ୍ତି । ୧୪ ।
ଆଗେ ଉଡ଼େ ଶ୍ୱେତ ପାରି ସୁବର୍ଣ୍ଣ କଳଶ
ବିଜେ କଲେ ବରକନ୍ୟା ଈଶାଣଙ୍କ ପାଶ । ୧୫ ।
ସାତ ସୁଲକ୍ଷଣୀ ଯେ କନ୍ୟାକୁ ଧରିଛନ୍ତି
ଧୀରି ଧୀର ହୋଇ ବିଜେ ଜନକଦୁହିତା । ୧୬ ।
ଈଶାଣ ପାଖରେ ଯାଇ ପ୍ରବେଶ ହୋଇଲେ
ଫଳ ତଣ୍ଡୁଳକୁ ନେଇ ସେଠାରେ ଥୋଇଲେ । ୧୭ ।
ନାଉଁସ୍ଥଳ ଦର୍ଶନ କରଣ ବାହୁଡ଼ିଲେ
ଦେଖି ମାତାମାନେ ବଡ଼ ଆନନ୍ଦ ହୋଇଲେ । ୧୮ ।
ହସି କରି ରଘୁନାଥ ବାହାରକୁ ଗଲେ
ଜନକର ଝିଅ ସୀତା ପାଗ ସମ୍ଭାଳିଲେ । ୧୯ ।
ମଣୋହି ଠାବରେ ବିଜେ କଲେ ରଘୁପତି
ଜନକନନ୍ଦିନୀ ଅଣି ଅନ୍ନ ପରଶନ୍ତି । ୨୦ ।
ରାମ ଖାଦ୍ୟ ଅବଶେଷ ଭୁଞ୍ଜନ୍ତି ଜାନକୀ
ହସ ହସ ମୁହେଁ ରାମ ଦେଖନ୍ତି ନିରେଖି । ୨୧ ।
ଆଚମନ ସାରି ଦୁହେଁ ଭୁଞ୍ଜିଲେ ତାମ୍ବୁଳ
ସୁଖାସନେ ବିଜେ କଲେ ନୂତନ ଯୁଗଳ । ୨୨ ।
ପରିହାସୀ ଜନେ ପରିହାସେ ଥାନ୍ତି ମାତି
ଅଯୋଧ୍ୟାର ଘରେ ଘରେ ସରବେ ଗୋଳନ୍ତି । ୨୩ ।

( ମୟୂରଭଞ୍ଜ )

## ୪୧ । ପାଣିଖେଳ ମଙ୍ଗଳ

ବିବାହ ବଢ଼ାଇ ଦଶରଥ ମହୀପତି
ଶ୍ରୀରାମ ଚଉଠି ଶେଷେ ପାଣିଖେଳ ରୀତି
ଆଜ୍ଞା ଦେଲେ ପାଟରାଣୀ
ଚନ୍ଦନ କର୍ପୂର ଗୋଳା ଅଣ ବାସ ପାଣି । ୧ ।
ପରିହାସୀ ନାରୀମାନେ ଶ୍ରୀରାମ ଶିରରେ
ପନିଅର ପାଣି ନେଇ ଶ୍ରୀଅଙ୍ଗେ ଢାଳିଲେ
ରାଣୀହଂସମାନେ ମେଳ
ହୁଅନ୍ତେ ହୋଇଲା ନାନା ରସେ ପାଣିଖେଳ । ୨ ।
ଚନ୍ଦନ କୁଙ୍କୁମ ପାଣି ପୂରିଲା ମହୀ
ଗଙ୍ଗା କି ଆକାଶୁଁ ବହି ପଡ଼ୁଛନ୍ତି ମହୀ
ସେହି କାଳର ମାଧୁରୀ
ଦେଖି ଅଧୀରୀ ହୋଇଲେ ଅନ୍ତଃପୁର ନାରୀ । ୩ ।
ନୃପତିମାନଙ୍କୁ ଘେନି ଦଶରଥ ରାୟେ
ହଳଦୀ ପାଣି ପିଚକା ମରାମରି ହୁଏ
ଆଜ୍ଞା ଦେଲେ ନରପତି
ଅଯୋଧ୍ୟା ନଗର ଲୋକେ ଆନନ୍ଦେ ଖେଳନ୍ତି । ୪ ।
ନାନା ରଙ୍ଗେ ପାଣିଖେଳ ବିଧି କରି ଶେଷ
ସକଳ ନୃପତି ଘେନି ରାଏ ହେଲେ ବେଶ
ସର୍ବେ ମାଜଣା ସାରିଲେ
ନାନା ରସର ବ୍ୟଞ୍ଜନ ଭୁଞ୍ଜି ତୋଷ ହେଲେ । ୫ ।

( ଗାଙ୍ଗପୁର )

## ୪୨ । ଅମୃତଗୃହ ପ୍ରବେଶ ମଙ୍ଗଳ

ମୃଦୁସ୍ୱରେ ଜଣାଇଲେ ଅହେ ମହାଦେଇ
ସପ୍ତଦିନ ପରେ ଶେଷ ଦିବସ ଅଢ଼ାଇ । ୧ ।
ତାହା ଶୁଣି କଉଶଲ୍ୟା ଆନନ୍ଦ ହୋଇଲେ
ଜଉତିଷ ହକାରିଣ ଲଗ୍ନ ବୁଝାଇଲେ । ୨ ।

ଦଶମଙ୍ଗଳା କ୍ଳେ ଅଜ ଦଅ ହୁଳହୁଳି
ଅମୃତ ଗୃହ ପ୍ରବେଶ ହେବେ ମଇଥିଳୀ । ୩ ।

ପାଦ ପେଂଡ଼ସାର୍ ସର୍ବେ ଅଲତା ଘେନିଲେ
ସର୍ବଦାସୀଗଣ ମିଳି ହୁଳହୁଳି ଦେଲେ । ୪ ।

ମାଜଣା ସାରିଣ ଦିବ୍ୟ ବେଶ କରାଇଲେ
ଶୁଭଲଗ୍ନ ବୁଝି ସୀତା ବାହାର ହୋଇଲେ । ୫ ।

ଈଶାଣଙ୍କ ପାଶେ ଯାଇ ପରବେଶ ହେଲେ
ଶ୍ରୀଫଳ ତଣ୍ଡୁଳ ଘେନି ନଉଁଛଳି କଲେ । ୬ ।

ଦଧିଗୁଡ଼ ନଉଁଛଳି ଘେନି ଦିବ୍ୟବାଳୀ
ଦଶରଥ ପାଦେ ଯାଇ ପ୍ରଲମ୍ବିତ କରି । ୭ ।

ତାହା ଦେଖି ଦଶରଥ ହୋଇଲେ ଆନନ୍ଦ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣିମାର ଚନ୍ଦ୍ର । ୮ ।

ଅହ୍ୟ ସୁଲକ୍ଷଣୀ ମାଗୋ ହୁଅ ପୁତ୍ରବନ୍ତୀ
କୁଳର ଉଜ୍ଜ୍ୱଳ ମୋର ଜନକ ଦୁହିତା । ୯ ।

ଏସନ କଲ୍ୟାଣ କରି ଦଶରଥ ବୀର
ହୀରା ମାଣିକ୍ୟର ଚୂଡ଼ି ଦେଲେ ଆଣି କରି । ୧୦ ।

କଉଶଲ୍ୟା ପାଦେ ଯାଇ ପ୍ରଲମ୍ବିତ ହେଲେ
ଅତି ଆନନ୍ଦରେ ମାଏ କୋଳେ ବସାଇଲେ । ୧୧ ।

ସାତ ପୁଅ ସାତ ବୋହୂ ହେଉ ଯେ ତୋହର
ସର୍ବ ସୁଲକ୍ଷଣୀ ହୁଅ ସୋହାଗି ରାମର । ୧୨ ।

ଏଥୁ ଅନ୍ତେ ରାମନାରୀ ଏକାକୀ ଗମିଲେ
ଶଙ୍ଖ ହୁଳହୁଳି ନାଦେ ବ୍ରହ୍ମାଣ୍ଡ କମ୍ପିଲେ । ୧୩ ।

ନୂତନ ମନ୍ଦିରେ ବିଜେ ରଘୁକୁଳ ସାଇଁ
ଜନକନନ୍ଦନୀ ହସି ତହିଁ ବିଜେ ହୋଇ । ୧୪ ।

ନଡ଼ିଆ ଘଳା ଦଧିଗୁଡ଼ ଝୁମ୍ପୁରେ ଥୋଇଲେ
ତାଙ୍କ ପିନ୍ଧା ପାଟଶାଢ଼ୀ ମସ୍ତକେ ବାନ୍ଧିଲେ । ୧୫ ।

ଶ୍ରୀରାମ ଆସନ୍ତୁଁ ଉଠି ଆଲିଙ୍ଗନ କଲେ
ହସ୍ତଧର ହସହସ ହୋଇ ଘେନି ଗଲେ । ୧୬ ।

ଶ୍ରୀରାମ ଜାନକୀ କୋଳେ ବସାଇଲେ ନେଇ
ଆଦର କରନ୍ତି ଶତେ ଚୁମ୍ବନକୁ ବହି । ୧୭ ।

ତୁ ମୋର ଜୀବଜୀବନ ମୁଁ ତୋ କଣା ଦାସ
ତୁ ମୋ ହୃଦୟ ଚନ୍ଦ୍ରମା ତୁ ମୋର ଅୟୁଷ । ୧୮ ।

ସପତଣୀ ନ କରିବି ଶପଥରେ ବାଳୀ
ଯୁଗ ଯୁଗ ହେବୁ ତୁହି ମୋର ପ୍ରିୟ ଆଳି । ୧୯ ।

ଦିବ୍ୟ ଅଳଙ୍କାରମାନ ଅଙ୍ଗରେ ମଣ୍ଡିଲେ
ନୀଳମେଘେ ଚନ୍ଦ୍ରମା କି ଉଦୟ ହୋଇଲେ । ୨୦ ।

ସେ କାଳର ଶୋଭା ରାଶି କେ ପାରିବ ବର୍ଣ୍ଣି
ଦିଶେ ଯହିଁ କାମଦେବ କାମଦେବରାଣୀ । ୨୧ ।

( ଘାରଲା )

## ୪୩ । ଚନ୍ଦ୍ର ବନ୍ଦାପନା

ଚନ୍ଦ ଚନ୍ଦ ବୋଲି ଗୋ ଦ୍ୱିତୀୟା ଚନ୍ଦ ଏହୁ
ଆଜ ଚନ୍ଦ ବନ୍ଦାଇବେ ଦଶରଥ ବୋହୂ । ୧ ।

ନିଜେ ରାମଚନ୍ଦ୍ର ରଘୁବଂଶ ଚନ୍ଦ୍ର ଯେହୁ
ଆଜ ଚନ୍ଦ୍ର ପୂଜିବେ ଗୋ ତ୍ରିଜଗତ ପ୍ରଭୁ । ୨ ।

ଅନନ୍ଦ ହୁଅନ୍ତି ବାଳୀ ଶୁଦ୍ଧ ପୂଜିବାରେ
ଶୁଦ୍ଧ ବନ୍ଧା ବର୍ଦ୍ଧମାନ ଥୋଇଲେ ବେଦୀରେ । ୩ ।

ମଣ୍ଡିଳେକ ବେଦୀ ବାଳୀ ବାନ୍ଧଲେ ଶୁନ୍ଦୁଅ
ବର ମୁଗ ଶୁଦ୍ଧଳର ରଖିଲେ ଓଳଅ । ୪ ।

ସୁବର୍ଣ୍ଣର ପୀଠରେ ରଜତ ଚନ୍ଦ୍ର ଥାପି
ଶଙ୍ଖ ପୂର୍ଣ୍ଣ କରଣ ଗୋକ୍ଷୀର ତହିଁ ରଖି । ୫ ।

ଶୁକ୍ଳ ଧାନ ଶୁକ୍ଳ ଫୁଲ ଅକ୍ଷତ ତଣ୍ଡୁଳ
ପୂର୍ଣ୍ଣକୁମ୍ଭ ଚୂତ ଯେ ଶ୍ରୀଫଳ ନଡିକାଳ । ୬ ।

ଶ୍ୱେତ ବର୍ଣ୍ଣ ଶୁମର ଯେ ବସନ ସୁନ୍ଦର
କଡ଼ି କଡ଼ି ଲମ୍ବାଇ ମୁକୁତା ମାଳ ମାଳ । ୭ ।

ଜଳୁଅଚ୍ଛି ଚନ୍ଦ୍ରଦୀପ ଚନ୍ଦ୍ରତେଜ ଜିଣି
ଗଗନ ତେଜ କ ଚନ୍ଦ୍ର ପ୍ରକାଶ ଅବନୀ । ୮ ।

ଗାଇଲେ ଗାୟୁଣୀ ଗୀତ ଦେଲେ ହୁଳହୁଳି
ବାଦ୍ୟନାଦ ଶବଦରେ କୁରୁମ ଉଚ୍ଛୁଳି । ୯ ।

ରଘୁବଂଶ ଚନ୍ଦ୍ର ରାମ ସୀତା ଚନ୍ଦ୍ରମୁଖୀ
ପୁରଜନ ଅନନ୍ଦ ଯେ ହେଉଛନ୍ତି ଦେଖି । ୧୦ ।

ତାର ଚନ୍ଦ୍ର ଶୁଭେ ବରକନ୍ୟା ବିଜେ କଲେ
ରତ୍ନ ବେଦିକାରେ ଯାଇ ପ୍ରବେଶ ହୋଇଲେ । ୧୧ ।

ବରୁଣ ପୂଜା ବିଧାନ ବଶିଷ୍ଠ ଯେ କଲେ
ଶ୍ରୀରାମ ସୀତାଙ୍କ ଶିରେ ମୁକୁଟ ବାନ୍ଧଲେ । ୧୨ ।

ତଣ୍ଡୁଳ ଓଳଅ ପରେ ଶ୍ରୀପଦ୍ମର ଦେଇ
କୃତାଞ୍ଜଳି ହୋଇ ଉଭା ହେଲେ ରଘୁସାଇଁ । ୧୩ ।

ଜାନକୀର କରେ ପ୍ରଭୁ ପଦ୍ମକର ଦେଇ
ଅର୍ଘ୍ୟ ଘେନି ଉଠି ପ୍ରଭୁ ଚନ୍ଦ୍ରମାଙ୍କୁ ଚାହିଁ । ୧୪ ।

ଅର୍ଘ୍ୟ ବନ୍ଦାଇଣ ବରକନ୍ୟା ଚଳିଗଲେ
ଇଷ୍ଟେ ଓଳଗନ୍ତେ ଦେବୀ କଲ୍ୟାଣ ବାଞ୍ଛିଲେ । ୧୫ ।

ତହୁଁ ଯାଇ ପିଅର ଚରଣେ ପରଣାମି
ଉଠି କୋଳାଗ୍ରତ କଲେ ଅଯୋଧ୍ୟାର ସ୍ୱାମୀ । ୧୬ ।

ତହୁଁ ଜନନୀ ଚରଣେ ଓଳଗି ହୋଇଲେ
ଶିରେ ଦୂର୍ବ ଦେଇ ମାଏ କଲ୍ୟାଣ ବାଞ୍ଛିଲେ । ୧୭ ।

( ପୂର୍ବ )



## ଉତ୍କଳ ଗାଉଁଲି ଗୀତ

### ଚତୁର୍ଥ ଖଣ୍ଡ

# କିଶୋରୀଙ୍କ ମେଲ ଗୀତିକା

# କିଶୋରୀଙ୍କ ମେଳ ଗୀତିକା

## ୧—ରଜଦୋଳି ଗୀତ

(ଏକ)

ରଜ ଦୋଳି ଖେଳୁଥିଲି
ନନା ଡାକ ଦେଲେ ଯଶୋଦା ବୋଲି
ହାତ ଧୋଇ ଭାତ ଦେଲି । ୧ ।

ପିତା ଶାଗ ବୁଦ ବୁଦ
ଭାଇ କାହା ସଙ୍ଗେ କଲେ ପୀରତି
ହାତୁ ଦେଇ ସୁନା ମୁଦ । ୨ ।

ଦୋଳି କଲି ରଟ ମଟ
ମୋ ଭାଇ ମଥାରେ ସୁନା ମୁକୁଟ
ଦିଶୁଥିଲା ଝଟଝଟ । ୩ ।

ରଥରୁ ଖୁମ୍ପ ଖସିଲା
ଭାଇନା କାନରେ ନୋଳି ବସିଲା
ଭାଉଜ ଦେଖି ହସିଲା । ୪ ।

ଛାତିଅ ଉପରେ ଗିନା
ତୋ ଭାଇ ମାଇଲେ, ମୋ ଭାଇ ମାରିବ
ପାଲଟ କରିଅଁ ଚିନା । ୫ ।

ତୋଳିଲି କଳା ଗଇଣ
ଅସ ଭାଇ ନନା ଭାଉଜ ଡାକୁଛୁ
ଖେଳିବା ଅଠ ପଚଶ । ୬ ।

ପାଚିଲା ପଣସ ଖୋଷା
ଭାଉଜ ମଥାକୁ ଡାଳିମ୍ବ ଖୋଷା
ଭଇନାଙ୍କ ପରଶଂସା । ୭ ।

ଶିରିଷ ଫୁଲର ବାସ
ସୀତା ଠାକୁରାଣୀ ଗରଭ ମାସ
ରାମ ଦେଲେ ବନବାସ । ୮ ।

ହାତୀ ଖାଏ ବରଡାଳ
ଶହେ ପାଇକରୁ ବାଛୁ ଅଣିଛ ହେ
ବାପା, ଟାନଖିଆ ସରଦାର । ୯ ।

ତୋଠରେ ଡେଙ୍ଗା ଡାଳିମ୍ବ
ଚଇନ କୁଣ୍ଡେଇକ ସରୁବେଢ଼ାଣି
ମୋ ମାମୁଁ ପାଟେଲ୍ଲା ଆମ୍ବ । ୧୦ ।

କେଉଁଠୁଣି ଝିଅ କାଳୀ
ଅଣ୍ଟାକୁ ସୁନ୍ଦର ସୁନା ଶିକୁଳି
ବେକେ ସୋରିଷିଆ ମାଳି । ୧୧ ।

ହୁଁ କଲି ହନୁମନ୍ତ
ଭାଉଜକୁ ଧର ଭାଇନା ଯିବେ
ଦେଖି ପୁରୁସ୍ତମ ଯାତ । ୧୨ ।
ମଦରଙ୍ଗା ଶାଗ ରାଜ
ନୂଆବୋହୂ ଠେଲି ଏଡ଼େ ପୀରତ
ଦୋଳି ପଞ୍ଚାଇଲେ ଭାଇ । ୧୩ ।
ମଦରଙ୍ଗା ଶାଗ ରାଇ
ପଖାଳ ଭାତକୁ ଚଳିକା ଶୁଖୁଆ
ମାଣିକପାଟଣା ଦହି । ୧୪ ।

ମଦରଙ୍ଗା ଶାଗ ଘାଟ
ପଖାଳ ଭାତକୁ ଶୁଖୁଆ ଭଜା
ନରସିଂହପୁର ଦହି । ୧୫ ।

ବସେଇଲି ବସାଦହି
ମୁଁ ତ ନ ବୋଲେ ମୋହର ଭାଇ
ପ୍ରଭୁ ସୋମନାଥଙ୍କର ସେହି । ୧୬ ।

ଦାଣ୍ଡରେ ଧାନ ବେଙ୍ଗଳା
ମୋ'ର ବୋଉର ଗୋଟିକ ବଳା ଲୋ
ରଖିବେ ସର୍ବ ମଙ୍ଗଳା । ୧୭ ।

ଦୋଳ ବୁଲିଗଲା ବାଙ୍କେ
ଆଖି ଲଖି ଗଲା ଜୁଳୁକ ଫାଙ୍କେ
ନାଗ ମାରିଗଲା ଟେକେ । ୧୮ ।

ପଟା ସଜାଉଲି ବାଙ୍କେ
ଆଖି ଲଖି ଗଲା ଚନ୍ଦ୍ରମାମୁଖେ
ଧନଯାକ ଗଲା ଦୁଃଖେ । ୧୯ ।

ଦୋଳ ଖେଳୁଥିଲି ଝାଙ୍କି
ଗଭାରୁ ଛୁଟିଲା ସୁନା କେତକୀ
ଧଅର ମୋ ଦେଲେ ଛୁଙ୍କି । ୨୦ ।

ଦୋଳ ଖେଳୁଥିଲି ବସି
ମହିଅଁ ଧଅର ଦେଲେ ତ ହସି
ଦୋଳରୁ ପଡ଼ିଲି ଖସି । ୨୧ ।
ଦୋଳ ଗୁଲେ ଧୀରେ ଧୀରେ
ଭାଉନା ମୋର ତ ବାହା ହେଇଯାଏ ଲୋ
ତେଲିଙ୍ଗି ବାଇଦ ସାରେ । ୨୨ ।
ଅଦନ ମଞ୍ଚି ଫୁଟିଲା
ଭାଉଜକୁ ଦେଖି ଭାଇ ହସିଲା
ସପନ ପର ଲାଗିଲା । ୨୩ ।

ବଳାଙ୍ଗି ବାଉଁଶ ବଣି
ମନ୍ଦାର ମାଳରେ ଗନ୍ଧ ମଣ୍ଡଣି
ପାନ ଖାଇ ପାଇକାଣି । ୨୪ ।

କୋଳଗାଡ଼ଅର କୋକ
କାନ୍ହୁପୁର ଶାଢ଼ୀ ଜଅକ ଜକ
ପିନ୍ଧଲେ ବହୁତ ସୁଖ । ୨୫ ।

ଶାଳ ପତ୍ର ବଡ଼ ବଡ଼
ବାପା ଯାଇଛନ୍ତି ଖଡଖଡ଼ ଚଢ଼ି
ଆଣିବେ ରତନ ଚୂଡ଼ । ୨୬ ।
କାଢ଼ିଲି କଇଁଥ ଅଠା
ସଉତୁଣୀ ମାଙ୍କେ ବାଦ ସାଧିବ
ପିନ୍ଧ ସୋନପୁର ମଠା । ୨୭ ।
ଦେଲି ହେଙ୍ଗୁଲେଇ ପଣା
ବିରଜା ବିମଳା ଦ ଭଉଣୀ
କୁଷ୍ଠମଚଣ୍ଡୀଙ୍କୁ ଜଣା । ୨୮ ।
ନଈରେ ଗୁଳିଛୁ ନାଅ
ନାଉରିଆ ଭାଇ ମଥାରେ ଟୀକା
ସମଲେଇ ହେଲେ ସାହା । ୨୯ ।
ମାଲତୀ ହାତୁଣୀ ଶୁଣ୍ଡ
କଳାପାଠ ପାଖେ ହାବୁଡ଼ିଗଲା
ବେକଠୁ ଛୁଟିଗଲା ମୁଣ୍ଡ । ୩୦ ।

କଲ ରଜା ପୁଅ କ୍ୱାଇଁ
ଧନେ ବାହା ସୁଖ ଭୋଗିଲା ନାହିଁ
ଝିଅ ହେଲା କାମଦୋହ୍ନ । ୩୧ ।

କୁଳୁକରେ ସବୁ କଣ୍ଟା
ଅଖିଠାରେ ଦେଲେ ଶାଶୁ ଜାଣିବେ
ନଣନ୍ଦ ବାଢ଼ିବ ଝୁଣ୍ଟା । ୩୨ ।

ନୂଆ ପାଟଣାର ପାଟ
ଚୂଆ ଚନ୍ଦନରେ ରତ୍ନ ମୁକୁଟ
ଲକ୍ଷ୍ମୀନାରାୟଣ ଭେଟ । ୩୩ ।
ବାମେଣ୍ଡିଆ ଶାଗ ଭଜା
ଦିଅର ଉପରେ ଭାଉଜ ରଜା
ସବୁଦିନେ ବଡ଼ ମଜା । ୩୪ ।
ଦାସ୍ତି ପନ୍ଥୁଣ୍ଡର ମାଟି
ଦିଅର ଭାଉଜ ବଡ଼ ଅଣକଥ
ଘାଣ୍ଟି ପରଦଉ ଉଠି । ୩୫ ।
ଦୋଳରୁ ଖସିଲ ବତା
ବୋଇତରେ ଗଲେ ସାତ ଖୁଣ୍ଟା
ଝିଅର ଅମରମତା । ୩୬ ।
ଦୋଳରୁ ଛୁଡ଼ିଲ ଲଇ
ବୋଇତରେ ଗଲେ ସପତ ଭାଇ
ବଣେ କାନ୍ଦେ ତଅପୋଇ । ୩୭ ।
ଘାଣ୍ଟୀ ଦେଉଳର କୁଣ୍ଡ
ଖଟେଞ୍ଚିଇ ନାହାକାଣୀର କେଡ଼େ ଗରବ ଲୋ
କାଟିଦେବ ରଜା ମୁଣ୍ଡ । ୩୮ ।
ଝୁଷି କଲହାର ମଞ୍ଜି,
ନନା ପେଇଁ ନୂଆବୋହୂର ବେଶ
ଉନା ଲୋକ ଯାଏ ଭାଜି । ୩୯ ।

କାଳିଆ କୁକୁର କାନ
ଗୁଆଲେ ମାଠିଆ ନଈକୁ ଯିବା
ଚିଙ୍କି କୁଟୁଥାଉ ଧାନ । ୪୦ ।

( ନରସିଂହପୁର )

(ଦୁଇ) ଦୋଳି ତଳଯାକ ପାଣି
ଶାଶୁ ଗାଳିଦେଲେ ମରମହାଣି
ନଣନ୍ଦେଇ କାଳିକାମୀ । ୧

ଘରର ଉପରେ ଘର
ସୁନା ଖୁମ୍ବ ପର ଗୁର ଦାଅର
ଚନ୍ଦର ଉଦଅ ବର । ୨ ।

ଘରର ଉପରେ ଘର
ଘରେ ଥିଲା ଯାକ ଘରର ଝିଅ ଲୋ
ବୋଉ, ଏରୁଣ୍ଡି ଡେଇଁଲେ ପର । ୩ ।

ଲଣ୍ଡି ବରଗଛ ଝାଇ
ଲଣ୍ଡିକ ଧର ମୁଁ କା ଘର କରିବି
ଲଣ୍ଡି ତ ବନ୍ଧଣା ଗାଈ । ୪ ।

ଢିଙ୍କିରେ କୁଟିଲି ଗୋଡ଼ି
ଖୁଡ଼ି ଦେଇଥିଲେ ନଣାନ୍ଦ ପେଡ଼ି
ଟାଁ ଯାକ ଗଲେ ବେଢ଼ି । ୫ ।

ଢିଙ୍କିରେ କୁଟିଲି ବାଳି
ଢୋଡ଼ାଣି କଂସାକେ ଲୁହ କଂସାଏ ଲୋ
ବୋଉ, ଅଢ଼େଇ ପହର ବେଳ । ୬ ।

ଢିଙ୍କିରେ କୁଟିଲି ଲାଉ
ମୋ କରମକୁ ବୁଢ଼ା ଘଇତା
ପକେଇ ଦେବ କା ଆଉ । ୭ ।

ଢିଙ୍କିରେ କୁଟିଲି ଚୁନା
ଏଡ଼େ ହନୁମାନ ନ କର ନନା
ଝିଅ ନଈ ବଢ଼ି ପାଣି ପିନା । ୮ ।

ଗୁଳରେ ଖୋସିଲି ଗିନା
ଶାଶୁ ମଲା ବୋଲି କହନ୍ତା କିଏ
ଦେଉଲେ ବାନ୍ଧନ୍ତ ବାନା । ୯ ।

କାନ୍ଥି ତଳେ ସାପ ଗାତ
ଶାଶୁ ମରବାର ହୁଅନ୍ତା ସତ
ଦେଉଳେ ବାନ୍ଧନ୍ତି ନେତ । ୧୦ ।

ଅଠିକା ଯୋଡ଼କ ଧୋଇ ଥୋଇଲି ଲୋ
ନଗିଡ଼ ପଡ଼ିଲା ମହୁ
ଲୋକେ ପଚ୍ଛରିଲେ କି ବୋଲି କହିବ
ମୁଁ ତ ସାଆନ୍ତ ବ୍ରାହ୍ମଣ ବୋହୂ । ୧୧ ।

ଅଠିକା ଯୋଡ଼କ ଧୋଇ ଥୋଇଲି ଲୋ
ନଗିଡ଼ ପଡ଼ିଲା ଘିଅ
ଲୋକେ ପଚ୍ଛରିଲେ କି ବୋଲି କହିବ
ମୁଁ ତ ଗାଁ ମକଦ୍ଦମ ଝିଅ । ୧୨ ।

ଗୃଳେ ଗୃଳେ ଗଲା ଗୃଳୁଆ ମୂଷା ଲୋ
କୋଉ ଗୃଳେ କଲା ବସା
ନନାଙ୍କ କାନ୍ଧରେ ଲାଲ ଗାମୁଛା
ଠାଏ ଠାଏ ପରଶଂସା । ୧୩ ।

ଏକଣି ଖୋଜିଲି ସେକଣି ଖୋଜିଲି
ମଝି କଣେ ଗଲେ ଜଡ଼
ମଝିଅଁ ଦଅର ଲୁଗା ଆଣିଥିଲେ
ରଅସରସିଆ ଧଡ଼ି । ୧୪ ।

କାଉର, ବାଉର ଦ ଭଉଣୀ ଲୋ
ମନ୍ଦାର ଫୁଲର ମାଳ
ଛୋଟା ଫାଙ୍କେ ଫାଙ୍କେ ଅନେଇଁ ଦେଲି ଲୋ
ଲଡ଼ୁବାବାଙ୍କ ଦେଉଳ । ୧୫ ।

କେଲୁଣୀ ଠାରିଲା କେନା ବାଉଁଶେ ଲୋ
ମଜୁର ତାଲିଆ ଖୋପା
ଭାଇଙ୍କ ମୁହଁକୁ ଅନେଇଁ ଦେଲି ଲୋ
ହେଲେ ବଡ଼ ଲୋକହସା । ୧୬ ।

ଚଲ୍‌କା କୂଳରୁ ଆସିଛୁ ଭାଉଜ
ନୂଆ ନବଘନ ଗୋସାଇଁ
ନୂଆ ନୂଆ କର ବଚନ କହୁଚ
ଅବନା ଅକ୍ଷର ଗୁର । ୧୭ ।
( ନୂଆଗଡ଼ )

**(ତନ)**

ଦୋଳି ଦୋଳି ଦୋଳି ଦୋଳି
ଫଳି ମୋ ଠ ହେଲ୍ଲା ନ ଗଲେ ନୋଳି
ଭାଉଜ ତ୍ରିପଣ୍ଡ କାଳୀ । ୧ ।
ଶାହାଣିକ ଦଅ ଚଢ଼ୁ
ଘୋଡ଼ା ବାଡେଇଲ୍ଲ କନକା ଗଢ଼ୁ
ଲକ୍ଷେ ଚମ୍ପାଫୁଲ ଚଢ଼ୁ । ୨ ।
ମନ୍ଦାରେ ପୋତିଲ୍ ଲଉ
ଫୁଲ ନ ଫୁଟୁଣୁ ଧଇଲ୍ଲ କଷି
ରଜ ସଜ ହଉ ହଉ । ୩ ।
ହୁଁ କଲ୍ଲ ହନୁମନ୍ତ
ଉଠେ ଧର କର କୁଆଡ଼େ ଯିବ
ଗୁର ଅଡ଼େ ପରବତ । ୪ ।
ଘଉ ଲଟେଗଇଲ୍ ହସି
ଫୁଲ ଫୁଟିଗଲ୍ଲ ଧଇଲ୍ଲ କଷି
କାନ୍ତ ହେଲେ ପରବାସୀ । ୫ ।
ନଈକୁ ଫିଙ୍ଗିଲା କଞ୍ଚି
କାଞ୍ଚି ରାଇଜରୁ ଆସିଛୁ ଜେମା ଲୋ
କଏ ରଖିଥିଲ୍ଲ ଫଚ । ୬ ।
ନଈକୁ ଫିଙ୍ଗିଲା ବାଡ଼ି
ଭାଉଜ ତ ମୋର କନକ ଗୋସାଇଁ
କାଛୁ ପିନ୍ଧେ କଳା ମେଘିଶାଢ଼ୀ । ୭ ।

ବାଘ ଛାଲ ପଟା ପଟା
କବାଟ କଣରେ ଛେନା ଚକଟା
ଶାଶୁ କଲା ହଟହଟା ।୮।

ଗାଇଦେଲ୍ ଦୋଳି ଗୀତ
ଦୋଳିରେ ଦୋଳିରେ ଉହୁଙ୍କି ଯିବ
ସାତଶିଖ ପରବତ ।୯।

ଦୋଳି ଦେଲ୍ ପହଞ୍ଚାଇ
ଯୋଡ଼ଥି ପାର୍ବିକ ଅଳି କରୁଚ
ତୁମେ ପିଉସୀର ପୁଅ ଭାଇ ।୧୦।

ରାଜ ଦୋଳି ଖେଳୁଥିଲ୍
ଅଟକେଇ ରଖି ଖସି ଆସିଲ୍
ବଇଠା ଲିଭେଇ ଦେଲ୍ ।୧୧।

ଜହ୍ନ ପାଖେ ପାଖେ ତରା
ଜହ୍ନ ବୁଡ଼ଗଲେ ପଡ଼ିବ ଧରା
ଜଇଷ୍ଠ ପୁନିଅଁ ପରା ।୧୨।

କର୍ଣିଆ ପତର ସରୁ
ଦୋଳି ଗୁଳିଛୁ ତ ଦ ପହରୁ
ଠରା ଠରି ଏବେ ସରୁ ।୧୩।

ଆମ୍ବ ପାଚେ ଡାହ୍ନ ଡାହ୍ନ
ଅଢ ଶରଧାରେ ଅଢ଼ ଗୁହାଁଣୀରେ
ଧଅରକୁ କଲ୍ ଭାଇ ।୧୪।
ଲୁଚ ଯାଏ ମଲା ଜହ୍ନ
ପାଦଧର ଅଳି କଲେ ହେବ କସ
ଧନେ ତ ପାଇନ ମନ ।୧୫।
ଅମ୍ବଡ଼ା ଗଛରେ ଲଉ
ଯେତେ ଗାଳି ଦେଲ୍ ଏତେ ଧେଠୁଆ
ଏବେ ଭମ କଥା ହଉ ।୧୬।

ଜଡ଼ା ତେଲ ବଡ଼ ଅଟା
ଥିବ ଥିର କର ଲମ୍ଭା ବଇଠା
ପାଲଧୂଆ ଦୋଳି ପଠା । ୧୭ ।

ଝାଞ୍ଜି ପିଠେ ଝାଇଁ ଝାଇଁ
ତୁମ ଆମ ଭାବ ଯୁଗକ ଥିବ
ବଚନ ଭୁଲିବ ନାହିଁ । ୧୮ ।
ଦୋଳି ଗୁଲେ ସାଇଁ ସାଇଁ
ମଲ୍ଲିଫୁଲ ଶେଜ ନେବ ଉଠାଇ
ଚମ୍ପା ଫୁଲ ମଞ୍ଜୁସାଇ । ୧୯ ।
ନେଉଳ ଗାଳୁଛି ମାଟି
ଭାଇଙ୍କ ଗମ୍ଭୀରା ଅନାଇଁ ଦେଲି
ହସରେ ଯାଉଛି ଫାଟି । ୨୦ ।
କମ୍ଭୀର ଗାଳୁଛି ମାଟି
ଧଅର ରକତ ଭାଉଜ ଶୋଷୁଛି
ପକେଇ ବେଚୁହାଁ କାଠି । ୨୧ ।

ମୁଣ୍ଡି ବଉଳର ଗାଇ
ଲଣ୍ଡା ବରଗଛ ଓହଳ ଧର
କାଳ କାଳି ଗଲା ବୋହି । ୨୨ ।

( କଟକ )

(ଗୁଣ)

ଦୋଳି ଖେଳୁଥିଲି ଝୁଲି
ଝୁଲଣିକୁ ବୋଉ ନ ନେଲା ବୋଲି
କେତେ ଅଭିମାନ କଲି । ୧ ।
ନଡ଼ିଆ ଗୋଠମା କଷି
ଦୂର ଗାଁଇଜରେ ଦେଇଚୁ ଝିଅ ଲୋ
ବୋଉ, ଦିନ ଗଣୁଅଛୁ ବସି । ୨ ।

ବାଡ଼ି ଖଣ୍ଡେ ତେର ଦେଲି
ସତେ କି ମୁଁ ନନା ବୁଢ଼ା ମାଗୁଥିଲି ହେ
ମନ ସିନା ବଢ଼ୁଥିଲି । ୩ ।
କପାଖାଇ ରାଉ ରାଉ
ବଡ଼ ମୁଗଜାଇ ନ ଦେଲୁ ବୋଉ ଲୋ
ଲୋକ ହେଲେ ହାଉ ପାଉ । ୪ ।
ଠୋଠାକୁ ଠୋଠା ଲାଗିଛି
ଠୋଠା ଗୋପିନାଥ ମାଡ଼ି ପଡ଼ୁଛି ଲୋ
ମୋ ବୋଉ ମନେ ପଡୁଛି । ୫ ।
ଛାତିଆ ଉପରେ ଗିନା
କନା ପାଞ୍ଚହାତ ନ ଦେଲ ନନା ହେ
ଦାଣ୍ଡକୁ ସୁନ୍ଦର ସିନା । ୬ ।
ବାଜିଗଲା ଡବ ଡବ
ଶହେ ଟଙ୍କା ଦେଲେ କେବେହେଁ ନ ଯିବ ହେ
ଚନ୍ଦ୍ରହାର ଦେଲେ ଯିବ । ୭ ।

କଦଳୀ ଗଛର ଓଧି
ପିଲାଦିନୁ ଦେଲୁ ବଇରି ମୁହେଁ ଲୋ
କିଏ ଶିଖାଇବ ବୁଦ୍ଧି । ୮ ।
ନାଳକୁ ଫିଙ୍ଗିଲି କାଣ୍ଡେ
ସତେ କି ଦେଖିବ ବୋଉକୁ ମୋର ଲୋ
ଶିରି ପୁରସ୍ତମ ଦାଣ୍ଡେ । ୯ ।
ଗାଈ ହଗିଗଲା ଲେଣ୍ଡେ
ବୋଉକୁ ଦେଖିଲି ଗୁଣ୍ଡିଚା ଦାଣ୍ଡେ ଲୋ
ବୁକୁ ହୋଇଗଲା କୁଣ୍ଡେ । ୧୦ ।

ବାଡ଼ିରେ ରଙ୍ଗ ମନ୍ଦାର
ଏଡ଼ିକି ସଖୀଙ୍କୁ ପଠେଇ ଦେଲୁ ଲୋ
ବୋଉ, ଘୋଟିଛି ମେଘ ଅନ୍ଧାର । ୧୧ ।

( ପୁଷି )

(ପାଞ୍ଚ) ଦୋଳି ଦୋଳି,
ଶୁଙ୍ଗୁଆ ପୋଡ଼, ଶୁଙ୍ଗୁଆ ହୋଇଲା କଞ୍ଚା
ଦୋଳି ଭଲ କର ପହଞ୍ଚା । ୧ ।

କଅଁଳା ବାଛୁରି କାନ
ଏତେ ମଣିଷରେ ମୋ ଭାଇନା ଠିଆ ଲୋ
ଦଶନ୍ତ୍ର କୁଅଁର ଜହ୍ନ । ୨ ।

ଡେଙ୍ଗଡ଼ା ଉପରେ ଥାଳି
ଭାଇନା କାନକୁ ସୁନ୍ଦର ଦିଶେ ଲୋ
ଲବଙ୍ଗି ଦକ୍ଷିଣୀ ନୋଳି । ୩ ।

ଶଗଡ଼ରେ ଦେଲି କାଳି
ଭାଇନା ବେକକୁ ସୁନ୍ଦର ଦିଶେ ଲୋ
ପଇତା ଉପରେ ମାଳି । ୪ ।
ଉଦ୍ଘାଡ଼ ଉପରେ ପଠା
ଭାଇନା ଦେହକୁ ସୁନ୍ଦର ଦିଶେ ଲୋ
ବଉଦ ବାଇଜ ଫେଠା । ୫ ।

ଦେଉଳ ଉପରେ କୁଶ
ଭାଇନା ମୁହଁକୁ ସୁନ୍ଦର ଦିଶେ ଲୋ
ମାଗୁରି ମାଗୁରି ନିଶ । ୬ ।
ରଗଡ଼ ବସିଲି ବରି
ଭାଇନା ମୁଣ୍ଡରେ ବାବୁରି ବାଳ ଲୋ
ମୁହିଁ ସଜାଡ଼େ ପାନିଅଁ ଧରି । ୭ ।

ପାଚିଲା ଅମ୍ବରୁ ଫାଳେ
ନନା ଡାକୁଛନ୍ତି, ଥିଲି ଦାଣ୍ଡ ଦୁଆରେ ଲୋ
ଲହସ ନ ଥିଲା ଘରେ । ୮ ।

ବାଡ଼ରେ ଡେଙ୍ଗା ବରୁଣ
ବୋଉ ମନ ମିନା ଘାଣ୍ଟି ହେଉଥିବ ଲୋ
ନନା ତ ବଡ଼ ଦାରୁଣ । ୯ ।

ପାଣିଗଲା ନାଳେ ନାଳେ
ମାଛ ଗଲେ ତହିଁ ଭଳେ
ନନା ମୁଁ ତମର ମନେ ପଡୁଥିବ ହେ
ପୂଜା ବସୁଥିଅ ବେଳେ । ୧୦ ।

ମାଠିଆ ମୁହଁ ତଳକୁ
ଟିଲା କର ବୋଉ ପଠେଇ ଦେଲୁ ଲୋ
ମୋ ଖାଇଲା ଭାତ ବେଳକୁ । ୧୧ ।

ଅଖୁ ପତରିଆ ଖଣ୍ଡିଖଣ୍ଡିଆ ଲୋ ବାଆ କଲେ ବାନ୍ଧଦେବ
ଦୂର ଦେଶେ ନନା ବାଭ ଦେଇଚ ହେ,
ଚୁଲଧର କାନ୍ଦୁଥିବ । ୧୨ ।

ଶୋହ୍ଲ ଶାଗ ବଡ଼ ବଡ଼
ନନା ଦେଇଥିଲେ ଛଡଆ ନାଡ଼
ଲୋକେ ପକେଇଲେ ଝାଁଡ଼ । ୧୩ ।

ଚୁଲରେ ଶୁଖେଇ ମଠା
ଏଡ଼େ ବଡ଼ ଘରେ ଦେଇଚୁ ବୋଉ ଲୋ
ଗଣେନ୍ତ ଚଟୋଉ ପିଠା । ୧୪ ।

ଚୁଲରେ ଖୋସଇ ଦାଆ
ଏଡ଼େ ବଡ଼ ଘରେ ଦେଇଚୁ ବୋଉ ଲୋ
କହନ୍ତ ଫଣେଫଣି ମୁହାଁ ଯାଆ । ୧୫ ।

ଡେଇଁ ଡେଇଁ ଗଲା ବଣି
ଏଡ଼େ ବଡ଼ ଘରେ ଦେଇଚୁ ବୋଉ ଲୋ
ଖାଆନ୍ତ କେରଣ୍ଡି ଗଣି । ୧୬ ।

କେ କଏ ଯାଉଚ ଭୋଦନଗର ହେ
ମୋଠାରୁ ବାରତା ନିଅ
ଗୁଆ ବୋଡ଼କର, ପାନ ବୋଡ଼କର
ମୋ ଭାଇନା ଛାମୁରେ ଦିଅ । ୧୭ ।

ବାଡ଼ଅଡ଼େ ବାଡ଼ ଗବ
ବୋଉକୁ ଦେଖିଲେ କହିବ ଯାଇ ଲୋ
ମୋ କୁଣ୍ଡେଇ ପେଡ଼ିଟି ଦବ । ୧୮ ।

ପାରେର ଅଧରେ ଖିରୀ
କାଅ କାଅ ବୋଲି କୁଅ ବୋବାଉଛୁ ଲୋ
ମୋ ଭାଇନା ଅସିବେ ପରୀ । ୧୯ ।

ହାଣ୍ଡିଶାଳ ଲିପୁଥିଲି
କିଏ କହି ଦେଲା ଭାଇନା ଅଇଲାଣି ଲୋ
ହାତ ଧୋଇ ପାଣି ଦେଲି । ୨୦ ।

ବାଡ଼ଅଡ଼େ ଲମ୍ବ କିଆ
ବୋଡ଼ଏ କଉଡ଼ିକ ପୁଞ୍ଜାଏ ମୁଆଁ
ଭାଇନା, ଦୁଆରେ ନ ହେଲ ଠିଆ । ୨୧ ।

ବାଡ଼ ଅଡ଼େ ଅନାବନା,
କନା ପାଞ୍ଚହାତ ନ ଦେଲି ନନା ହେ
ଲଙ୍ଗଳାରେ ଯିବ ସିନା । ୨୨ ।

( ଖୁର୍ଦ୍ଧା )

## (ଛଅ)

ବାଉଁଶ ହାଣିଲି ଜଣେ
ଗୋରୀ ହଜଉଛୁ ଏ ଶାଳୁଆ ବଣେ
ଖୋଜନ୍ତି ଭେଣ୍ଡିଆ ପଣେ । ୧ ।
ଗାଁ ଗଣ୍ଡା ହାଉ ଯାଉ
ଠାକୋଇ ଗାଲରୁ କ ମଧୁ ପାଉ
ଦବାଗ୍ନି ଧାଇଁ ଥାଉ । ୨ ।
କଣ୍ଟା ଭୁଷି ଦେଲା ଗଛେ
ଯନ୍ତ୍ରର କଳକି ମନ୍ତ୍ରର କଳା
ଗୋଡ଼େଇଲି ପଛେ ପଛେ । ୩ ।
ବଡ଼ ମିଠା ତାଳ କନ୍ଦା
ଗୀତ ଶୁଣି ବାଇ ହୋଇଛୁ ଭେଣ୍ଡା
ମୁନ୍ଦ ଦେଇ ଗଲା ବନ୍ଧା । ୪ ।

ବୁଣିଲି ଭୋଦେଇ ଗୁଣି
ଜନମ ଦେଖିଲି ଦେଉଳେ ପଣି
ଭେଣ୍ଡା ଦେଲା ପରଶଂସି । ୫ ।

ବୁଣିଗଲି ମାଧି ଗୁଣି
ଭେଣ୍ଡା ଲେଉଟୁଥିଲା ଷୋଳବରଷି
ଦେଉଳ ପଛଆଡ଼େ ଗଲି ପଣି । ୬ ।

ବୁଣିଲି ନାଲ୍ଲକି ଗୁଣି
କୋଇଲି ଡାକିଲା ମୋ ବୁଦ୍ଧି ହଜିଲା
ଧଇଲି ଧସେଇ ପଣି । ୭ ।
ଦୋଳି ଉଞ୍ଚେ ଗଲା ଗୁନି
ଖସି ଅସୁ ଅସୁ କାବା ଦେଖିଲି
ପରାଣ ସମର୍ପି ଦେଲି । ୮ ।
କାଟିଲି ସୁଗନ୍ଧ ବେଣା
ନାସ୍ତି କରୁ କରୁ ଧଇଲେ ଡେଣା
କର ନ ମାରିଲି ମନା । ୯ ।
ବାଡ଼ିରେ କଣ୍ଟାମାରସ
ପୀରତି ଅଶାରେ ଗୁଡ ପାଇଗଲା
ନଇଲେ ବଦେଶୀ ପାଶ । ୧୦ ।
ଅଣ୍ଟୁଦଣ୍ଡା କଲି ଭାର
ଡେଇଁ ନ ପାରିଲି ଲଙ୍ଗର ଧାର
ନବାଡ଼ ପାହୁଡ଼ ଭାର । ୧୧ ।

ଛାଳ ବାହୁଙ୍ଗାରେ ବାୟା ବସା
କନକ କାନ୍ତକୁ ତେଲଙ୍ଗି ଖୋଷା
ସାହି ଯାକ ପରଶଂସା । ୧୨ ।

ଗଛ କୋରଡ଼ରେ ଶାରୁଣା ବସା
କାଳୀ କୋଉଶୀକୁ ତେଲଙ୍ଗି ଖୋଷା
ସାହି ସାହି ଲୋକହସା । ୧୩ ।

ତୋଟାରେ ବଇଁଶୀ ସ୍ୱନ
ସୁବା ପୀରତ ତ ବଡ଼ ବିଷମ
ରାତରେ ଦେଖେ ସ୍ୱପନ । ୧୪ ।

ପଟା ଦୋଳି ତଳ ଗାତ
ତୋ ଭାଇ ମୋ ଭାଇ ଦହେଁ ସଙ୍ଗାତ
ଅମେ ଦହେଁ ହେବା ମିତ । ୧୫ ।

ଦୋଳମୁଣ୍ଡେ ଦୁଇକଣା
ତୁ ହେବୁ ନଣନ୍ଦ ମୁଁ ହେବ ନଣନ୍ଦ
ପାଲଟ କନିଅଁ ସିନା । ୧୬ ।

ଦୋଳ ହୁଏ ରଟରଟ
ନଟବର ବେଶ ଦେଖିଲି ଦନରୁ
ମନ ହୁଏ ଛଟ ପଟ । ୧୭ ।

ଦୋଳି ପିଢ଼ା କଟ କଟ
ମୋ ଭାଇ ମୁଣ୍ଡରେ ସୁନା ମୁକୁଟ
ତୋ ଭାଇ ମୁଣ୍ଡରେ ଜଟ । ୧୮ ।

ସଜନା ଶାଗ ରାଇତା
କୋଇଲି ବେଙ୍ଗୁଲି ଦ ଭଉଣୀ
କେଞ୍ଚୁଅ ତାଙ୍କ ଘଇତା । ୧୯ ।

( ଅନୁଗୁଳ )

ମଦରଙ୍ଗା ଶାଗ ରାଇତା
ନନା ଭୁଞ୍ଜନ୍ତି ନାହିଁ
ଜଳକୁ ମାଇଲି ଚୋଇଠା
ଜଳ ପିଇଲି ନାହିଁ ।

( ପାରକୁଦ )

## ଦୋଳଗୀତ ( ୭ )

ବାଡ଼ରେ ଫୋଇଲ୍ ବେତ
ଗ୍ରାମ ଦେବତାଙ୍କୁ ଏ ଦଣ୍ଡବତ
ଅନୁକୂଳ ହେଲା ଗୀତ, ସଜନୀ ରେ । ୧ ।
ଅଧରେ ଗୋଲାପ ଫୁଲ
କ୍ଷଣେ ନ ଦେଖିଲେ ପଗ୍ଭୁରୁଥିଲ
କେମନ୍ତେ ପାସୋରି ଦେଲ, ନାଗର ହେ । ୨ ।
ପାସୋରି ନାହିଁ ଗୋ ତୋତେ
ମୁଖରେ ଯେତେ ମୋ ହୃଦରେ ତେତେ
ମରିଯିବା ପର୍ଯ୍ୟନ୍ତେ, ସଜନୀ ରେ । ୩ ।
ବାଡ଼ି ବାଇଗଣ କଳା
ଦେଇଥିଲ ମନ କାଟିଲ ଗଳା
ତୁମ୍ଭ ମନେ ଏହା ଥିଲା, ନାଗର ହେ । ୪ ।
ମନ ଜାଣେ ମନ କଥା
ଆଉ କେ ଜାଣିବ ଜାଣେ ବିଧାତା
ଅନୁକ୍ଷଣେ ତୋର ଚିନ୍ତା, ସଜନୀ ରେ । ୫ ।
ବାଉଁଶ ପତର ବେଣୀ
ଆଣି ଦେଇଛୁ କି ମୋର ମାଗୁଣି
ଭୁଲୁ ନେବ ମନ କିଣି, ନାଗର ହେ । ୬ ।
କାଳମାଟି ପାଣି କଳା
କାଲ କିଣିଦେବି ବହୁ। ଅଁଳା
ମାଣି ହୋଇଯିବୁ ଧଳା, ସଜନୀ ରେ । ୭ ।
ତୋଡ଼ରେ ଲେଖିଲି ହଂସ
ମୋତେ ଛାଡ଼ି କାନ୍ତ ଯିବ ବିଦେଶ ହେ
ସବୁ ହେବ ମୋର ବିଷ, ନାଗର ହେ । ୮ ।
ଶୂନ୍ୟରେ ଉଡ଼ଇ ଯାଆ
ଦୁଇ ଗୁରୁଦିନେ ଆସିବି ଫେରି
ରହିଥିବୁ ଦେହ ଧରି, ସଜନୀ ରେ । ୯ ।

ଅମଳା କଂସାରେ କାଉ
ହସିକର ପଦେ କଥା ନ କହୁ
ତୋ ଲାଗି ଜୀବନ ଯାଉ, ସଜନୀ ଗୋ । ୧୦ ।

ରସୁଣ ଖାଇଲା ପୋକ
ଧନେ ହସିଦେଲେ ଯିବ କି ଦୁଃଖ
ଯେତେ ହେଲେ ପରଲୋକ, ନାଗର ହେ । ୧୧ ।

ଗାଲ ବାଜେ ଫୁଲି ଝୁଲି
ତୋହ ପାଇଁ ମୁଁତ ଝୁରି ମରଇ
ପର ବୋଲୁ କାହାପାଇଁ, ସଜନୀ ଗୋ । ୧୨ ।

ନିମ୍ବ କି ମଧୁର ହେବ
ଘାସି ଶୁଆ ପର ପଢ଼ାଉଥିବ
ପର କି ଆପଣା ହବ, ନାଗର ହେ । ୧୩ ।

ବାଡ଼ି ବାଇଗଣ ମଲା
ତୋତେ ଅନୁସର ମୋ ଧନ ଗଲା
ଶତ୍ରୁରେ ଦୟା ନ ହେଲା, ସଜନୀ ଗୋ । ୧୪ ।

ମାଠିଆ ମୁହଁରେ କାଉ
ଭାଙ୍ଗିଗଲା ମନ ଅସେ କି ଆଉ
ଯେତେ ନାହିଁ ତୁଟି ହେଉ, ନାଗର ହେ । ୧୫ ।

ତୋ ଲାଗି ଯାଉ ଜୀବନ
ଘର କଥା ଲାଗି କରୁ ଗୁମାନ
କଥା ରହୁ ଦହୁ ଧନ, ସଜନୀ ଗୋ । ୧୬ ।

କେଉଁ ରାଇଜର ରୁହ
ଘୁଞ୍ଚି ଯା ମୋତେ ତୁ ଛୁଇଁବୁ ନାହିଁ
ତୋଠାରେ ମୋ ଦୟା କାହିଁ ? ନାଗର ହେ । ୧୭ ।

ବାଲିଆ ଭୂଇଁରେ ଯବ
ଅମେ ପରବାସୀ ସୁଦୟା ଥିବ
ଯୋଗେ ଯୋଗେ ପ୍ରୀତି ହେବ, ସଜନୀ ଗୋ । ୧୮ ।

କୁଅମୈତା ନ ଲ୍ ବେଣ୍ଟ
ବିଦେଶୀ ପୀରତି ବଡ଼ କପଟ
ଜାଣୁ ଜାଣୁ ଚିତା କାଟ, ନାଗର ହେ । ୧୯ ।
ଅବିଶ୍ୱାସୀ ନାରୀଜାତି
ଅଳପ କଥାରେ ଚଞ୍ଚଳ ମତି
ଧଇର୍ଯ୍ୟ ନ ଥାଏ କତି, ସଜନୀ ଗୋ । ୨୦ ।
ପୁରୁଷ ବଡ଼ ବିଶ୍ୱାସୀ
ବାର ଦ୍ୱାର ବୁଲି କଟାଅ ନିଶି
ଘରେ ବୋଲାଅ ତପସ୍ୱୀ, ନାଗର ହେ । ୨୧ ।
( ଷଡ଼େଇକଲା )

## ଦୋଳ ଗୀତ ( ୮ )

ଦୋଳଖୁଣ୍ଟ କଟେ କଟ
ନାଗରୀ ମୁଣ୍ଡରେ ପଟୁଆ ଜଟ
ନାଗର କରଇ ହଟ, ସଜନୀ ଗୋ । ୧ ।
ଦେଉଳ ଉପରେ ବାନା
ମୋ ମୁଣ୍ଡ ଖାଇବୁ ନେଉଟି ଅନା
କଏ କଲା ତୋତେ ମନା, ସଜନୀ ଗୋ । ୨ ।
କାଟିଲି କଳା କେନ୍ଦୁକୁ
ଏବେ ପାଇଗଲି ନୂଆ ସାଙ୍ଗକୁ
ପାସୋରି ଦେଲ ଆମ୍ଭଙ୍କୁ, ନାଗର ହେ । ୩ ।
କାଳୀଗାଈ ତଳପେଟ
ଛମାସ ଜଗିଲି ଗାଧୁଆ ଘାଟ
କେବେ ନ ପାଇଲି ଭେଟ, ସଜନୀ ଗୋ । ୪ ।
ଯାଉଥିବ ଆସୁ ଥିବ
ଯେଉଁଦିନ ଧନ ଧରି ପଡ଼ିବ
ମାମୁଁ ଘରେ ଢୁକି ଯିବ, ନାଗର ହେ । ୫ ।

କଂଧା ଗାଡିଅରେ ମହୁ
ଲଜଭଯ୍ୟ ଛାଡ଼ିକି କଥା କହୁ
ତୋ ଲଗି ଜୀବନ ଯାଉ, ସଜନୀ ଗୋ । ୬ ।

ମୋ ଲଗି ଗଲେ ଜୀବନ
କି ଯଶ ପାଇବୁ ପରାଣଧନ
ନ କହ କଟୁ ବଚନ, ନାଗର ହେ । ୭ ।

ସଜନା ଗଛର ଅଠା
କେତେ କହିଥିଲି ଗୁପତ କଥା
ଦାଣ୍ଡେ କଲୁ ହଟହଟା, ସଜନୀ ଗୋ । ୮ ।

ଦୁଆରେ ଗୁଞ୍ଜିଲି ଖିଲା
ପାଚିଲା ପଣସ ବଦର ଗଲା
ତୋହ କଥା ଜଣାଗଲା, ନାଗର ହେ । ୯ ।

କାହିଁକି ମୋଠାରେ ମାନ
କହିଲେ ତେଜିବ ଛାର ଜୀବନ
ଥୟ କର ତୋର ମନ, ସଜନୀ ଗୋ । ୧୦ ।

ଆସିଲାଣି ନଈ ବଢ଼ି
ପୂରୁବର ସ୍ନେହ ଯାଉଛୁ ଛାଡ଼ି
ବିଜୁଳି ଘଡ଼ିକି ଘଡ଼ି, ନାଗର ହେ । ୧୧ ।

ସଜନା ଗଛର ଛାଇ
ବାଟେ ଘର କଲି ତୋହର ପାଇଁ
ଦିନେ ଦେଖା ଦେଲୁ ନାହିଁ, ସଜନୀ ଗୋ । ୧୨ ।

ଲେଉଟିଆ ଭଜା ଶାଗ
ଏହି କଥା ପାଇଁ କରୁଛ ରାଗ
ରହିଲେ ପାଇବ ଭାଗ, ନାଗର ହେ । ୧୩ ।

ପଠାକୁ ପଠା ଲାଗିଛି
ତୋ ମନ ମୋ ମନ ମିଶି ଯାଉଛି
କାହିଁକି ଭୟ ଲାଗୁଛି, ସଜନୀ ଗୋ । ୧୪ ।

ହାତର ଚୁଡ଼ିରୁ ପଚେ
ଯାଉ କାଢ଼ିଲୁ ନେଇ ଯା ମୋତେ
କାଢ କରାଇବା ତୋତେ, ନାଗର ହେ । ୧୫ ।

କି ଦୋଷ କଲି ମୁଁ ତୋର
ଗଳା କାଟିଦେଇ ଗଲୁ ମୋହର
ଛାତିରେ ଲେଖିଲୁ ପର, ସଜନୀ ଗୋ । ୧୬ ।

ଗୋଲାପ ଫୁଲର ହାର
ଯେତେ ଦୂରେ ଥିଲେ ତୁମ୍ଭେ ମୋହର
କେବେ ନ କରିବ ପର, ନାଗର ହେ । ୧୭ ।

ନଈପାଣି ଯାଏ ଥିବ
ବାଇକଲା ମୋତେ ରଙ୍ଗା ଗୃହକେଶ
କେତେ ଗୁହୁଁ ଥାଉ ଫେର, ସଜନୀ ଗୋ । ୧୮ ।

ଦୁଆତରେ ଭରା କାଳି
ଯୁଗେ ଯୁଗେ ପ୍ରୀତ ରହିବ ବୋଲି
କେତେ ଆଶା କରିଥିଲି, ନାଗର ହେ । ୧୯ ।

ବରଗଛ ଅଗି ମଲା
ଯେ ଦିନ ମୋ ଘରେ ପାଦ ପଡ଼ିଲା
ସବୁ ଦୁଃଖ ଗୋଡ଼ାଇଲା, ସଜନୀ ଗୋ । ୨୦ ।

ଗୃଉଳ କାଠିଲି ଝାଲି
ବେଳୁଁ ତୋ ଗୃଲରେ ଛପର ନାହିଁ
କେତେ କହୁ ଝାଇଁ ଝାଇଁ, ନାଗର ହେ । ୨୧ ।

ଯାଉଥିବ ଅସୁଥିବ
ଯେଉଁଦିନ ଧନ ଧରାପଡ଼ିବ
ଦାଣ୍ଡେ ହଠହଠା ହେବ, ନାଗର ହେ । ୨୨ ।

( ବଣେଇ )

## ଢୋଲ ଗୀତ (୯)

ଅମ୍ବାରେ ଗୁଲିଲ୍ଲ ଢୋଲ
କାନୁ ଛୁଡ଼ଗଲା ଲବଙ୍ଗ ନୋଲ
ତୋହ କଥା ଭଲ ଭଲ, ନାଗର ହେ । ୧ ।
ନାଅଁ ଖୁଣ୍ଟା ଦାଉ ଦାଉ
ତୋ ଲଗି ପଛକେ ଜୀବନ ଯାଉ
କଥା ଯୁଗେ ଯୁଗେ ଥାଉ, ସଜନୀ ଗୋ । ୨ ।
ଅମୃଲ୍ ମାଟିଆ ପେଟ
ପାଣିଘାଟେ ନାଷ୍ଟେ ହୋଇବ ଭେଟ
ଆସିବ ନ କର୍ ମଠ, ନାଗର୍ ହେ । ୩ ।
ବରଗଛ ଚଉରାଇ
ତୋହପାଇଁ ବାଲା ଆସିବ ଧାଇଁ
ବିଲମ୍ବ କରବ ନାହିଁ, ସଜନୀ ଗୋ । ୪ ।
ବଡ଼ମାଛ ବଡ଼ କାତ
ତୁମ୍ଭ ପାଇଁ ମୋର ଚଞ୍ଚଳ ମତ
ଆସି ହେବ ନଶା ରାତ, ନାଗର ହେ । ୫ ।
କଉମାଛ କବକାବ
ଅଣ୍ଟା କଞ୍ଚିରକୁ ନଜର ଦେବ
କବାଟ ଫିଟାଇ ଦେବ, ସଜନୀ ଗୋ । ୬ ।
ଅହାରେ ଛପର ଗେଟ
କାହିଁପାଇଁ ଧନେ କରୁଚ ହଟ
ଆଉ ନ ପାଇବ ଭେଟ, ନାଗର ହେ । ୭ ।
ଦେଉଳ ଉପରେ ଇଟା
ଥିର ଥିର କର କବାଟ ପିଟା
ଖାଇବୁ ଅଟେସା ପିଠା, ସଜନୀ ଗୋ । ୮ ।
ଜଡ଼ିପତ୍ର ସଲ ସଲ
ବାସନା ଅତର ଫୁଲ୍ଲର ତେଲ
ଆଣିଛ କି ଚମ୍ପାଫୁଲ୍, ନାଗର ହେ । ୯ ।

ମଲ୍ଲିଫୁଲ୍ ଦନା ଦନା
ନଆଳା ଫୁଲର କେତେ ବାସନା
ପିନ୍ଧିଲେ ଜାଣିବୁ ସିନା, ସଜନୀ ଗୋ । ୧୦ ।

ବେଦ ଗୃରତଳ ରୁଖା
ଦନାଗୃର ଗଲେ ପାଇବ ଦେଖା
ମନ ନ ଭୁଲିବ ସଖା, ନାଗର ହେ । ୧୧ ।

କଅଁଳା ବାଛୁରି କାନ
ବଇଁଶୀ ବାଜିଲେ ଡେରିବୁ କାନ
ମଷ୍ଟେ ଯିବୁ ମଇଦାନ, ସଜନୀ ଗୋ । ୧୨ ।

ଛତା କୁରୁତା ପଇତା
ଛତାଧରା ଦାବୁ ଦଣ୍ଡେ ରହିଥା
ଛତାରେ ଦେବ ବାରତା, ନାଗର ହେ । ୧୩ ।

ନୂଆ କରେଇର ଭାତ
ଧରିଲା ଚୁଙ୍ଗୁଡ଼ି ମାଇଲା ନାତ
ତୁମ୍ଭ କଥା ନାହିଁ ସତ, ସଜନୀ ଗୋ । ୧୪ ।

କଣ୍ଠକର ଶିଳ୍‌କାଡ
କୋଳରେ ବସାଇ ପାନ ଖୁଆନ୍ତ
ନୋହିଲୁ ଅମର ଜାତ, ନାଗର ହେ । ୧୫ ।

ବାଡ଼ ବାଇଗଣା ଗବ
ଯାଉ ଜାତକୁଳ ରହୁ ଗୌରବ
ଯୁଗେ ଯୁଗେ କଥା ଥିବ, ସଜନୀ ଗୋ । ୧୬ ।

ମାନ କଲେ ପାନ ଦେବ
ତୁମ୍ଭେ ମାନ କଲେ କାହାର ହେବ
ନିରନ୍ତର ଝୁରୁଥିବ, ନାଗର ହେ । ୧୭ ।

ଖେଡ଼ଆର ଦୁଇ କାନ
ଖାଇଲା ଖେଡ଼ଆ ସାରିଆ ଧାନ
ଛୋଟାରେ ନାହିଁ ମୋ ମନ, ସଜନୀ ଗୋ । ୧୮ ।

ଖାଲପଖ ଖରଖାର
ଢକୁଲ ମାରୁଛି ନବଘନର
ଦେଖି ନାହିଁ ତୋର୍ ଘର, ନାଚରେ ହେ । ୧୯ ।

କାଳିଆ କୁକୁର ହଲେ
ଯାହା କହିଥିଲ ବଉଳମୂଳେ
ଆସି ହେବ ସଞ୍ଜ ବେଳେ, ସଜନୀ ଗୋ । ୨୦ ।

( ସମ୍ବଲପୁର )

## ଝୁମୁର ଗୀତ

ଅହେ ପ୍ରଭୁ ଭଗବାନ କି ଦେଲେ ଜୀବନ ଦାନ
କଁରୂପେ ବନାଇଲେନ କାୟା
ଧନ୍ୟ ପ୍ରଭୁ ଜଗତର ମାୟା
ପିଣ୍ଡ ଗଢ଼ିଲେନ ବସି— ବ୍ରହ୍ମା ବିଷ୍ଣୁ ସବାଏ ମିଶି
ଅଜି ନ ଥାଏ ବନାଇଲେନ କାୟା
ଧନ୍ୟ ପ୍ରଭୁ ଜଗତର ମାୟା । ୧ ।

କେଉଁ ତପସ୍ୟା କରଲା, ଦଶ ବଦନ ପାଇଲା
ରାଜ୍ୟ ହେଲା ବିଶବା ବଦନ
ରଥ ଉଡ଼ାଏ ରାବଣ ତିନ ଭୁବନ ।
ବ୍ରହ୍ମା ବରରେ ରାବଣ, ପାଇଅଛି ଦଶ ବଦନ
ରଥ ଉଡ଼ାଏ ରାବଣ ତିନ ଭୁବନ ।
ଯମ ଅଗ୍ନି ସହିତେଣି ଯେତେ ସ୍ୱର୍ଗର ଦେବଗଣ
ସେବା କଲା ଅସୁର ରାଜନ
ରଥ ଉଡ଼ାଏ ରାବଣ ତିନ ଭୁବନ
ସ୍ୱର୍ଗ ମର୍ତ୍ତ୍ୟ ତିନପୁର, ଯୁଦ୍ଧେ ଜିତଲା ଅସୁର
ଦେବଗଣ ଭୟପାଇ କରଲେ ଦର୍ଶନ
ରଥ ଉଡ଼ାଏ ରାବଣ ତିନ ଭୁବନ । ୨ ।

ତୁହିଁ ଚନ୍ଦ୍ର ରଜନୀ ହସି କେଉଁ ସଜନୀ
ବିଚରଣ କରେ ଉପବନରେ
କି ଭାବ ଖେଳୁଛି ମନରେ
ପୁଣି ତୁହେଁ ଗଗନେ ହେବେ କସେ ଗୋପନେ
ଗୋଟି ଗୋଟି କର ତାରା ଗଣେ ରେ
କି ଭାବ ଖେଳୁଛି ମନରେ
ଫୁଲ ବନକୁ ନିରେଖି ଚନ୍ଦ୍ରମାମୁଖୀ
ହଲାଇ ଧରୁଛି କାହିଁ ତରୁ ରେ
କି ଭାବ ଖେଳୁଛି ମନରେ ।
(ସମ୍ବଲପୁର)

## ( ସାତ ) . କେଳୁଣୀ ଦୋଳି ଗୀତ ( ବାରମାସୀ )

୧ କୋଇଲି ଲୋ ଆଦ୍ୟ ମଗୁଣିର ବାଣୀ
ଦଶରଥଙ୍କ ଘରେ ଭାଳେଣି
ରାଜ ପାଇଲେ ରାମ—ବନବାସ ଯିବେ
ଅଯୋଧ୍ୟାରୁ ଅଇଲି ଶୁଣି ଲୋ
କୋଇଲି, ଶୁଣ ଲୋ,
ରାମ ନାମ ପଦ କସ୍ତୁରୀ ଲେପନ
ହୃଦେ ଚିନ୍ତି ମନେ ଗୁଣ ଲୋ ।

୨ କୋଇଲି ଲୋ ପୁଷ ମାସର ଶୁଦ୍ଧ
ପ୍ରଜା ନୃପତି ଘରେ ଆନନ୍ଦ
ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ମୁଁ ବନ୍ଧାନ୍ତି
କାହିଁ ଗଲେ ରାମଚନ୍ଦ୍ର ଲୋ
କୋଇଲି, ଶୁଣ ଲୋ,
ରାମ ନାମ ପଦ କସ୍ତୁରୀ ଲେପନ
ହୃଦେ ଚିନ୍ତି ମନେ ଗୁଣ ଲୋ ।

୩ କୋଇଲି ଲୋ ମାଘ ମାସର ଜାଡ଼
ଶୀତେ ଭାଙ୍ଗେ ମେରୁ ହାଡ଼
ସାବତ ଜନନୀ ବନେ ନବାସିଲେ
ତାଙ୍କଠାରୁ ନାହିଁ ବଡ଼ ଲୋ
କୋଇଲି, ଶୁଣ ଲୋ,
ରାମ ନାମ ପଦ କସ୍ତୁରୀ ଲେପନ
ହୃଦେ ଶାନ୍ତି ମନେ ଗୁଣ ଲୋ ।

୪ କୋଇଲି ଲୋ ଫଗୁଣେ ଦୋଳଗୋବିନ୍ଦ
ଫଗୁ ଖେଳରେ ପରମାନନ୍ଦ
ଫଗୁ ଗୁଣ୍ଡା ମାରି ଗୃହେର ବୁଲନ୍ତି
ଫଗୁଆ ଦୋଳଗୋବିନ୍ଦ ଲୋ
କୋଇଲି, ଶୁଣ ଲୋ,
ରାମ ନାମ ପଦ କସ୍ତୁରୀ ଲେପନ
ହୃଦେ ଶାନ୍ତି ମନେ ଗୁଣ ଲୋ ।

୫ କୋଇଲି ଲୋ ଚଇତେ ଋତୁ ବସନ୍ତ
ଅମ୍ବ ପଣସ ପାଚେ ବହୁତ
ଯୋଉ ତିନି ଜଣ ବନବାସ ଗଲେ
ସେ ତ କଲେ ଫଳ ମୂଳ ଗ୍ରାସ ଲୋ
କୋଇଲି, ଶୁଣ ଲୋ,
ରାମ ନାମ ପଦ କସ୍ତୁରୀ ଲେପନ
ହୃଦେ ଶାନ୍ତି ମନେ ଗୁଣ ଲୋ ।

୬ କୋଇଲି ଲୋ, ବଇଶାଖ ମାସ ଖରା
ଗଛପତର ଦିଅନ୍ତି ଝଡ଼ା
ଯୋଉ ତିନି ଜଣ ବନବାସ ଗଲେ
ଖୋଜିଲେ ବୃକ୍ଷ ଅଶରା ଲୋ,
କୋଇଲି, ଶୁଣ ଲୋ
ରାମ ନାମ ପଦ କସ୍ତୁରୀ ଲେପନ
ହୃଦେ ଶାନ୍ତି ମନେ ଗୁଣ ଲୋ ।

୭ କୋଇଲି ଲୋ, ଜ୍ୟେଷ୍ଠ ମାସର ଦିନ
ନଈ ପୋଖରୀ ହୁଅନ୍ତି ଖୀନ
ଯୋଡ଼ି ତିନି ଜଣ ବନବାସ ଗଲେ
କାହିଁ ବଞ୍ଚିଥିବେ ଦିନ ଲୋ
କୋଇଲି, ଶୁଣ ଲୋ
ରାମନାମ ପଦ କସ୍ତୁରୀ ଲେପନ
ହୃଦେ ଶନ୍ତ୍ର ମନେ ଗୁଣ ଲୋ ।

୮ କୋଇଲି ଲୋ, ଅଷାଢ଼େ ବଳୀବାମନ
ରଥେ ବସି ତିନି ଜଣ
ଆଗେ ବଳଭଦ୍ର ମଧ୍ୟରେ ସୁଭଦ୍ରା
ତହିଁ ପଛେ ଦାରୁବ୍ରହ୍ମ ଲୋ
କୋଇଲି, ଶୁଣ ଲୋ
ରାମନାମ ପଦ କସ୍ତୁରୀ ଲେପନ
ହୃଦେ ଶନ୍ତ୍ର ମନେ ଗୁଣ ଲୋ ।

୯ କୋଇଲି ଲୋ, ଶ୍ରାବଣ ମାସର ଜଳ
ନଦୀ ପୋଖରୀ ହୁଅନ୍ତି ବଳ
ଯୋଡ଼ି ତିନି ଜଣ ବନବାସ ଗଲେ
ସେ ତ ରହିଲେ ତେନ୍ତୁଳି ମୂଳ ଲୋ
କୋଇଲି, ଶୁଣ ଲୋ
ରାମନାମ ପଦ କସ୍ତୁରୀ ଲେପନ
ହୃଦେ ଶନ୍ତ୍ର ମନେ ଗୁଣ ଲୋ ।

୧୦ କୋଇଲି ଲୋ, ଭାଦ୍ରବ ମାସରେ କିଆ
ଦଶରଥର ବଥାଏ ହିଆ
ଯୋଡ଼ି ତିନି ଜଣ ବନବାସ ଗଲେ
ତାଙ୍କଠାରେ ନାହିଁ ଦୟା ଲୋ
କୋଇଲି, ଶୁଣ ଲୋ
ରାମନାମ ପଦ କସ୍ତୁରୀ ଲେପନ
ହୃଦେ ଶନ୍ତ୍ର ମନେ ଗୁଣ ଲୋ ।

୧୧ କୋଇଲି ଲୋ, ଅଶିଣେ କୁଆଁର ଜହ୍ନ
ଜୁଆ ଖେଳନ୍ତି ଲକ୍ଷ୍ମୀନାରାୟଣ
ଯୋଉ ତନ୍ନା ଜଣ ବନବାସ ଗଲେ
ତାଙ୍କ ହାତେ ନାହିଁ ଧନ ଲୋ
କୋଇଲି, ଶୁଣ ଲୋ
ରାମନାମ ପଦ କସ୍ତୁରୀ ଲେପନ
ହୃଦେ ଚିନ୍ତ ମନେ ଗୁଣ ଲୋ ।

୧୨ କୋଇଲି ଲୋ, କାର୍ତ୍ତିକ ମାସରେ ଶେଷ
ନୀଳ ସମୁଦ୍ର କୂଳରେ ବାସ
ରାମ କୋଳେ ଥାଇ ସୀତା ପଚାରନ୍ତି
ପ୍ରଭୁ ପୂରିଲା କି ବାରମାସ ଲୋ
କୋଇଲି, ଶୁଣ ଲୋ
ରାମନାମ ପଦ କସ୍ତୁରୀ ଲେପନ
ହୃଦେ ଚିନ୍ତ ମନେ ଗୁଣ ଲୋ ।

( ମୂଳ ରଚନା—**ଗଞ୍ଜାମ** )

## ୨—ଗୋଠ ବାହୁଡ଼ା ମହାପ୍ରଭୁ ସେ

**(ଏକ)** କଅଁଳା ବାଛୁରୀ କାନ
ବାପା ଦେଇଥିଲେ କନିଅାଁ ଦାନ ଲୋ
ହାଣ୍ଡିଶାଳେ ଗଲେ ଦନ, ମହାପ୍ରଭୁ ସେ । ୧ ।
ନଡ଼ିଆ ଗୋଟମା କଷି
ଦୂର ରାଇଜରେ ଦେଇଚ ନନା ହେ
ଦନ ଗଣୁଥିବ ବସି, ମହାପ୍ରଭୁ ସେ । ୨ ।
ଦୋଷଡ଼ା କାନରେ ଲୁଣ
ଏଇ ନଈ ଖଣ୍ଡି ଡେଇଁ ପଡ଼ିଲେ ହେ
ବାପା, କହିବ ସବୁରି ଗୁଣ, ମହାପ୍ରଭୁ ସେ । ୩ ।

ନୂଆ ପୋଖରୀର ପାଣି
ବଡ଼ଘର ବୋଲି ଦେଇଚ ବାପା ହେ
କେୱଣ୍ଡି ଦଅନ୍ତି ଗଣି, ମହାପ୍ରଭୁ ସେ । ୪ ।
ନୂଆ ପୋଖରୀର ପଙ୍କ
ବଡ଼ଘର ବୋଲି ଦେଇଚୁ ବୋଉ ଲୋ
ପେଜରେ କାଠନ୍ତି ଅଙ୍କ, ମହାପ୍ରଭୁ ସେ । ୫ ।

ଗୁଅଁୁଣି ଡେର ଥୋଇଲି
ବଡ଼ଘର ବୋଲି ଦେଇରୁ ବୋଉ ଲୋ
ସଲଖି ଠିଆ ନୋହିଲି, ମହାପ୍ରଭୁ ସେ । ୬ ।
ବାଡ଼ରେ ଘିଇକୁଅଁର
ହାତଗୋଡ଼ ଧରି କହୁଛି ବୋଉ ଲୋ
ଭଲ କରିଚୁ, ନ ଦେଇ ଅଗ ଦୁଆରି, ମହାପ୍ରଭୁ ସେ । ୭ ।
କଳାମଞ୍ଜି କଲି ପିଠା
ଏଇ ବାଟେ ଗଲେ ସାନ ଖୁଡ଼ୁତା ଲୋ
ଦଶିଗଲା କମ ଛତା, ମହାପ୍ରଭୁ ସେ । ୮ ।
କଳାମଞ୍ଜି କଲି ଗଇ
ଏଇ ବାଟେ ଗଲା ମୋହର ଭାଇ ଲୋ
ଛତା ଅଢୁଆଳ ଦେଇ, ମହାପ୍ରଭୁ ସେ । ୯ ।

ଲଇଁ ତୋଳୁଥିଲି ଜହ୍ନି
ଏଇ ବାଟେ ଗଲା ମୋହର ନାମ୍ମୀ ଲୋ
ଦଶିଗଲା କମ କାନି, ମହାପ୍ରଭୁ ସେ । ୧୦ ।
ଶିଳତଳ ପାଣି, କୋକିଳର ବାଣୀ
ନନାଙ୍କୁ ମାଗୁଣି ଏତେ
ଚୂଡ଼ି ମାଗୁନାହିଁ, ହାର ମାଗୁନାହିଁ ହେ
ନନା, ତୁଣ୍ଡେ ପଗୁରିବ ମୋତେ, ମହାପ୍ରଭୁ ସେ । ୧୧ ।
ଘରର ଉପରେ ଘର
ଘରେ ଥିଲା ଯାକ ଘରର ଝିଅ ଲୋ
ବୋଉ, ଏରଣ୍ଡି ଡେଇଁଲେ ପର, ମହାପ୍ରଭୁ ସେ । ୧୨ ।

ବସେଇଲ୍ ବସା ଦହି
ମୁଁ ତ ନ ବୋଲେ ମୋହର ଭାଇ ଲୋ
ପ୍ରଭୁ ଲୋକନାଥଙ୍କର ସେହି, ମହାପ୍ରଭୁ ସେ । ୧୩ ।

ବାଡ଼ରେ ଡେଙ୍ଗା ବରୁଣ
ଝିଅ ବାଙ୍କ ନନା ଟଙ୍କା ଖାଇଲ୍ ହେ
ସେଥିରେ କେଉଁ କାରଣ, ମହାପ୍ରଭୁ ସେ । ୧୪ ।

କୁଅତଡ଼ା ଠାଇ ଦୂବ
ବାପା ବୋଉ ହେଇ ବଗୁର ହେଲେ ଲୋ
ଝିଅକୁ ଦୂରେ ଦେଲେ ପାପ ଯିବ, ମହାପ୍ରଭୁ ସେ । ୧୫ ।

ଗୁହାଳ କଣରେ ମୂଷା
ବାପା ଦେଇଥିଲେ ପୁରୁଣା କଂସା ଲୋ
ଦାଣ୍ଡେ କଲେ ଲୋକହସା, ମହାପ୍ରଭୁ ସେ । ୧୬ ।

ନଣ୍ଡକ ମାଟିଆ ଗଡ଼ୁ
କାହ୍ନୁପୁର ଲୁଗା ପିତଳ ଖଡ଼ୁ ଲୋ
ରଜା ଦରବାରେ ପଡ଼ୁ, ମହାପ୍ରଭୁ ସେ । ୧୭ ।

ଡିଙ୍କିରେ କୁଟଇ ବାଲ
ଡୋଗ୍ରଣି କଂସାକେ ଲୁହ କଂସାଏ ଲୋ
ବୋଉ, ଅଢ଼େଇ ପହର ବେଲ, ମହାପ୍ରଭୁ ସେ । ୧୮ ।

ବାଡ଼ଅଡ଼େ ପରବତ
ଗୋଟିଏ ଝିଅକୁ ଏଡ଼େ ବର୍ଜିତ ହେ
ନନା, ଅଉ ଥିଲେ କି କରନ୍ତ, ମହାପ୍ରଭୁ ସେ । ୧୯ ।

ଅରୁଆ ଗୁଲ କୁଣ୍ଡା
ଜମୁନା ଗୁଲ ମଣ୍ଡା
ଗାଲ ନ ଦଅନ୍ତ ମାଡ଼ ନ ମାରନ୍ତ ଲୋ
ବୋଉ, ବଚନେ କରନ୍ତି ଥଣ୍ଡା, ମହାପ୍ରଭୁ ସେ । ୨୦ ।

( ନୂଆଗଡ଼ )

(ଦୁଇ) ଗାଈ ଗଲେ ନାଳେ ନାଳେ
ଗାଈଙ୍କ ପଛକୁ ବାଛୁରୀ ହଲେ ଲୋ
ଅଣ୍ଟାକୁ ଢାଗୁଡ଼ ମାଳେ, ମହାପ୍ରଭୁ ସେ । ୧ ।

ମେଘ କଲା ଘଡ଼ଘଡ଼
ଜଗନ୍ନାଥେ ଗଲେ ଗୁଣ୍ଡିଚ୍ଚ ବାଡ଼ ଲୋ
ଷୋଳଚକ ଦେଲା ରଡ଼, ମହାପ୍ରଭୁ ସେ । ୨ ।

ଗାଈ ହଗି ଗଲା ଲେଣ୍ଡେ
ନନାଙ୍କୁ ଦେଖିଲି ଗୁଣ୍ଡିଚ୍ଚ ଦାଣ୍ଡେ ଲୋ
ବୁକୁ ହୋଇଗଲା କୁଣ୍ଡେ, ମହାପ୍ରଭୁ ସେ । ୩ ।

ଝିଙ୍କିଶାଳ ଘର ବଡା
ମୋହର ଯେମନ୍ତ ବାପା ଥାଆନ୍ତେ ଲୋ
ଅଠୁଆର ଭିର ଯାନ୍ତ୍ରା, ମହାପ୍ରଭୁ ସେ । ୪ ।

ହାଣ୍ଡିଶାଳ ଘର ବଡା
ମୋହର ଯେମନ୍ତ ମାଆ ଥାଆନ୍ତା ଲୋ
ହୁଡା କାଟି ଶଙ୍ଖୋଳନ୍ତା, ମହାପ୍ରଭୁ ସେ । ୫ ।

ପାଣିଗଲା ଭଉଁରୀରେ
ସତେ କି ବୋଉ ମୁଁ ମନେ ପଡ଼ିବି ଲୋ
ମୁଣ୍ଡବନ୍ଧା ଚଉଁରିରେ, ମହାପ୍ରଭୁ ସେ । ୬ ।

ଅମୂଲ ମାଠିଆ ଘମ
ଦୂର ରାଇଜରେ ଦେଇଚୁ ବୋଉ ଲୋ
ଗୋଡ଼ ତ ପାଉଳ ଚମ, ମହାପ୍ରଭୁ ସେ । ୭ ।

ବାଲିବନ୍ଧ ଭୁଷୁଡ଼ିଲା
ବାଟରେ ଦେଖିଲେ ବୋଉକୁ କହିବ ହେ
ବୋଉ, ଝିଅ ଦେଇ ପାସୋରିଲା, ମହାପ୍ରଭୁ ସେ । ୮ ।

କପା ଖାଇ ରାଉ ରାଉ
ମଥା ମଥାମଣି ନ ଦେଲୁ ବୋଉ ଲୋ
ଲୋକେ କଲେ କାଉ କାଉ, ମହାପ୍ରଭୁ ସେ । ୯ ।

ବାଡ଼ରେ କଳା ମନ୍ଦାର
ଖିତଖିତ ବୋଉ ପଠେଇ ଦେଲୁ ଲୋ
କଉଠି ବରଷା ମେଘ ଅନ୍ଧାର, ମହାପ୍ରଭୁ ସେ । ୧୦ ।

କଳା ହାଣ୍ଡିଆର ଢାଳ
ପହଲି ପାଳ ବୋଉ ପଠେଇ ଦେଲୁ ଲୋ
ପାଉରେ ନାହିଁ କଜଳ, ମହାପ୍ରଭୁ ସେ । ୧୧ ।

କଦଳୀ ଗଛର ଓଧି
ପିଲା କର ବୋଉ ପଠେଇ ଦେଲୁ ଲୋ
କଏ ଶିଖାଇବ ବୁଦ୍ଧି, ମହାପ୍ରଭୁ ସେ । ୧୨ ।

ରଙ୍ଗ ଖଡ଼ା ଗୋଚ୍ଛ ଗୋଚ୍ଛ
ମୋ ବୋହୁର ବା କସ ପାଉଚ୍ଛ ଲୋ
ରଙ୍ଗ ଲୁଗା ଦେବ ବାଚ୍ଛ, ମହାପ୍ରଭୁ ସେ । ୧୩ ।

କୁଆଁର ପୁନିଅଁ ଜହ୍ନ
ସମସ୍ତେ ପିନ୍ଧିଲେ ନୂଆ ଲୁଗାମାନ ଲୋ
ବୋଉ, ମୋତେ କଲୁ ହୀନମାନ, ମହାପ୍ରଭୁ ସେ । ୧୪ ।

ଭିଡ଼ର ଉପରେ ଭିଡ଼
ବାପା ଦେଇଥିଲେ ଡଉଁର ଶାଢ଼ୀ ଲୋ
ଲୋକେ ପକାଇଲେ ଝାଡ଼ି, ମହାପ୍ରଭୁ ସେ । ୧୫ ।

ଉଷୁନା ଧାନ ଗଉଣୀ
ଚନ୍ଦ୍ରମା ପାଖରେ ନୀଳ ବଦଣୀ ଲୋ
ଧଣନ୍ତି ଭାଇ ଭଉଣୀ, ମହାପ୍ରଭୁ ସେ । ୧୬ ।

( ବଡ଼ାମ୍ବା )

**(ତିନି)** ଦେଉଳ ଉପରେ କୁଶ
କୁଶପାଣି ଘେନି ବାପା ଦେଉଳେ ପଣ ହେ
ବଡ଼ ଲୋକ ପର ଦଣ, ମହାପ୍ରଭୁ ସେ । ୧ ।

ଦେଉଳ ଉପରେ ଇଟା
ମୋ ବାପାଙ୍କ ଅଣ୍ଟାକୁ ସୁନ୍ଦର ଧଡଶେ ଲୋ
ବଉଦ ଗଇଜ ଫେଟା, ମହାପ୍ରଭୁ ସେ । ୨ ।
କୁକୁଡ଼ା ନ ଖାଏ ଖଇ
ମୋ ନନା ନ ଖାନ୍ତି ସରୁ ଚକୁଳି ଲୋ
କାହୁଁ ଅଣି ଦେବ ଦହି, ମହାପ୍ରଭୁ ସେ । ୩ ।
ନନାଙ୍କ ବାଡ଼ରେ ପଶିଲା ମିରଗ
ଭାଙ୍ଗିଲା କମଳା ଡାଳ
କହି ପଠେଇଲେ ଦେଇ ପଠେଇବୁ ଲୋ
ବୋଉ, ବେକ ସୋଟେଣିଆ ମାଳ, ମହାପ୍ରଭୁ ସେ । ୪ ।
କୁକୁଡ଼ା ରଡ଼ି କରଛି
ସତେ କି ମୋ ନନା ଅଣି ଅସୁଚ ହେ
ଶଲକା ବନ୍ଦ କରଛି, ମହାପ୍ରଭୁ ସେ । ୫ ।
କୁକୁଡ଼ା ନ ଖାଏ ଖୁଦ
ମୋ ନନା ନ ଖାନ୍ତି ସରୁ ଚକୁଳି ଲୋ
କାହୁଁ ଅଣି ଦେବ ଦୁଧ, ମହାପ୍ରଭୁ ସେ । ୬ ।
ବାଡ଼ଖଣ୍ଡି ଡେର ଦେଲି
ସତେ କି ନନା ମୁଁ ଶଡା ମାଗୁଥିଲି ହେ
ମନ ଉପ ଭଡ଼ୁଥିଲି, ମହାପ୍ରଭୁ ସେ । ୭ ।
ଗୁଲରେ ଖୋସିଲି ଗିନା
ଏଡ଼େ ହିନିମାନ ନ କର ନନା ହେ
ଝିଅ ନଇବଢ଼ି ପାଣି ପିନା, ମହାପ୍ରଭୁ ସେ । ୮ ।
ଗଡ଼ ପଡ଼ ଗଲା ବେଲି
ଜଙ୍ଘପିଣ୍ଡା ଦେଖି ଶରଧା କଲି ହେ
ବାପା, ପେଜପିଆ ଘରେ ଦେଲି, ମହାପ୍ରଭୁ ସେ । ୯ ।
ଗୁଳେ ଗୁଳେ ଗଲା ଗୁଳିଆ ମୂଷା ଲୋ
କେଉଁଠାରେ କଲା ବସା
ବାପାଙ୍କ କାନ୍ଧରେ ନାଲି ଗାମୁଛା ଲୋ
ଠାଏ ଠାଏ ପରଶଂସା, ମହାପ୍ରଭୁ ସେ । ୧୦ ।

କୋକଲି ଶୁଙ୍ଖୁଆ କାଞ୍ଜି
ଯେତେବେଳେ ନନା ବାଟ ଗୁଲୁଥିବ ହେ
ମୁହଁକୁ ପିଠେଇ ଝାଞ୍ଜି, ମହାପ୍ରଭୁ ସେ । ୧୧ ।

ବଡ଼ ଶୁଙ୍ଖୁଆର ଅଖି
ଯେତେବେଳେ ନନା ବାଟ ଗୁଲୁଥିବ ହେ
ମାଆ ବମଲେଇ ସାକ୍ଷୀ, ମହାପ୍ରଭୁ ସେ । ୧୨ ।

କୁଣ୍ଡେଇ ମୁଣ୍ଡରେ କନା
କନା ପାଞ୍ଚହାତ ନ ଦେଲ ନନା ହେ
ଦାଣ୍ଡକୁ ସୁନ୍ଦର ସିନା, ମହାପ୍ରଭୁ ସେ । ୧୩ ।
ହାଣ୍ଡିରେ ଲେଖିଲି ଚିତା
ପାଳଧୁଆ କଢ଼ିକଲି ରାଇତା
ହୋଇଗଲା ଝିଷିପିତା, ମହାପ୍ରଭୁ ସେ । ୧୪ ।

ବାଡ଼ରେ ଲେଖିଲି ହାତୀ
ମନେ ପଡ଼ିଗଲେ ଚମ୍ପା କେତକୀ
କରତ ଉଠିଲା ଛାତି, ମହାପ୍ରଭୁ ସେ । ୧୫ ।

ଶଗଡ଼ ଯାଉଛି ଢିଡ଼ ଢିଡ଼କା ଲୋ
ଦାଅଁଙ୍କ ପୋଖରୀ ତେଇଁ
ବୋଉ ତୁ ମୋ ଲାଗି କାନ୍ଦବୁ ନାଇଁ ଲୋ
ନନା ତ ଦେଲେ ଭସାଇ, ମହାପ୍ରଭୁ ସେ । ୧୬ ।

ମଦରଙ୍ଗା ଶାଗ ରାଇତା ନନା ଭୁଞ୍ଜନ୍ତି ନାହିଁ
ଜଳକ ମାଇଲି ଗୋଇଠା
ଜଳ ଫିଟିଲା ନାହିଁ, ମହାପ୍ରଭୁ ସେ । ୧୭ ।

( ଗଞ୍ଜାମ )

**(ଗୂର)** କୋଇଲି ବୋବାଏ ଡାଳେ
ଘରକୁ ଗଲେ ମୋ **ମାଆ** ମାରବ ଲୋ
ବୁଲୁଥିବ ଛୋଟାମାନେ, ମହାପ୍ରଭୁ ସେ । ୧ ।

ଦାଣ୍ଡରେ ଧାନ ବେଙ୍ଗଲା
ବାପା ବୋଉଙ୍କର ଏକଇ ବଳା ଲୋ
ରଖିବେ ମାଅ ବମ୍ବଲା, ମହାପ୍ରଭୁ ସେ । ୨ ।
ସବୁ ଭଅ ଗଲ୍ କାଣ୍ଡି
ମୋର୍ ବୋଉର ଗୋଟିକ ବଳା ଲୋ
ରଖିବେ କୁଛମଚଣ୍ଡୀ, ମହାପ୍ରଭୁ ସେ । ୩ ।
ବାଅ କଲେ ବରଷିବ
ଅଦନେ ଭାଇନା ପରବାସିଅ ରେ
କଏ ବ୍ରନ୍ଧ ପରଷିବ, ମହାପ୍ରଭୁ ସେ । ୪ ।
ବାଙ୍କକଲା ଡାଉଁ ଡାଉଁ
ଲଟାକ ଯାକର ଫୁଲ ଚହଟେ ଲୋ
ମୋ ଭାଇନା ବେହେ ହୋଇ ଯାଉ ଯାଉ, ମହାପ୍ରଭୁ ସେ । ୫ ।
ଗୁଡଲ ମାଣଲ ଭାତ ଗୁଣ୍ଡାଏ ଲୋ
ଧୋବଣୀ ପଛକେ ନେଉ
ଭାଇ ଗନ୍ତାଯୋଡ଼ କାଦୁଅ ହେଲା ଲୋ
ଖଲ ଧୋବ କରଦେଉ, ମହାପ୍ରଭୁ ସେ । ୬ ।
ବାଡ଼ିରେ ଡେଙ୍ଗା ସଜନା
ଦଦେଇଙ୍କ ପୁଅ ବଡ଼ ଭାଇନା ଲୋ
ଥରେ ଫଖୋଳବେ ସିନା, ମହାପ୍ରଭୁ ସେ । ୭ ।
ସଜନା ଶାଗ କେରକ
ଦୁଆରେ ବସିଛୁ କଲାମାଣିକ ଲୋ
ଉଡୁଛୁ ବାଲ କେରକ, ମହାପ୍ରଭୁ ସେ । ୮ ।
ଶାଗ ଖରଡ଼ିଲ୍ ଡାଙ୍ଗେ
ଶାଶୁ ଗାଳଦେଲେ, ନଣନ୍ଦ ବୋଇଲେ ଲୋ
କାଲଯିବ ଭାଇ ସଙ୍ଗେ, ମହାପ୍ରଭୁ ସେ । ୯ ।
ନଈ ଆରପାଖେ କେ' କେ' ଯାଉଚ ଲୋ
ମୋ ଠାରୁ ଖବର ନିଅ
ଗୁଆ ପେଡ଼ ପେଡ଼, ପାନ ବିଡ଼ ବିଡ଼
ବାପାଙ୍କ ପାଖରେ ଦିଅ, ମହାପ୍ରଭୁ ସେ । ୧୦ ।

ବାପା ବସିଥିଲେ ଉଞ୍ଚ ପିଣ୍ଡାରେ ଲୋ
ଭଣ୍ଡାର ବସିଛୁ ତଳେ
ପାନ ଖାଇ ପିଙ୍କ ପିଙ୍କାର ଦେଲେ ଲୋ
ପଡ଼ିଲା ଭଣ୍ଡାର ଶିରେ, ମହାପ୍ରଭୁ ସେ । ୧୧ ।

କାଙ୍କଡ଼ ଧଇଲା କଷି
ମାଙ୍କଡ଼ ଯାଉଛୁ ଯାତରା ଦେଖି ଲୋ
ରଙ୍ଗ ପାଲିଙ୍କିରେ ବସି, ମହାପ୍ରଭୁ ସେ । ୧୨ ।

ମେଘ ଉଠେଇଲା କଳାହାଣ୍ଡିଆ ଲୋ
ଚୁଲିମୁଣ୍ଡ ଠେଇ ପାଣି
ବୋହୂ ବାପଘର ବାଘ ଖାଇଜ ଲୋ
କେଉଁ ପୁଅ ପିବ ଆଣି, ମହାପ୍ରଭୁ ସେ । ୧୩ ।

ବୋହୂ ତ ଅଇଲା ମଙ୍ଗଳବାର ଲୋ
ପୁଅକୁ କଲାଣି ଜର
ବୋହୂ ଭାଇଥୋର ଫେରାଇ ଦିଅ ଲୋ
ବୋହୂ ଫେରୁ ବାପ ଘର, ମହାପ୍ରଭୁ ସେ । ୧୪ ।

ଢିଙ୍କି ପେଠତଳେ ଗାତ
ଧରଥିଲି ସୁନାମୁଦିଅ ହାତ ଲୋ
ଠେକା ପାଣି ଠେକାଭାତ, ମହାପ୍ରଭୁ ସେ । ୧୫ ।

( ବାଣପୁର, ପୁରୀ )

## (ପାଞ୍ଚ)

ଭେଗଡ଼ାରେ ଦେଲି ଡାଉ
**ଅଉ** ଗୃହଦନ ରହନ୍ତୁ ବୋଉ ଲୋ
**ଭା**ଉଜ ବୋଇଲା ଯାଉ, ମହାପ୍ରଭୁ ସେ । ୧ ।

**ଅଖି** ବାଡ଼ିଅଡ଼େ ଜହ୍ନ
ଭାଇଙ୍କ ମଥାରେ ଠୋପିଚନ୍ଦନ ଲୋ
ପୋଛୁ ଅଣିବାକୁ ମନ, ମହାପ୍ରଭୁ ସେ । ୨ ।

ମାହାର ପୋଖରୀ ଡେଣ୍ଡି
ଭାଇ ମୁହଁ ମୋର ଶୁଖି ଯାଇଛି ଲୋ
ବାଟେ ଚୁଡ଼ା ପାଣି ଖାଇ, ମହାପ୍ରଭୁ ସେ । ୩ ।
କାନ୍ଥି ତଳେ ତଳେ ଖରା
କାଆ କାଆ ବୋଲି କୁଆ ବୋବାଉଛି ଲୋ
ମୋ ଭାଇନା ଆସିବେ ପରା, ମହାପ୍ରଭୁ ସେ । ୪ ।
କଣ୍ଢେଇ କୋଳର କଣ୍ଟା
ଧନେ ଖାଇ ନାହିଁ ବୋଉ ଅଇଣ୍ଠା ଲୋ
ଭାଳି ପଡ଼ୁଛି ମୋ ଅଣ୍ଟା, ମହାପ୍ରଭୁ ସେ । ୫ ।
ଢେଙ୍କାଡ଼ାରେ ଦେଲି ଝୋଟି
ଶାଶୁଏ ବୋଇଲେ ନମୁଲି ଖୁଣ୍ଟି ଲୋ
ବୋଉ, ଦଣ ଶିର ଯାଏ ଫାଟି, ମହାପ୍ରଭୁ ସେ । ୬ ।
ଚୁଲରେ ଖୋସଇ ଦୂବ
ଦୂବ ଦେଖି ଶୁଭ ମନାସୁ ଥିବୁ ଲୋ ବୋଉ
ମୋ କାଚ ବଜର ହେବ, ମହାପ୍ରଭୁ ସେ । ୭ ।
ଚାଉଳ ଧୋଇ ଥୋଇଲି
ମୁଠି ମୁଠି କରି ବୋହୁଚ ନେଲେ ଲୋ
ବୋଉ, ମୁଁ ଏଘରେ କଣ୍ଣ ନୋହିଲି, ମହାପ୍ରଭୁ ସେ । ୮ ।
ଧାଆଁକ ଅଡ଼ ଜୁଲୁକ
ଚଙ୍ଗୁଡ଼ି ପୁଞ୍ଜାକ ବରାଡ଼ ଗୋଇଲା ଲୋ
ଶାଶୁ ବୋଇଲେ ଠିଆ ତୋଡ଼କ, ମହାପ୍ରଭୁ ସେ । ୯ ।
ଆଣ୍ଠିକା ଯୋଡ଼ିକ ଧୋଇ ଥୋଇଲି ଲୋ
ନଗିଡ଼ ପଡ଼ିଲା କଳା
ଲୋକେ ପଚାରିଲେ କି ବୋଲି କହିବି
ମୁଁ ତ ମକଦମ ଗଳାମାଳା, ମହାପ୍ରଭୁ ସେ । ୧୦ ।
ନାଳ ତଳେ ତଳେ କେ' କେ ଯାଉଚ ଲୋ
ଗହମ ବୁଣା ହୋଇଚ
ଭାଇନା ମୁଣ୍ଡକୁ ଖରା କାହିଁଚ ଲୋ
ବାରକ ଛତା ଟେକିଛି, ମହାପ୍ରଭୁ ସେ । ୧୧ ।

କାଟି ପକେଇଲ୍ ଠଙ୍ଗା
ଉଞ୍ଚ ପରବତ ନଅଳା ଗଙ୍ଗା ରେ
ଭାଇନା, ଘୁଷଇ ତଳେ ତଳେ ଯିବା, ମହାପ୍ରଭୁ ସେ । ୧୨ ।

ଶୀଲତଲ ପାଣି କୋକିଲର ବାଣୀ
ନନାଙ୍କୁ ମାଗୁଣି ଏତେ
ତାଡ଼ ମାଗୁନାହିଁ ଖଦ ମାଗୁନାହିଁ
ନନା ହେ, ତୁଣ୍ଡେ ପଗୁରବ ମୋତେ ।
ମହାପ୍ରଭୁ ସେ । ୧୩ ।

ଶୀଲତଲ ପାଣି କୋକିଲର ବାଣୀ
ବୋଉକୁ ମାଗୁଣି ଏତେ
ହାର ମାଗୁନାହିଁ ଚୁଡ଼ି ମାଗୁନାହିଁ
ବୋଉ ଲୋ ତୁଣ୍ଡେ ପଗୁରବୁ ମୋତେ
ମହାପ୍ରଭୁ ସେ । ୧୪ ।

ଶୀଲତଲ ପାଣି କୋକିଲର ବାଣୀ
ଭାଇକୁ ମାଗୁଣି ଏତେ
ଶାଢ଼ୀ ମାଗୁନାହିଁ ମୁଦ ମାଗୁନାହିଁ
ଭାଇନା, ତୁଣ୍ଡେ ପଗୁରବ ମୋତେ,
ମହାପ୍ରଭୁ ସେ । ୧୫ ।

ଶୀଲତଲ ପାଣି କୋକିଲର ବାଣୀ
ନାନୀକୁ ମାଗୁଣି ଏତେ
ଧନ ମାଗୁନାହିଁ, ଜନ ମାଗୁନାହିଁ
ନାନୀ ଲୋ, ତୁଣ୍ଡେ ପଗୁରବୁ ମୋତେ
ମହାପ୍ରଭୁ ସେ । ୧୬ ।

( ଖଣ୍ଡପଡ଼ା )

## ୩ —ଓଷା ମନସା

( ଡାଲାରେ ସଜଡ଼ା ଥିବା ବଭିନ୍ନ ଫୁଲପତ୍ରକୁ ଛୁଇଁ ପ୍ରତ୍ୟେକ ଝିଅ କହିବେ )

୧ ଘିନେ ଗଉର୍ ! ଗଇଣ ମୁଣ୍ଡି
ମୋତେ କରଥିବ ସିନ୍ଦୂରମୁଣ୍ଡି ।

୨ ଘିନେ ଗଉର୍ ଗଇଣ ମୁଣ୍ଡି
ମୋତେ କରଥିବ ଅଇଁଶତୁଣ୍ଡି ।

୩ ଘିନେ ବେଲ୍ ପତର
ମୋତେ କରଥିବ ତୁମ ଚତୁର ।

୪ ଘିନେ କଅ
ତୁମ ପାଦପଦ୍ମେ ହୋଇବ ଠିଅ ।

୫ ଘିନେ ଅଣସୋରଷା
ମତେ କରଥିବ ତୁମ ସରସା ।

୬ ଘିନେ ବେଣା
ବାର ବରଷର ଖାଏ ପୁରୁଣା ।

୭ ଘିନେ ବରକୋଳ
ଜାଳେ ଛେଲା ଢାଠ
ମୋ ସ୍ୱାମୀ ନନ୍ଦ ଗୃହ
ସେ କୁଳେ ମୋ ସଉତୁଣୀ ଥାଉ
ଏ କୁଳେ ମୋ ଧନ ଯାଉ ।

୮ ଘିନେ ଗିଲ
ପୁଅ ଝିଅ ଢର ଢରେଁ ଗେଲ ।

୯ ଘିନେ ବାଉଁଶ
ଏକୁଳ ସେକୁଳ ବଢ଼ୁ ବଉଁଶ ।

୧୦ ଘିନେ ଢଣ୍ଡେଇ
ସୁନା ରୁପା ଢର ଅଣ୍ଡେଇ ।

୧୧ ଘିନେ ବାଠ
ଘିନେ ପାଠ ।

୧୨ ଘିନେ ଅପାମାରଙ୍ଗ ଦାନ୍ତ କାଠି
ବାଡ଼ ଦ୍ୱାରକୁ ବାଡ଼ ଡାଟି
ଦାଣ୍ଡ ଦ୍ୱାରକୁ ସୁନା ଡାଟି
ଶ୍ରୀକୃଷ୍ଣ ଖାଉଥିଲେ ପାନ
ମୋ ତୁଣ୍ଡେ ଦେଇ ଗଲେ ଚୂନ
ଥୁ-ଉ କରି ପକେଇ ଦେଲି
ଗଙ୍ଗା ଜଳେ ସ୍ନାହାନ କଲି ।
ଅଚଳ ଢୋଠରେ ନଗ୍ରେଲ ପାଣି
ଧାନ ଘରଠେଇ ପଇଡ଼ ଜାଣି
ଅଇ ଗୋ ମା'
ଭଇ ଗୋ ମା'
ସୁଅଗି ଦଅ ।

୧୩ ଘିନେ ଶାହାଡା, ଶାହାଡ଼ାବଣ
ଶାହାଡା ଘେନଲେ ବିଷ୍ଣୁ ଭକତ
ଶାହାଡ଼ା ଘେନଲେ କି ଫଳ ପାଇ
କୋଡ଼କୁ ନନ୍ଦନ ହାତକୁ ବାହି
ଶାହାଡ଼ା ଚିତା, ପାଦେ ଅଲତା
କାଳେ କାଳେ ଥିବ ସିନ୍ଦୁର ଚିତା
ଏକାଦଶୀରେ ମରିବି ନାହିଁ
ଦ୍ୱାଦଶୀରେ ମରିବି
ମଲେ ବିଷ୍ଣୁ ଭଗତ ପାଇବି ।
( ଘିନବା ସାରଲେ ସମସ୍ତେ ଗାଇ ଗାଇ ଗୁଳିବେ )

୧୪ ନଅଁ ଠିକେ ମାଗିଲେ ନନ୍ଦସୁତଘର
ନନ୍ଦସୁତ ଶୋଇଛନ୍ତି ଗମ୍ଭୀର ଭିତର
କି ହାଣ୍ଡି ଧୋଇଲ ରାଧେ ହସ୍ତେ ନାହିଁ କଳା
କି ଖୋଷା ଖୋଷିଲ ରାଧେ କଦମ୍ବର ଭେଳା ।
ଖୋଷା ଗୋଟିକରେ ଅଛି ନାଗେଶ୍ୱର ଫୁଲ
ଖୋଷା ଗୋଟିକର ଅବା କେ କରିବ ମୂଲ ;

ଖୋଲଟି ଦୁଆରକୁ ଖୋଲଟି କବାଟ
ଶଗଡ଼ ଧୂଳିରେ ପ୍ରଭୁ କରୁଛନ୍ତି ନାଟ ।
ବରର ଭାରଜା ଯେ ସୁନାର ବେଢ଼ାଣି
ଏକାବଲା ପଟିକ ଯେ ପଡ଼ିଲା ଭାଲେଣି
ରାଧାକୁ ଆଣିଗଲେ ରଥରେ ବସାଇ
ଗୁଆପାନ ଭାଙ୍ଗିଦେଲେ ଜଙ୍ଘରେ ବସାଇ

ଗୁଆପାନ ଭାଙ୍ଗୁ ଭାଙ୍ଗୁ ମାଡ଼ିଗଲା ନିଦ୍ରା
ମହା ନିଦ୍ରା ମାଡ଼ିଗଲା ବାଳକୁ ରୁମୁଲା ।
ସାଙ୍ଗ ଲୋକେ ଛାଡ଼ିଗଲେ ନ ଦିଶିଲା ବାଟ
କିଏ ଦେଖେଇବ ନେଇ ପ୍ରଭୁ ଜଗନ୍ନାଥ ।

## ୧୫ । ଜହ୍ନିଓଷା ଗୀତ

ଜହ୍ନି ଜହ୍ନି ଅଞ୍ଜୁଳା
ନିତ ପକେ ତିନି ଅଞ୍ଜୁଳା
ଦୋଳରେ ଯାଏ, ଦୋଳରେ ଆସେ
ପଚା ପିଢ଼ା ଗଣ୍ଡ ମାଡ଼ ବସେ ।
ମୋ ବୋହୂ ମୋ କୋଡ଼ରେ ବସେ
ନାତୁଣୀ ବୋହୂ ରାନ୍ଧ ପରଷେ ।

ହାଣ୍ଡି ପୋଛା ଭାତ ଖାଏ
ଅଟିକା ପୋଛା ତିଅଣ ଖାଏ
ରଜା ଗଲେ ଦାଣ୍ଡରେ
ହୁଳହୁଳି ପଡ଼ିଲା ତୁଣ୍ଡରେ
ତା' ମୋ କାନ ନ ଜାଣେ ।

ଗୋବର ଗାଡ଼ିଆରେ ଗଣ୍ଡି ବୁଡୁ
ଦଧି ନଉତରେ ଅଣ୍ଟୁ ବୁଡୁ ।

( ବାଣପୁର )

## ୧୭ । ( ଓଷାଦିନର ରାତ୍ର ଉଜାଗର ରହି ଝିଏ ଗାଇବେ )

ଯେଉଁ ଦିନ ମଲ୍ଲି ପୋତଲ୍ ମଞ୍ଜି ଗୋ
ପୋତଲ୍ ମଞ୍ଜି
ସେହି ଦିନ ମଲ୍ଲି ଗୋପରେ ରଞ୍ଜି
ମଲ୍ଲି ଗୋ, ମଲ୍ଲି ଜଣାଇଁ ଆସ
କଲାଭ୍ରମର କୃଷ୍ଣ କଲେ ନିରାଶ । ମଲ୍ଲି ଗୋ । ୧ ।

ଯେଉଁ ଦିନ ମଲ୍ଲି ହୋଇଲା ଗଜା ଗୋ
ହୋଇଲା ଗଜା
ସେହି ଦିନ ମଲ୍ଲି ଗୋପରେ ରଜା
ମଲ୍ଲି ଗୋ, ମଲ୍ଲି ଜଣାଇଁ ଆସ
କଲାଭ୍ରମର କୃଷ୍ଣ କଲେ ନିରାଶ । ୨ ।

ଯେଉଁ ଦିନ ମଲ୍ଲି ଦି ଦି ପତର ଗୋ
ଦି ଦି ପତର
ସେହି ଦିନ ମଲ୍ଲି ବଡ଼ ଗୃତର
ମଲ୍ଲି ଗୋ, ମଲ୍ଲି ଜଣାଇଁ ଆସ
କଲାଭ୍ରମର କୃଷ୍ଣ କଲେ ନିରାଶ । ୩ ।

ଯେଉଁ ଦିନ ମଲ୍ଲି ମେଲିଲା ଡଙ୍କ ଗୋ
ମେଲିଲା ଡଙ୍କ
ସେହି ଦିନ ମଲ୍ଲି ଗୋପରେ ଡାକ
ମଲ୍ଲି ଗୋ, ମଲ୍ଲି ଜଣାଇଁ ଆସ
କଲାଭ୍ରମର କୃଷ୍ଣ କଲେ ନିରାଶ । ୪ ।

ଯେଉଁ ଦିନ ମଲ୍ଲି ହୋଇଲା କଢ଼ ଗୋ
ହୋଇଲା କଢ଼
ସେହି ଦିନ ମଲ୍ଲି କୁଢ଼ାକୁ ଭଢ଼
ମଲ୍ଲି ଗୋ, ମଲ୍ଲି ଜଣାଇଁ ଆସ
କଲାଭ୍ରମର କୃଷ୍ଣ କଲେ ନିରାଶ । ୫ ।

ଯେଉଁ ଧନ ମଲ୍ଲି ଫୁଟିଲା ଫୁଲ ଗୋ
ଫୁଟିଲା ଫୁଲ
ସେହି ଧନ ମଲ୍ଲି ଗୋପରେ ମୂଲ
ମଲ୍ଲି ଗୋ, ମଲ୍ଲି ଜଣାଇଁ ଆସ
କଳାଭ୍ରମର କୃଷ୍ଣ କଲେ ନିରାଶ । ୬ ।

୧୭ ମଲ୍ଲି ଫୁଲ ବଡ଼ ବାସ ଗୋ
ସବୁ ଶୁକଳମଧ୍ୟେ
ମଲ୍ଲି ଗଛମୂଳେ ରହଣି
କୃଷ୍ଣ ଅସିବା ଯାଏ । ୧ ।
ପାନ ଭୁଙ୍ଗିଦିଅ ଚମ୍ପା ଗୋ
କୃଷ୍ଣ ଖାଇବେ ଖିଲେ
ପାନ ଖାଇ ଦାନ୍ତ ପାଚିଛି
ଚୂନ ଖଇର ଭୁଲେ । ୨ ।
ସତର ବରଷ ଅଠର
ଦହ କଲ ପଥର
ଅଣ୍ଟାଭଙ୍ଗା ଗୁଲି ଦେଖିଣ
ଦହ ହୁଏ କାତର । ୩ ।
ଚନ୍ଦନ ଗଡ଼ରେ ଚତୁସି
ଚୁଆ ଚନ୍ଦନ ବାସ
ଆହା ପ୍ରାଣଧନ ବୋଲିଣ
ଖରେ ଛାଡ଼େ ନିଶ୍ୱାସ । ୪ ।
ବନରେ କୁସୁମ କଢ଼ି ଗୋ
ବନ ପଡ଼ୁଛି ମାଡ଼ି
ଶ୍ରୀବୃନ୍ଦାବନରେ ରହାସ
ଯୁଗ ଦେଉଛି ଧାଡ଼ି । ୫ ।
ଖଗପତି ନାଥ ବୋଲିଣ
ମୁଁ ଗୋ ଡଡେ ଡାକଇ
ଖରା କି ବରଷା ରହିଲେ
କୋଳ ଗାଇକେ ଯାଇ । ୬ ।

## ୪—ଖୁଦରଙ୍କୁଣୀ ଓଷାର ଭାଲୁକୁଣୀ ବାଦ ଗୀତ

୧ମ-ତଳ ଗଡ଼ଅଣି—ପଟ୍ଟା ପନାକ
ଉପର ଗଡ଼ଅଣି ପିଲାଯାକ ବଡ଼ ଛନକ । ୧ ।

୨ୟ-ଉପର ଗଡ଼ଅଣି—ଖଣ୍ଡିଆ ଲେଦର
ତଳ ଗଡ଼ଅଣି ପିଲେ ବଡ଼ ଖୁଦ୍ରର । ୨ ।

୧ମ—ଆମ ଭାଲୁକୁଣି ଖାଏ କାନ୍ତି
ତୁମ ଭାଲୁକୁଣି ପୋକଡ଼ ଦାନ୍ତ । ୩ ।

୨ୟ—ଆମ ଭାଲୁକୁଣି ଖାଏ ଖିର
ତୁମ ଭାଲୁକୁଣି ବାଟହଗୁର । ୪ ।

୧ମ—ଆମ ଭାଲୁକୁଣି ରାଣୀ
ତୁମ ଭାଲୁକୁଣି ବାଉଁଶ କଣି । ୫ ।

୨ୟ—ଆମ ଭାଲୁକୁଣି ଖାଏ ମୁଆଁ
ତୁମ ଭାଲୁକୁଣି ମୁହଁରେ ନିଆଁ । ୬ ।

୧ମ—ଆମ ଭାଲୁକୁଣି ଖାଏ ମୁଗ
ତୁମ ଭାଲୁକୁଣି ମୁହଁରେ ହଗ । ୭ ।

୨ୟ—ଆମ ଭାଲୁକୁଣି ଖାଉଚ ଚଣା
ତୁମ ଭାଲୁକୁଣି ଠେଙ୍ଗରେ କଣା । ୮ ।

୧ମ—ତମ ଭାଲୁକୁଣି ମଲା
ଆମ ଭାଲୁକୁଣି ଥିଲାବୋଲି ନିଆଁ ଚିକଏ ଦେଲା ।୯।

୨ୟ—ଆମ ଭାଲୁକୁଣି ବାହାରେ ବଦ
ତମ ଭାଲୁକୁଣି ଶୋଇଚ ନିଦ । ୧୦ ।

୧ମ—ଆମ ଭାଲୁକୁଣି ହାତରେ ଖଡ଼ୁ
ତମ ଭାଲୁକୁଣି ବଉଁଶ ବୁଡ଼ୁ । ୧୧ ।

୨ୟ—ଆମ ଭାଲୁକୁଣି ବେକରେ ମାଳି
ତୁମ ଭାଲୁକୁଣି ବିପଣ୍ଡ କାଳୀ । ୧୨ ।

୧ମ—ଅମ ଭାଲୁକୁଣି ପିନ୍ଧଛି ପାଟ
ତମ ଭାଲୁକୁଣି ଖାଉଛି ଘାଟ । ୧୩ ।
୨ୟ—ଅମ ଭାଲୁକୁଣି ଲଗାଏ ଚନ୍ଦା
ତୁମ ଭାଲୁକୁଣି ମୁହଁରେ ଖନ୍ଦା । ୧୪ ।
୧ମ—ଅମ ଭାଲୁକୁଣି ମୁଣ୍ଡରେ ବେଣୀ
ତୁମ ଭାଲୁକୁଣି ମୁଣ୍ଡ ଉକୁଣି । ୧୫ ।
୨ୟ—ଅମ ଭାଲୁକୁଣି ମୁଣ୍ଡରେ ମଣି
ତୁମ ଭାଲୁକୁଣି ଆଖିଟା କାଣି । ୧୬ ।
୧ମ—ତୁମ ଭାଲୁକୁଣି ମୁଣ୍ଡରେ ଜଟ
କୁଆ ହଗିଗଲା ଲଟପଟ । ୧୭ ।
୨ୟ—ଅମ ଭାଲୁକୁଣି ଶୁଏ ଖଟେ
ତୁମ ଭାଲୁକୁଣି ଭୂଇଁରେ ଲେଟେ । ୧୮ ।
୧ମ—ଅମ ଭାଲୁକୁଣି ଶୋଇଛି ଘରେ
ତୁମ ଭାଲୁକୁଣି ଛେଳି ଚରେଏ । ୧୯ ।
୨ୟ—ଅମ ଭାଲୁକୁଣି ଖାଏ ଦହି
ତୁମ ଭାଲୁକୁଣି ଅଠିକା ଖାଇ । ୨୦ ।
୧ମ—ଅମ ଭାଲୁକୁଣି ପହଞ୍ଚେ ଦୋଳି
ତୁମ ଭାଲୁକୁଣି କାନରେ ନୋଳି । ୨୧ ।
୨ୟ—ଅମ ଭାଲୁକୁଣି ଖାଏ ମୁଢ଼ି
ତୁମ ଭାଲୁକୁଣି ନାଁ ଟା ବୁଢ଼ି । ୨୨ ।
୧ମ—ଅମ ଭାଲୁକୁଣି ଧରିଛି ଲଡ଼ୁ
ତୁମ ଭାଲୁକୁଣି ମୁହଁଟା ପୋଡ଼ୁ । ୨୩ ।

ବାଟୋଇ—ହଁ ଲୋ ହଁ
ଖୁଦୁରୁକୁଣି
ମାଣ୍ଡିଆ କଙ୍କଡ଼ା ବେସରପାଣି । ୨୪ ।
( ପିଲେ ଜୋରରେ ପଳାଇବେ )

( ଛଟିରଅ )

## ୫—ଚୁଟି ଖେଳ

୧। ବସା ପୁଚ—

ପୁଚ ଲୋ
ଯା, ଯା, ଧୁଣ୍ଡି ଲୋ ।
ଗହ୍ମର ବିଲ୍‌ରେ ମଇଁଷି
ଧାନ କେଣ୍ଡା କେଣ୍ଡା ଖାଉଚି
ଅଡ଼େଇ ଦେ ରେ ଗଉଡ଼ ଭାଇ
ବୋହୂ ବାପଘର ଯାଉଛୁ ।
ବୋହୂ ବାପଘର ଦୂର ରାଇଜ
ମଝିରେ ପଡ଼ିବ ନଈ
ବୋହୂଘରେ ଯୋଉ ଦଦରା ମାଠିଆ
ବୋହୂ ନେବ ପାଣି ବୋହି ।

( ଭଗୀରଥ )

୨। ଠିଆ ପୁଚ—

ଠିଆ ପୁଚ ନାରଙ୍ଗ
ଗୋଡ଼ ଦଣ୍ଠା ସାରଙ୍ଗ
ସାରଙ୍ଗ ବଣକୁ ଯାଇଥିଲି
ସାରଙ୍ଗ କୋଳି ଆଣିଥିଲି ।
ଅଧେ କଲି ଭଜା
ଅଧେ କଲି କଞ୍ଚା
ମୋ ଭାଇ ରଜା, ମୋ ଭାଉଜ ରାଣୀ
ହାଡ଼ ଭଳେ ଯୋଉ ଗହ୍ମାର କୂଅ
କିଏ କାଢ଼ିଦେବ ପାଣି ।

( ଭଗୀରଥ )

୩ ।  ଓଡ଼ଶା ଗଡ଼
ଆମ ବାପାଙ୍କର ସୁନା ପଗଡ଼
ଖୁଦୁରୁ ଖୁଦୁରୁ ଖୁଦ୍ ପିଠା
ଅଠଗଡ଼ଅଣି ଜଗନ୍ନିତା
ହଲେଇ ଦଅନ୍ତ କାପ ମଲକଢ଼ି
ଦେଖେଇ ଦଅନ୍ତ ବାହା ଠଠା ।

( ଅଠଗଡ଼ )

୪ ।  ଠକ ଠକ ଠକେଇ ଲୋ
ମରଦ ଲଗେଇ ଲୋ
ଘଷି ସାଉଣ୍ଟି ପୋଇଲ ଟିଅ
ଡଙ୍ଗ ଦେଖେଇ ଲୋ ।
ଭିଙ୍କିରେ କୁଠିଲ ମୟୂର
ମୋର ଟିଙ୍ଗେ ଟିଙ୍ଗିଅ ଶଶୁର,
ଭିଙ୍କିରେ କୁଠିଲ ଅଗାଡ଼
ଦେଖି ମରୁଥିବେ ଭଗାର,
ଭିଙ୍କିରେ କୁଠିଲ ଚଷୁ
ଠୋକୀ ନଣନ୍ଦ ମୋ ସାଙ୍ଗ ସରସା
ବେଗେ ଶାଶୁ ଘରୁ ଅସୁ ।

( ବାଙ୍କି )

୫ ।  ପୁଚ ଲୋ, ଯା ଘୁଞ୍ଚି ଲୋ
ପୁଚ ଲୋ
ଯା ଘୁଞ୍ଚି ଲୋ ।
ମଦରଙ୍ଗା ଶାଗ ଗ୍ରଇଡା
ମୋର କଳା ମଚମଚ ଘଇତା । ୧ ।
ପୁଚି ଲୋ
ଯା ଘୁଞ୍ଚି ଲୋ,
ବାଡ଼ିଅଡ଼େ ଗୋଧି
ପୁଚି ନ ଜାଣୁ ତୁ ମାଇପି ଠୋକୀ
କିଏ ଶିଖେଇବ ବୁଦ୍ଧି । ୨ ।

ଏ ଗୋଡ଼ ଖସିଲା
ସେ ଗୋଡ଼ ଖସିଲା
ଝୋଲା ଧଅର ମୋ ଗମ୍ଭିରୀ ଘରେ
ମୁଚୁ ମୁଚୁ ହସିଲା । ୩ ।

ବଡ଼ ଭାଉଜ ରୁଷିଲେ
ବାରପିଣ୍ଡାରେ ବସିଲେ
ହଟେଇଲ ରେ ହଟେଇଲ
ଚୁଡ଼ା ଗୁରମାଣ ବଡୁରୀ ଖାଇ
ଅଇଣ୍ଠା ପତର ଗଟେଇଲ । ୪ ।

( ପାଞ୍ଚଗଡ଼ )

ତୋର ମୋର ସାଙ୍ଗରେ
ତୁ ଧର ଥିବୁ ଅଇଁସି ଅଠିକା
ମୁଁ ଧରଥିବ ଡାଙ୍ଗରେ
ହଟେଇଲ
ହଟେଇଲ, ପୁଚ ଖେଳ ହଟେଇଲ
ବାର ବରଷର ବଦେଶୀ ଭାଇ
ପୁଣି ଭାଉଜ ଭେଟେଇଲ । ୩ ।

ଆମ୍ବ ପତର ମୋଡ଼ ମୋଡ଼କା
ପଣସ ପତର ଠୋଇଲା
ତୋର ମୋର ପୁଚ ଖେଳୁଥିବା
ଦେଖି ମରୁ ଥିବ ପୋଇଲା ।
ହଟେଇଲ,
ହଟେଇଲ, ପୁଚ ଖେଳ ହଟେଇଲ
ବାର ବରଷର ବଦେଶୀ ଭଣୋଇ
ପୁଣି ଭଉଣୀ ଭେଟେଇଲ । ୪ ।

ତେଇଁ ତେଇଁ ଗଲା ବଣି
ତୋର ମୋର ପୁଚ ଖେଳୁଥିବା
ଦେଖି ମରୁଥିବ ଣୀ

ହଟେଇଲ
ହଟେଇଲ, ପୁଚିଖେଳ ହଟେଇଲ
ବାର ବରଷର ପୁରୁଣା ଧାନ
ଭରଣେ ଚୁଡ଼ା କୁଟେଇଲ । ୫ ।

ଗଞ୍ଜେଇ ଗଛର ଘର
ତୋର ମୋର ପୁଚି ଖେଳୁଥିବା
ଝୁଣ୍ଟ ମରୁଥିବେ ଘର,
ହଟେଇଲ,
ହଟେଇଲ, ପୁଚିଖେଳ ହଟେଇଲ
କୁକୁର ଗୁହକୁ ଚଟେଇଲ । ୬ ।

ତୁ ଖେଳୁଥିଲୁ ପୁଚି
ମୁଁ ଖେଳୁଥିଲି ପୁଚି
ତୋ ଗୋଡ଼ ଗଲା ଖସି—ମୋ ଗୋଡ଼ ଗଲା ଖସି
ଦେଖି ହସି ଦେଲେ ଭାଉଜ ଭାଇ
ଦାନ୍ତେ ଯାକ ଗଲେ ଲୁଚି । ୭ ।

( ଢଗିରଥ )

୬ । **ଚିଲ ଖେଳ—**

ମୁଁ ଯେ ଚିଲ
ଯାଇଥିଲି ବଡ଼ ବିଲ
ଆଣିଥିଲି ବଡ଼ ମାଛ
ମୋ ସ୍ୱାମୀ ଥାଆନ୍ତେ ଗୋ
ମହିଁମାଛ ଖଣ୍ଡି ଖାଇ ଥାଆନ୍ତେ ଗୋ । ୧ ।

୭ । **ବଗ ଖେଳ—**

ମୁଁ ଯେ ବଗ
ପିଠିରେ କାଟଇ ଧୋବ
ମୋ ସ୍ୱାମୀ ଥାଆନ୍ତେ ଗୋ
ଧୋବ ଲୁଗା ଖଣ୍ଡି ପିନ୍ଧି ଥାଆନ୍ତେ ଗୋ । ୨ ।

୮ । **ପେଗୁ ଖେଳ—**

ମୁଁ ଯେ ପେଗୁ
ନାଚଇ ତନ୍ନ ଭେଙ୍ଗେଗୁ
ମୋର ସ୍ୱାମୀ ଥାଆନ୍ତେ ଗୋ
ମୋ ନାଚ ଦେଖି ଥାଆନ୍ତେ ଗୋ । ୩ ।
( ନରସିଂହପୁର )

୯ । ବାଉଁଶ ପତର କେର୍ କେର୍
ପୁଚ ଖେଳ ଗଲ୍ ଛେର୍ ଛେର୍
ହଟେଇଲ୍,
ହଟେଇଲ୍, ପୁଚଖେଳ ହଟେଇଲ୍,
ବାର ବରଷର ପୁରୁଣା ମହୁ
ଠିକଏ ଠିକଏ ଚଟେଇଲ୍ । ୧ ।

କଇଁଆ ପତର ସରୁ ସରୁକା
ତା ଫଲଟା ବଙ୍କା
ମୁଁ ଯେତେବେଳେ ପୁଚ ଖେଳୁଥିବ
ଦେଖି ମରୁଥିବ ରଙ୍କା,
ହଟେଇଲ୍,
ହଟେଇଲ୍, ପୁଚ ଖେଳ ହଟେଇଲ୍
ବାର ବରଷର ପୁରୁଣା ଗୁଡ଼
ଠିକଏ ଠିକଏ ଚଟେଇଲ୍ । ୨ ।
( ଖଣ୍ଡପଡ଼ା )

## ୭—ନାଁ ଦିଆ

ଅ— ଅମଞ୍ଜା ମଞ୍ଜା
ମଞ୍ଜି ନାହିଁ ତାର ଭୁଇଁରୁ ଗଜା । ( ଛତୁ ) । ୧ ।

ଆ— ଅଦ୍ୟ ଅବତାରେ ମୁଣ୍ଡରେ ଟୋପି ( ଗଜା )
କୃଷ୍ଣ ଅବତାରେ ମୋହିଲେ ଗୋପୀ ( ବଂଶୀ )

ରାମ ଅବତାରେ ରାବଣ ମାର          ( କାଣ୍ଡ )
ଆଜି ଆମ ଘରେ ସେହି ତର୍କାର ( କରଡ଼ି ) । ୨ ।
ଆଗେ ଲଙ୍ଗୁଡ଼, ପଛେ ଲଙ୍ଗୁଡ଼,
ଚାଲି ଯାଉଥାଏ ଧାଙ୍ଗୁଡ଼ ଧାଙ୍ଗୁଡ଼   ( ହାତୀ ) । ୩ ।

ଇ— ଇଠେଇ ଅଛୁ—ଏଇଠି ନାହିଁ   ( ଖରା ଛାଇ ) । ୪ ।

ଉ— ଉପରଠା ସମତୁଲ
ଭାଙ୍ଗି ଦେଲେ କଇଁଫୁଲ ।      ( ନଡ଼ିଆ ) । ୫ ।

ଏ— ଏତକ ଟିକିଏ ମାଙ୍କଡ଼
ଭୂଇଁକି ମାରେ ଚାପଡ଼          ( କୋଡ଼ି ) । ୬ ।
ଏତକ ଟିକିଏ ଗାତ
ତହିଁକି ନ ପାଏ ହାତ । ୭ ।      ( କହୁଣୀ )
ଏକା କାଳୀ ଗାଈ ଶୋଇଚି
ଶହେ ବାଛୁରୀ ପିଉଚି । ୮ । ( ମଥାନ ଶେଣୀ )
ଏଣୁ ଯାଉଥିଲେ ବାପ ପୁଅ
ତେଣୁ ଆସୁଥିଲେ ଏକା
ବାପ ଯାହାକୁ ଯୁହାର କରେ
ପୁଅ ଗୋଡ଼ତଳେ ପକା । ୯ ।
( ବସୁଦେବ, କୃଷ୍ଣ ଓ ଉଗ୍ରସେନ )
ଏତକ ଟିକିଏ ଗେଣ୍ଡ଼ି
ଲୁଗା ପିନ୍ଧେ ଚଉଦ କୋଡ଼ି । ୧୦ । ( ପିଆଜ )

ଔ— ଔଳତଳେ କୋଳି ଗଛ ଝଡ଼ି ଝଡ଼ି ପଡ଼େ
ଲକ୍ଷେ ଟଙ୍କା ଦେଲେ ସେହି ନାହିଁ ନାହିଁ କରେ । ୧୧ ।
( ଅଖି )

କ— କଞ୍ଚା ଲଡପଡ ପାଚିଲା ଟାଣେ
ଯେ ନ କହି ପାରିବ ତା ବୋପା ଟାଣେ । ୧୨ ।
( ହାଣ୍ଡି )
କଟକରୁ ଅଇଲା ଧୋବଲି ଘୋଡ଼ି
ଏକା ବଅଣକେ ହୋଇଲା ବୁଢ଼ୀ । ୧୩ ।
( କଦଳୀଗଛ )

କଣ୍ଟକରୁ ଅଇଲା ହାତୀ
ତା ଅଣ୍ଠା ସମସ୍ତେ ଖାଆନ୍ତି । ୧୪ ।
( ଚିଙ୍ଗି )

କାଠର ବାଛୁରି ପଥର ଗାଈ
ଯେତେ ଦୁହଁ ଥିଲେ ପନ୍ଦ୍ୱୋଉ ଥାଇ । ୧୫ ।
( ସୋହଲ )

କେଁ କରଣ୍ଠ,
ପୋଖରୀ ଭିତରେ କରୁଚି ନାଠ
ଲଙ୍ଗଳ ଦାଣ୍ଡ ଦେଇଚି ଝାଣି
ଶୁଖିଲା କାଠରୁ ବୋହୁଛି ପାଣି । ୧୬ ।
( ଅଖୁଗାଇ )

ଖ— ଖାଇଲେ ମରେ
ନ ଖାଇଲେ ଗଣ୍ଡି ଭୁଷୁଣ୍ଡା କରେ । ୧୭ ।
( ବାଳ )

ଗ— ଗଛ ମହାମେରୁ ପତର ସରୁ
ତା ଫଳଟା ବାଙ୍କିଆ ମେରୁ । ୧୮ ।
( କଣ୍ଟିଆ )

ଗଛ ଲହକା
ପତର ବଙ୍କା
ତା ଫଳଟା ଷାଠିଏ ଟଙ୍କା । ୧୯ ।
( ଧାନ )

ଘ— ଘଣ୍ଟି ଘାଗୁଡ଼ି ବଜେଇ ବଜେଇ କିଏ ପୁରୁସ୍ତମ ଯାଉଛି
ନଈରେ ଯାଉଚି କାଳିଆ ଘୋଡ଼ା
ପାଣି ଚକ ଚକ ହେଉଛି । ୨୦ ।
( ମେଘ, ଘଡ଼ଘଡ଼ି ଓ ବିଜୁଳି )

ଚ— ଚାଲ ଶାଗୁଣା ଏକାବ ବାସ
ଓମ୍ବ ଫୁଟାଇଲେ ଶହେ ପଗୁଣ । ୨୧ ।
( ଗୁଆ )

ଛ— ଛଅ ଗୋଡ଼ ତାର କୋଇଲ ରଙ୍ଗ
ନୁହଇ ପକ୍ଷୀ ସେ ପାରଇ ଉମ୍ବ
ନିକୁଞ୍ଜ ବନରେ ତାହାର ଘର
ମଣିଷ ମାଉଁସ କରେ ଆହାର । ୨୨ ।

( ଉକୁଣି )

ଜ— ଜଣକ ଉପରେ ଜଣେ ବସେ
ଆଉ ଜଣେ ମାଳ ଜପି ଜପି ଆସେ
ତିନିହେଁ ଯାକ ହୋଇଲେ ରୁଣ୍ଡ
ତିନିଜଣଙ୍କର ସତର ମୁଣ୍ଡ । ୨୩ ।

( କାର୍ତ୍ତିକ, ମୟୂର ଓ ରାବଣ )

ଝ— ଝିଅ ଆସୁଛି, ବୋହୂ ଯାଉଛି
ଦ କୂଳେ ଘର ଫୁଲ ଉଠୁଛି । ୨୪ ।

( ଦୁର୍ଗାଷ୍ଟମୀ, ସମ୍ବଲପୁର )

ଟ— ଟିହିଁକ ବାଛୁସି
ବେକରେ ପଘା । ୨୫ ।

( କୁମ୍ଭୀ )

ଟିପି ଚଢ଼େଇ
ଟିକିକ ପାଣିରେ ବୁଡ଼ି ମରଇ । ୨୬ ।

( ଲୁଣ )

ଠ— ଠକ ଠକ ଠକସା
ତିନି ମୁଣ୍ଡ ଦଶ ଗୋଡ଼ ଦେଖିବ କି ମଉସା । ୨୭ ।

( ହଳିଆ ଓ ବଳଦ )

ଡ— ଡର ଡର କେବେ ଗୁଟେଲ କେବେ ଦମ ଦମ
ଶହେ କୁରାଢ଼ି ପାହାର ଦେଲେ
କେବେ ନ ଛୁଟେ ଚମ । ୨୮ ।

( ଘାଇ )

ଢ— ଢିଙ୍କି ବସି ତୁ ପଟଣେ
ସୁଖେଇ ଦେବାକୁ ଜଣେ । ୨୯ ।

( କଭ )

ଛ— ତୁ ଥିବୁ ତାଲେ ମୁଁ ଥିବି ନାଲେ
ଭେଟାଭେଟି ହେବା ମରଣ କାଳେ । ୩୦ ।
( ମାଛ ଓ ଅମ୍ବ )

ଥ— ଥାଏ ସବୁଠି କେହି ନ ଦେଖେ
ଛପି ଛପି ଥାଏ ସବୁର ପାଖେ
ଖାଏ ଜୀବଜନ୍ତୁ ନ ଖାଏ ପାଣି
କଏ ତାକୁ କେହି ନ ପାରେ ଜାଣି । ୩୧ ।
( ପବନ )

ଦ— ଦେଇ ମଲା, ନ ଦେଇ ମଲା
ଦେଖି ମଲା, ନ ଦେଖି ମଲା । ୩୨ ।
( ବଳୀ, ରାବଣ, କଂସ, ଦଶରଥ )

ଧ— ଧାଇଁ ଧାଇଁ ଗଲି
ବାଙ୍କିଆ କଣ୍ଟୁରି ଘଡ଼ି ଆଣିଲି । ୩୩ ।
( ଗୁହ )

ନ— ନଈ ଅର ପାରେ
ଡାକଇ ରାଣୀ
କା ଘରେ ଅଛୁ, କାକର ପାଣି । ୩୪ ।
( ପରଡ଼ )

ନଈ ଅର ପାଖେ ଡାକଇ ଶୁଆ
କା ଘରେ ଅଛୁ ନିଦା ଗୁଆ । ୩୫ ।
( ସାବଳ )

ପ— ପଦ୍ମ ଫୁଲ ଷୋଳ ପାଖୁଡ଼ା
ତହିଁ ନାଗ ସାପ କଲା ଅଖଡ଼ା
ପଙ୍କ ଜଳ ଖାଇ କରେ ଘର
ଏ ନାଁ ଟି କହିଦେବାକୁ ସଖ କାହାର । ୩୬ ।
( ଦହିଘୁଆ )

ପର୍ବତ ଶିଖରୁ ଗଡ଼ିଲା ହାତୀ
ତା ଅଇଣ୍ଠା ସମସ୍ତେ ଖାଆନ୍ତି । ୩୭ ।
( ଚିଙ୍କି )

ପୂର୍ବ ଗଲ ପଶ୍ଚିମ ଗଲ ତେଲି ପଡ଼ଲ ଉତ୍ତର
ଦକ୍ଷିଣ ଦଗରେ ଦେଖି ଅସିଲ
ଫଳ ଉପରେ ପଥର । ୩୮ ।
( ସପୁରି )

ପୂର୍ବ ଗଲ ପଶ୍ଚିମ ଗଲ ତହୁଁ ଗଲ ଉତ୍ତର
ଏକ ରାଇଜରେ ଦେଖି ଅଇଲ
ଫୂଲ ଉପରେ ପଥର । ୩୯ ।
( ଗଇଣ )

ପେଡ଼ ଅଛୁ,
ପେଡ଼ ଗୃଙ୍ଗୁଡ଼ ନାହିଁ । ୪୦ ।
( କୁଅ )

ଫ— ଫୂଲ ଫୁଟିଛୁ ଝେହ ଝେହ
ସେ ନ ପଡ଼େ ଝଡ଼
ସଞ୍ଜ ସକାଳେ ନାତକ ନାତ
ଗଛ ଦେଉଛୁ ରଡ଼ । ୪୦ ।
( କୁକୁଡ଼ା )

ବ— ବଗ ବସିଛନ୍ତି ଧାଡ଼ ଧାଡ଼
କୃଷ୍ଣ ବସିଛନ୍ତି ଏକା
ଯେ ଏ କଥା କହି ନ ପାରିବ
ତାର ଷାଠିଏ ଗଣ୍ଡା ବୋପା । ୧୪ ।
( ଗୃହଶାଳୀ )

ବରଷକେ ଥରେ ଖାଏ
ମୁହିଁ ମାଡ଼ ପଡ଼ଥାଏ । ୪୨ ।
( ଗୃଳ )

ବହେ ଦଶଶିର କୁହେଁ ରାବଣ
କାଲି ହୋଇଥିଲ
ଅମର ସେହି ଭଜଣ । ୪୩ ।
( ଢାଙ୍କି )

ବାରବାଟି ଗୋଡା
ଫୁଲ ଫୁଟିଛି ଗୋଡା । ୪୪ ।

( ଜହ୍ନ )

ବଳୁଡଭୂଷଣ ଜଟାଧାରୀ
ଶୋଇଥାଏ ପାଳ କୁଟା ପାରେ
ଜଟା ଚଉଦଗକୁ ଥାଏ
ପାଳ ନ ଖାଏ, ଘାସ ନ ଖାଏ
ଜଟା ବର ବରଗୁଡ଼ ଖାଏ । ୪୫ ।

( ପାଣିକଖାରୁ )

ବୁଣିଲି ମସୁର ଉଠିଲା ବର
ଫୁଲ ଫୁଟିଗଲା ଲବଙ୍ଗ କଢ଼ି
ଫଳ ଫଳିଗଲା ବେଲ
ପଣ୍ଡିତ ଲୋକେ କହି ନ ପାରିବେ
ଗୁହୁଁ ଥିବେ ବଲ୍ ବଲ୍ । ୪୬ ।

( ବାଇଗଣ )

ଭ— ଭଲା କାଳୀଗାଈ ଭଲା
କବାଟ ନ ପିଟେଇ ଅଟେଇ ଅଟେଇ
ରଙ୍ଗ ଧାନ ଖାଇଗଲା । ୪୭ ।

( ମୂଷା )

ମ— ମାମୁଁ ଦେଲେ ବଳଦ ହଳେ
ଯୋଚି ନ ପାରିଲି ( ଚନ୍ଦ୍ର ସୂର୍ଯ୍ୟ )
ମାଈଁ ଦେଲେ ଫୁଲ ଗୁଙ୍ଗୁଡ଼ି
ଗୁନ୍ଥି ନ ପାରିଲି । ( ତାରା ) । ୪୮ ।

ଯ— ଯାଇଥିଲି ବଣକୁ
ଏକା ଗଛରେ ଦେଖି ଆସିଲି
କପା କଦଳୀ ବଡ଼ଚଣାକୁ । ୪୯ ।

( ଶିମିଳି )

ର— ରଙ୍ଗ ରଙ୍ଗତା
ପାଣି ଦେଲେ ଗଛ ମର ଯାଅନ୍ତା । ୫୦ ।
( ନିଆଁ )

ରଙ୍ଗ ଝୁହୁଝୁହୁ ସୁବର୍ଣ୍ଣ ବର୍ଣ୍ଣ
ତମେ ତ ଏଠେଇ ପଡ଼ୁଚ
ହେଙ୍ଗୁ ମଝିରେ ଗୋଳିଆ ଗୋଳି
ତୁମେ ତ ଏ ବାଟେ ଯାଉଚ । ୫୧ ।
( ମିରଗ ଓ ଅମ୍ବ )

ରଜାଘର ଲକ୍ଷେ ଗାଈ
ସ୍ତ ପାହୁଲକୁ ଗୋଟିଏ ନାହିଁ । ୫୨ ।
( ତାରା )

ଲ— ଲକ୍ଷେ ଗୋଡ଼ ତାର ଲକ୍ଷେ ପଞ୍ଜରା
ଅଶୋକ ବନରେ ଥାଏ
ସୀତା ପଚାରଲେ ଅହେ ଶ୍ରୀରାମ
ଏ ଜନ୍ତୁ କି ଫଳ ଖାଏ । ୫୩ ।
( ତେଲଗୁଣିଆ ପୋକ )

ଲୋଟର ଲଇ
ହାଣିଲେ ମାରଲେ ଛୁଣ୍ଡେଇ ନାହିଁ । ୫୪ ।
( ଛାଇ )

ଶ— ଶଶୁର ଜ୍ବାଇଁ
ଶଳା ଭଣୋଇ
ଥାଳ ତନପଟ ବାଢ଼ିବ କାହିଁ । ୫୫ ।
( ବାପ, ପୁଅ, ଜୁଆଇଁ )

ଷ— ଷଟପଦ ବଦ୍ଧ ନୁହେ ଭ୍ରମର
ନୁହଇ ମହତ ବସେ ମଥାର
ବାଘ ସିଂହ ନୋହେ ରକତ ପିଏ
ପକ୍ଷୀ ନୋହ ସେତ ଉମ୍ବକୁ ଦଏ । ୫୬ ।
( ଉକୁଣି )

ସ — ସଜନା ଗଛରେ ବସିଛୁ ପେଚ୍ଚ
ହାତ ଗୋଡ଼ ନାହିଁ ମାଉଁସ ମେଞ୍ଚା । ୫୭ ।
( ଜୋକ )

ସରଗ ସୁତା
ଗଜ ମୁକୁତା
ଛେଚଲେ ବକଳା ନାହିଁ ରେ,
ଖାଇ ଦେଉଥିଲେ
ବୋହୁ ଯାଉଥିବ
ସଂସାର ଭିତରେ ନାହିଁ ରେ । ୫୮ ।
( କୁଆପଥର )

ସରଗରୁ ପଡ଼ିଲା ଠୋକାଠେ
ତା ମୁଣ୍ଡରେ ଠୋପାଠେ । ୫୯ ।
( ତାଳ )

ସଳଖ ସୁନ୍ଦର ଭେଣ୍ଡିଆଟିଏ
ହାତଗୋଡ଼ ନାହିଁ ଗଣ୍ଡିଆଟିଏ । ୬୦ ।
( ମୁନ୍ଦୁରା )

ହ— ହରଡ଼ ବାଡ଼ରେ ଚରଡ଼ ପକ୍ଷୀ
କୋଉ ଚଢ଼େଇର ତନଟା ଅଖି । ୬୧ । ( ନଡ଼ିଆ )

ହଳଦୀ ଗୁହୁଗୁରୁ ରାମ ରାଜତ
ଘରେ ଭାତ ନାହିଁ ପୁଅ ବହୁତ । ୬୨ । ( ପଣସ )

ହାଇ ଘନ ଘନ ମାର କାହିଁକି
ପର ଘର ବୋଲି ଜାଣ ନାହିଁକି । ୬୩ । ( ନୂଆବୋହୂ )



# ଗାଁ ପିଲାଙ୍କ ଗୀତିକା

## (ଏକ)—ଲୋଲି ବା ନାନାବାୟା ଗୀତ

### (୧) ଝୁଲେଇବା ଗୀତ—

ଝୁଲୁ ହାତୀ, ଝୁଲୁ ହାତୀ
ଝୁଲିଲେ ଖାଇବୁ ଖଣ୍ଡ ଛଟା । ୧ ।
ହାତୀ ଝୁଲୁରେ
ବାଆ ପାଣି ଖାଇ ଫୁଲୁରେ । ୨ ।
ହାତୀ ଯାଇଥିଲା ନଅର
ହାତୀ ମୁଣ୍ଡରେ ମୋ ସୁନା ଚଅଁର । ୩ ।
ମୋର ହାତୀ ଧାଇଁଥେ ଲସର ପସର
କଅ କଦା ଖାଇବାକୁ
ମୋର କହ୍ନେଇ ଧାଇଁଥେ ଲସର ପସର
ବୋଉ ଦଦ ଖାଇବାକୁ । ୪ ।

### (୨) ମଥାରେ ତେଲ ଘଷିବା ଗୀତ—

ତା ତା ନାଢ଼
ତାତା ନାଢ଼
ବେଙ୍ଗ ଦେଲେ ପାଢ଼
ବେଙ୍ଗ ଚେଢ଼ ଯେ ପଳାଇଗଲେ
ଅଢ଼ା ପିନ୍ଧା ଦେଇ ନ ଗଲେ ।
ବେଙ୍ଗଙ୍କ ଘରେ କା କା ଡଉଣି
ପୋକ ସାଉଁ ସାଉଁ ହାଣ୍ଡିଏ ଚୁଣି ।

( ୩ ) ହସେଇବା ଗୀତ—

( କେଉଁରେ ଅଙ୍ଗୁଠି ଦେଇ )

(କ) ଝୁନ୍କୁ ମୁଣି,
ଝୁକେଇ ମୁଣି
ଧାନ ଭରଣକ ଖାଉଥା ବସି,
ତୁ ଥା' ମୁଁ ଯାଉଚ୍ଛୁ ରୁଷି ।
( କନିଷ୍ଠ ଅଙ୍ଗୁଠି ଧର )—ଏଉଟି ବୋଇଲା କସ ଖାଇବା
( ଅନାମିକା ଅଙ୍ଗୁଠି ଧର )—ଏଉଟି ବୋଇଲା କାହୁଁ ଆଣିବା
( ମଧ୍ୟମା ଅଙ୍ଗୁଠି ଧର )—ଏଉଟି ବୋଇଲା ଋଣ କରିବା
( ତର୍ଜନୀ ଅଙ୍ଗୁଠି ଧର )—ଏଉଟି ବୋଇଲା କାହୁଁ ଶୁଝିବା
( ଅଙ୍ଗୁଷ୍ଠ ଅଙ୍ଗୁଠି ଧର )—ବୁଢ଼ା ଡେଙ୍ଗପ ଥାଇ ବୋଇଲା
ଖାଇ ଦେଇ ପଳେଇବା
ଗଲାରେ ଗଲାରେ, କାଳିଆ ବଳଦ ଗଲାରେ। ୧ ।
( ବାହୁରେ ଧୀରେ ଧୀରେ ଅଙ୍ଗୁଠି ଚଲାଇ କାଖପାଏ ନିଆ ହେଲେ
ଶିଶୁ ହସି ଗଡ଼ିଯିବ )

(ଖ) ତାଳି ତାଳି ବନମାଳୀ
ତାଳି ତାଳି ବନମାଳୀ
ତାଳି ସର, ତାଳିସର
ଚୋକେଇ କୁଣ୍ଢେଇ ସଜକର
ଘେନି ପଳେଇବା ଘୁମୁସର । ୨ ।
(ଶିଶୁର ଦୁଇ ହାତ ପାପୁଲିରେ ତାଳି ମରାଇଲେ ଶିଶୁ ହସି ଉଠେ ।)

( ୪ ) ଖୁଆଇବା ଗୀତ—

ଗିଲ୍ ଗିଲ୍ ଗୁଣ୍ଡି
ଗିଲ୍ ଗିଲ୍ ଗୁଣ୍ଡି
ପାକୁ ପାନେ
ମା ଠୋଉ ଯାଇ କଉଡ଼ି ଆଣେ
ମା ବୋଇଲା କଉଡ଼ି ନାହିଁ
ଝିଲକ ଲଡୁଟି ପାଇବୁ କାହିଁ । ୧ ।

ପକେଇ ଦୌଲି ଗିତ କୁଢ଼କୁ
କୁଆ ନେଇ ଗଲା ମାମୁଘରକୁ
ମାଇଁ ବୋଇଲା ଏଉଟି କାଏ
ମାମୁଁ ବୋଇଲେ ଭଣଞ୍ଜା ଇଏ
ଧୋଇଧାଇ କର ଘରକୁ ନେଏ । ୨ ।
ଦୁଧ ଭାତ କର ଗୁଣ୍ଡିଏ ଦେ
ଭାଡ଼ି ଉଠଲେ କନା ଗଡ଼େଇ ଦେ । ୩ ।

## (୫) ନଚ୍ଚଇବା ଗୀତ—

ଛା ଥେଇକି
ଛା ଥେଇକି
ମାଧିଆ ମାଇଲା କୁଣ୍ଡାଖାଇକି
ଅଜ କୁଣ୍ଡାଖାଇ ଘରେ ଥାଇ କି ? ୧ ।
ଛା' ଥେଇ ଥେଇ ନନ୍ଦେ
ଛାଲ ବାଡ଼କି ଛାଲ ଖାଇଗଲେ
ଗୋଡ଼େଇ ମାଇଲେ କନ୍ଦେ ।
ଥେଇ କରେ, ମୋର ଥେଇ କରେ । ୨ ।
ମୋ ରୁକ୍ମଣି ଯେଠିଆ ଲଉ
ମୋ ଧନକୁ ଯେ ମନ୍ଦ ମନାସିବ
ଛଳଛଳା ହୋଇଯାଉ । ୩ ।

## (୬) ଶୁଆଇବା ଗୀତ—

(୧) ଅରେ ଅରେ କୋକମିନା ତୁ
ବାଡ଼ି ପନ୍ଦାଡ଼ରେ ଥାଉ
କାହ୍ନୁଅ କାନ ମେ ଟ ମେ:ଟ
ରାଧିକା କାନ ଖାଉ । ୧ ।

ଅରେ ଅରେ କୋକଂମିନା ତୁ
ବାଡ଼ ପନ୍ଦାଡ଼ରେ ଥାଉ
ରାଧିକା କାନ ମୋଟା ମୋଟ
କାହ୍ନୁଅ କାନ ଖାଉ । ୨ ।

(୨) ଧୋରେ ବାୟା ଧୋ
ଯୋଉ କିଆରିରେ ଗହଲ ମାଣ୍ଡିଅ
ସେହି କିଆରିରେ ଶୋ ।

ଅସ ମାଉସୀ ଅସ ପିଉସୀ
ନିଦ ଦେଇ ଯାଅ
ପାନ ବଡ଼ ବଡ଼ ଗୁଆ ପେଡ଼ ପେଡ଼
ବହୁଅ ଘରେଇ ଖାଅ ।

(୩) ଧୋରେ ବାୟା ଧୋ
ଗହଲ ମହଲ ଧାନ କିଆରି
ସେଇ କିଆରିରେ ଶୋ ।
ପୂବେଇ ବାଅରେ ମେଘ ବରଷିଲା
ଟୁପୁର ଟୁପୁରୁ ପାଣି
ସାରୁଗଛ ମୂଳେ ବେଙ୍ଗୁଲି ନାଚି
ଅପେ ବୋଲଉଛୁ ରାଣୀ । ୧ ।

କକର ବନା ରେ ବାଇ ଚଢ଼େଇ
ବାଡ଼ ପନ୍ଦାଡ଼ରେ ଥାଅ
ରାଧିକା କାନ ମୋଟ ମୋଟ
କହ୍ନେଇ କାନ ଖାଅ । ୨ ।

ସବୁ ପିଲାଏ ତ ଖେଳି ଅଇଲ ରେ
ମୋ ପ୍ରେମସୁନ୍ଦର କାହିଁ
ଝାଡ଼େ ପଶି ଝାଡ଼କୋଳି ଖାଉଛି ସେ
ଅଙ୍କୁଡ଼ି ଖଣ୍ଡି ଲଗାଇ । ୩ ।

(୪) ନାହିଁ ଲୋ ନାହିଁ
ନାହିଁ ଲୋ ନାହିଁ
ମୋ ଗଣ୍ଠିବନ୍ଧା ସୁନା କାହିଁ
ମୋ ବାପଧନ କାହିଁ
ମୋ ଧନ ପଡ଼ିଲାଣି ଶୋଇ ।

(୭) ହଳଦୀ ଲଗେଇବା ବେଳର ଗୀତ—

(ପୁଅ ପାଇଁ)— କେଉଣ୍ଡି ମାଛର କାଣ୍ଡ
ମୋ ପ୍ରେମସୁନ୍ଦର ବାହା ହୋଇ ଯିବ ରେ
ଚନ୍ଦ୍ର ସୂର୍ଯ୍ୟ ବରଜାଣ୍ଡ । ୧ ।
କଅଁଳ କଖାରୁ ଝାଁରେ
ମୋ ପ୍ରେମସୁନ୍ଦର ବାହାହୋଇ ଯାଉଥିବ ଲୋ
ତେଲଙ୍ଗି ବାଇଦ ସାରେ । ୨ ।
ନଳି କାନକାର ଗଜ
ମୋ ପ୍ରେମସୁନ୍ଦରର ଯେତେବେଳେ ପାଲିଙ୍କି ସଜ ଲୋ
ଭଗାର ପାଇବେ ଲାଜ । ୩ ।

(ଝିଅ ପାଇଁ)
ମର ଯାଉଥାଏ ମୋର
ମାଆ ସାଆନ୍ତାଣି ରାଣୀ
ମୋ ଦେଇଥିବ ଗଡ଼ମାଳିଆ ଢରେ ମୋ
ଗଉଡ଼େ ବୋହିବେ ପାଣି । ୧ ।
ମାଆ ସାଆନ୍ତାଣି ପଞ୍ଚାଢ଼ିଆ
ମୋ ପୋଇଲି ଲାଗିବେ ଶହେ ଯୋଡ଼ା । ୨ ।
ମୋ ମାଆକୁ ମାଇଲା ଶାଶୁ
ଦେଇ ପଠେଇବ 'ଚଉତା' ଗଉଡ଼
ମୋ ମାଆ ଶାଶୁଘର ଆସୁ । ୩ ।

(ପିତୃହୀନ ପୁଅ ପାଇଁ)

ଖଣ୍ଡେ ମାଇପ ଧନ ଛେଉଣ୍ଡ ବଳା
ଦଣ୍ଡେ ମୁଁ ତୋର ମୁଖ ନ ଦେଖେ କଳା ରେ । ୧ ।

ଖେଳ ତୁ ଯାଇଥାଉ ପିଲାଙ୍କ ମେଳେ
ଧୂଳି ଝାଡ଼ି ମୁଁ ତୋତେ ଘେନଇ କୋଳେ ରେ । ୨ ।

ଗଡ଼ଗୁଣ୍ଡ ପଡ଼ ମୁଗ ଯାଇଥାଏ ଶୁଖି ରେ
ତାହା ଦେଖି ମନରେ ମୁଁ ହୁଏ କେତେ ଦୁଃଖୀ ରେ । ୩ ।

(ବିଡ଼ ଭଉଣୀ ଗାଏ)

ତନୁ ପାତେଳିଆ ଅଣ୍ଟାଭଙ୍ଗା ଗୃହ ତୋର
ଖଣ୍ଡେ ଦୂରୁଁ ଗୃହିଁ ଦେଲି ଲୁହଭରି ମୋର ।
ହାତେ ଖଡ଼ି କାଖେ ପୋଥି ଧରି ଅଥୁ ଚଳ ରେ
ଆଉ କି ଜନମ ତୋର ଥିବ ଦେହ ଧରି ରେ । ୪ ।

## (୮) ଶିଶୁକୁ ଉଠାଇବା ଗୀତ—

ପାହିଲା ଶର୍ବରୀରେ ବଂଶୀଧାରୀ
ଉଠ ଉଠ ।
କାକ କୁକ୍କୁଟ କୋକିଳ
ଧ୍ୱନି କଲେ କୋଳାହଳ
ପୂର୍ବ ଦିଗେ
ଉଦେ ଗଗନବିହାରୀ ରେ । ୧ ।

ପାହିଲା ରଜନୀ ରେ ରଘୁମଣି
ଉଠ ଉଠ ।
କାକ କୁକ୍କୁଟ କୋକିଳ
ଧ୍ୱନି କଲେ କୋଳାହଳ
ପୂର୍ବ ଦିଗେ
ବିଜେ ଦିନମଣି ରେ । ୨ ।

### (୯) କୌତୁକ ଗୀତ

ଅଁସ ରେ ଫିଲେ ଜାମୁକୋଳି ଖାଇ ଯିବା
କୁଯୁମୀ ନଈରେ ପାଣି ପଡ଼ୁଛୁ
ବୁଢ଼ୀକି ଭସେଇ ଦେବା । ୧ ।

ଅଦଢ଼ ଦଢ଼
ଘରେ ଭାତ ନାହିଁ ବୁଢ଼ୀକି ତଡ଼
ବୁଢ଼ୀ ପଳେଇଲା ବଡ଼ମ୍ବା ଗଡ଼ ।
ବଡ଼ାମ୍ବା ଗଡ଼ ପିଲେ ମାଇଲେ ଧକା
ବୁଢ଼ୀ ପଳେଇଲା ଏକା ଏକା । ୨ ।

ନଈ କ ଫିଙ୍ଗିଲ ଗିଲ୍
ନଈ ଗୁଡପାଖ ମନ୍ଦାର ଫୁଲ
ବୁଢ଼ୀକି ଝିଙ୍କିଲା ଚିଲ୍ । ୩ ।

## (ଦୁଇ)—ପିଲାଙ୍କ ଖେଳ ଗୀତ

### (୧) ଗୁଗୁପାଞ୍ଚୁ—

ଗୁଗୁପାଞ୍ଚୁ
ଗୁଗୁପାଞ୍ଚୁ
ବାପାଙ୍କ ଅଁଣ୍ଠା କିଏ ସେ ଖାଏ ?
ବୋଉ ଖାଏ ।
ବୋଉ ଅଁଣ୍ଠା କିଏ ସେ ଖାଏ ?
ଭାଇ ଖାଏ ।
ଭାଇ ଅଁଣ୍ଠା କିଏ ସେ ଖାଏ ?
କୁକୁଝିଅ ଖାଏ ।
କୁକୁ ଝିଅ ଅଁଣ୍ଠା କିଏ ସେ ଖାଏ ?
ଗିଧ ଖାଏ ।
ଗିଧ ଅଁଣ୍ଠା କିଏ ସେ ଖାଏ ?
କୁକୁ ପୁଅ ଖାଏ ।

ସୁନା ଗାଡ଼ିଆରେ ପଡ଼ିବୁ କ
ଗୁହ ଗାଡ଼ିଆରେ ପଡ଼ିବୁ ?
ସୁନା ଗାଡ଼ିଆରେ ପଡ଼ିଲୁ ରେ
ଗୁହ ଗାଡ଼ିଆରେ ପଡ଼ିଲୁ ରେ ।
(ପାଦରେ ପିଲାକୁ ବସାଇ ଠେକ ଠେକ ଏ ଖେଳ ହୁଏ ।)

(୨) ଚକା ଭଉଁରି—

ଚକା ଚକା ଭଉଁରି
ଚକା ଚକା ଭଉଁରି
ମାମୁଁ ଘର ଚଉଁରି ।
ମୋ ନାମ ନାଁ ଗଉରି, ତୋ ନାମ ନାଁ ଶଉରି
ନାହିଁ, ତୋ ନାମ ନାଁ ଶଉରି, ମୋ ନାମ ନାଁ ଗଉରି
ଆମେ ନଈରେ ଯିବା ପହଁରି
ଠେକ ଧରିବ ନାଉରି
ଚକା ଚକା ଭଉଁରି ।

(୩) ମୋ ପେଟହେଁକାଳି—

ମୋ ପେଟହେଁକାଳି ବାଜେ
ମୋ ପେଟହେଁକାଳି ବାଜେ
ଲଙ୍ଗଳ ଦେବ
ଜୁଆଳି ଦେବ
ମୋ ପେଟହେଁକାଳି ବାଜେ । ୧ ।
ହାତୀ ଦେବ
ଛତ୍ର ଦେବ
ମୋ ପେଟହେଁକାଳି ବାଜେ । ୨ ।

(୪) ମେଘ ବରଷିଲା—

ମେଘ ବରଷିଲା ଟୁପୁରୁ ଟାପେରେ
ମାଣ୍ଡିଆ ହୋଇଲା ଗଜା
ଶୋନପୁର ଠେଇ୍ ଟମକ ବାଜିଲା
ଲେଉଟି ଅଇଲେ ରଜା । ୧ ।

ମେଘ ବରଷିଲା ଟପର ଟପର
କେୟୂର ଧଇଲା ଗଙ୍ଗା
କୋଉ ରାଇଜରେ ରହିଲେ ମୋ ରଜା
ତେଲଙ୍ଗି ବାଇଦ ବଜା । ୨ ।

ମେଘ ବରଷିଲା ଟୁପ୍ ଟାପେ
କେୟୂର ମାଇଲା ଗଙ୍ଗା
ବାଣପୁର ଠେଇ ଠମକ ଶୁଭୁଛି
ବାହୁଡ଼ି ଅଇଲେ ରଜା । ୩ ।

(୫) ଶଙ୍ଖଚିଲ—

ଶଙ୍ଖଚିଲ ମହାବଳ
ଧୋବ ଧାଉଳିଆ ପକ୍ଷୀ
ରାମଚନ୍ଦ୍ର କହି ଯାଇଛନ୍ତି
ସୀତା ବଡ଼ ଦୁଃଖୀ ।

(୬) ମଣ୍ଡପ ଖେଳ—

ଏକନ ବେକନ, ଢଉକ୍ ଡେକନ
ଓଲ, ଡୋଲ,
ମାମୁଁର, କକେଇର ବାଡ଼ିଅଡ଼େ ଗ୍ଳର ।

(୭) ଉଦୁଉଦୁମା—

ଉଦୁଉଦୁମା
ଡାଳ ଗୋଟମା
ଲହା ପାହୁରାଣି ପିତଳ ସମା,
ଅଣିକା, ଭାଇକା
ବଡ଼ଜେନା ମା ମଲା କି
ରତକ ପିଣ୍ଡୁଳା ଦେଲା କି ?
କୁଅମୂଳେ ତେଲ ଘଡ଼ି
ବାଘ ନେଲା ଗେଲ୍ କରି

ଅମ୍ବ ଗୋଟି ଖାଉ ଖାଉ
କୋଇଲି ଗୋଟି କଷା
କ ମାଡ଼ ମାଇଲୁ ଭାଇ
ଗୁର କୋଣିଆ ପଣା ।

(୮) କୋଇଲି ଖେଳ—

କୋଇଲି, କୁ କେଇଲୁ
କୋଇଲି କୁ କେଇଲୁ ।
ପାଠ ମହାଦେଇ ଗାଧୋଇ ଗଲେ
ସୁନା ଝିକ୍ ଝିକେଇଲୁ
ରୁପା ଝିକ୍ ଝିକେଇଲୁ ।

(୯) ଇଟିଲି ମିଟିଲି—

ଇଟିଲି ମିଟିଲି ଜାମୁ ଟିଲି ଟିଲି
କଟାଉ ମାଡ଼ିଲି ଗେହୁର
ସାରୁ ଗଣ୍ଡ ଖଣ୍ଡ ପିଠଜା ପାଣି
ବୋଉ ଲୋ !
ତୋର ଏଇ ଗୁଡ଼ଗଣ୍ଡ ଭଲ ।

(୧୦) ଇଟିକିଲି ମିଟିକିଲି—

ଇଟିକିଲି ମିଟିକିଲି ଫୁଟିଗଲା କାଉଁର
ଭ୍ରମର ଅମର ନାଲି ପାଇଞ୍ଜ
ନାଲି ପେଁ ପେଁ ବାଜଇ ଭୁରୀ
ଗୋଟିକ ଉପରେ ଗୋଟିଏ ହୀରା ।

(୧୧) ଏକଭରୀ—

ଏକ ଭରୀ ମଣିଷ ମରୀ
ଦୁଇ ଭରୀ କଭରୀ ଘୋଡ଼ା
ତିନି ଭରୀ ନାହିଁ ଦୋଷ
ଗୁର ଭରୀ ଘରେ ପଣ ।
ପାଞ୍ଚ ଭରୀ ନନ୍ଦଘୋଷ

(୧୨) ବଗୁଲ୍ ଖେଳ—

ବଗ ଯାଇଥିଲା ବଗ ବଣକୁ ମୋ
ବଗୁଲ୍ କାଠର୍ ବେଣା
କୋଉ ଚେଢ଼ପ ମାଇଲା ବାହୁଲି
ଛୁଡ଼ଗଲା ଦୁଇ ଡେଣା
ମୋ ବଗୁଲ୍ କାନ୍ଦେ ନାଁ ଲୋ
ତୋ ମା, କାଲ୍ ଆସଇ୍ ସିନା ।

ତୋ ମାଆ ଯାଇଛୁ ଗାଈ ଚରେଇ
ଅଇଲେ ଖାଇବୁ ପେଟ ପୂରେଇ
ଗାଈ ଚରାଠୋଉ ଅଣିବୁ ବେଲ୍
କୋଡ଼ରେ ବସାଇ କରବ ଗେଲ୍
ମୋ ବଗୁଲ୍ କାନ୍ଦେ ନାଁ ଲୋ
ତୋ ମା କାଲ୍ ଅସଇ୍ ସିନା ।

(୧୩) ହରଣ ଖେଳ—

ହରଣ ଗଲା ହରଣ
କୋଉ ଗାଁର?
ଫିହ ଦୁଆର ।
କେତେ ଟଙ୍କା ? ଅଣି ଟଙ୍କା ।
ଠିଅ କ ବସା ? —

(୧୪) କାନଧରା ଖେଳ—

ଅପଢ଼ କେ ତାପଢ଼ ପାକୁ ପାକୁ ପାନେ
ଉଡ଼ଗଲା ଚଢ଼ଆ ଧରେ ଇସ୍କା କାନ ।

# (ତିନି) —ପିଲାଙ୍କ ଆବୃତ୍ତି

## (୧) ବନ୍ଦନା—

ଥୋଲ୍ ଥନ୍ତଲ୍ ପେଟା
ନାଚଇ୍ ଗଣିଅାଁ ଗେଟା
ଯାର୍ ପିଅର ହର
ଛାର କାହାକୁ ଡର ।

## (୨) ଅରଗଡ଼ ମରଗଡ଼—

ଅର୍‌ଗଡ଼ ମର୍‌ଗଡ଼
ଝାଇଁ ଝର୍‌ଗଡ଼
ଝାଇଁକ ଝୁମ୍ପା, ବେଲ୍ ଗୋଡ଼ପା
ବେଲ୍ ଗଛର ଦାଣ୍ଡି
କୋଚଲ୍ଲ ଗୃଭଲ କାଣ୍ଡି ।
କୋଚଲ୍ଲ ଗୃଭଲ ପିଠା
ପଧାନ ମୁଣ୍ଡରେ ଚଢା ।
ପଧାନ ଯାଇଛୁ ଧାନ ବଲ୍‌କୁ
ମାର ଅଣିଥିଲ୍ଲା ଶଙ୍ଖଚଲ୍‌କୁ
ଶଙ୍ଖଚଲ୍ କଲ୍ଲା ବସା
ପାଇକାଣୀଙ୍କର ଏତେଡ଼ ଭରସା
ସମ୍ବଲପୁରଅ ଖୋଷା ।

## (୩) ଡାମର୍ କାଉ—

ଡାମର୍ କାଉରେ ଡାମର୍ କାଉ
ଉଞ୍ଚ ପରବତେ ବୋବାଉ ଥାଉ । ୧ ।
ଉଞ୍ଚ ପରବତ ଗୁଞ୍ଜୁ ଗୁଞ୍ଜିଆ
ତହିଁରେ ଅଛନ୍ତି ସାତ ଭେଣ୍ଡିଆ । ୨ ।
ସାତ ସାତ ପଣ ଚଉଦ ପଣ
ଭାଉଜକୁ ବୋଲେ କଉଡ଼ି ଗଣ । ୩ ।

କଉଡ଼ି ଗଣ୍ଡୁ ଗଣ୍ଡୁ ପାଇଲି ସ୍ୱତ
ଗ୍ରୈର ଘେନିଗଲା କଜଳପାତ । ୪ ।

ଆସ ଗୋ ମରୁଆ ଗାଧୋଇ ଯିବା
କଇଁଶି କାକୁଡ଼ି ତୋଳି ଆଣିବା । ୫ ।

କଇଁଶି କାକୁଡ଼ି ମୁଣ୍ଡିଟି ଚିତା
ଛଅ ଭାଇଙ୍କର ଛଅ ମୁକୁତା । ୬ ।

ମହିଁଅଁ ଭାଇର ଅମ୍ବିଳ କାଉ
ତା ଖାଇଗଲା ଓଲେଇ ବୋହୂ । ୭ ।

ଓଲେଇ ଯାଉଛି ବାପ ଘରକୁ
ଯାହା ଆଣିଥିବ ମୋ ଘରକୁ । ୮ ।

ମୋ ଘରଟା ତୋଲା ପୋଲା
ଷାଠିଏ ଟଙ୍କାର ବଳଦ ମଲା । ୯ ।
କୁଣ୍ଡା ପାଣି ହୋଇ ଦହାଣ୍ଡି ଗଲା । ୧୦ ।

## (୪) କଲକତଆ ଜ୍ୱାଇଁ—

ମା ଲୋ, କଲ୍‌କତଆ ଜ୍ୱାଇଁ
ବାଇଦ୍ ଆଣିଛି ଶବଦ ନାହିଁ । ୧ ।
ମାଲୋ, କଲ୍‌କତଆ ଜ୍ୱାଇଁ
ଘୋଡ଼ା ଆଣିଥିଲା ସିପେଇ ନାହିଁ । ୨ ।
ମାଲୋ, କଲ୍‌କତଆ ଜ୍ୱାଇଁ
ହାତୀ ଆଣିଥିଲା ଅଙ୍କୁଶ ନାହିଁ । ୩ ।

## (୫) କେଞ୍ଝୁଆ ଗୀତ—

ମାଲୋ ଯାଇଥିଲି ମଞ୍ଚ
ଦେଖି ଅଇଲି ପରପଞ୍ଚ
ହାତ ନଡ଼ ନଡ଼
ଗୋଡ଼ ନଡ଼ ନଡ଼

ନାକ ନଡ଼ ନଡ଼
କାନ ନଡ଼ ନଡ଼
ମାଲୋ, ମାଲୋ, ପିତା ପାଣି ମନ୍ଦେ ଚେଦ
ବାନ୍ତି ମାଡ଼ୁଛି ପିଏ ।

**(୬) କୋଇଲ ଲୋ, କୋଇଲ ଲୋ**

କୋଇଲି ଲୋ, କୋଇଲି ଲୋ ତୋ ମାଆ ତୋତେ ଖୁଏ
ହାଣ୍ଡି କୁଣ୍ଢେଇ, ମଣ୍ଡା ପୂରେଇ ଭାଡ଼ି ତଳେ ତଳେ ଯାଏ । ୧ ।
ଭାଡ଼ି ତଳେ କ କ ଫୁଲ ଅରୁଆ ମରୁଆ
ବାଡ଼ିଅଡ଼େ ଘୁଡ଼ି ଅଇଲି ସିନ୍ଦୁର ଫରୁଆ । ୨ ।
ସିନ୍ଦୁର ଫରୁଆ ଗୋଟି ହୁଆ ରେଡ଼ପ ନେଲା
ହୁଆ ରେଡ଼ପ ହାତଗୋଡ଼ ଦେଉଳ ତୋଳେଇଲା । ୩ ।
ଦେଉଳର ଗୁରପଟେ କଉଡ଼ି ଗଣେଇଲା
କଉଡ଼ିରୁ କଡ଼େ ଉଣା ହେଲାକୁ ମଞ୍ଚିଷି ବିକେଇଲା । ୪ ।
ମଞ୍ଚିଷିର ନାଁ କଣ ନାଁ ଉଲେଇ ଦୁଲେଇ
ବାପ ପୁଏ ଯାଇଛନ୍ତି କନିଆଁ ମୁଲେଇ । ୫ ।
କନିଆଁର ଶଙ୍ଖା ଦମୁଠି ଝୁମୁକୁ ଝୁମୁକୁ ବାଜେ
ବର ଘର ପଇତା ଗୋଟି ଦୁଧଭାତକୁ ସାଜେ । ୬ ।

**(୭) ଟିକି ଟିକି ଧାନ—**

ଟିକି ଟିକି ଧାନ ଶହେ ଭରଣ
ବାପାଙ୍କ ହାତରେ ସୁନା ଲିଖନ
ଭାଇଙ୍କ ହାତରେ ରୁପା ଲିଖନ । ୧ ।
ମାଆଙ୍କ ହାତରେ ଫୁଲ ଗୁଙ୍ଗୁଡ଼
ବୋହୂଙ୍କ ହାତରେ ସୁବର୍ଣ୍ଣ ଚୂଡ଼ି । ୨ ।
ବାପା ଶୋଇଛନ୍ତି ସୁନା ଖଟରେ
ଭାଇ ଶୋଇଛନ୍ତି ରୁପା ଖଟରେ
ମାଆ ଶୋଇଛନ୍ତି କବାଟ କଣ । ୩ ।

ଆମେ ଦ ଭଉଣୀ କାଯ୍ୟ କରିବା
ଗହନ ନଈକି ଡେଇଁ ପଡ଼ିବା । ୪ ।

ଗହନ ନଈରେ ଫୁଟିଛି ମଲ୍ଲି
ହାତ ବଢ଼େଇଲି ତୋଳିବି ବୋଲି । ୫ ।

ଯାହାର ମଲ୍ଲି ସେ ତୋଳି ନେଲାଣି
ଝଙ୍କାକିଆ ଶାଢ଼ୀ ଚିରି ଗଲାଣି । ୬ ।

ଝଙ୍କାକିଆ ଶାଢ଼ୀ ମୁହଁରେ ନିଆଁ
କାଲି ଯେ ଆସିବ ଗୋଟି ବଣିଆଁ । ୭ ।

ଗୋଟି ବଣିଆଁ ଯେ ଭାଇଙ୍କ ସଢ଼ୁ
ବସି ଗଢ଼େଇବ କଙ୍କଣ ଖଡ଼ୁ । ୮ ।

କଙ୍କଣ ଖଡ଼ୁ ଯେ ବୋହୂଙ୍କ ବଳା
ବାଟ ଛାଡ଼ଦିଅ ସର୍ବମଙ୍ଗଳା । ୯ ।

## (୮) ଅରଟ ବୁଢ଼ୀ—

ଅରଟ ଗାଈଁ ଗୁଈଁ ଲୋ ବୁଢ଼ୀ ତୋ
ସୂତା ଲଟେଇ କାହିଁ
ଜାଣି ନାହୁଁ କରେ କାଠେଇ ଝିଅ ମୁଁ
ନିତ ହାଟପାଳି ଯାଇ । ୧ ।

ନିତ ହାଟପାଳି ଯାଉ ଲୋ ବୁଢ଼ୀ ତୋ
କଉଡ଼ି ବୁଜୁଲି କାହିଁ
ଜାଣି ନାହୁଁ କରେ କାଠେଇ ଝିଅ ମୁଁ
ନିତ ଗୁଆପାନ ଖାଇ । ୨ ।

ନିତ ଗୁଆପାନ ଖାଉ ଲୋ ବୁଢ଼ୀ ତୋ
ଦାନ୍ତ ତ ରଙ୍ଗେଇ ନାହିଁ
ଜାଣି ନାହୁଁ କରେ କାଠେଇ ଝିଅ ମୁଁ
ପାହାନ୍ତି ପଖାଳ ଖାଇ । ୩ ।

ପାହାନ୍ତ ପଖାଳ ଖାଉ ଲୋ ବୁଢ଼ୀ ତୋ
ପେଟ ତ ଝୁରୁର ନାହିଁ
ଜାଣି ନାହୁଁ କରେ କାଠେଇ ଝିଅ ମୁଁ
ନଡ ବାଡ଼ ଘର ଯାଇ । ୪ ।

ନଡ ବାଡ଼ ଘର ଯାଉ ଲୋ ବୁଢ଼ୀ ତୋ
ଗୋଡ଼ ତ କାକର ନାହିଁ
ଜାଣି ନାହୁଁ କରେ କାଠେଇ ଝିଅ ମୁଁ
ନାଅଁକୁ ଦେଖେଇ ଥାଇ । ୫ ।

ନାଅଁକୁ ଦେଖେଇ ଥାଉ ଲୋ ବୁଢ଼ୀ ତୋ
ତଳପା ଉଷୁମ ନାହିଁ
ଜାଣି ନାହୁଁ କରେ କାଠେଇ ଝିଅ ମୁଁ
ପଟା ମାଢ଼ି ରଖି ଥାଇ । ୬ ।

## (୯) ଜହ୍ନିଫୁଲ ଠୋ ଠା—

ଜହ୍ନିଫୁଲ ଠୋ ଠା
ଜହ୍ନିଫୁଲ ଠୋ ଠା
ଚୁଟିଆ ମୂଷା କହୁ ଯାଇଛୁ
ଗୁଡ଼ଲ ମୁଠିଏ ଥୋଇ ଥା । ୧ ।

ବାଡ଼ ଅଡ଼େ ଛୁଅ କି ଦାଣ୍ଡ ଅଡ଼େ ଛୁଅ
ଚୁଟିଆ ମୂଷା କହୁ ଯାଇଛୁ
ଗୁଡ଼ଲ ମୁଠିଏ ଦିଅ । ୨ ।

ଜହ୍ନିଫୁଲ ଠୋ ଠା
ଜହ୍ନିଫୁଲ ଠୋ ଠା
ଯେ ନ ଦିଏ ଗୁଡ଼ଲ ଗଣ୍ଡେ
ତା ପୁଅଟା ଗଣ୍ଡିଆ ଟା । ୩ ।

## (୧୦) ଶିରୀ ପୁରସ୍ତମ—

ଶିରୀ ପୁରସ୍ତମ ଗୁଣ୍ଡିରୁ ଯାଉ
ଛକା ହେଉଥାଇ କୈବଲ୍ୟଧାକ । ୧ ।
ଜଗବନ୍ଧୁ ଜଗ ମାଧୋଇ 'ବାଠ-
କଉଡ଼' ଘେନାଲେ ଛାଡ଼ଇ ବାଠ । ୨ ।
ପିଲାଦିନେ ଥିଲି ମଥାରେ ଜଠ
ଏବେ କିଏ ଦେଲା ରତ୍ନ ମୁକୁଟ । ୩ ।
ଛାମୁରେ ପଡ଼ଇ ଯୋଡ଼ା ଅଲଟ
ମଣୋହି ବେଲକୁ ବାଜଇ ଘଣ୍ଟ । ୪ ।
ଏହାତେ ବରଛ ଏହାତେ ଛାଟ
ଯୋଡ଼ା ଉରୁଅଛି ପଡୁଛି ଭେଟ । ୫ ।

## ୧୧ । ଏ ମାଆ ମୋତେ ମାଇଲା—

ଏ ମାଆ ମତେ ମାଇଲା
ଘି ସରଧର କାକରି ପିଠା ଖୁଡ଼ିତଳେ ବସି ଖାଇଲା ।
ନାଁ କିଏ ଲୋ ? ଶୋର ନାମା ପୁଅ ବାଇଁଛା ।
ନାଁ କାଇଁ ଲୋ ? ଶଗଡ଼ ଉପରେ ବଇଛୁ
ପାନଗୁମଚମଚ ଖାଉଛୁ
ରଙ୍ଗ ବଟୁଆ କାଖରେ ଯାକାଟକାରତନ କର ଯାଉଛୁ ।

# (ଗ୍ର) —ବାତ୍ସଲ୍ୟ ଗୀତି

## (୧) ରଜା ଯେ ରାଉତଆ—

ରଜା ଯେ ରାଉତଆ ଅଣଆଡ଼ିଛ
କଦଳୀ ଭାଜି ଦେଲି ପଖାଳ ଭାତ । ୧ ।
କୁକୁଆଁ ପଡ଼ଥିଲେ ପୁନାଅଁ ରାତ
ପିଲା ବଇଠେ ହୋଇ ଦେଲା ଚରଚ ରେ । ୨ ।

ଚନ୍ଦ୍ରବଦନ ମୁଖ ଦେଖିଲେ ତୋର
ଘୋର ଦାରୁଣ ଦୁଃଖ ହୁଏ ପାସୋର । ୩ ।
ନାଁଅ ତ ଦେଇଥିଲେ ଫସାରୁ ବାଛୁ
ସୁନ୍ଦର ପଣ ଧନ ତହିଁକି ଗଛୁ ରେ । ୪ ।
କହୁଛି ହେଙ୍ଗୁ ହୋଇ ରହିବୁ ତୁହି
ମହମହ ମହକ ବାସିବୁ ତହିଁରେ । ୫ ।
ନାହିଁ ମୋ ଦରକାର ଠେଙ୍କା କଉଡ଼ି
ଜୀଇ ରହିଥା ବାବୁ ଅନ୍ଧ ଲଉଡ଼ି ରେ । ୬ ।

## (୨) ସତେଜନକ ଭଗବତୀ—

ସତେଜନକ ଭଗବତୀ ଚଉରେ ଦାଣ୍ଡା ବସିବ
ହାତୀ ଦାନ୍ତ ପାଲିଙ୍କିରେ ଜଗନ୍ନାଥ ଆସିବ । ୧ ।
ହସହସ ହୋଇ ମଞ୍ଚି ପହୁଣ୍ଡରେ ବସିବ
ବସନ୍ତ କୋକିଳ ପ୍ରାୟେ ବୋଉ ବୋଲି ଡାକିବ । ୨ ।
ପୋଡ଼ୁ ଏ ନାଲକ୍ଷ ବଧୂ କଏ କେତେ ସହିବ
ଜଗନ୍ନାଥ ପରି ପୁଅ ଝୁରୁଧାରେ ରହିବ । ୩ ।
ସାଙ୍ଗ ହୋଇ ଦୁଇଭାଇ ପଢୁଥାଅ ପାଠ ରେ
ସୁନ୍ଦର ଦଶଇ ତନୁ ପାନଖିଆ ଓଠ ରେ । ୪ ।
ପିନ୍ଧିଥିବ ପୀତାମ୍ବରୀ ପଡ଼ିଥିବ ଅଣ୍ଟୁକୁ
ରଜା ଘର କୁମର କି ଯାଉଅଛୁ ପେଣ୍ଠକୁ । ୫ ।

## (୩) ତୁ ମୋ କଳା କାଇଞ୍ଚ—

ତୁ ମୋ କଳା କାଇଞ୍ଚ
ସର ଲବଣୀ ମାଗୁ ତୁ ଲାଞ୍ଚ ଲୋ ।
ଯଶୋଦା ଉଭା ଦୁଆରେ ଲୋ ସଜନୀ
ଯଶୋଦା ଉଭା ଦୁଆରେ
ମୋ କୃଷ୍ଣ ଆସନ୍ତି ଗୋରୁ ପଛରେ ସେ
ଚାଲୁଥାନ୍ତି ଧୀରେ ଧୀରେ ଲୋ । ୧ ।

ସବୁ ଗୋପୀ ମୁଣ୍ଡେ ଚୂଳ ଲୋ ସଜନୀ
ସବୁ ଗୋପୀ ମୁଣ୍ଡେ ଚୂଳ
ମୋ କୃଷ୍ଣ ମୁଣ୍ଡକୁ ସୁନ୍ଦର ଦିଶଇ
କେଳ ଫୁଲ୍ ଜାମୁଡାଳ ଲୋ । ୨ ।

ସବୁ ଗୋପୀ ହାତେ ବାଡ଼ ଲୋ ସଜନୀ
ସବୁ ଗୋପୀ ହାତେ ବାଡ଼
ମୋ କୃଷ୍ଣ ହସ୍ତକୁ କେନ୍ଦୁ ଲଉଡ଼ ସେ
ଚୁଲୁଥାନ୍ତି ଚଳ ଚଳ ଲୋ । ୩ ।

## (ପାଞ୍ଚ)—ଉପଦେଶ ଗୀତି

### (୧) ନ ଯାରେ ପଢ଼ି—

ମାଳତୀ ନନ୍ଦନ ନନ୍ଦନୀ ଘିଜ
ବଚନ କହନ୍ତି ପାଶେ ବସାଇ । ୧ ।

ପ୍ରାଣଧନ ତୁମେ କୁଳକୁ ସାର
ବିଦ୍ୟା ପଢ଼ିବାକୁ ମୋ ବୋଲ୍ କର । ୨ ।

ମୋର ବୋଲ୍ କର ପ୍ରାଣ ସଙ୍ଗାତ
ଘେନ ସୁମନ ଚନ୍ଦନ ଅକ୍ଷତ । ୩ ।

ଯାଉ୍ ଯାଉ୍ ବଳା ଗୁରୁଶାଳା ଘର
ଶିରସ୍ତୀ ଦେବୀଙ୍କ ପୂଜାବିଧି କର । ୪ ।

**ଓଡ଼ିଆ, ତେଲଗୁ, ନାଗରୀ ଜାଣ**
**ନ ପଢ଼ିଲେ କାହୁଁ କରବ ଟାଣ । ୫ ।**

ମୂର୍ଖ ହେଲେ ବଳା କିଷାଣେ ପଣେ
ଲହୁଡ଼ା ଭିର ଡାର କନ୍ଧରେ ବସେ । ୬ ।

ଗୋରୁ ଛେଳ ରଖି ବଞ୍ଚନ୍ତି ଦିନ
ପାଞ୍ଚ [illegible]

ପରର ପାଣ୍ଠିରେ ବୁହନ୍ତି ଛତା
ରଜତ ଛୁଲେ ହୋନ୍ତି ଲମ୍ବ ହତା । ୮ ।

ଶନିବାର ଗଣ୍ଡା ଚଉଠି ବୋଡ଼ି
ମାସ ନ ପୂରୁଣୁ ତନ କଉଡ଼ି । ୯ ।

ଯେବଣ ମାଉସୀ ରଙ୍କୁଣି ବୁଢ଼ୀ
ପୁଅକୁ ବୋଲଇ ନ ଯାରେ ପଢ଼ି । ୧୦ ।

## ( ୬ ) ଗୁଟଶାଳୀର ବେଭାର—

କହୁଛନ୍ତି କୃଷ୍ଣଚନ୍ଦ୍ର ମାତାଙ୍କ ଅଗର
କେ କହି ପାରିବ ଗୁଠଶାଳୀର ବେଭାର । ୧ ।

ଖଡ଼ି ଗୁଆ ବାଲଗୁଆ ମାନ୍ଦା ଗୁଆ ମାନ
କ୍ଷଣେକ ଭିତରେ ଗୁଆ ଦିଅ ଗୋ ବହନ । ୨ ।

ଗୋବନ୍ଦେ ବୋଇଲେ ମାଗୋ ବହୁତ ଯେ ଶାସ୍ତି
ଗୋଡ଼ ଲଟିଗଲେ ଉଭା କରି ନ ଦିଅନ୍ତି । ୩ ।

ଘରୁ ଯେତେବେଳେ ମାଏ ଯାଉଁ ପାଠ ପଢ଼ି
ଘଡ଼ିଏ ଉଛୁର ହେଲେ ଖାଉଁ ବେତ ବାଡ଼ି । ୪ ।
ନାୟକଙ୍କ ଅଗରେ ଯେ ଉଭା କରାବନ୍ତି
ନାକ ବାଲ କାଟିକରି କୁଆକୁ ଦିଅନ୍ତି । ୫ ।
ଚରଣେ ଦିଅନ୍ତି ମାଗୋ ମରୁଆ ସାଙ୍କୋଳି
ରୈଦ୍ର ପ୍ରାୟ କରି ମାଗୋ କେତେ ମାଡ଼ ମାରି । ୬ ।

ଛନ ଛନ ମନ ମାଗୋ ହୁଅଇ ଅସ୍ଥିର
ଘଣ୍ଟେଣେ ପିଟିଣ ଧରାବନ୍ତି ନାକ ବାଳ । ୭ ।
ଜଗନ୍ନାଥ କହୁଛନ୍ତି ମାତାଙ୍କ ଅଗର
ଯମର ଦୁଆର ପ୍ରାୟେ ଗୁଠଶାଳୀ ଘର । ୮ ।
ଝାଳରେ କର୍ଦ୍ଦମ ମାଗୋ ହୁଅଇ ଶରୀର
[illegible]

ନୀଳାମ୍ବର ଭାଇ କୃ ଗୋ ସଙ୍ଗତରେ ଘେନି
ନାଶି ଘଡ଼ିଏକ ଥାଉଁ ଯାଉଁ ଭାଇ ବେନି । ୧୦ ।

ଝିକଏ ଉତ୍ଖୁର ମାଗୋ ହୁଏ ଯେଉଁ ଦିନ
ଝାଙ୍କ ଖେଳ କହୁଛନ୍ତି ଗୃହ ପୁଏମାନ । ୧୧ ।

ଠିଆ ଯେ ହୋଇଲେ ମାଗୋ 'ଭଣ୍ଡ' ଯେ ବୋଲନ୍ତି
ଠେକା ବାନ୍ଧିଥିଲେ ଗୁଆ ବଳେ ସେ ଖାଅନ୍ତି । ୧୨ ।

ଡରେ ଥରହର ମାଗୋ କମ୍ପୁଥାଏ କାୟେ
ଡାକ ନ ପଢ଼ିଲେ ବେତ ବାଜଇ ଯୋଡ଼ାୟେ । ୧୩ ।

ଢାଳେ ହେଁ ଅବସ୍ଥା ମାଗୋ ବିଦ୍ୟା ପଢ଼ିବାର
ଢଳଢଳ ନୟନରୁ ବହେ ଅଶ୍ରୁଧାର । ୧୪ ।

ଅଣ ଯେ ଅୟୁତ ମାଗୋ ହୁଅଇ ଶରୀର
ଅଣ୍ଟୁ ଗଣ୍ଠି ଲାଗି ମାଗୋ ବହେ ଶ୍ରମ ନୀର । ୧୫ ।

ତରଣ ଦିନରେ ଅଷ୍ଟାଦିନ ନାହିଁ ପାଠ
ତେବେ ସେ ଗୁରୁ ଆମ୍ଭଙ୍କୁ କରନ୍ତି ଅକଟ । ୧୬ ।

ଥିଲା ଗୃହଶାଳୀ ରେ ଗୋ ଭଲ ହୋଇଥାଇ
ଥିଲା ଗୃହ ନ ଥିଲାରୁ ଖେଳ ଯେ କହଇ । ୧୭ ।

ଦୁଇ ବୋଲି ଧାରଣା ଯେ ଅଛି ତହିଁ ଭଲେ
ଦୁଇବେତ ପିଟନ୍ତି ଯେ ବାଡ଼ି ଘର ଗଲେ । ୧୮ ।

ଧୂଳିର ଚିତାଏ ମାଗୋ ନ ଥିଲେ କପାଳେ
ଧରି ଗୃହପୁଏ ଗୁଆ କରୁଥାନ୍ତି ବଳେ । ୧୯ ।

ପନ୍ଦର ଦିନରେ ମାଗୋ ପ୍ରତିପଦା ହୋଇ
ପୋଥି ଘେନି ସବୁ ପୁଏ ଭିକ୍ଷାମାଗି ଯାଇ । ୨୦ ।

ଫେରି ଫେରି ସବୁ ଘରୁ ଯାହା ପାଇଥାଉଁ
ଫୁଲଣା ହୋଇଣ ତାହା ଗୁରୁପାଶେ ଦେଉଁ । ୨୧ ।

ବୁଲି ବୁଲି ଆନନ୍ଦ ଯେ ହୋଇଲୁଁ ବହୁତ
ବନ୍ଦଘରୁ ଫିଟିଆଉଁ ସେଦିନ ମାନକ । ୨୨ ।

ଭାତ ଭୁଞ୍ଜି ଅଇଲ୍ଲ ଯେ ହୋଇଲା ଉଛୁର
ଭୟ ଯେ ପଶିଲା ଆମ୍ଭ ହୃଦୟ ଭିତର । ୨୩ ।

ମାୟାଧର ବଚନେ ଯେ ମାୟେ କହୁଛନ୍ତି
"ମନେ ଭ୍ରାନ୍ତ ନ କରବୁ ବାବୁ ଶିଘ୍ରପଢ । ୨୪ ।
"ଯଦୁକୁଳଚନ୍ଦ୍ର ବାବୁ ହୋଇବୁ ରେ ତୁହ
"ଯଜୁର୍ବିଦ୍ୟା ଶିଖିବୁ ତୁ ରାମର କହ୍ନାଇ । ୨୫ ।
"ରାଜନ ହୋଇବୁ ବାବୁ ମଥୁରା ନଗରେ
"ରାଜ ସିଂହାସନେ ବାବୁ ବସିବୁ ତୁ ଭଲେ । ୨୬ ।
"ଲଜ୍ଜା ନ କରବୁ ବାବୁ ବିଦ୍ୟା ପଢ଼ିବାରେ
"ଲୟେ ସେ ଗୁରୁଙ୍କୁ ମାନ୍ୟ କରଥିବୁ ଭଲେ" । ୨୭ ।

ବୋଧ ଶୁଣି ବନମାଳୀ ପଢ଼ିବାକୁ ଗଲେ
ବହୁତ ହରଷ ହୋଇ ପଢ଼ି ସେ ବସିଲେ । ୨୮ ।
ସାତ ଦିନ ସାତ ରାତ ପଢ଼ିଲେ ମୁରାରି
ସବୁ ଶାସ୍ତ୍ର ପଢ଼ିଲେ ଯେ ଓଷ୍ଠପୋଷ୍ଟି କରି । ୨୯ ।

( ସମସ୍ତ ସଂଗ୍ରହ—ନରସିଂହପୁର )



# ଗ୍ରାମ୍ୟ ବନ୍ଦନା ଗୀତିକା

୧ । ବାଞ୍ଛାବଟ—

ସୀତମ୍ବା ବୋଲନ୍ତି ବାଞ୍ଛାବର
ମନୋବାଞ୍ଛା ମୋର ସିଦ୍ଧକର
ଚତୁର୍ଦ୍ଦଶ ଲୋକେ
ଯେତେକି ହୋଇଛନ୍ତି
ପର ଉପୁଆର ଏହି ସାର,
ଗୋ ବାଞ୍ଛାବଟ
ଘେନ ଘେନ ମୋ ବିନତି
ଫେଡ଼ କଷ୍ଟ ଗୋ । ୧ ।

ତିନି ଭୁବନରେ ମୋର ପତି
ଏକାନ୍ତେ ହୋଇବେ ଚକ୍ରବର୍ତ୍ତୀ
ବୀରପଣକୁ କେ
ସମାନ ନୋହିବେ
ସୁଖେ ଭୁଞ୍ଜୁଥିବେ ସତ୍ତମିନୀ,
ଗୋ ବାଞ୍ଛାବଟ
ଘେନ ଘେନ ମୋ ବିନତି
ଫେଡ଼ କଷ୍ଟ ଗୋ । ୨ ।

ଶାଶୁ ଶଶୁର ମୋ ଅଯୋଧ୍ୟାରେ
ସର୍ବ ଶୁଭେ ଥିବେ ନିଶ୍ଚିନ୍ତରେ
ଭରଥ ରାଜା ହୋଇ
ରାଜ୍ୟ ପାଳୁଥିବେ
ଶତ୍ରୁଘନ ଘେନି ସଙ୍ଗତରେ,
ଗୋ ବାଞ୍ଛାବଟ
ଘେନ ଘେନ ମୋ ବିନତି
ଫେଡ଼ କଷ୍ଟ ଗୋ । ୩ ।
ବଟଗଛ ମୂଳେ ବଇଦେହୀ
ବଟକୁ ନମସ୍କାର ହୋଇ
ବିଧବା ଗଣିତା ମୁହିଁ ନୋହି
ଯୁଗେ ଯୁଗେ ଥିବି ଦେହ ବହି
ପିତା ମୋର ପରଂବ୍ରହ୍ମ ଭେଟ ବେଳେ
ଆଉ ବା ଅଧିକ କି ମାଗିବି,
ଗୋ ବାଞ୍ଛାବଟ
ଘେନ ଘେନ ମୋ ବିନତି
ଫେଡ଼ କଷ୍ଟ ଗୋ । ୪ ।

( ରଚନା—ପୂର୍ଣ୍ଣ )

## ୨ । ଦେବୀ ଗୋ

ଜୟ ତୁ ସିଦ୍ଧ 'ତାରିଣୀ'
ନିଶା କାଳେ ତୁମେ କର ଭ୍ରମଣି
ଦେବୀ ଗୋ
ତ୍ରିଶୂଳ ସିଂହବାହିନୀ । ୧ ।
ଦନ୍ତେ ଧରିଛୁ ତରଣି
କରପଦ୍ମ ଯୋଡ଼ି ଜଣାଉଅଛୁ
ଦେବୀ ଗୋ
ପିଠାଇନୁ ଅଭିମାନ । ୨ ।

ମାଗି ତ ଯାଇ ନ ଥିଲି
ଯାଚ କରି ଦେଲୁ ସ୍ୱାର୍ଥୁକ ଫଳ
ଦେବୀ ଗୋ
ସଂସାରୁ ବାହାର ହେଲି । ୩ ।
ବାପ କୋଉ ଲୋଭେ ଗଲା
ବଡ଼ କୁଳ ବୋଲି ଭସାଇ ଦେଲା
ଦେବୀ ଗୋ
କରମରେ ଏହା ଥିଲା । ୪ ।
ଏଇଥା ମାଗୁଛି ତତେ
ହାତେ କାଚ ଥିବ
ଜୁଡ଼େ ମାଛ ଥିବ
ଦେବୀ ଗୋ
ଆହ୍ୟ ତେଙ୍ଗୁଣ୍ଟି ବାଜିବ ମୋତେ । ୫ ।
ଏଇଥା ମାଗୁଛି ତୋତେ
ହାତେ କାଚ ଥିବ
ଜୁଡ଼େ ମାଛ ଥିବ
ଦେବୀ ଗୋ
ଷୋଳ ଲଭ ହେବ ମୋତେ । ୬ ।
(ରଚନା—କେନ୍ଦୁଝର)

## ୩ । ବିମଳା ସ୍ତୁତି

ବିମଳେଇ ବିମଳେଇ
ହେଉଥାଇ ମୁହିଁ
ବିମଳାଙ୍କ ଠାରୁ ମୋତେ
ଅନ୍ୟଗତି ନାହିଁ । ୧ ।
ଯୋଡ଼ ଯେ, କମଳା ମା ଗୋ
ପଦ୍ମରେ ନୂପୁର
ଗୁହିଁ ଦେଲି ଖଣ୍ଡେ ଦୂରୁଁ
ଦିଶୁଥିଲା ଚୂଳ । ୨ ।

କଳା ଲୁଗା ଶାଢ଼ୀ ମା ଗୋ
ପିନ୍ଧନ୍ତି ସେ କାଛୁ
ସୁନା ଚିତା ରୂପା ଆଖି
ଶ୍ରୀ ମୁଖରେ ଅଛୁ । ୩ ।

ବାହାବଡ ଜଳଅର
ଶହେ ସୁନା ଚାଡ଼
ହୃଦରେ ରତନ ହାର
ଦିଶଇ ସୁନ୍ଦର । ୪ ।

ମନ୍ଦ ମନ୍ଦ ହସ ମାଗୋ
ପାଉଅଛୁ ଶୋଭା
ମୁକୁତା ପାଶରେ ଶୋହେ—
ଅଛୁ ଦିବ୍ୟ ଗଭା । ୫ ।

ବାଇଶି-ପାହାଚ ଠେଇ
ଠିଆହୋଇ ଗୁହିଁ
ମର୍ଜ୍ୟାକ ଛନ ଛନ
ଜମଲାଙ୍କ ଠେଇଁ । ୬ ।

ଜଗନ୍ନାଥେ ବାପା ମୋର
ଜମଲେଇ ମାଆ
ସଙ୍କଟ ପଡ଼ିଲା ବେଲେ
ହୋଇଥିବେ ସାହା । ୭ ।

ପଦ୍ମପାଦେ 'ଚରଣ' ମୁଁ
ପଶିଲି ଶରଣ
ହିଇ ଜମଲେଇ ମୋତେ
କର ଉଦ୍ଧାରଣ । ୮ ।

( ରଚନା—ପିପିଲ )

## ୪ । ଜଗନ୍ନାଥ

ଗୋଡ଼ ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରମା—ସତ ମୋ ବଚନ,
ଜଗନ୍ନାଥଙ୍କର 'ଶରଧାବାଲି' ଗୃଲିବାରେ ମନ
ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କର ଶରଧାବାଲି ନିତି ଗୃଲୁଥିବି । ୧ ।

ଆଖି ଗୋଟି ଥାଇ ବୋଇଲା
ସତ ମୋ ବଚନ ରମା, ସତ ମୋ ବଚନ
ଜଗନ୍ନାଥଙ୍କର ଫେଣ୍ଟା ଗୋଟି ପିନ୍ଧିବାରେ ମନ
ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କର ଫେଣ୍ଟା ଗୋଟି ନିତି ପିନ୍ଧୁଥିବି । ୨ ।

ହାତ ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରମା—ସତ ମୋ ବଚନ
ଜଗନ୍ନାଥଙ୍କର ଗରୁଡ଼ ଖୁମ୍ବ କୁଣ୍ଢାଇବାରେ ମନ
ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କର ଗରୁଡ଼ ଖୁମ୍ବ ନିତି କୁଣ୍ଢାଉଥିବି । ୩ ।

ଅଙ୍ଗୁଠିଗୁଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରମା, ସତ ମୋ ବଚନ
ଜଗନ୍ନାଥଙ୍କର ଧଣ୍ଡାମାଳ ଗୁନ୍ଥିବାରେ ମନ
ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କର ଧଣ୍ଡାମାଳ ନିତି ଗୁନ୍ଥୁଥିବି । ୪

ତୁଣ୍ଡ ଗୋଟି ଥାଇ ବୋଇଲା
ସତ ମୋ ବଚନ ରମା, ସତ ମୋ ବଚନ
ଜଗନ୍ନାଥଙ୍କର ବଗଡ଼ା ଅନ୍ନ ଖାଇବାରେ ମନ
ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କର ବଗଡ଼ା ଅନ୍ନ ନିତି ଖାଉଥିବି । ୫ ।

ନାକ ଗୋଟି ଥାଇ ବୋଇଲା
ସତ ମୋ ବଚନ ସ୍ୱାମୀ,
ସତ ମୋ ବଚନ,
ଜଗନ୍ନାଥଙ୍କର ବାସନା ଭୋଗ
ଶୁଙ୍ଘିବାରେ ମନ
ମୁଁ କ୍ଷେତ୍ର ଯିବ
ଜଗନ୍ନାଥଙ୍କର ବାସନା ଭୋଗ
ନିତ ଶୁଙ୍ଘୁଥିବ । ୨ ।
ଆଖି ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ସ୍ୱାମୀ, ସତ ମୋ ବଚନ
ଜଗନ୍ନାଥଙ୍କର ଚକାଡୋଳା ଦେଖିବାରେ ମନ
ମୁଁ କ୍ଷେତ୍ର ଯିବ
ଜଗନ୍ନାଥଙ୍କର ଚକାଡୋଳା ନିତ ଦେଖୁଥିବ । ୭ ।
କାନ ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ସ୍ୱାମୀ
ସତ ମୋ ବଚନ,
ଜଗନ୍ନାଥଙ୍କର ଘଣ୍ଟା ମାଡ଼
ଶୁଣିବାରେ ମନ
ମୁଁ କ୍ଷେତ୍ର ଯିବ
ଜଗନ୍ନାଥଙ୍କର ଘଣ୍ଟାମାଡ଼
ନିତ ଶୁଣୁଥିବ । ୮ ।
ମୁଣ୍ଡ ଗୋଟିକ ଥାଇ ବୋଇଲା
ସତ ମୋ ବଚନ ସ୍ୱାମୀ
ସତ ମୋ ବଚନ,
ଜଗନ୍ନାଥଙ୍କର କୂପ ଜଳେ
ବୁଡ଼ିବାରେ ମନ
ମୁଁ କ୍ଷେତ୍ର ଯିବ
ଜଗନ୍ନାଥଙ୍କର କୂପ ଜଳେ
ନିତ ବୁଡ଼ୁଥିବ । ୯ ।
( ରଚନା—ବଡାମ୍ବା )

## ୫ । ଦୁର୍ଗାସ୍ତୁତି—

୧- ଶ୍ରୀ ଦୁର୍ଗାଙ୍କ ସ୍ତୁତି ଯେ ପଢ଼ନ୍ତି ରାମ ରାଏ—
'ଜୟ ତୁ ଦୁର୍ଗା ମାଗୋ ଅମର ବସ୍ତୁ କାଏ ।
୨- 'ଜୟ ତୁ କାତ୍ୟାନୀ ମାଗୋ ଅନାଦ୍ୟ ମାହେଶ୍ୱରୀ
ସତ୍ୟ ଯୁଗରେ ତୁ ଗୋ ମହିଷା ଦର୍ପ ଦଳି ।
୩- 'କାଳୀ କଙ୍କାଳି ମାଗୋ ବିକଟା ବିକଟାଳି
ଶିରରେ ସିନ୍ଦୂର ଚଢା ମାଗୋ ହସ୍ତରେ ଜପାମାଳି ।
୪- 'ତଳହଳ ନୟନୀ ମାଗୋ ବଙ୍କ ତୋ ଗୃହାଣୀ
କଜଳର ରେଖା ମାଗୋ ଶୋଭା ପାଏ ପୁଣି ।
୫- 'ହରର ଘରଣୀ ମାଗୋ କୈଳାସ ମଣ୍ଡନୀ
ବିନ୍ଧ୍ୟଗିରିବାସିନୀ ମାଗୋ ଦୁରିତ ନିବାରଣୀ ।
୬- 'ଅନନ୍ତ କୋଟି ବ୍ରହ୍ମାଣ୍ଡେ ମାଗୋ ଅସୁର ମାରିଲୁ
ଚଉଦ ଭୁବନେ ମାଗୋ କଥା ରଖାଇଲୁ ।
୭- 'ବସୁନ୍ଧରା ତଳେ ମାଗୋ ପାପୀରକ୍ତ ଢାଳି
ରଣରଙ୍ଗ ମଧ୍ୟେ ମାଗୋ କରୁ ମତ୍ତ କେଳି !

୮- 'ଅଯୋଧ୍ୟା ନଗରେ ଦଶରଥ ନୃପବର
ତାହାଙ୍କ ତନୟ ମାଗୋ ଅଟଇ ରଘୁବୀର ।
୯- 'ରାଜ୍ୟଭାର ତେଜି ମାଗୋ ହୋଇଲି ବନବାସୀ
ବଇଦେହୀ ହରାଇଲି ପଞ୍ଚବଟୀ ବନେ ପଶି ।
୧୦- 'ବାରିନିଧି ବାନ୍ଧିଲି ମାଗୋ ବାନର ବଳ ଘେନି
ସୁବଳୟା ରହିଲି ମାଗୋ ପଦାଗଡ଼ ଜିଣି ।
୧୧- 'ଅଜେୟଗଡ଼ ଲଙ୍କା ମାଗୋ ଅଟଇ ଦୋସାଧୁ
ଅମର ବର ପାଇଛି ମାଗୋ ରାବଣ ତନେକୁ ।
୧୨- 'ମୋ ନର ବାନରେ ମାଗୋ ତାହାଙ୍କ ଭକ୍ଷ୍ୟପାନ
ତାହାଙ୍କୁ କେମନ୍ତେ ମାଗୋ କରିବି ନିଧନ ।'

୧୩- ଏମନ୍ତ ସ୍ତୁତି ପଢ଼ୁଁ କଲେକ ଦାଶରଥି
ପ୍ରସନ୍ନ ହୋଇଲେ ଆସି ଶ୍ରୀ ଦୁର୍ଗା ପାର୍ବତୀ ।

୧୪- "କାହିଁପାଇଁ ବାଳ ପୁଏ ଚିନ୍ତାକଲ ମୋତେ
କି ବର ମାଗୁଚ ମାଗ ଦେବି ମୁଁ ତୁରତେ ।"

୧୫- ଚେତନା ପାଇଣ ରାମ କହୁଛନ୍ତି ବାଣୀ
'ଶୁଣ ଗୋ ଭଦ୍ରେ ମାତ ଜଗତ ଜନନୀ ।

୧୬- 'ରାଜପୁତ୍ର ହୋଇ ମାଗୋ ବନବାସ କଲି
ବନେ ଯେତେ ଫଳମୂଳ ଆହାର ଭକ୍ଷିଲି ।

୧୭- 'ତୃଣା ଶେଯରେ ମାଗୋ ବଞ୍ଚୁଥିଲି ଦିନ
ତେଣୁ କରି ଦୈବ ମୋତେ ଦେଲାଟି କଷଣ ।

୧୮- 'ଶ୍ରଦ୍ଧାକରି ଜାନକୀ ଯେ ବୋଇଲା ମୃଗୀ ଆଣ
ତତକ୍ଷଣେ ଘେନିଗଲି ଧନୁର୍ଜ୍ୟା ବାଣ ।

୧୯- 'ବାଣ ବିନ୍ଧନ୍ତେ ମୃଗୀ ଲକ୍ଷଣେ ଡାକଦେଲା
ତକ୍ଷଣେ ଯେ ସଉମିତ୍ରି—ମୋ ପାଶକୁ ଗଲା ।

୨୦- 'ଏକା ଦେଖି ଜାନକୀକି ନେଲାଟି ରାବଣ
ତାହାର ଘର ମାଗୋ ସମୁଦ୍ର ମଧ୍ୟରେଣ ।

୨୧- 'ପକ୍ଷୀଜଟା ମୁଖୁଁ ମାଗୋ ବାରତା ପାଇଲି
ସତ ନୁହିଁ ବୋଲି ମୁଁ ଯେ ଦୂତ ବରଗିଲି ।

୨୨- 'ସେହିଦୂତଙ୍କ ମୁହିଁ ମାଗୋ ହୋଇଲି ଉଠକାଯ୍ୟୀ
ଲଙ୍କାର ଗଡ଼କୁ ମୁଁ ଗୋ କଲି କଟକାଇ ।

୨୩- 'ବାନର ବଳ ବିନୁଁ ମାଗୋ ଅନ୍ୟ ନାହିଁ ସାହା
ପାପିଷ୍ଠ ରାବଣ ଯେ ଅଟଇ ବିଂଶବାହା ।

୨୪- 'ଇନ୍ଦ୍ରଜିତ ନାମେ ମାଗୋ ତାହାର କୁମର
ସେହି ମୋତେ ପେଶିଚ ମାଗୋ ନାଗପାଶ ଶର ।

୨୫- 'ନାଗଙ୍କର ଜ୍ୱାଳା ମାଗୋ ସହି ନ ପାରିଲି
ତେଣୁ କରି ତୋତେ ମାଗୋ ସୁମରଣା କଲି ।

୨୬- 'ସଙ୍କଟ କାଳରେ ମାଗୋ ସୁମରୁଚି ତୋତେ
ସଙ୍କଟତାରଣୀ ମାଗୋ ଦୟାକର ମୋତେ' ।

୨୭- ଏତେ ଶୁଣି ଦେବୀ ଯେ ତୁଷ୍ଟ ହୋଇଥିଲେ
ଶ୍ରୀରାମଙ୍କୁ 'ଅସ୍ତୁ' ଯେ କରିଣ ବର ଦେଲେ ।

୨୮- ତୁମେ ଏବେ ଗରୁଡ଼ଙ୍କୁ ସୁମରଣା କର
ରମ୍ୟେକ ଦ୍ୱୀପରେ ଯେ ଅଛଇ ତାର ଘର ।
୨୯- 'ଖଗପତି ଆସନ୍ତେ ଯେ ନାଗ ପଳାଇବେ
ପାପିଷ୍ଠ ରାବଣ ଏହା ଶୁଣିଲେ ମରିବେ ।
୩୦- 'ଏମନ୍ତେ ଯେ ବଳଖିନେ ବଂଚୁଥିବ ଧନ
ଆଜକୁ ଯେ ସାତଦିନେ ମରିବ ରାବଣ ।'

୩୧- ଏତେ କହି ଦେବୀ ଯେ ଅନ୍ତର୍ଦ୍ଧାନ ହେଲେ
ରାମ ଲକ୍ଷ୍ମଣ ଦୁହେଁ ଚେତନା ପାଇଲେ ।
୩୨- ଗରୁଡ଼ଙ୍କୁ ସୁମରଣା କଲେକ ଦାଶରଥି
ରମ୍ୟେକ ଦ୍ୱୀପରେ ଥାଇ ଜାଣିଲେ ଖଗପତି ।
୩୩- ଖଗପତି ଆସନ୍ତେ ଯେ ନାଗେ ପଳାଇଲେ
ରାମ ଲକ୍ଷ୍ମଣ ଦୁହେଁ ବନ୍ଧନ୍ତୁ ଫିଟିଲେ ।
୩୪- ଧନୁଶର ଧରି ରାମ ଯୁଦ୍ଧକୁ ଗମନ
ବଳରାମ ଦାଶ ଏହା ପଶିଲ୍ଲ ଶରଣ ।

( ରଚନା—ପୁରୀ )

## ୬ । ହରିହର

ଜଗତଜନନୀ ମାଗୋ ନମସ୍ତେ ଅଭୟା
ହରର ଘରଣୀ ମାଗୋ କରିବଟି ଦୟା । ୧ ।
ଏଥୁ ଅନନ୍ତରେ ଜନେ ଶୁଣ ମନଦେଇ
ଏକାନ୍ତରେ ବସିଛନ୍ତି ଲକ୍ଷ୍ମୀ ମହାମାୟୀ । ୨ ।
ମଉନ ହୋଇଣ ଜଗନ୍ନାଥେ ହସ ହସ
ପାର୍ବତୀ ଦେବୀଙ୍କି ଲକ୍ଷ୍ମୀ କଲେ ପରିହାସ । ୩ ।

ଲକ୍ଷ୍ମୀ—କେଉଁଠାରେ ବିଶ୍ୱନାଥେ ମାଗୁଥିଲେ ଭିକ ?
ପାର୍ବତୀ—ମୁରଲୀ ବାଇଲେ ଯହିଁ ବୃନ୍ଦାବନ ଯାକ ଗୋ । ୪ ।
ଲକ୍ଷ୍ମୀ—ବଳଦ ଗଉଡ଼ ବୁଢ଼ା ଜୀଇଛନ୍ତି ଠିକ ?
ପାର୍ବତୀ—ଗାଈ ବଳଦଙ୍କ କଥା ଗଉଡ଼େ ଜାଣନ୍ତି ଗୋ । ୫ ।

ଲକ୍ଷ୍ମୀ—ନାଗେନ୍ଦ୍ରଭୂଷଣ ତାଙ୍କ ସର୍ବ ଶୁଭେ ଠିକ ?
ପାର୍ବତୀ—ତହିଁ ବସି ଅଛୁଥିବେ ଦେଖିବ ଶ୍ରୀପତ ଗୋ । ୬ ।
ଲକ୍ଷ୍ମୀ—ବେଲପତ୍ରି ଧେନ୍ତା ହର ହୋଇଥାନ୍ତି ବେଶ
ପାର୍ବତୀ—ଶ୍ରୀକୃଷ୍ଣ ତୁଳସୀ ଚୂଳେ ଥାଏ ବହୁପୁଷ୍ପ ଗୋ । ୭ ।
ଲକ୍ଷ୍ମୀ—ତାଣ୍ଡବ ପଣ୍ଡିତ ପରା କରୁଥିଲେ ନୃତ୍ୟ ?
ପାର୍ବତୀ—ବଳୀର ଦୁଆରେ ଯେବେ ମାଗୁଥିଲେ ଭିଖ ଗୋ । ୮ ।
ଲକ୍ଷ୍ମୀ—କି ଯୋଗେ ମୁକୁତାମାଳ ହୃଦେ ଛନ୍ତି ବହ୍ନି ?
ପାର୍ବତୀ—ରଙ୍ଗପଙ୍ଗୁ ଭୂଷଣ ତ ହୋନ୍ତି ତମ ସାଇଁ ଗୋ । ୯ ।
ଲକ୍ଷ୍ମୀ—କପିଳାଶ କନ୍ଦରେ ଯେ ଥିଲେ ତୁମ୍ଭ ସାଇଁ
ବାର ବରଷ ଜଟା ଥିଲେ ଶିରେ ବହି ଗୋ । ୧୦ ।
ପାର୍ବତୀ—ତୁମ୍ଭର ବଲ୍ଲଭ ପରା ଅଯୋଧ୍ୟାଠାକୁର
ଲେଉଡ଼ ଅଣି ମୃଗଛାଲ ମାଇଲେ ଦଶଶିର । ୧୧ ।
ଲକ୍ଷ୍ମୀ—ପର୍ବତନନ୍ଦନୀ ମାଗୋ ବଚନ ନିଠୁର
ତୁମ ଯୁକତକୁ କଏ ଦେବଟି ଉତ୍ତର ଗୋ । ୧୨ ।
ପାର୍ବତୀ—ସାଗର ଦୁଲଣୀ ମାଗୋ କେତେ କହ ବାଣୀ
ପାଣି ପର ଯୁକତକୁ ଦେଉଅଛ ଭଣି ଗୋ । ୧୩ ।

ଲକ୍ଷ୍ମୀ ପାରବତୀ ଦୁହେଁ ଲଗି ଥିଲେ କଳି
ତୁରତେ ମିଳଲେ ସଦାଶିବ ବନମାଳୀ ଯେ । ୧୪ ।
ଅମର ଚରିତ ତୁମେ ଅଛତ ପକାଇ
କାହିଁ ପାଇଁ ଦୁଇ ସଖି ହୁଅ କୁହାକୁହି ଗୋ । ୧୫ ।
ହରିହର ଅମ୍ଭା ଅମ ନୁହେଁ ଭିନ୍ନାଭିନ୍ନ
ଥିର କର ନେନେ ଦୁଇ ସଖି ତୁମେ ଚିହ୍ନ ଗୋ । ୧୬ ।
ଏତେ ବୋଲି ହରିହର ଦୁହେଁ ଗଲେ ମିଶି
ତାହା ଦେଖି ଅନନ୍ଦେ ଚଳଲେ ବେନି ସଖି । ୧୭ ।

(ରଚନା—ଭୁବନେଶ୍ୱର)

## ୬ । ମୃଗୁଣୀ ସ୍ତୁତି

ସୁବାହୁ ବୋଇଲେ ଯେ ଏକଇ ଘୋର ବନ
ହର ପାର୍ବତୀଙ୍କର ଯେ ଅଟଇ କ୍ରୀଡ଼ା ସ୍ଥାନ । ୧ ।
ଭାଗ୍ୟବତୀ ହରଣୀ ଚରଇ ତହିଁ ନିତ
ମହାଦେବ ପ୍ରସାଦୁଁ ନ ଥାଏ ଭୟଭ୍ରାନ୍ତ । ୨ ।
ଗର୍ଭବାସ ହେତୁ ତାର ଅଳସ ଗମନ
ସଙ୍ଗତେ ଅଛନ୍ତି ବେନି ବାଳୁତ ନନ୍ଦନ । ୩ ।
ଦଇବ ବିପାକ କଥା କେ କରିବ ଆନ
ଯାହା ସେ କପାଳେ ଧାତା କରିଛି ଲେଖନ । ୪ ।

ଏକ ଦିନେ ହରଣୀ ବନସ୍ତେ ଚରୁଥିଲା
ବିରୁପାକ୍ଷ ଶବର ଯେ ସେ ସ୍ଥାନେ ମିଳିଲା । ୫ ।
ଦେଖିଲା ହରଣୀ ସଙ୍ଗେ ଛନ୍ତି ପିଲା ବେନି
ବିଧାତା ସୁମରି ଯେ ମାଇଲା ମୁରୁଧୁନି । ୬ ।
ଚଉପାଶେ ଜାଲବାଡ଼ ପାତିଲା ହରଷେ
ପଛରେ ଦୋହରି ଅଗ୍ନି ଲଗାଇଲା ରୋଷେ । ୭ ।
ନିଜେ ଧନୁ ଧରିଣ ଯେ ଦ୍ୱାର ନିରୋଧିଲା
ଧରି ମାରି ବୋଲିଣ ଶ୍ୱାନକୁ ପେଷି ଦେଲା । ୮ ।
ନିଶ୍ଚିନ୍ତ ହୋଇଣ ଯେ ହରଣୀ ଚରୁଥିଲା
ମନୁଷ୍ୟର ରବ ଶୁଣି ବଦନ ଟେକିଲା । ୯ ।
ଚୌଦିଗ ଗୃହିଁ ତରସ୍ତ ହୋଇଲା ହରଣୀ
ମୂର୍ଚ୍ଛାଗତ ହୋଇଣ ଯେ ପଡ଼ିଲା ଧରଣୀ । ୧୦ ।
ସଚେତ ହୋଇଣ ପୁଣି ମନେ ବିଚାରଇ
କେମନ୍ତ ପ୍ରକାରେ ଏଥୁ ପଳାଇବି ମୁହିଁ । ୧୧ ।

ଅଗକୁ ଗଲେ ଶବର ବିନ୍ଧିବ ଯେ ଶର
ପଛକୁ ଗଲେଣ ପୋଡ଼ି ମରିବି ଅଗ୍ନିର । ୧୨ ।
ଆନ ଦିଗେ ଗଲେ ଯେ ପଡ଼ିବି ଜାଲେ ଯାଇଁ
ଏଥି ରହିଥିଲେ ଶ୍ୱାନ ଧରିବ ମୋ ଦେହ । ୧୩ ।

ମୋହ ସଙ୍ଗତରେ ଯେ ମରିବେ ବେନି ପୋଏ
ଅବର ମରିବେ ମୋର ଗର୍ଭର ତନୟେ । ୧୪ ।

ମହାଘୋର ସଙ୍କଟେ ତା ପଡ଼ିଲା ଜୀବନ
ତାକର ଉଦ୍ଧର ରଖ ପ୍ରଭୁ ଭଗବାନ । ୧୫ ।
ରଖ ରଖ ଜଗନ୍ନାଥ ଦୁଃଖୀର ସଙ୍ଗାତ
ତୁମ୍ଭେ ନ ରଖିଲେ ଆଜ ହୋଇଲି ଅନାଥ । ୧୬ ।
ତୁମ୍ଭ ଚରଣରେ ମୃଗୀ ଲଗାଇଛୁ ଲୟ
ଗର୍ଭଭରୀ ଅସମ୍ଭାଳ ନ ହୁଅ ନିର୍ଦ୍ଦୟ । ୧୭ ।
ଜୀବନକୁ ଆଶା ଆଜ ନାହିଁ ତ ମୋହର
ଏ ବେନି ବାଳୁତ ଜୀବ ରଖ ଚକ୍ରଧର । ୧୮ ।

ସୁବାହୁ ବନୁଁ ବୈକୁଣ୍ଠ ସହସ୍ର ଯୋଜନ
ଏତେ ଦୂର ଡାକ ତା' ଶୁଭିଲି ଘନ ଘନ । ୧୯ ।
ନିକଟେ ଡାକିଲା ପ୍ରାୟେ ଶୁଭେ ଅନୁକ୍ଷଣ
ସହସ୍ରେକ ବଜ୍ର କି ପଡ଼ିଲି ଏକ ସ୍ଥାନ । ୨୦ ।
ମୃଗୁଣୀ ଆରତକୁ ସେହିଲେ ଗୋସାଇଁ
ଭକତବତ୍ସଳ ଯେ କମଳାଦେବୀସାଇଁ । ୨୧ ।
ବାସବକୁ ଗ୍ରହି ଆଜ୍ଞା ଦେଲେକ ଶ୍ରୀବନ୍ତି
ଘୋର ବନେ ହରିଣୀକି ପଡ଼ିଛୁ ବିପତ୍ତି । ୨୨ ।
ଘୋରଜଳ ବରଷ ଅନଳ ନିଭିପାଉ
ବଜ୍ରମାର ଶ୍ୱାନକୁ ବ୍ୟାଧକୁ ସର୍ପ ଖାଉ । ୨୩ ।

ବାତାଘାତେ ଜାଲବାଡ଼ ହେଉ ନାରଖାର
ବାସବ ଗ୍ରଦ୍ଧୁଙ୍କୁ ଆଜ୍ଞା ଦେଲେ ଚକ୍ରଧର । ୨୪ ।
ଆଜ୍ଞା ପାଇ ଇନ୍ଦ୍ର ଯେ ବହନ ଚଳାଗଲେ
ଗୁରୁ ମେଘକୁ ତକ୍ଷଣେ ସେହୁ ଆଜ୍ଞା ଦେଲେ । ୨୫ ।
ପବନକୁ ବୋଇଲେ ତୁ ସଙ୍ଗେ ସଙ୍ଗେ ଥିବୁ
ଜଳ ବୃଷ୍ଟି ସହିତରେ ବତାସ ବହିବୁ । ୨୬ ।
**ଆଜ୍ଞା** ପରମାଣେ ତହୁଁ ଗୁରୁମେଘ ଗଲେ
ସୁବାହୁ ବନରେ ଯାଇ ପ୍ରବେଶ ହୋଇଲେ । ୨୭ ।

ଘଡ଼ଘଡ଼ ମାରେ ଯେ ବଜ୍ରକୁଳ ଘନ ଘନ
ତାହା ଦେଖି ମୟୂର ମଣ୍ଡୂକ କଲେ ସ୍ୱନ । ୨୮ ।
ଦଶ ଦଶ ଅନ୍ଧକାର କିଛି ତ ନ ଦିଶି
ସୃଷ୍ଟି ପ୍ରଳୟ ପ୍ରବେଶ ହୋଇଲାକ ଆସି । ୨୯ ।

ଅଣଗୁଣ ମୂର୍ତ୍ତି ଧରି ବହିଲା ପବନ
ଲିଭିଲା ଅନଳ ଯେ, ଛୁଟିଲା ଜାଲମାନ । ୩୦ ।
ଶ୍ୱାନକୁ ବଜ୍ର ଶବର ଉରଗ ଦଂଶିଲା
ଏମନ୍ତେ ହରଣୀର ଯେ କଷ୍ଟ ଦୂର ହେଲା । ୩୧ ।
ଏହା ଦେଖି ହରଣୀ ହରଷ ଚିତ୍ତ ହୋଇ
ସାଧୁ ସାଧୁ ବିଧାତା ଯେ ବୋଲିଣ ବୋଲଇ । ୩୨ ।

ନାରାୟଣ ସୁମରି
ଗୁଳଇ ଧୀର ଧୀର
ନବରଙ୍ଗେ ଗୁଲୁଛନ୍ତି
ବାଳୁତ କୁମର । ୩୩ ।
ଏମନ୍ତ ପ୍ରକାରେ ଖଣ୍ଡେ
ହରଣୀ ବିପତ୍ତି
ଶୁଣିଲେ ଖଣ୍ଡନ ହୁଏ
ଅଶେଷ ଦୁର୍ଗତି । ୩୪ ।

## ୮ । ପ୍ରଭାତ ଅବକାଶ ( ୧ )

ପାହିଲା ଶର୍ବରୀରେ ବଂଶୀଧାରୀ
ଉଠ ଉଠ । ୦ ।
କାକ କୁକ୍କୁଟ କୋକିଳ
ଧ୍ୱନି କଲେ କୋଳାହଳ
ପୂର୍ବ ଦିଗେ, ଉଦେ ଗଗନବିହାରୀ ରେ । ୧ ।

ଉଠ ବାବୁ ବଂଶୀଧର
ଝରରେ ରଖିଛୁ କ୍ଷୀର
ମୁଖ ପଖାଳିବୁ ଶୀଘ୍ରେ ଯିବୁ ଚରାଇ ବାଛୁରୀ ରେ । ୨ ।

ଅଧାମ ଗୋଟି ପାକୁଡ଼ି
ଅମୃତ ପାଣି କଦଳୀ
ଭୁଞ୍ଜାଇବ, କ୍ଷୀର ସଙ୍ଗେ ସର ଭରି ରେ । ୩ ।

ଶୁକ ଶାରୀ ଡାକଲେଣି
ଉଠ ବାବୁ ଚକ୍ରପାଣି
ଯିବୁ ବନେ, ଦଧିଅନ୍ନ ଗୋଠ ପଛେ ଧରି ରେ । ୪ ।

(ସଂଗ୍ରହ—ବୃନ୍ଦମିଶ୍ର)

## ପ୍ରଭାତ ଅବକାଶ (୬)

ପାହିଲା ରଜନୀ ରେ ରଘୁମଣି
ଉଠ ଉଠ । ୦ ।
ତାମ୍ରଚୂଡ଼ଙ୍କର ବାଣୀ
ଶୁଣି ଶ୍ରୀରାମ ଜନନୀ
ଶ୍ରୀ ଅଙ୍ଗରେ ବେନିପାଣି
ଦେଇ ଉଚ୍ଚସ୍ୱରେ ଭଣି
ଉଠ ରାମ, ପାହିଲା ରଜନୀ ରେ । ୧ ।

ଅନେକ ଦେଶରୁ ଯତି
ପ୍ରାଙ୍ଗଣରେ ପୂରିଛନ୍ତି
ଭିକ୍ଷା ଦେଲେ ନ ନିଅନ୍ତି
ତବ ଦର୍ଶନ ଇଚ୍ଛନ୍ତି
ଉଠ ରାମ, କର ଯା ମେଲଣି ରେ । ୨ ।

ବୃଷଭ ପରେ ଈଶ୍ୱର
ହୋଇ ଏକ ଜଟାଧାରୀ

ମସ୍ତକ ଦେଶରୁ ବାରି
ବହୁଅଛୁ ହର ପରି
ଅହର୍ନିଶ, ତୁମ୍ଭ ନାମ ଭଣି ରେ । ୩ ।
କରବର ପ୍ରସ୍ଥେ ବଳେ
ସହସ୍ରନେତ୍ର ବସିଲେ
କି ଅଦ୍ଭୁତ ସେ ଦେବରାଜେ
ତେଜ ଧରାକର ଗଞ୍ଜେ
ରାମ ରାମ, ଶୁଦ୍ଧେ ପୁଣ ପୁଣି ରେ । ୪ ।
ଅମ୍ବର ବପ୍ରେକ ତହିଁ
ବ୍ରହ୍ମଗୃହୀ ଦୀକ୍ଷା ବହି
ହୃଦରେ ବୀଣା ଲମ୍ବାଇ
ନାଚୁଛନ୍ତି ଭୋଳ ହୋଇ
ଅଶ୍ରୁପାତେ, ପୂରଉଛୁ ମେଦନୀ ରେ । ୫ ।
ଶୁଣି ମାତାଙ୍କ ଉତ୍ତର
ପଲଙ୍କ ତେଜି ସତ୍ୱର
ଅନ୍ତଃପୁରରୁ ବାହାର
ଦେଖି ବରଞ୍ଚି ଶଙ୍କର
କରଯୋଡ଼ି, ନାନା ସ୍ତୁତ ଭଣି ରେ । ୬ ।
କହେ ଜଗନ୍ନାଥ ଦାସ
ଅହେ ଜାନକୀବିଳାସ
ମୋହ କର୍ମ ଅହିପାଶ
କେ କରି ପାରିବ ନାଶ
ତୁମ୍ଭ ବିନା, ଅଛୁ କେ ଧରଣୀରେ । ୭ ।
( ମୂଳ ରଚନା—ଖଣ୍ଡପଡ଼ା )

**ପ୍ରଭାତ ଅବକାଶ (୩)**

ଉଠ ରାମଚନ୍ଦ୍ର ରେ ମୋର ନେତ୍ରଫଳପଦ୍ମ
ପୂର୍ବଦିଗେ ଦେଖ ତରୁଣ ଅରୁଣ
ଉଦେ ହେଲେ ଶେଷ ହୋଇଲା ରାତ୍ର । ୦ ।

ଗାବମାନେ କରନ୍ତି ରବ
ବଣ୍ଟାଧ୍ୱନି କେଡ଼େ ଦୁର୍ଲ୍ଲଭ
ଶମ୍ଭୁଅଲେ କମ୍ବୁ ଶବଦ ଶୁଭିଲା
ତେଜ ଅଳସ, ମଠ ହୁଏ ଗୀତ । ୧ ।

ସ୍ୱର ଟେକି ଡାକେ କୁକ୍କୁଟ
ଶୋଭାପାଏ ଶିରେ ମୁକୁଟ
ସତୀ କୁଳବତୀ ଶଯ୍ୟା ତେଜ୍ୟାକର
ବାସରେ ବାସିପାଣି ଛସ୍ୱଦ୍ୟନ୍ତି । ୨ ।

ଶୁଣି ମାତାଙ୍କ ଉଦନ୍ତ
ତେଜି ପଲଙ୍କ ଗଜଦନ୍ତ
ସେ ପଦ୍ମର ପଙ୍କଜ ତଳରେ
ଦ୍ୱିଜ ଲିଙ୍ଗରାଜ ନିବେଶେ ମତ । ୩ ।
( ସଂଗ୍ରହ ଓ ରଚନା—ନରସିଂହପୁର )

## ୯ । ପାହାନ୍ତ ଭଜନ—

୧— ଅହଲ୍ୟା ଦ୍ରୌପଦୀ ତାରା କୁନ୍ତୀ ମନ୍ଦୋଦରୀ ତଥା
ପଞ୍ଚ କନ୍ୟା ସ୍ମରେ ନିତ୍ୟଂ ମହାପାତକ ନାଶନଂ ।

୨— ଏ ଗୋ ମିତ କିଏ
କାଳିନ୍ଦ ହ୍ରଦରେ କମଳ ତୋଳିଲେ
ସେହି ଗୋପୀନାଥ ଇଏ ।

୩— ଏ ଗୋ ମିତ କିଏ
କାଳିନ୍ଦ ଦଳରେ କାଳୀକି ଦଳିଲେ
ସେହି ଗୋପୀନାଥ ଇଏ ।

୪— ଗୋବିନ୍ଦ ଗୋବିନ୍ଦ ଭାବନ୍ତି ମୁନି
ଗୋବିନ୍ଦ ଗୋବିନ୍ଦ କୈବଲ୍ୟଦାନି
ଗୋବିନ୍ଦ ଗୋବିନ୍ଦ ସଂସାରୁ ସାର
ଗୋବିନ୍ଦ ନାମ ଗୋଟି ନର୍କୁ ଉଦ୍ଧାର ।

୫— ଜୟ ତୁ ପତିତପାବନ
ବଳୀଦ୍ୱାରେ ବାମନ
କେଶବ କଂସାରି ରାମ
କୃଷ୍ଣ ମଧୁସୂଦନ ।

୬— ଜଗନ୍ନାଥ ଜଗତକରତା ଜଗମୋହନ
ଗିରିଧାରୀ ଗୋବର୍ଦ୍ଧନ ଗୋପୀଙ୍କର ଜୀବନ ।

୭— ନମୋ ନନ୍ଦନନ୍ଦନାୟ ବେଣୁବାଦ୍ୟ ବିନୋଦନେ
ରାଧାଧର ସୁଧାପାନ ଶାଳିନେ ବନମାଳିନେ ।

୮— ନନ୍ଦନନ୍ଦନ ଗୋବିନ୍ଦେ
ବୃନ୍ଦାବନ କଳାନିଧେ
କୃଷ୍ଣ ଦାମୋଦର ଶ୍ୟାମ
ରାଧିକା-ପ୍ରାଣବଲ୍ଲଭ ।

୯— ନଟବର ବେଶ ସଖି ଦେଖିଲି ଡୋଳେ
ଉଭା ହୋଇଥିଲେ ସେହି କଦମ୍ବମୂଳେ ।

୧୦— ବଳୀଦାତା କର୍ଣ୍ଣଦାତା ଦାତା ଜୀମୂତବାହନ
ହରିଚନ୍ଦନ ଶିବି ଦାତା ମୋକ୍ଷଦାତା ଜନାର୍ଦ୍ଦନ ।

୧୧— ଅନ୍ନଦାତା କର୍ଣ୍ଣଦାତା ଦାତା ଜୀମୂତବାହନ
ହରିଚନ୍ଦନ ଶିବିଦାତା ମୋକ୍ଷଦାତା ଜନାର୍ଦ୍ଦନ ।

୧୨— ଭଜମନ କଳା କହ୍ନାଇ
ଭଜିଲେ ତୋ ଦୁଃଖ ରହିବ ନାହିଁ ।

୧୩— ଭଜ ରେ ମନ ଗୋବିନ୍ଦ ଗୋପାଳ
ଚିନ୍ତ ରେ ମନ ହରିକି
ଯେ ନାମ ଧରିଲେ ସଂସାରୁ ତରିବ
ସେ ନାମ ଧରିଲେ ମରି କି ?

୧୪— ଭଜରେ ମନ,
ରାମକୃଷ୍ଣ ବନମାଳୀକି
ଫୁଲ ତୋଳିଗଲେ ଦଅଣା ବାଡ଼ିକି
ପାଦ ମରଦିଲା କାଳୀକି ।

୧୫— ଯେ ଯେ ଯେ ଜଗନ୍ନାଥ ଯେ ନୀଳଗିରିବାସୀ
ଶ୍ୟାମସୁନ୍ଦର ବିମ୍ବାଧର ମନ୍ଦ ମଧୁରହାସି ।

୧୬— ଯେ ଯେ ଯେ ଜଗନ୍ନାଥ ଦାରୁ ସ୍ୱରୂପଧାରୀ
ହୃଦୟ ଲୋଟ ବାହୁ ମୋଟ ଭୋଟ ନୟନକାରୀ ।

୧୭— ରାଧାମୋହନ ଗିରିବରଧାରୀ
ଗୋପୀଜନବଲ୍ଲଭ କୁଞ୍ଜବିହାରୀ ।

୧୮— ରାମ ନ ବୋଇଲୁ ରେ ମନ କୃଷ୍ଣ ନ ବୋଇଲୁ
ଏଡେ ବଡ଼ ସଂସାରରୁ ରେ ମନ ମୁକ୍ତ ନ ପାଇଲୁ ।

୧୯— ରାମନାମ ଲଡ଼ୁଆ
କୃଷ୍ଣନାମ ଘି
ହରେ ନାମ ଖଣ୍ଡଚିନି
ଘୋଳ ଘୋଳ ପିଇ ।

୨୦— ରାଧେଗୋବିନ୍ଦ ଭଜ
ବୃନ୍ଦାବନଚନ୍ଦ୍ର ଭଜ ।

୨୧— ରାମକୃଷ୍ଣ ବନମାଳୀକି
କାଳିନ୍ଦୀ ଦହରେ କମଳ ତୋଳିଲେ
ପାଦେ ମରଦିଲେ କାଳୀକି ।

୨୨— ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେରାମ ହରେରାମ ରାମ ରାମ ହରେ ହରେ ।

୨୩— ହରେ ନାରାୟଣ ଗୋବିନ୍ଦେ
ଭଜ ନାରାୟଣ ଗୋବିନ୍ଦେ
ଅଚ୍ୟୁତ ପରମାନନ୍ଦ
ସଦାନନ୍ଦ ମୁକୁନ୍ଦେ ।

୨୪— ହରିଭରସା
ହରିଭରସା
ହରିଙ୍କି ଭଜିଲେ
ହରି ଭଜନରେ ନ ଆଏ ଦଶା ।

୨୫— (ଶୁଆସାରୀ ଢୁଣ୍ଡରେ)
ଚକ୍ରଧର, ଚକ୍ରଧର
ପକ୍ଷୀ ଜନ୍ମରୁ ପାରକର ହେ, କମଳାର ବର ।



# ଢଗ-ଢମାଳି

## ଢଗ—ପ୍ରଥମ ଭାଗ (ଛନ୍ଦୋବଦ୍ଧ)

(ଅ) ୧— ଅଖିଳ ମଖିଳ ଚିତ୍ତ ଯାର
ପଦ୍ମପର ପ୍ରୀତ ତାର ।

୨— ଅଖି ବୁଲୁଥିଲେ ଚକ ବୁଲୁଥାଏ
ବୁଲି ପଡ଼ୁଥାଏ ପଇ
ସଂସାର ଭିତରେ ଘର କରିଥିଲେ
ପଥର ପଡ଼ିଲେ ସହି ।

୩— ଅଖାଇ ନାମୀ ପାନ ପଚର
ବସିଥାଏ ଚୁଲି ମୁଣ୍ଡେ
ଘଇତା ଆଗେ ସକେଇ କାନ୍ଦେ
କ୍ଷୀର ଦେଇ ନାହିଁ ତୁଣ୍ଡେ ।

୪— ଅଖାଇ ଅଖିରି
ଅଖାଇ ନାମୀ ମାଡ଼ି ବସିଛୁ ମଟି ବଖରି ।

୫— ଅଖାଇ କରିଛୁ ଓଷା
ତୋଳିକ ଗୁଡ଼ିଳ ଓଳାକେ ଖାଇଲା
ଦାନ୍ତ ଅଛୁ ଦରଦଷା ।

୬— ଅଖାଇ ବୋଇଲେ ଚଳେ
ସିଲୁପା ଝାକର ଗୁଣ୍ଡାବଳେ ।

୭— ଅଖା ଧୋଇ ଥିବ
ଗୁଣ ଗାଉଥିବ ।

୮— ଅଗା, ବାଗା, ଖଗା
ତନହେଁ ତନ ଅଲଗା ।

୯— ଅଢ଼େଇ ଦନକୁ ବଢ଼େଇ ପ୍ରୀତ
କୁଅ ଘେନଗଲ କଜଲପାତ ।

୧୦— ଅଢ଼େଇ ଦନକୁ ବଢ଼େଇ ଘଇତା
ଝୁର ମରବାକୁ କଲ ବଧାତା ।

୧୧— ଅଣ୍ଡିରପୁଅ ଲେଣ୍ଡି
ମାଇକନା ଝିଅ ଗଣ୍ଡି ।

୧୨— ଅଣ୍ଟା ଭଙ୍ଗା ହୋଇ ଯେବଣ ଦାରୁ
ପୁଁଇ ହୋଇକର ଯେଉଁ କଖାରୁ
ଯୋଜ ସ୍ତ୍ରିଗଙ୍କର ଅଣ୍ଟାରେ କାରୁ
କହେ ଦନେଇ ଏ ତନହେଁ ମାରୁ ।

୧୩— ଅତ ପ୍ରୀତ କରେ ଲଣ୍ଡଭଣ୍ଡ
ଅତ ପ୍ରୀତ ହଗେ ବାବୁ ତୁଣ୍ଡ ।

୧୪— ଅତ ସୁଆଦ ପୋକ ଖାଏ
ଅତ ସୁନ୍ଦର ଲେସଡ଼ ଯାଏ ।

୧୫— ଅତ ସେରନ୍ତ୍ରରେ ସେରନ୍ତା ପୁଅ କାନ୍ଦେ ନା
ଗୁଡ଼ଲ ପଛକେ ଖାଇବା ଭାତ ଗନ୍ଧେ ନା ।

୧୬— ଅଧର୍ମ ଧନ
ବଢ଼େ ବହୁତ
ଗଲବେଳେ ଯାଏ ମୂଳ ସହିତ ।

୧୭— ଅଦନେ ଖାଇଚ ଦହି
ଗାଁଯାକ ଗଲ କହି ।

୧୮— ଅଧେ ଅପଣା ଅଧେ ପର
ତେବେ ଯାଇ ଫସାରେ ଭରବୁ ଘର ।

୧୯— ଅନଳ ନଳ
ଓଦାକଞ୍ଚା ସବୁ ଜଳ ।

୨୦— ଅନ୍ତେ ତନ୍ତ୍ର, ଦନ୍ତେ ଲୁଣ
ପେଟ ପୂରବ ତନ୍ନକୋଣ
ଶିରମେ ପଗଡ଼ି ପାଦ୍ୟେମେ ତେଲ
ବଇଦ ସଙ୍ଗତେ କରବ ଗେଲ ।

୨୧— ଅନ୍ଧାର ଘରେ କାଣୀ ଚମକେ
ଯାହା ପାଉଥେ ଅଣ୍ଟିରେ ଯାକେ ।

୨୨— ଅପୂର୍ବ ଲତା—ନବ ବନିତା
ଷୋଳ ପୁଷ୍ପେ ନିର୍ମାଣିଛୁ ବିଧାତା ।

୨୩— ଅବାଣି କଠାଇ ଖୋଟ
ଠାଏ ସରୁ ଠାଏ ମୋଟ ।

୨୪— ଅଲସେଇକୁ ପୁଅ ସ୍ୱିତ
ଦୋଳିରେ ବସେଇ ଗାଏ ଗୀତ ।

୨୫— ଅନ୍ଧାର ରାତ
କେହୁ ନ ଜାଣନ୍ତି କାହାର ଜାତ ।

୨୬— ଅଲାଜୁକ ଘର ମଞ୍ଜାସ୍ତି
ପୋକ ନ ପକାଏ ଝିଞ୍ଜାର ।

୨୭— ଅଳପ ଧନ
ବିକଳ ମନ ।

୨୮— ଅଶକ୍ତ ସର
ବାଞ୍ଝ ମାଇପଟି କୁଳକୁ ଶିସ୍ତି ।

୨୯— ଅଲଙ୍କାର ଅବଳା
ଉଧାର ଦେଲେ ଗଲା ।

୩୦— ଅସଙ୍ଗରେ ସଙ୍ଗିତା
ଅସଙ୍ଗରେ ସଙ୍ଗ ହେଲେ ଫାଶିକାଠରେ ଲମ୍ବିତା ।

(ଆ) ୩୧— ଆଉଁଶିଲ ପାଉଁଶିଲ କୁକୁରକୁ
କୁକୁର ଚେଡ଼ପ ମୁତ ପକେଇଲା ମୋର ଉପରକୁ ।

୩୨— ଆକଟ ନ ଥିଲେ ଆପଣେ ମର
କୁଳ କୁଟୁମ୍ବକୁ ଉଚ୍ଛନ୍ନ କର ।

୩୩— ଅକାଶ କଇଁଆ ଚିଲ୍‌କା ମାଛ
କେତେ ପାଞ୍ଚୁ ଆଉ ଅପାଞ୍ଚ ପାଞ୍ଚ ।

୩୪— ଅଖି ଯୋଡ଼କ ଗଲା
କଉଡ଼ି ବୁଜୁଲାଟି ଗଲା ।

୩୫— ଅଗୁ, କାକୁଡ଼ି, ନଡ଼ିଆ, ମକା
ଦାନ୍ତ ପଡ଼ିଲେ ତଳକୁ ପକା ।

୩୬— ଅଗଡ଼ କହ୍ନି
ବଡ଼ପଣ୍ଡା ଘର ବୁଜୁଲା ବୋହ୍ନି ।

୩୭— ଅଗଡ଼ ମଞ୍ଚା
ସବୁ କଞ୍ଚା ।

୩୮— ଅଗ
ସୁନା ପାଗ ।
ପଛ
ଗୁହ ପୋଛ ।

୩୯— ଅଗେ କଣ୍ଢ଼ୁଁା ପଛେ ତାଳ
ଘର ସାଅନ୍ତର ପୂରେ କାଳ ।

୪୦— ଅଗଚଲା
ପରଗାଈ ଦୁହାଁ ଦୀପ ପେଲା
ନାଥ ବୋଲେ ପୁତା ରେ ଜୀଇ ଥାଉ ଥାଉ ମଲା ।

୪୧— ଅଗୁଲ୍ ଚଲେ
ପଛୁଲ୍ ବୋଲେ
ମଝୁଲ୍ ବନ୍ଧୁ ଦରଶନ କରେ ।

୪୨— ଅଜ୍ଞକ ପାଖେ କାଲ୍‌କ
ଫଟା ସିନ୍ଧୁକରେ ମାଲ୍‌କ ।

୪୩— ଅଠିକା ଫୁଠି ଭେଲ୍ଲଣି କାଣେ
ନମୂଲ୍ ଥୁଣ୍ଟିଙ୍କର ସବୁଠୋଉ ଝାଣେ ।

୪୪— ଅଜ ଖୁଦ ଜାଉ କାଲ୍ ଘଇଣ୍ଠା
ପଅର ଦନକୁ ଦାସ୍ତ ଅଇଁଣ୍ଠା ।

୪୫— ଅଣି ବାଣି ଠାଣି ଜାଣେ
ବେହ୍ନ ଘଇତା ନାଁ ନ ଜାଣେ ।

୪୬— ଅତଙ୍କ କାଳେ ଯାଉନ୍ତି କୁକୁଡ଼ା
ଅତଙ୍କ ଗଲେ ଦଅନ୍ତି ଲେଫେଡ଼ା ।

୪୭— ଆଦର ନ ଥାଇ ଯେଉଁ ଭୋଜନ
ଲବଣ ନ ଥାଇ ଯେଉଁ ବ୍ୟଞ୍ଜନ
ମାଲପା ନ ଥାଇ ଯେଉଁ ସ୍ନାହାନ
ବଡ଼ ମନ୍ଦ ଏ ବଡ଼ ଅଘଟଣ ।

୪୮— ଅପେ ମଲେ ଯୁଗ ବୁଡ଼ୁ
ପର ମଲେ ପାଣି ବୁଡ଼ୁ ।

୪୯— ଅପୁଅ ଗ୍ହେର
ଗଞ୍ଜେଇଅ ଭୋଳ
ଧୂଆଁପତ୍ରିଆ ଘରେ ନିତ ଗୋଳ ।

୫୦— ଅପରୁଛ ଖାନା
ପରରୁଛ ପହରନା ।

୫୧— ଅପଣା ଦେଶରେ ଠାକୁର
ପର ଦେଶରେ କୁକୁର ।

୫୨— ଅପଣା ସମ୍ପତ୍ତି ପରକୁ ଦେଇ
ଶିବ ପଳେଇଲେ ଲଙ୍ଗଳା ହୋଇ ।

୫୩— ଅମ୍ବବଣ
ଅମ୍ବ ସରିଗଲେ ଝାକୁଅବଣ ।

୫୪— ଅମ ସଙ୍ଗାତକୁ କହିବ
ରତ୍ନ ପଲଙ୍କରେ ନିଦ ନ ମାଡ଼ିଲେ
କୁଞ୍ଜବନନ ଯାଇ ଶୋଇବ ।

୫୫— ଅମ୍ବ ପତର ମୋଡ଼ ମୋଡ଼ିଅ
ପଣସ ପତର ଠୋଇଲ
ଇଠାଇ ଥାଇ ଘଇତା ଧିନିବ
ଦେଖି ମରୁଥିବ ପୋଇଲ ।

୫୬— ଆମ୍ବ ପତର ମୋଡ଼ ମୋଡ଼ିକା
ପଣସ ପତର କାହାଲୀ
ଭିତରେ ଭିତରେ କାବଡା ବସା
ଯା ଫଡ଼ ଫଡ଼ ବାହାର ।

୫୭— ଅରେ ଧାମଣା
ବୁଲ୍ ବୁଲ୍ କର୍ ସେଇ ଅଗଣା ।

୫୮— ଅରେ ଏ
ଯେତେବେଳେ ଯେ ।

୫୯— ଆପ୍ତ ଦେଖି ବସ୍ତୁ କର
ଶରୀର ଦେଖି ଧର୍ମ କର ।

୬୦— ଅଳ ଗ୍ରାଇଜରେ ବାଳ ବୁଝାମଣା
ଫାଟରୁ କମ୍ଭୀର ଖାଉଛୁ ।

୬୧— ଅପେ ଗ୍ରନ୍ଧୁଣି
ଅପେ ଗୃଖୁଣି ।

୬୨— ଅଲ୍ଲେ ପାରବ
ବୁଢ଼ା ଘଇତାକୁ ଏଡ଼େ ଗରବ ?
ବୁଢ଼ା ଘଇତାଟି ମର ଯାଅନ୍ତା
ପାରବ ଗରବ ଭାଙ୍ଗ ଯାଅନ୍ତା ।

୬୩— ଅଲ୍ଲେ ସଖି,
ଅପଣା ମହତ ଅପେ ରଖି ।

୬୪ — ଅ ଲେ ମୁତୁର ଶୋଇବା
ତୁ ତ ମୁତୁର ମୁଁ ତ ମୁତୁର
ହେଁସ କାହିଁପାଇଁ ଧୋଇବା ।

୬୫— ଅଲ୍ଲେ ମଉସା
କଉଡ଼ ପଇସା
ବାକି ଯେତେ କଥା ଫସରଫସା ।

୬୬— ଅଲେ ମୁକୁତା
ଗୁରୁବାର ଦିନ ହେଲୁ ପୋଶତା
ଦୁଧରୁ ଖାଇଲୁ ସର
ପୁଅ ନାଁ ଦେଲୁ ଚକରଧର
ହସୁଥିଲା କରକର ।

୬୭— ଅଲେ ମୁକୁତା
ଗାଈ ରଖି ଥା
ତୋ ପେଇଁ ଅଣିବ କପଡ଼ାଛତା ।

୬୮— ଅସିଛ ଏକା
ଯିବ ଏକା ।

୬୯— ଅରେ ବ୍ରାହ୍ମଣ ଯେତେ କହୁ, ତେତେ ନୋହୁ
କର୍ପୂର ବୋଲି ଲୁଅ ଗୁହ ଖାଉ ।

(ଉ) ୭୦— ଉକୁଣି ମୁଣ୍ଡେ କ ଖୋସା
ଝୁଲେଇ ଗୁଣ୍ଡେ କ ଓଷା ?

୭୧— ଉକୁଣି ମୁଣ୍ଡର ଖୋସା
ଘଛ ବୁଣା, ରୁଅ ଚଷା
ଘାଇ ଡାଳଆ ବେଢ଼ସା
ଇନ୍ଦୁଡ଼ ପୁଅକୁ ଆଶା, ବଡ଼ ମନ୍ଦ ଏ ଭରସା ।

୭୨— ଉଇ, ଓଡ଼ଶ, ବଙ୍ଗାଳୀ, ମୂଷା
ମୁହଁ ଝାଣ ଗାଣ୍ଡି ଫସରଫସା ।

୭୩— ଉଠୁ ଲେ ମାଆ ବସ
ଗୋଦର ଗୋଡ଼କୁ ଘଷ
ଉଠିବ ନାହିଁ କ ବସିବ ନାହିଁ
ଗୋଦର ଗୋଡ଼କୁ ଘଷିବ ନାହିଁ ।

୭୪— ଉଆଁସ ଗଡ଼ ପୁଅ
ପୁନଅଁ ଗଡ଼ ଝିଅ ।

୭୫— ଉଠୁ ଲେ ମଲୁ ପଥି କରବୁ
ଶିଳୁପାଝାକର ଗୁଣ୍ଡା ବଳବୁ ।

୭୬— ଉଦାର ଗୌସ୍ତ ପାନ ଖାଏ
ଚୈତ୍ର ଅସିଲେ ନଦ ଶୁଏ ।

୭୭— ଉଲୁଗ୍ଣ ଘର
ଉଖୁଗ୍ଣ ବାଳ
ସ୍ତ୍ରୀ ନ ଯୋଗାଇ ବହୁତ କାଳ ।

୭୮— ଉଭା ତାଳ, ପୋତା ଶାଳ
ରୁଅ ହେନ୍ତାଳ, ଗଣ୍ଡିବେତାଳ
ଘରଣୀ ବେତାଳ, ତେବେ ସେ ଘର ଅପାର କାଳ ।

୭୯— ଉଠି ନ ପାରେ ମାଚେଙ୍ଗା
ଜଡ଼ାଡାଙ୍ଗ ବାଡ଼ି କରେଙ୍ଗା ।

(ଋ) ୮୦— ଋଣ ଶେଷ, ବ୍ୟାଧି ଶେଷ, ଭଗାର ଶେଷ
ଏ ତିନିଙ୍କି ରଖିଲେ ହୋଇଯିବ ଶେଷ ।

(ଏ) ୮୧— ଏଇ ଟିକିକ ପେଟ
ଏଇ ପେଟ ଲାଗି ଲାଗିଛୁ ନାଟ ।

୮୨— ଏ ଘର ମାଉସୀ
ସେ ଘର ପିଉସୀ ।

୮୩— ଏକା ଲେଖା
ସହସ୍ରେ ଭାଖା ।

୮୪— ଏକାଦଶୀ ଦିନ ଏଗାର ବକତ
ଦ୍ୱାଦଶୀ ଦିନ ଇଲଶି
ତ୍ରୟୋଦଶୀ ଦିନ ତାମଡ଼ା ଶୁଖୁଆ
ତା ଖାଉଥାନ୍ତି ସନ୍ନାଅସି ।

୮୫— ଏକା ଅଖି ଅଖି ନୁହେଁ
ଏକା ସାକ୍ଷି ସାକ୍ଷି ନୁହେଁ ।

୮୬— ଏକା ଖଣ୍ଡ ଦିଏ ଦଣ୍ଡ
ଦୁଇ ଖଣ୍ଡ ବଡ଼ ପ୍ରଚଣ୍ଡ
ତିନି ଖଣ୍ଡରେ କମ୍ପେ ବ୍ରହ୍ମାଣ୍ଡ ।

୮୭— ଏ ଥରକୁ ଗାର
ଆର ଥରକୁ ଧାର ।

୮୮— ଏପାଖେ ଗୋ ହତ୍ୟା
ସେପାଖେ ବ୍ରହ୍ମ ହତ୍ୟା

୮୯— ଏତେ ଖାଇ ନ ପୂରିଲା ପେଟ
ବର ଓଳିଆକୁ ମାଇଲା ହାତ ।

୯୦— ଏହୁ ଗାଣ୍ଡିମ ଏହୁ ହାତେ
ଏହୁ ଗାଣ୍ଡିମ ଏହୁ ମାଥେ ।

୯୧— ଏହୁ ପଖ ତୁମ ଡେଙ୍ଗା ଉଆସ
ଚଲ୍ ପଶି ବଲ୍ ଯାଉଛୁ
ଏହୁ ମଖ ତୁମ ସୁଆଗି ମାଇପ
ନୁଣ ନାଇଁ ପେଜ ପିଉଛୁ ।

୯୨— ଏସ୍ୱା କରେଙ୍ଗା ସେସ୍ୱା କରେଙ୍ଗା
ବାଲୁଅ ଦେଖିଲେ ଶୋଇ ପଡ଼େଙ୍ଗା ।

୯୩— ଏ ଭାଗ୍ୟରୁ ଭାଗ୍ୟ ମୁହିଁ ପାଇବଇଁ କାହିଁ
ପୁଅ ଯେବେ ହେଲା ମୋର ରଜାଘର ଜ୍ୱାଇଁ (ପାଲା) ।

(ଓ) ୯୪— ଓଡ଼ିଆ ସେ ଦାତା ନାହିଁ
ବେଗର ମାଡ଼ସେ ଦେତା ନେହିଁ ।

୯୫— ଓଢ଼ଣୀ ପଡ଼ୁଛୁ ନାକ ସରକ
ପାଛି ଶୁଭୁଅଛୁ ଚଉପାଢ଼ିକ ।

୯୬— ଓଷାକଲେ ବେଳ ବୁଡ଼େ
ଘରକଲେ ହାଡ଼ ଭାଙ୍ଗେ ।

୯୭— ଓଲୁଅ କହୁଛୁ ବଣପାରୁକୁ
ତୋର ମୋର ପିବା କାର୍ଯ୍ୟ ଘରକୁ
ତୁ ହେବୁ ଗାଲୁମାଲୁ ମୁଁ ହେବ କୁଣ୍ଡେଇ
ଛଅଣ ହାଣ୍ଡିକ ନେବା ମୁଣ୍ଡେଇ ।

୯୮— ଓସ୍ତ ପତର ପାନିଅ
ଚଉଧ୍ବସ୍ତ ପୁଅ କନିଅାଁ
ସାଅନ୍ତ୍ରବ ପୁଅ ବର
ଅଠର ଖଣ୍ଡ ବାଜଦ ବାଜେ
ଢଙ୍ଗର ଢଙ୍ଗର ।

(କ) ୯୯— କଅଁଳ କାକୁଡ଼ି ବହଳ ଗ୍ରେପା
କାଟି ଦେଲ୍ ପରବାକୁ
ଅଲପ ଧନକୁ ବହୁତ କଥା
ଝୁର ଝୁର ମରବାକୁ ।

୧୦୦— କଉଡ଼ି
ଶନୁକୁ ଦିଏ ଘଉଡ଼ି ।

୧୦୧— କଉଡ଼ି ନ ଥାଏ ମୁଟଲଉ୍ ଥାଏ
ନା, ଦେଖୁଥିଲେ ପେଟ ଫୁଲେଉ ଥାଏ ।

୧୦୨— କଉପୁନିଅାଙ୍କ ଧନ୍ଦା
କଲେଇ ମାଇପ ରନ୍ଧା
କରକରୁ ଭୂଇଁ ଫନ୍ଦା
ବଡ଼ ମନ୍ଦ ଏ ।

୧୦୩— କଲେଇ କଣ୍ଟା
ମାଡ଼ ବସିଥିଲ୍ ପନିକ ପଠା ।

୧୦୪— କଟକର ପେଡ଼ ଅଡ଼ଭଙ୍ଗା ବୁଢ଼ି
ମାଣିକରେ ଯୋଡ଼ ଯୋଡ଼ ରେ
ତୁ ଛଡ଼ ନୋଉଁ ମୁଁ ଛଡ଼ ନେଇଁ
ଦଇବରେ ଛଡ଼ାଛଡ଼ ରେ ।

୧୦୫— କଖାରୁ ଗ୍ରେପି
ବେଲକାଳ ଜାଣି ଗଡ଼ଲେ ଗୋପୀ ।

୧୦୬— କଖାରୁ ଗ୍ରେର
ଲଉ ଗ୍ରେର
ଗ୍ରେରେଉ ଗ୍ରେରେଉ ବଡ଼ ଗ୍ରେର ।

୧୦୭— କକସ୍ତା ରାଣୀ
ଭିତରେ ଭିତରେ କାନ୍ଦୁଛି ବାଣୀ ।

୧୦୮— କଣ୍ଟକରେ ରାତ ନାହିଁ
ପୁରସ୍ତମରେ ଜାତ ନାହିଁ ।

୧୦୯— କଟକ ଧୋବଣୀ
ଦେଶକୁ ରାଣୀ ।

୧୧୦— କଡ଼ାକେ ଡର
କଡ଼ାକେ ମର
କଡ଼ାକେ ଘର ଦୁଆର କର ।

୧୧୧— କଥାକେ ଦଣ୍ଡପାଟ
କଥାକେ ମୁଣ୍ଡ କାଟ ।

୧୧୨— କଥା ମାଜିଲେ ମୋଟ
ସୂତା ମାଜିଲେ ସରୁ ।

୧୧୩— କଥା ହୁଁ କୁ
ଗୀତ ମୁହଁକୁ ।

୧୧୪— କଦଳୀ କଳା ମଞ୍ଜି ଯୋଡ଼କ ଏକା
ଭଣ୍ଡାଟାକୁ ନେଇ ବାହାରେ ପକା ।

୧୧୫— କଅଁଳ କହ୍ନ ରାଧା
ଘରକୁ ଗଲେ କଥା ନ କହନ୍ତି
ବାଟରେ ବଡ଼ ଶରଧା ।

୧୧୬— କର୍ଣ୍ଣ ମଲେ ପାଞ୍ଚ
ଅର୍ଜ୍ଜୁନ ମଲେ ପାଞ୍ଚ
କଇନ୍ତାର ଯୋଡ଼ ପାଞ୍ଚକୁ ସେଇ ପାଞ୍ଚ ।

୧୧୭— କପା କପୂର ଏକା ଭାଉ
ଅବୃତ୍ଥାମଣୀ ରାଜ୍ୟକୁ କମା ଯାଉ ।

୧୧୮— କବ ତୁଣ୍ଡ
ମେଣ୍ଢା ମୁଣ୍ଡ ।

୧୧୯— କବାଟ କଣରେ ନେଉଳ
କାନ ଫୁଙ୍କା ଫୁଙ୍କି ଗୁପତ କଥା
ମୋତେ କହିଯାଅ ବଉଳ ।

୧୨୦— କର୍ମ ପଢ଼େ
ଲଡ଼ ଲଗେଇଲେ ଚଳଣା ଫଳେ ।

୧୨୧— କଳି କରି ମନ କଲେ ସଙ୍ଗେ ଥିବ ଭାଇ
ଦୁଧ ଖାଇ ମନ କଲେ ଘରେ ଥିବ ଗାଈ ।

୧୨୨— କରୁ ଯେବେ ଡରୁ କାହିଁକି
ଡରୁ ନେବେ କରୁ କାହିଁକି ?

୧୨୩— କଳି ନ ଥିଲେ ଦ୍ୱ ମାଇପ କର
ଭାତ ନ ସରିଲେ ଦୋଘରି କର ।

୧୨୪— କହି ଦେଉଥାଏ ପରକୁ
ବୁଦ୍ଧି ନ ପଶେ ଘରକୁ ।

୧୨୫— କହି ଜାଣିଲେ କଥା ସୁନ୍ଦର
ବାନ୍ଧି ଜାଣିଲେ ମଥା ସୁନ୍ଦର ।

୧୨୬— କହିଲେ କହିବ ତମ କହୁଛ
ଦ୍ୱ କଲେ ଘିଅ ବୋହି ଯାଉଛି ।

୧୨୭— କହିଲେ ହିଡ଼
ଝୁଣ୍ଟିଲେ ପଡ଼ ।

୧୨୮— କା କରମକୁ ଘିଅ ସାକର
କା କରମକୁ ଲଡ଼ୁ
କା କରମକୁ ଖାଉଥିଅ ଖଡ଼ା
ଗୈବେଇ ଗୈବେଇ ମରୁ ।

୧୨୯— କାଣି କୁଜ କର ବେଇବ ଝିଅ
ବଇଷ ଅଇଲେ ଗୁହିଁବ ଦହ ।

୨୩୦— କାଲ ଜଡ଼ା ତୁମ୍ଭେ ହସ କାହିଁକି
ତୁମେ ଯହିଁକି, ଅମେ ତହିଁକି ।

୧୩୧— କାହାର ବସା
କେ କରେ ଇଚ୍ଛା ।

୧୩୨— କାହାର ପୁଅ ସେ କାହାର ନାତି
ଲୁଗା ପିନ୍ଧିଥିବେ କେମନ୍ତ ଜାତି ।

୧୩୩— କାହାର ପୁଷମାସ
କାହାର ସର୍ବନାଶ ।

୧୩୪— କା ମୁହଁକୁ ଧାନ ଭରଣେ
କା ମୁହଁକୁ ନଡ଼ା ଭରଣେ ।

୧୩୫— କାଞ୍ଜି କର ଅଲଣା
ବେଠି କର ବୋଲଣା ।

୧୩୬— କାର୍ତ୍ତିକେ ଡଗ
ମାଘେ ଖଗ
ବୈଶାଖେ ଦାଣ୍ଡପହଁଗ ।

୧୩୭— କାଦୁଅକୁ ଯାଅରେ
ଗୋଡ଼ ଧୋଓରେ ।
କାଦୁଅକୁ ଯିବ ନାହିଁ କି
ଗୋଡ଼ ଧୋଇବ ନାହିଁ ।

୧୩୮— କାଶୀମେ ଯେତନା କଙ୍କର
ସବ୍ ହୋତା ହେ ଶଙ୍କର ।

୧୩୯— କାହା ମୁହଁକୁ ଜାଇ ଜୁଇ ଫୁଟେ
କାହା ମୁହଁରେ ପୋକସୁଙ୍ଘା ଛୁଟେ ।

୧୪୦— କାହିଁ ରାଣୀ
କାହିଁ ଚନ୍ଦ୍ରକାଣୀ ।

୧୪୧— କିଏ ସାତ କିଏ ସତର
କିଏ ପାଣି କିଏ ପଥର ।

୧୪୨— କୁଅଁକୁ ଝର
ଝିଅକୁ ବର ।

୧୪୩— କୁହା ଯାଉଥାଏ ସିନା
ଛୁହାଇ ଛୁହାଇ ପୁଛ ଦେଉଥିଲେ
ଲୁହା କି ହୋଇବ ସୁନା ।

୧୪୪— କୁଲ୍ବରେ କାଟିଲି ଲଉ
ମୋ କରମକୁ ବୁଢ଼ା ଘଇତା
ପକେଇ ଦେବ କ ଅଉ ।

୧୪୫— କୁଟନ୍ତି ଧାନ ବୁହନ୍ତି ପାଣି
ଦୋସଡ଼ା ପକେଇ ମାହାନ୍ତିଆଣି ।

୧୪୬— କୁମ୍ଭାରଘର ବୋହୂ
ମାଟିକି ନ ଗଲେ ଝାଟିକି ଯାଉ ।

୧୪୭— କୁଳକନ୍ୟା କ କାଳୀ
ତୀର୍ଥ ପାଣି କ ଗୋଳ ?

୧୪୮— କେଳୁଣୀ ହାତରେ ଅଡ଼ା
ତେଲି ଉଠିବ ମଡ଼ା ।

୧୪୯— କେଞ୍ଚେ ପାଇବୁ ନାହିଁ
କ, ମେଞ୍ଚେ ଖାଇବୁ ନାହିଁ ।

୧୫୦— କେତେ କହୁଥାଉ ବଡ଼େଇ
ଏତେ ବଡ଼ ପୁଷ୍ପ ଗଲ୍ପ ଲୋ ରାନ୍ଧୁଣୀ
ନ ଖାଇଲୁ ଖଇ ଛଡ଼େଇ ।

୧୫୧— କେମ୍ପାକରଣ ଘ୍ଲୋଟା ଘୋଡ଼ା
ଖନା ଓକିଲ, ହାକିମ ତେଢ଼ା
ବଡ଼ ମନ୍ଦ ଏ ।

୧୫୨— କୋଉଠି ଖଣ୍ଡ ଖଣ୍ଡ ମୁଣ୍ଡା ମୁଣ୍ଡା
କୋଉଠି ହାଣ୍ଡି ଦରଣ୍ଡା ।

୧୫୩— କୋଳଥ ଡାଲି
କୁଳୁଆଁ ଅଇଲେ ଦଉଥା ପେଲି ।
ମୁଗ ପଇତ
କୁଳୁଆଁ ଅଇଲେ ଦବୁ ନାହିଁଟି ।

୧୫୪— କୋପେ ବର
ନ ହେଲେ ତପେ ବର ।

୧୫୫— କୋଡ଼ରେ ଶୁଏ
କାନରେ କହେ,
ତା କଥା କି ଅନ୍ୟଥା ହୁଏ ।

୧୫୬— କୋଲଥ ଜାଉ ଖୁଆଇବ ଯେ
ଗାଡରେ ହଗେଇ ନବ ସେ ।

(ଖ) ୧୫୭— ଖଣ୍ଡିଆ ଘର, ଭେଣ୍ଡିଆ ବର
ହସ ମାଡୁଥାଏ କର କର ।
ପକ୍କା ଘର, ବୁଢ଼ାବର
ଲୁହ ବୋହୁଥାଏ ଝରଝର ।

୧୫୮— ଖଣ୍ଡି ଗଣିଆର ଦଗୁଣା ସରେ
ଅଠିକା ଚୁହାଁର ମାଇପ ମରେ ।

୧୫୯— ଖରା ସହେ ମେରୁ
ଖରା ସହେ ତରୁ
ଖରା ସହେ ମୂଲିଆବାପୁଡ଼ା ଖରା ସହେ ଗୋରୁ ।

୧୬୦— ଖାଇବୁ ସହଳ, ପିନ୍ଧବୁ ମହଳ
ଦାଣ୍ଡ ଘର ଖଣ୍ଡି ଅଳ୍ପୁଅଁ କର
ତେବେ ଗଡ଼ଜାତେ କରିବୁ ଘର ।

୧୬୧— ଖାଇଲା ବ୍ରାହ୍ମଣ ତନ୍ତୁଲା ମୂଷା
କାର୍ତ୍ତିକା ଗଜଡ଼, ଭୋଦୁଅ ଚଷା—ଏ ବଡ଼ ମନ୍ଦ ।

୧୬୨— ଖାଇ ଧାଇଁଲେ ବଢ଼ଇ ବାୟୁ
ଖାଇ ଶୋଇଲେ ବଢ଼ଇ ଆୟୁ ।
ଖାଇ ବସିଲେ ବଢ଼ଇ ପେଟ
ଖାଇ ଖାଇଲେ ଯମର ଭେଟ ।

୧୬୩— ଖାଉଥା ଖଡ଼ାକୁ ନବାତ
ତହିଁ କଣ୍ଟୁ ନ ଭାବିବ ସଙ୍ଗାତ ।

୧୬୪— ଖୀରରେ ଧୋଇଲେ
ଖଣ୍ଡରେ ମୋଡ଼ିଲେ
ନିମ୍ବ କି ମଧୁର ହୋଇବ
ସାତ ଥର କରି ମଣୋଇ କହିଲେ
ପର କି ଆପଣା ହୋଇବ ।

୧୬୫— ଖୁଁ ଖୁଁ ଖାସ, ଖର ନିଶ୍ୱାସ
ଦମ ଦମ ଗୃଲ୍ ଅଣନିଶ୍ୱାସ ।

୧୬୬— ଖେତ ବରଷେ
ପଙ୍କ ପୁରୁଷେ ।

(ଗ) ୧୬୭— ଗଛର ଘିଇ
ମଣିଷର ଝାଇ
ଯହିଁ ପଡ଼େ ତହିଁ ଉଧାଏ ନାହିଁ ।

୧୬୮— ଗଙ୍ଗା ବୋଇଲେ ଥିବ
ଗାଙ୍ଗି ବୋଇଲେ ଯିବ ।

୧୬୯— ଗର୍ଜିଲା ମେଘ ବରଷେ ନାହିଁ
କି, ହାଣ୍ଟୁରିଲା ବାଘ ମଣିଷ ଖାଏ ନାହିଁ ।

୧୭୦— ଗଣେଶ ପେଠା
ହଗି ନ ଜାଣିଲେ ଦାନ୍ତରେ କୁଠା ।

୧୭୧— ଗହିର ବିଲରେ ଗେଣ୍ଡା
ଶାଶୁ କରିଥିଲା କୋଳଥ ମଣ୍ଡା ।

୧୭୨— ଗାଁ ପରମଳ ଧୋବା ଢୋଠରୁ
ବନ୍ଧୁ ପରମଳ ଅଧା ବାଟରୁ ।

୧୭୩— ଗାଈ ଚରିଲୁ ମାଣ
ବୋହୂ ବେଇଛୁ ମୋ କାଠକୁଣ୍ଢେଇ
ଗେଲ୍ ଯାଉଛୁ ବୋହୂ ।

୧୭୪— ଗାଈଆ କୁଳ ଗାଈଆ ରଖେ
ମଇଁଷିଆ କୁଳ ମଇଁଷିଆ ରଖେ ।

୧୭୫— ଗାଳିତ ନ ସହେ ବାଂଢ଼ଢର ଝିଅ
ମାଡ଼ ତ ନ ସହେ ଲହୁଣି ଟିଲୁଳା ଦେହ,
ତୋହର ତାହାର ନ ପଡ଼ିଲା ଯେବେ
ଢେଙ୍କିବାଡ଼ ଦେଲ ଶୁଅ ।

୧୭୬— ଗାଇବୁ ଗୀତା
ଖାଇବୁ ପିଠା
ତେବେ ତୁ ହୋଇବୁ ଜଗତଜିତା ।

୧୭୭— ଗିର ଗିହ୍ୱଆ
ବାର ମାସରେ ତେର କୁଢ଼ିଆ ।

୧୭୮— ଗୀତ ନାଶ ଯାଏ ବାଟେ
ପଣି ନାଶ ଯାଏ ଘାଟେ
ସ୍ତ୍ରିରୀ ନାଶଯାନ୍ତି ଯାତ୍ରା ପରବେ
ସୂତା ନାଶ ଯାଏ ହାଟେ ।

୧୭୯— ଗୁଡ଼ ଗଣ୍ଡାକରେ କୋଶଲଝାଏ
ମରିବାକୁ ନାହିଁ କେତେ ଉପାୟେ ।

୧୮୦— ଗୁଣ ଚହ୍ନେ ଗୁଣିଆ
ସୁନା ଚହ୍ନେ ବଣିଆଁ ।

୧୮୧— ଗୁଣକୁ ପୂଜା
ପଖାଳ ଭାତକୁ କଲରା ଭଜା ।

୧୮୨— ଗୁଣ ଫସାରକୁ
ରୂପ ମଶାଣକୁ ।

୧୮୩— ଗୁଣ ଥିଲେ କାନ୍ଧ
ବାଳ ଥିଲେ ବାନ୍ଧ ।

୧୮୪— ଗୋଟିକେ ଶିସ୍ୱ
ଗୋଟିକେ ହତଶିସ୍ୱ ।

୧୮୫— ଗୋଟିକିଆ ପୁଅ ଖେଳେ ନାହିଁ
ଖଣ୍ଡିକିଆ କାଠ ଜଳେ ନାହିଁ ।

୧୮୬— ଗୋଧନ ଲଧନ
କଂସାଧନ ଅଧା ଧନ ।

୧୮୭— ଗୋଦର—
କୋଡ଼େ ଯେତେ
ମାଡ଼େ ସେତେ ।

୧୮୮— ଗୋରୁ ମାଇଲେ ମଲ
ଗୋରୁକୁ ମାଇଲେ ମଲ ।

୧୮୯— ଗୋଡ଼ ମୂଦ ଅଗୁଅଳ
କଥେ ଦକଥା କହନ୍ତ ବୋଉ ଲୋ
ସଙ୍ଗେ ସଙ୍ଗେ ଜଗୁଅଳ ।

(ଘ) ୧୯୦— ଘଇତା ଅଯୋଗ୍ୟ ଘଣେ
ମାଇପ ଶୁଏ ଗୃକୁଣ୍ଡ୍ରା ବଣେ ।

୧୯୧— ଘଇତା ମାରଇ ଗ୍ରଗେ
କାନ ମଲକଡ଼ି ପକାଇ ଦେଇଛୁ
ଦଅର ଶଶୁର ଆଗେ ।

୧୯୨— ଘଇତା ସୂଆଗ ଭଲ ରେ
ଦଅର ସୂଆଗ ଅଢ଼େଇ ଦନ ତା
ମାଇପ ଅଇଲେ ଗଲ ରେ ।

୧୯୩— ଘର ଗୁଣେ ବଳେଇ ଦାସୀ
ଶୁଅନ୍ତ ହେଁସ କଉରା ପାଶ ।

୧୯୪— ଘରର ଉପରେ ଘର
ସୁନାକୁମ୍ଭ ପର ଗୃର ଦଅର ଲୋ
ଚନ୍ଦରଉଦଅ ବର ।

୧୯୫— ଘରେ ନ ଜଳଇ ଚୂଲ
ଗାଣ୍ଡିଅଡ଼େ ପାଠଫୁଲ ।

୧୯୬— ଘର ଦେଖ
ବର ଦେଖ
କାନ୍ଥ ଭାଙ୍ଗି କୁଜ ଦେଖ ।

୧୯୭— ଘଷି ହେଲେ କି ମାଜି ହେଲେ
ଛୁଟିଯିବ ମଳତମ
କଳା ଦେହ କି ଗୋରା ହବ
ଯାହା ଗଢ଼ିଥିବ ଯମ ।

୧୯୮— ଘରପୋଡ଼ାରୁ ବପଉ ନାହିଁ
କି, ଘୋଡାଚଢ଼ାରୁ ଫପଉ ନାହିଁ ।

୧୯୯— ଘରକୁ ବୁଢ଼ା ଅଡୁଆ
ଭିତକୁ ଖଡ଼ା ଅଡୁଆ ।

୨୦୦— ଘଷରପଷର ପାଣି
ତୁମେ ଯହିଁପାଇଁ ଲସରପସର
ଅମେ ସେହି କଥା ଜାଣି ।

୨୦୧— ଘରେ ଛନଛନ ବାହାରେ ମନ
କମିତ ଦେଖିବ କଳାବଦନୀ ।

୨୦୨— ଘିଅ ପେଟରେ ଘିଅ ପଶେ
ଠାଙ୍ଗରା ମୁଣ୍ଡରେ ବୋଝ ବସେ ।

୨୦୩— ଘିଅ କାହିଁରେ ପଡ଼ିଲା
ନା, ମୁଗ ପଇଡରେ ପଡ଼ିଲା ।

୨୦୪— ଘୁଷୁରି ପ୍ରକୃତ ପଙ୍କରେ ଲୋଟେ
ମଣିଷ ପ୍ରକୃତ ମଲେ ତୁଟେ ।

୨୦୫— ଘୁଷୁରିକି କାହିଁ ପାଚିଲା କଦଳୀ
ଅନ୍ଧ ହସ୍ତେ ରତ୍ନମୁଦ
ସେପରି ଚଢ଼େଇକି ସୁବର୍ଣ୍ଣ ପଞ୍ଜୁରୀ
କୋରଡ଼ ସୁମର କାନ୍ଧ ।

୨୦୬— ଘୋଡ଼ାକୁ ବାତ ଧଇଲା
ସାହାଣି ଚଉଡ଼ ଖାଇଲା ।

୨୦୭— ଘୋର ବରଷା
ରଜନୀ ନିଶା
କହେ ଦଇନେଇ ଏ ସ୍ତିରୀଙ୍କ ଦଶା ।

(ଚ) ୨୦୮— ଚଇତ
ଶୀତ ଖାଇଯାଏ ବୋଇତ ।

୨୦୯— ଚକୁଳି ପିଠା
ଯୁଅଡ଼ୁ ଖାଇବ ମିଅଡ଼ୁ ମିଠା ।

୨୧୦— ଚନ୍ଦ୍ରୁ ଅଇଁଶ
ବେଣ୍ଟ ନାଅଇଁଶ ।

୨୧୧— ଚଢ଼ ଗୃପଢ଼ ସାଇଁ
ଚଢ଼୍ କର ଗୃପଢ଼େ ଦେଲେ ପଡ଼ିଥିବ ସେହିଠାଇଁ ।

୨୧୨— ଚଷା ହୁଡ଼ିଲେ ବରଷେ,
କଥା ହୁଡ଼ିଲେ ପୁରୁଷେ ।

୨୧୩— ଚରଣଫାଟୁଆ, ବଳଦ ମଠୁଆ
ମୁଖରା ଭାରଯା ଯାହାର
ଯମପୁର ଯାଇ କି ସୁଖ ପାଇବ
ନାଇତ ମରଣ ତାହାର ।

୨୧୪— ଚଷା କି ଜାଣେ ପଶାର କଥା ପଡ଼ିଲେ ବୋଲେ ଦଶ
ନ ପଡ଼ିଲେ ବୋଲେ ଦଶ ।

୨୧୫— ଚହ୍ଲକ ଗୃନ୍ଧ
କଥା କହୁଥାଏ କେତେ ସେ ଫାନ୍ଦ ।

୨୧୬— ଚମ ବାଇଦ କୋଶେ
ତୁଣ୍ଡ ବାଇଦ ସହସ୍ର କୋଶେ ।

୨୧୭— ଚଷା କି ଜାଣେ କର୍ପୂରର ଗୁଣ
ଶୁଙ୍ଘି ଶୁଙ୍ଘି ବୋଲେ ଏ ସଇନ୍ଧବ ଲୁଣ ।

୨୧୮— ଚଷା
ଲକ୍ଷେ ପୋଷା ।

୨୧୯— ଚୁଡ଼ାଳ ପଛକେ ଅଧୁଆ ହେଉ ଯେଜ ହେଉ ବହଳିଆ
ଢଇତା ପଛକେ ସନ୍ତୁଆ ହେଉ ଲୁଗା ହେଉ ତଉଁରିଆ ।

୨୨୦— ଗୃହ୍ଲ ନ ଜାଣିଲେ ଦେଉଳ ଦୋଷ
ଦେଉଳ ଯାଉଛି ଅଢ଼େଇ କୋଶ ।

୨୨୧— ଚୁଷ ଅଲେଖା
ବଣିକ ଲେଖା ।

୨୨୨— ଚୁଟଘର ପୁଅ ଚୁଟ
ଭାଟଘର ପୁଅ ଭାଟ ।

୨୨୩— ଚୁଷ ନାହିଁ ଯାର
ବାସ ନାହିଁ ତାର ।

୨୨୪— ଚଉ ଜାଣେ ପାପ
ମାଆ ଜାଣେ ବାପ ।

୨୨୫— ଚଁ ଚଁଆଁ ସାର
ଚକଣିଆ ଭଣ୍ଡାର
ଚୁହିଁ ଜଳକୁ ନାସି
ବଡ଼ ମନ୍ଦ ଏ ।

୨୨୬— ଚୁଁ ଶାଶୁ ମୁଣ୍ଡରେ ନିଆଁ
ନ ମର ଶାଶୁଏ ଜୀଇଛ କିଆଁ ।

୨୨୭— ଚୁଙ୍ଗୁଚୁଙ୍ଗିଆ, ମାଗୁର ନିଶା
ହୁଅରେ ନ ଥାଇ ବାଳ
ଏ ତିନିଙ୍କି ପରତେ ନ ଯିବ
ଜୀଇଥିବ ଯେତେ କାଳ ।

୨୨୮— ଚୂର୍ଣ୍ଣ ପଥର ଘୂର୍ଣ୍ଣ କର
କଲେ ଯାକ ଥିବ ପୂର୍ଣ୍ଣ କର ।

୨୨୯— ଚେକା ଚେକା କର ମୁଁ ଗୋ କାଟିଲି ଲଉ
ଦୁଃଖି ନାରୀ ପେଟେ ଜନମ ଦୁଃଖ ନ ଗଲା ଆଉ ।

୨୩୦— ଚେକ ଚେକ କର ମୁଁ ଗୋ କାଟିଲି କଲସ
ଦୁଃଖୀ ନାରୀ ପେଟେ ଜନମ ଦୁଃଖ ଅତି ମହାଭାର ।

୨୩୧— ଚେପେଟା ନାକ ଦନ୍ତ ଖଡ଼କ
ଅଁଣ୍ଟା ପତରେ ଖାଏ
ଚୋଡ଼ରେ ଅଁଣ୍ଟା ଛୁଟିକା ପଡ଼ିଲେ
ନଈକୁ ଗାଧୋଇ ଯାଏ ।

୨୩୨— ଚୋର ମାଆ ନ କାନ୍ଦେ
ଯେବେ କାନ୍ଦେ ଆଖି ମଳି ମଳି କାନ୍ଦେ ।

୨୩୩— ଚୋରକଲା ଲୋକର ଏକ ପାପ
ଚୋର ଗଲା ଲୋକର ସହସ୍ରେ ପାପ ।

୨୩୪— ଚେତିଲା ନାଗ
ଧର କର ।

(ଛ) ୨୩୫— ଛଅ ନଅ ତେର
ଯେବେ ଯାଏ ଧର
ତେବେ କରେ ଜର ।

୨୩୬— ଛନକ ଛଟା
ଢନବେଳ ତାର ଖଦ୍ଦ ପାଲଟା
ମାଉସୀ ଦୁଆରେ ଥାଏ,
ନାକଟି ଅଗରେ ଚଡା କୁଟିଥାଏ
ଅଘଷା ପାଟିରେ ଖାଏ ।

୨୩୭— ଛଇକି ଛଡା
ପାଣିକି ଯୋଡା ।

୨୩୮— ଛାଡ଼ ପିତୃକାର୍ଯ୍ୟ
କର ରାଜକାର୍ଯ୍ୟ ।

୨୩୯— ଛୁ ଲୋ ଛତ୍ରୁ
ପାଣି ବରଷିଲେ କେତେ ମାତ୍ରୁ ।

୨୪୦— ଛୁଡ଼ିଲା ଯୁଆଳି ଭାଙ୍ଗିଲା ଯୋତ
ଝିଅ ମଲେ ଜ୍ୱାଇଁ କାହାର ଗୋତ ?

୨୪୧— ଛୁଇଁ ସଜନା
ଶାଗ ମୁଗୁନା ।

୨୪୨— ଛେଳପଲ ଛଇ
ଘଇତାକୁ ବୋଲେ ନାତୁଣୀ ଜ୍ୱାଇଁ ।

୨୪୩— ଜଗ ଜଗ ନାଗ
ଯେ ପାଇଲା ତାର ।

୨୪୪— ଜଗନ୍ନାଥଙ୍କର ବଢ଼େଇ
କାହାକୁ ଦଅନ୍ତ ପାଟ ପୀତାମ୍ବରୀ
କାହାକୁ ଦଅନ୍ତ ସଢ଼େଇ ।

୨୪୫— ଜଳଜଳା କାଠ ଜଳେ ନାହିଁ
ଜଳୁଥିଲେ ପୁଣି ଲିଭେ ନାହିଁ ।

୨୪୬— ଜଳ ବହୁନେ ସୃଷ୍ଟି ନାଶ
ଜଳ ବହଲେ ସୃଷ୍ଟିନାଶ ।

୨୪୭ — ଜାଣି ଘୋଡ଼ାର ଶିଙ୍ଗ ନାହିଁ
ଶିଙ୍ଗ ଥିଲେ ଘୋଡ଼ା ରଖନ୍ତା ନାହିଁ ।

୨୪୮ — ଜାଣି ପଗୃରେ ଧମ
ନ ଜାଣି ପଗୃରେ ଅଧମ ।

୨୪୯— ଜାନ୍ ଯାଉ
ମାନ ଥାଉ
ମାନ ଗଲେ ତା ନ ମିଳେ ଆଉ ।

୨୫୦— ଜାଣି ଥିଲି କି
ଅଧେ ସୁନା ଅଧେ ପିତଳ ବୋଲି ମୁଁ
ନିକିତି ପକେଇ ତୁଳି ଥିଲି କି ।

୨୫୧— ଜୁଆ, ଶକଟା, ପାଶ୍, ରଙ୍ଗ
ପଶା, ନ୍ୟାସ୍‌ବଳ, ଦାସ୍ ସଙ୍ଗ
ଏ ଷଡ଼ ରସେ ଯେ ପୁଅ ଥାଏ
ଭୋକେ ମର ଠାକର ଖାଏ ।

୨୫୨— ଜୋର ଯାର
ମୁଲକ ତାର ।

୨୫୩— ଜାତରେ ନାହାକ, ମଳିକ, ମହାଲିକ
ଏମାନେ ହେଲେ ଜାତକ କଳଙ୍କ ।

୨୫୪— ଜହ୍ନିଫୁଲ ପର ଅଯୁଷ ପାଅ
ସଞ୍ଜେ ଫୁଟି ସକାଳେ ଯାଅ ।

୨୫୫— ଜଗି ଥିବା ଭଗିଆ
ମାରନେବ ଭୋଗିଆ ।

୨୫୬— ଝିଅ ଝିଅଣି
ଦବାନବା ଯାଏ ମୁହଁ ଗୃହାଣୀ ।
୨୫୭— ଝିଅ ବଭ୍ରଦେଇ ନାଅନ୍ତି ଧନ
ଝଗଡ଼ ହୋଇଣ ଯେବଣ ଜନ
ଝିଙ୍କିଣ ନାଏ ଯେ ଅଲପ ଧନ
କହେ ଦନେଇ ଏ ପ୍ରପଞ୍ଚମାନ ।

୨୫୮— ଝିଅ ଗର୍ଭ
ବୋହୂ ଅଇଲ,
ଯୋଉ ଭନ
ସେଇ ଭନ ।
୨୫୯— ଝିଅ ନେଲେ ଘର ସରେ ନାହିଁ
ବୋହୂ ଅଇଲେ ଘର ପୂରେ ନାହିଁ ।
(ଟ) ୨୬୦— ଟକର ଗୁଡ଼ଅ, ଧଇଁଆ ତେଲି
ଗ୍ଲେଟା ଦଣ୍ଡ ଆସି, ଛେଳଆ ମାଳୀ
ଅଚ୍ଛୁଗ୍ଧ ବ୍ରାହ୍ମଣ, କୁଚ୍ଛୁଗ୍ଧ ଧୋବା
କହେ ଦନାଇ ଏ ଗାଅନ୍ତି ଖୋବା ।
୨୬୧— ଟାଙ୍ଗଣ ଘୋଡ଼ା
ଗୃଲ ସରସ, ଲଦନ ଥୋଡ଼ା ।
୨୬୨— ଟିକରପଡ଼ା
ତନ୍ତ୍ରଘର ଠାରୁ ଦ୍ ଘର ଛଡ଼ା ।
(ଠ) ୨୬୩— ଠା ନ ଉଠେ ବର
ଧର ବାନ୍ଧ ବାହା କର ।
୨୬୪— ଠାପୁଆ ବଳଦ ରକ୍ଷା ପାଏ
ଠାପୁଆ ମଣିଷ ନାଶ ଯାଏ ।
୨୬୫— ଠିକ୍ ବଚନ ପଇସାଟିଏ
ଉଁ, ଚୁଁ, କଲେ ଗୋଇଠାଟିଏ ।
୨୬୬— ଠେଙ୍ଗୁଆ ଧାଇଁ ଯେତକ
ଢଇଁଛ ଗୃଲ ଗୃଲ ସେତକ ।

(ଡ)୨୬୭— ଡରଇ ବାବୁ ବନସ୍ତ ଭିତର
ଶ୍ରବଣ କଥା ପଡ଼ଇ ମନର ।

୨୬୮— ଡର କାହାକୁ
ଭୟ କାହାକୁ
ଠାକୁର ଅଛନ୍ତି ଚଉବାହାକୁ ।

୨୬୯— ଡହ ଡହ ମାଣ୍ଡିଆ ଜାଉ
ବାଟ ଠକରିଆ ଦେଢ଼ଶୁରକୁ ମୋ
ପେଲଗୁଞ୍ଜା ଭାଇବୋହୂ ।

୨୭୦— ଡାହାଣି ହୋଇ ଲାଗିବ
ଗୁଣିଆ ହୋଇ ଛଡ଼ାଇବ ।

୨୭୧— ଡେଙ୍ଗା ନଡ଼ିଆ, ବାଙ୍ଗର ଗୁଆ
ମରି ମଟିକିଆ ଡାଳ
ମଞ୍ଜି ଲଗାଇ ଡାଡ଼ କଲେ
ଫଳୁଥିବ କାଳ କାଳ ।

(ଢ) ୨୭୨— ଢଗ ବାରବୋଡ଼ ଥିଲା କି ନ ଥିଲା
ଗୀତ ବାରବୋଡ଼ ଥିଲା ରେ
ଯୋଡ଼ଧନ ହାତ ଧରିଲି କାଳିଆ
ସବୁ ତ ପାସୋର ଗଲା ରେ ।

୨୭୩— ଢପର ଢାଇଁ
ଘଇତା ଧିନାଲି ଖଣ୍ଡୁ ପଟକ ପାଇଁ ।

୨୭୪— ଢମ ପସରାକୁ ଘୁଅଁ ଜାଉ
ବଲେଇ ଦାହାଲ ଦୁହାଁ ହେଉ ।

୨୭୫— ଢିଲଅଣି ବୈଦା ମାଆ
ଗୋଡ଼େଇ ଗୋଡ଼େଇ ଘଇତା ଖାଆ ।

୨୭୬— ଢୋକେ ପିଇ
ଦଣ୍ଡେ ଜୀଇ ।

୨୭୭— ଢୋଲ ଗାଏ ମାଙ୍କଡ଼
ହାଡ଼ ଗାଏ କଉଡ଼ି ।

(ଛ) ୨୭୮— ଛଳ ବରଡ଼ା ଖସୁଛି
ଉପର ବରଡ଼ା ହସୁଛି
ମଝି ବରଡ଼ା ଥାଇ ବୋଲୁଛି
ମୋ ଦିନକାଳ ଆସୁଛି ।

୨୭୯— ଛତ୍ର କୁଳରେ ହେଲ୍ ନାହିଁ
କି, ବଇଷମ କୁଳରେ ହେଲ୍ ନାହିଁ ।

୨୮୦— ଛଟକ ଥିବୁ ଡେଟକୁ
ଚଉଦ ପନ୍ଦର କେହ୍ନ ନ ରହିବେ
ସତ ଉପୁଜିବ ସତରକୁ ।

୨୮୧— ଛାଳ ପଡ଼ିବାକୁ
କୁଆ ବସିବାକୁ ।

୨୮୨— ଛନ୍ନ କଟକଟ
ମରଣ ନିକଟ ।

୨୮୩— ଛନ୍ନ ଥେଣ୍ଟିଆ କାକୁଡ଼ ବାଡ଼
ଖାଏ ଶିଆଳ ବେକ ମୋଡ଼ ।

୨୮୪— ଛୁଛାକୁ ଛୁଛା
ଛୁଛା ପାନଖିଲ ମନ ମୂର୍ଚ୍ଛା ।

୨୮୫— ଛୁଞ୍ଚକୁ ଏତେ
ମୁଦ ନାହିଁ ଗୋଡ଼ କରୁଛୁ କେତେ ?

୨୮୬— ଛୁ ନାଥ ପରମ ଦୟାଳୁ
ବୁଝିବାକୁ ଛୁ ଖୁମ୍ବ ଅଳୁ ।

୨୮୭— ଛନ୍ନ ଭଉଣୀ ହେଲେ ରୁଣ୍ଡ
ଖାଇଲେ ଭଉଣୀ ଜ୍ୱାଇଁ ମୁଣ୍ଡ ।

୨୮୮— ଛୁଞ୍ଚକୁ ସୁ, ସା,
ଲୁଣ ଥିଲେ ଚଉଦ ପାଆ ।

୨୮୯— ଛୁଣ୍ଡ ନରେନ୍ଦ୍ର
ଫିଠି ଅରକ୍ଷିତ ।

୨୯୦— ଛେରୀ ମେଣ୍ଢା ରଜା
କଥା କରେଗା କାଜା ।

୨୯୧— ତେଲ ଘଡ଼ ଖାଲି ହବନ
କି, ପୁଅ ମୁଣ୍ଡ ନୁଖୁରା ହବନ ।

୨୯୨— ତେଲର ତେଲର ହୋଇଗଲେ ଏକା,
ପିଢ଼ିଆକୁ ନେଇ ବାହାରେ ପକା ।

୨୯୩— ତେଲ ଗୁଡ଼ିଆ
ବାର ମାସରେ ତେର କୁଡ଼ିଆ ।

୨୯୪— ତେଲ ଲଗାଇବ ଥୋବାଖୋବା
ଖାଇ ବସିବ ଆଗ
ଶୋଇ ପଡ଼ିଥିବ ଚିତ ହୋଇ
ମାଡ଼ି ବସିଥିବ ଜାଗା ।

୨୯୫— ତେଲ ପୋଡ଼ିଗଲେ ଘି
ଘି ପୋଡ଼ିଗଲେ ଛୁ ।

୨୯୬— ତୋହର ମୋହର ସାଙ୍ଗୀ
ତୁ ଧରିଥିବୁ ଅଁଇଶ ଅଟିକା
ମୁଁ ଧରିଥିବି ଡାଙ୍ଗ ।

୨୯୭— ଥାଇ କରି ଯେ ଖାଇ ନ କରେ
ତା ମୁଁହଠା ପୋଡ଼ୁ
ନ ଥାଇ କରି ଯେ ଖାଇ ମନ କରେ
ତା ମୁହଁଠା ପୋଡ଼ୁ ।

୨୯୮— ଥାଉ କି ନ ଥାଉ ବ୍ରାହ୍ମଣ ଖାଉ
ହଉ କି ନ ହଉ ବରଷୁ ଆଉ ।

୨୯୯— ଥିର ହୋଇ କଥା ଶୁଣିବା ନରେ,
ଥୋଇଲି ମାଇପ ଯାହାର ଘରେ ।

୩୦୦— ଥିଲା କି ଯୋଗ
କୁଣ୍ଡା ଖାଇକି ମୋ ନୃପତ ଭୋଗ ।

(ଦ)୩୦୧— ଦଇବ ଦଉଡ଼ ମଣିଷ ଗାଇ
ଯେଣିକି ଉଠାଁରେ ତେଣିକି ଯାଇ ।

୩୦୨— ଦାଇବ
ଭଲା କାଇଁଅଁକୁ କହିବ
ଡେଙ୍ଗେଇ ବାନ୍ଧିବ—ବାଙ୍ଗେଇ ପରଷିବ
ଭେଣ୍ଡିଆ ଖାଇବ, ଇଗ୍ଧା କ ମୋ ଦାହ ସହିବ ?

୩୦୩— ଦୟା ନାହିଁକ ମାୟା ନାହିଁ
ମିଛେ ବୋଲୁଥାଏ ଭାଇ ଭାଇ ।

୩୦୪— ଦରିଦ୍ର ଅସୁଛୁ ମାଗିବ ପରା
ବାଳକ ଅସୁଛୁ ଲାଗିବ ପରା ।

୩୦୫— ଦବା ଠୋଉ ପୁଣ୍ୟ ନାହିଁ
ନବା ଠୋଉ ହାନି ନାହିଁ ।

୩୦୬— ଦଣ୍ଡ ସହିବ ଯେ
ଖଣ୍ଡ ଖାଇବ ସେ ।

୩୦୭— ଦଣ୍ଡେ ରହ ରେ ପାଟି
ଶାଶୁ ଯିବ ଧାନ କୁଟି ।

୩୦୮— ଦଣ୍ଡେ ରହ ରେ ଜିଭ
ଶାଶୁ ତ ଗାଧୋଇଯିବ ।

୩୦୯— ଦାନ୍ତୁର ମାଇପ ଘରକୁ ଶିରୀ
ଦାନ୍ତ ଦେଇ ଥିବ ଗୁଳକୁ ଡେରି ।

୩୧୦— ଦାନ୍ତୁର ନାରୀ
ତୁହେ କଦାଚଭେ ହର ଗଉରୀ ।

୩୧୧— ଦାରି ମଙ୍ଗଳ ବାର କଲା
ଦେବତା ଅଡୁଆ ବୁଝିଲା ।

୩୧୨— ଦାରି, ଦେଉଳିଆ, କରଣା ଜାତ
ବାଟକ ଭିତରେ ଅଶାନ୍ତ ହାତ ।

୩୧୩— ଦାରି, ଦେଉଳିଆ, ହଳଦିଆ କପା
ଏ ତିନିଙ୍କି ପରତେ ନାହିଁ ଲୋ ବୋପା ।

୩୧୪— ଦାରି କାହାର ମାଇପ ନୁହେଁ
କି, ଗଣ୍ଡିଆ କାହାର ଘଇତା ନୁହେଁ ।

୩୧୫— ଦାନ୍ତ ଗୋରୁହାଡ଼ ମୁଣ୍ଡ ବିରାଡ଼ି
ପେଟ୍ଟ ପଟ୍ଟଇଲେ କୋରଡ଼ ଘୁଡ଼ି ।

୩୧୬— ଦାଣ୍ଡରୁ ଅସେ
ହାଣ୍ଡିରେ ପଶେ ।

୩୧୭— ଦାସ ଡଅଁ ଓଡା
ଏକା ଗାଡରେ ପୋତା ।

୩୧୮— ଦାସ ବ୍ରାହ୍ମଣ
କାଞ୍ଜି ଡଅଣ ।

୩୧୯— ଦାନ୍ତ ଦାସୀ
ପେଟ ଭଗାରି ।

୩୨୦— ଦାସୀ, କୁକୁର, ନାହାକ, ବୁଢ଼ା
ନୁହନ୍ତି କେବେଁ ଯୋଡ଼ା ଯୋଡ଼ା
ଯେବେ ହୁଅନ୍ତି ଯୋଡ଼ା ଯୋଡ଼ା
ଦେଖି ତାଙ୍କର ତଡ଼ା କାମୁଡ଼ା ।

୩୨୧— ଦାସୀ ଅରଜନ ଧାଡୁଆ ଖାଏ
ନାଚି ନାଚି ତା ଜୀବନ ଯାଏ ।

୩୨୨— ଦିନକର ଜର
ଛ ମାସର ବଳ ।

୩୨୩— ଦିନେ ନାହିଁ, ବେଳେ ନାହିଁ
ଗାଧୁଆ ପୁନେଇଁକି ପାଇଁ ମାଇଁ ।

୩୨୪— ଦିଲ୍ଲିକା ଲଡ଼ୁ, ଯୋ ଖାୟା
ଓଭି ପସ୍ତାୟା
ଯୋ ନେହି ଖାୟା ଓଭି ପସ୍ତାୟା ।

୩୨୫— ଦୂର ବନମାଳୀ ନିକଟ ବନା
କାହିଁ ଗୁର କାହିଁ ଚଉଦ ସୀମା ।

୩୨୬— ଦୁଧ ଉତୁରିଲେ ଚୁଲିରେ ପଶେ
ମଣିଷ ଉତୁରିଲେ ଗାତରେ ପଶେ ।

୩୨୭— ଦୂତୀ ଖେଳେଇ
ରାଧିକାକୁ କୃଷ୍ଣ ଦେଲା ଭେଟେଇ ।

୩୨୮— ଢୁଲ ମାଇପର ଘଇତା
ଚଉଲ ଖାଇବୁ କି ପଖାଳ ଖାଇବୁ
ବେଲ ଥାଉ ଥାଉ କହୁଥା ।

୩୨୯— ଦୁଧରେ ଧୋଇଲେ ଘିଣ୍ଡରେ ମୋହିଲେ
ନିମ୍ବ କି ମଧୁର ହୋଇବ
ସାତଥର କର ମଣୋଇଁ କହିଲେ
ପର କି ଆପଣା ହୋଇବ ।

୩୩୦— ଦୂର ବନ୍ଧୁ ସୁନ୍ଦର
ଦୂର ପରବତ ସୁନ୍ଦର ।

୩୩୧— ଦୁଅର ମୁହଁରେ ବାଜିବ
ଦୁଅର ମୁହଁରେ କାଟିବ ।

୩୩୨— ଦୁଃଖୀ ଆଗରେ ଦୁଃଖ କହିଲେ
ଦୁଃଖ ପାଣିପରି ଯାଏ
ସୁଖୀ ଆଗରେ ଦୁଃଖ କହିଲେ
ମୁଣ୍ଡକୁ ହସା ଦିଏ ।

୩୩୩— ଦୁଢେ ତରନ୍ତି
ମୁଢେ ତରନ୍ତି
ମଝି ମଝିଆ ବୁଡ଼ି ମରନ୍ତି ।

୩୩୪— ଦେଉଳ ତୋଳିଲେ ନାଁ ପଡ଼େ
ନ ହେଲେ, ବାଟରେ ହଗିଲେ ନାଁ ପଡ଼େ ।

୩୩୫— ଦେଇଥିଲେ ପାଇ
ବୁଣିଥିଲେ ଦାଇଁ ।

୩୩୬— ଦେଖନ୍ତା ସୁନ୍ଦର ବଉଳ ଗାଈ
ଯେତେକ ବ୍ୟାଇବ ସେତକ ମାଈ ।

୩୩୭— ଦେଖା ଶିଖା ଓଡ଼ଣା
ସାଇ ଘେନ ପଡ଼ଣା ।

୩୩୮— ଦେ ପାଟି, ଖା ପିଠି
ଝାଡ଼ୁଝୁଡ଼ି ହୋଇ ଯାଅ ଉଠି ।

୩୩୯— ଦେ ରେ ବଳଦ ହାଣିଠୁଣି
ଆଉ ନ ଥିବ ଦୋଅଡ଼ା ପାଣି ।

୩୪୦— ଦେଖିଲେ ଡର
ଖାଇଲେ ମର
ତା ସଙ୍ଗେ କି ପୀରତି କର ।

୩୪୧— ଦେଖ ଦେଖ ରୂପ ତେଣ୍ଟୁଆ ସ୍ୱରୂପ
ଘୁଷୁର ଲାଗିଲେ ପଙ୍କରେ
ତାହା ଦେଖି ପେଶ୍ବୁ କୋରଢ଼େ ଲୁଚଲେ
ବାନ୍ଧିକରି ମଲେ କୁକୁରେ ।

୩୪୨— ଦେଲା ନାସ୍ତି
ହେଲା ପାରି ।

୩୪୩— ଦେଶକେ ଘାଙ୍କ
ନଈକେ ବାଙ୍କ ।

୩୪୪— ଦେଶ ଗୁଣେ ବେଶ
ଗୁରୁ ଗୁଣେ ଶିଷ ।

୩୪୫— ଦେଶାଁ ମେ ଦେଶ ହରିୟାଣା
ଜିତ ଦୁଗ୍ଧ ଦହିକା ଖାଣା ।

୩୪୬— ଦୋଲପୁନିଅଁ ଫଗୁ
ଯେ ଯାର ସେ ତାର
କହିଲା ଲୋକ ଲଘୁ ।

୩୪୭— ଦୋ ନାବ ମେ ଗୋଡ଼ଦିଆ
ଗାଣ୍ଡିଫାଟି ପ୍ରାଣ ଗିୟା ।

(ଧ) ୩୪୮— ଧର୍ମ୍ମ ଗାଣ୍ଡିରେ ମେଖେ
ଘର ପୋଡ଼ିଗଲା ଦେଖେ ।

୩୪୯— ଧରି ମାଇଲେ ଯେ
ବାନ୍ଧି ମାଇଲେ ଯେ ।

୩୫୦— ଧାଉଁ ଧାଉଁ ଅସର ନାହିଁ
କୁକୁରକୁ ଘର ନାହିଁ ।

୩୫୧— ଧାନ ପଶିଲା ଜର ଅଶିଲା
 ମାଲୋ ମୋ ମଶିଣା କାହିଁ
 ଭାତ ଫୁଟିଲା ଜର ଛୁଟିଲା
 ମାଲୋ ମୋ ପଥୁର କାହିଁ ।

୩୫୨— ଧାନ ହେଲା ଦ ଦ ପତର
 ମାଇପକୁ ଦେଲ ଗ୍ଲଡ଼ପତର ।
 ଧାନ ହେଲା ଥୋର
 ମୋ ମାଇପ ମୋର ।
 ଧାନ ପାଚିଲା
 ମୋ ମାଇପ ମୋ ଘରେ ଅସି ନାଚିଲା ।

୩୫୩ — ଧୋବାକୁ ତା ମାଇପ ମିଳିଲା
 କସ୍ତୁରି କଥା ଜଣାଗଲା ।

୩୫୪ — ଧୋବ ପାହୁଡ଼
 ଦେଢ଼ଶୁରଙ୍କୁ ଝୋକେଇ ଦାଡ଼ ।

୩୫୫— ଧୋବ ଧାଡ଼ିଲା ଗ୍ରେଡ଼ କରନ୍ତି
 ରଙ୍କୁଣୀ ଦେଖିଲେ ମାରି ଗୋଡ଼ାନ୍ତି ।

୩୫୬— ଧୃତରାଷ୍ଟ୍ରକୁ ମାଇପ ନାହିଁ
 କି ଗାନ୍ଧାରିକି ଘଇତା ନାହିଁ ।

(ନ) ୩୫୭— ନଈରେ ଚକା ପଥର
 ବାପଘରେ ଝିଅ ଗେଲବସର
 ମାଗୁଛୁ ଗ୍ଲଡ଼ପତର ।

୩୫୮— ନଈରେ ବାଳିଆ ସୁଅ ମାଡ଼ୁଛି
 ଗୁନେଇ ଚିଙ୍ଗୁଡ଼ି କଏ ଖାଉଛି ।

୩୫୯— ନଈ ନ ଦେଖି ଲଙ୍ଗଳା
 ପାଣି ନ ଦେଖି ହଗୁରା ।

୩୬୦— ନଈକି ମାଟିଆ ଗଡ଼ଗଲା
 ପଲମରୁ ପିଠା ପୋଡ଼ିଗଲା
 ବାଅର ଭାଉଜ କଥାବାରତା
 ସାନ ବୋହୂ କଥା ସରିଗଲା ।

୩୬୧— ନଈ କୂଳଆ ଢେଣ୍ଡା
ଘଇ ତଳଆ ଭେଣ୍ଡା
ଛେନା ପଣାରେ ମରଚ ଗୁଣ୍ଡା ।

୩୬୨— ନଈ ଶୁଖିଲେ କି କରିବ ନାଆ
ଥନ ଶୁଖିଲେ କି କରିବ ମାଆ ।

୩୬୩— ନ ଯାଉ ହାତ
ନ ମରୁ ପତ
ଏକାଦ୍ରିତ ହେଉ ସପତ ବ୍ରତ ।

୩୬୪— ନ ଦେଖିଲୁ ଲୋକ ଦେଖ
କହିଛ କାଟିଛୁ ବେକ ।

୩୬୫— ନ ଦେଖିଲୁ ରୁକ୍ମଣୀ ଦେଖି ମଲୁ
ଦେଖିଲୁ ରୁକ୍ମଣୀ ମାନହାନେ ମଲୁ ।

୩୬୬— ନବ ଘନ ଘନ ପଡ଼ୁଥା ଟେ
ଶଙ୍ଖା ଦମୁଠାକୁ ଧଇତା ଟେ ।

୩୬୭ -- ନରସିଂହପୁରର କମା କେତେ
ମାରୁ ଧରୁ ଉଠିଲୁ ଯେତେ । (୧୮୭୨)

୩୬୮ — ନାଁ ଟା କୋଟେଇଭୁଣିର ଝିଇ
ଖିଙ୍କିଟା ଦେଖିଲେ ବୋଲେ ଇଟା କି ?

୩୬୯ — ନିଜଦେଶ ମଶାଣିକି ଡର
ପରଦେଶ ପାଣିକି ଡର ।

୩୭୦— ନିତ ମାଗନ୍ତାକୁ ଦଅନ୍ତା ନାହିଁ
ନିତ ମଲୁକୁ ଦେଖନ୍ତା ନାହିଁ ।

୩୭୧ — ନିଲଜ୍ଜ ଗାଏ
ସଲଜ୍ଜ ବାଏ
ଅତ ଅଲଜୁକ ନାଚ ନାଚ ଯାଏ ।

୩୭୨— ନିଲଜ୍ଜ ଲଉ
ଠେକି ଠାକି ଦେଲେ ପିଢ଼ାକୁ ଯାଉ ।

୩୭୩— ନିଲଜ୍ଜ ଜୀବନ ଟହ ଟହ ହସେ
ନିଶ ପୋଡ଼ିଗଲେ ଜୁଡ଼ା ଅଉଁସେ ।

୩୭୪— ନାଲ୍ଲକ ପଦ୍ମଣ କଲବଲ
କୁଣ୍ଡାପିଠା ଖାଏ ବଲବଲ ।

୩୭୫— ନାଁଶୁଆ ତେଲି
ନା, ଯାଉଥା ପେଲି ।

୩୭୬— ନିଜ ସଜ ସଜ
ପର ସଜ ଅସଜ ।

୩୭୭— ନୂଆ ନୂଆ ଯେତେ ଆଦର
ପୁରୁଣା ହୋଇଲେ ଘଷା ପଥର ।

୩୭୮— ନୋହିଲା ଘରର ହୋଇଲା ବଳା
ଲହି ବୋଲିକର କାଠୁଁ ଗଲା ।

୩୭୯— ନୋହିଲା ଘରର ହୋଇଲା
ଛତାଧରା ଘରେ ଛଅ ପୋଇଲା ମୋ
ଗୁଁ ଗୁଁ ବୋଲି ବୋଇଲା ।

୩୮୦— ନୋଳି ଥିଲେ ଫଳି ନାହିଁ
ଫଳି ଥିଲେ ନୋଳି ନାହିଁ ।

୩୮୧— ନିକାଟ ତଉଲ ସାନ ବଡ଼କୁ
ଯେହୁ ବଡ଼ ସେହୁ ହୁଏ ତଳକୁ ।

୩୮୨— ନିଜ ବୁଦ୍ଧିରେ ଠାକୁର
ପର ବୁଦ୍ଧିରେ କୁକୁର ।

୩୮୩— ନଳି ଲୋ
ସବୁ ଯାଉଥାଏ ଗଳି ଲୋ ।

(ପ)୩୮୪— ପକେଇଲା ଛେପ ଡୋକନ୍ତି ନାହିଁ
ଦେଇ ଥିଲା ଧନ ହରନ୍ତି ନାହିଁ ।

୩୮୫— ପଖାଳ ଭିତରେ ଘିଅ
ତୋ ବୋପା ଖାଇଥିଲା କି ।

୩୮୬— ପଣେକ ଦାଖି ନିତ ଖାଏ
କାହାଣକ ଦାଖି ଉପାସ ଶୁଏ ।

୩୮୭— ପଡ଼ଶା ଘର ପିଠା ଦେଖି ରଡ଼ବେଇ ଖବେଇ
ଘଷି ପିଠାରେ ଗୁଡ ଲଗେଇ ରଡ଼ମଡ଼ କର ଗ୍ରୈବେଇ ।

୩୮୮— ପରତେ ନ ପିବ ତୋଟିକଣ୍ଠାକୁ
ପରତେ ନ ଯିବ ଚୁଟିକଣ୍ଠାକୁ ।

୩୮୯— ପଛକୁ ରହିଲେ ମେଞ୍ଚାଏ
ନ ହେଲେ କେଞ୍ଚାଏ ।

୩୯୦— ପର କହି ଦେଲେ ଗଲା
ପାଣି ବୋହି ଗଲେ ଗଲା ।

୩୯୧— ପର ଲୁଗା ପିନ୍ଧି ହାଟକୁ ଯାଏ
ପଗୁରଲେ ମୁଣ୍ଡ ଝୁଙ୍ଗାରୁ ଥାଏ ।

୩୯୨— ପହିଲ ପାଳରେ ନ ଥାଏ ଖଡ଼ୁ
ଦୋଅଡ଼ ପାଳରେ ତମ୍ବାରେ ଗଡ଼ୁ ।

୩୯୩— ପର ଧନରେ ଲହର ପହର
ଛଡ଼େଇ ନେଲେ ଲଜ୍ଜାରେ ମର ।

୩୯୪— ପଟଳେଇ ପଶିଲି ମାଉସୀ ଘର
ମାଉସୀ ମାଇଲା ଦ ପାହାର ।

୩୯୫— ପଙ୍କ ନ ଥାଇ ଗାଡ଼ଅ ନାହିଁ
କାଙ୍କ ନ ଥାଇ ଗଡ଼ଅ ନାହିଁ ।

୩୯୬— ପରକୁ କହନ୍ତି ଗୁନଗାନ
ଅମେ ଶୁଅନ୍ତି ଭଉଣୀକ୍ବାଇଁ ଧେନ ।

୩୯୭— ପଢ଼ି ପାଢ଼ି ସାରଶୁଅ
ବଗଡ଼ ଦେଖିଲେ ଅଗୁଭୁଅ ।

୩୯୮— ପର ପୁଅକୁ ପୁଅକର ଆଣି ତାକୁ ନ ବୋଲିବ ବାଳକ
ଅଡ଼ୁଆ ସୁତାରୁ ଗିଅକ ପାଇଲେ ତାକୁ ନ ବୋଲିବ ସଳଗ
ତୋଡ଼ାଣି କଂସାରେ ଗୁଣ୍ଡିଏ ପଡ଼ିଲେ
ତାକୁ ନ ବୋଲିବ ବେଳକ
ଝୋପି ଝୋପି ହୋଇ ମେଘ ବରଷିଲେ
ତାକୁ ନ ବୋଲିବ ପାଳକ ।

୩୯୯— ପର ଘରେ ଖାଇ ମାଗଣା ରୁଷା
ଭିଖ ମାଗିଯାଇ ଖେଳନ୍ତି ପଶା
ବାହି ଧୋବ ଲୁଗା ପିନ୍ଧଇ ଚଷା
ସାହୁ ବାପୁଡ଼ାକୁ ତୁକାର ଭାଷା
ଏ ସବୁ ପଛନ୍ତେ ପସଡ଼ଫସା ।

୪୦୦— ପାଇକ କହଣି
ମଇଁଷି ଗୁହାଣି ।

୪୦୧— ପାଣିକେନ୍ଦୁର
ଆପଣା ମନକୁ ଆପେ ସୁନ୍ଦର ।

୪୦୨— ପାଠକୁ ରସେ
ନ ପଢ଼ି ନ ଶୁଣି ଗୁଲରେ ଘୋସେ ।

୪୦୩— ପାଣିକଖାରୁ
ଘଇତା ମାଇଲା ବଡ଼ ସକାଳୁ
ଦଅର ଅସିଚ ନବାକୁ
ମୋର ଗରଜ ପଡ଼ୁଛୁ ଯିବାକୁ ।

୪୦୪— ପାଇଠିକି ପାରିବ ନାହିଁ
ଖାଇବାରେ ହାରିବ ନାହିଁ ।

୪୦୫— ପାଣିଯାକରେ ପଇଡ଼ ମିଠା
ସ୍ତ୍ରିସ ଶୋଭାବନ ରାଧିକା ମିଠା ।

୪୦୬— ପାଇଟି ସାରି ବସିବ
ଭଗାରି ମାରି ହସିବ ।

୪୦୭— ପାଦକେ ଶିସ୍ତ
ପାଦକେ ହତଶିସ୍ତ ।

୪୦୮— ପାଣି ପିଇବ ଛାଣି
କାଜିଡ଼ ନେବ ଗଣି ।

୪୦୯— ପାଇକ ହୋଇ ତରଣିପାଠୁଆ
ବଳଦ ହୋଇ ବନ୍ଧଣା ମଠୁଆ
ପୁରୁଷ ହୋଇ ମାଇପ ଗୁଠୁଆ
ଗାୟକ ହୋଇ ତା' କଣ୍ଠ ମୋଠୁଆ
କହନ୍ତି ଦାନେଇ ଏ ହଠହଠିଆ ।

୪୧୦— ପାଣିଗ୍ରହୀତାଙ୍କ ମୁଣ୍ଡରେ ଖୋଷା
ପୋଇଲି ହୋଇ କରନ୍ତି ଓଷା
ପର ଗାଈ ଦୁହାଁ, ପର ଘର ପଶା
କହେ ଶଙ୍କରେଇ ଏ ଦଶମଦଶା ।

୪୧୧— ପିଠା ଯାକରେ ମଣ୍ଡା ବଟୋଲ
ହତିଆର ଯାକରେ ଖଣ୍ଡା ବଟୋଲ
ବ୍ରାହ୍ମଣ ଯାକରେ ପଣ୍ଡା ବଟୋଲ
ପଶୁ ଯାକରେ ଗଣ୍ଡା ବଟୋଲ ।

୪୧୨— ପୁଅ ଯେବେ ଧର୍ମ ଧନ କାହିଁପାଇଁ ସଞ୍ଚୁ
ପୁଅ ଯେବେ ଅଧମ ଧନ କାହିଁପାଇଁ ସଞ୍ଚୁ ?

୪୧୩— ପେଟେ ପୋଷ
ନାହିଁ ଦୋଷ ।

୪୧୪— ପେଟେରେ ହେଲେ ଉଷତ ନ ହବ
ବ୍ୟାଇ ପାରିଲେ ତ
ବ୍ୟାଇ ପାରିଲେ ଉଷତ ନ ହବ
ଜ୍ୟାଇ ପାରିଲେ ତ ।

୪୧୫— ପେଡ଼କୁ ନୁହେଁ
ଖିଡ଼କି ନୁହେଁ ।

୪୧୬— ପୋଷିଅ ପୁଅ
ଗୁଣ୍ଡା ରୁଅ ।

୪୧୭— ପୋତନ୍ତି ଗରଅ ପିନ୍ଧନ୍ତି କରଅ
ତେବେ ସେ ବୋଲନ୍ତି ଆଠଗଡ଼ିଆ ।

୪୧୮— ପୁଷେ ଖିର
ମାଘେ ଦହି
ଚଇତେ ନିମ୍ବ ଚକୁଳି ଖାଇ ।

୪୧୯— ପୋଡ଼ ପୋଡ଼ ପକା
ଏ ଉକାହେଁ ଏକା ।

୪୨୦— ପୋଡା ଯେତେ
ଉଦା ସେତେ ।

୪୨୧— ପୁରୁଷ ଅନୁକ୍ରମେ ଜନ
ସ୍ତ୍ରୀ ଅନୁକ୍ରମେ ଧନ ।

୪୨୨— ପୁଅ ପରଗୁଣ କେମନ୍ତେ ଜାଣିବ
ବୁଢ଼ା ଦିନେ ଯେବେ ପୋଷେ
ସ୍ୱାମୀ ପରଗୁଣ କେମନ୍ତେ ଜାଣିବ
ବୁଢ଼ୀ ଦିନେ ଯେବେ ରସେ ।

(ଫ)୪୨୩— ଫଟା ମୃଦଙ୍ଗକୁ ଜଡ଼ା ବାୟକ
କାଣୀ ଦାସୀ ତହିଁ ନାଚୁଛି
ଅବୁଝା ରଜାକୁ ବେବୁଝା ମନ୍ତ୍ରୀ
ଯାହା ଇଚ୍ଛା ତାହା ବୁଝୁଛି ।

୪୨୪— ଫୁଲ ହୋଇ ଯେବେ ନ ଥାଏ ବାସ
ଫୁଲଣିଅ ଯେବେ ହୁଏ ନରେଶ
ଫନ୍ଦା କର ଯେବେ କରିବ ହେଲା
କହଇ ଦିନାଇ ବୁଡ଼ିବ ଭେଲା ।

(ବ)୪୨୫— ବଜାର, ହଟାର, ସୁନାର, ଦାସୀ
କାଳେ ନୁହନ୍ତି ଏ କେବେଁ କାହାର ।

୪୨୬— ବଡ଼ ବଡ଼ରେ ସବୁ ପାର ଯାଏ
ସାନଙ୍କଠେଇ କଳଙ୍କ ରହେ ।

୪୨୭— ବଡ଼ ଲୋକକୁ ଉତ୍ତର ନାହିଁ
କ ସ୍ୱର୍ଗକୁ ନିଶୁଣି ନାହିଁ ।

୪୨୮— ବଡ଼ ଓଷାରେ ଗଜମଣ୍ଡା
ଖରିଷାପାଣିରେ ମରିଚ ଗୁଣ୍ଡା ।

୪୨୯— ବଟେଇ ଦିଏ ପରକୁ
ବୁଝି ନ ଦିଏଇ ଘରକୁ ।

୪୩୦— ବଡ଼ ଘର ବୋଲି ମାଁ ପଡ଼ୁଛି
ଅଡ଼େଇ କୁଲା ଶାଗ ଶିଝୁଛି ।

୪୩୧— ବଡ଼ ଘର ଝିଅ ନ ହେବ ବନ୍ଧୀ
ହୁଁ ବୋଇଲେ ସେ ଦାଣ୍ଡରେ ଉଭା ।

୪୩୨— ବଡ଼ ବୋହିଆ ନ ମରେ
ବଡ଼ ଝିଅ ମରେ ।

୪୩୩— ବଡ଼ ବଡ଼ଆ ଗଲେଣି ହଟି
ସାନ ଯାଉଛୁ ବେସର ବାଟି ।

୪୩୪— ବଗଡ଼ା ଭାତ
କାଳଆ ପୁତ
କାହାକୁ ମିଳେ ତ ?

୪୩୫— ବଢ଼େଇ ବଡ଼ ପଣ
ଖଣ୍ଡିଆ ଦରପଣ ।

୪୩୬— ବଣିଜରେ ହେଲେ ଖଣ୍ଡ ଖଣ୍ଡ ମୁଣ୍ଡା ମୁଣ୍ଡା
ନ ହେଲେ କୁଳ ମୁଣ୍ଡା ।

୪୩୭— ବନସ୍ତ ପୋଡ଼ିଲେ ସମସ୍ତେ ଜାଣନ୍ତି
ହୃଦୟ ପୋଡ଼ିଲେ କେହି ନ ଜାଣନ୍ତି ।

୪୩୮— ବନ୍ଧ ତଳେ ଗୃଷ
ବନ୍ଧୁ ତଳେ ବାସ ।

୪୩୯— ବଇସ, ମାଇପ, ବଇସୀ
ବଳ ବୟସ ଥିଲା ବେଳେ
ମହାନଦୀ ଯିବ ପହଁର ।

୪୪୦— ବଡ଼ ବୋହୂ ବଢ଼ୈଆ କାଙ୍କ
ସାନ ବୋହୂ ଗୁଲ୍କ ଦେଖ
ମହିଅଣି ତହୁଁକ ସାଙ୍ଗି
କଥା ଯାକ ଦଉଚ ଭାଙ୍ଗୈ ।

୪୪୧— ବଡ଼ ଭାଉଜ
କଣାରୁ କାଟିବେ ରଜରଜ ।
ସାନ ଭାଉଜ
ହାଣ୍ଡିଶାଳ ଖଣ୍ଡ କରବେ ଉଜ ।
ମହିଅଣି
କୁମ୍ଭ ଢେଙ୍କା ଯିବେ ପାଣି ଅଣି ।

୪୪୨— ବନ୍ଧ ତଳିଆ ବାସ
ନଈ ତଳିଆ ଗୃଷ.
ପର ଯୁବତୀରେ ଅଶ
ଧନେ ନା ଧନେ ସରବ ନାଶ ।

୪୪୩— ବାନ୍ଧେ ମସୁଣି ଚଲ୍ ରେ
ଧ ପରିଣିଅ ଭଲ୍ ରେ ।

୪୪୪— ବାପ ମରିଯିବ ପିଉସୀ ଥିବ
ମାଆ ମରିଯିବ ମାଉସୀ ଥିବ ।

୪୪୫— ବାହା କାହାର, ପୁଅଣି କାହାର
ବାଇଦ ବାଜୁଛୁ ଯାର ତାର ।

୪୪୬— ବାପ ଓଳି ଝିଅ ଚଢ଼େ ଦୋଳି
ମାଆ ଓଳି ଝିଅ ବାକେ କୋଳି
ବାପ ଓଳି ପୁଅ ଖାଏ ଖଡ଼ା
ମାଆ ଓଳି ପୁଅ ଚଢ଼େ ଘୋଡ଼ା ।

୪୪୭— ବାଛୁ ବଭ୍ରୀ ହେବ କୁଳର ନାସ୍ତି
ମରନ୍ତେ ଜୀଅନ୍ତେ ହେବ ଉପୁଆର ।

୪୪୮— ବାଉଁଶ ଫୁଲିଲେ ମରେ
ମଣିଷ ବୁଲିଲେ ମରେ ।

୪୪୯— ବାର ଜାତି ତେର ଗୋଲ
ବଇଷମ ହେଲେ ସବୁ ଗଲ ।

୪୫୦— ବାଘ ନବା ନ କାଟେ
ଘୋଷରି କାଟେ ।

୪୫୧— ବାଡ଼ିରେ କପୁର କାନ୍ତ
ଶାଶୁ ମଲେ ବୋହୂ କ ବୋଲି କାନ୍ଦିବେ
ମାଆ ହେ, ତୁମେ ଛତଆ ଦାନ୍ତ ।

୪୫୨— ବାଡ଼ ଭଙ୍ଗିବ ନାହିଁ
କି, ସାପ ମରିବ ନାହିଁ ।

୪୫୩— ବାପାଙ୍କ ସମ୍ପତ୍ତି କହିବ କେତେ
ପେଜ ପିଇବାକୁ ଅଢ଼େଇ ଗାତେ ।

୪୫୪— ବାବୁର ଭାଇ ଖୁଡୁତା
କେବେ ନ ହୁଅଇ କାରୁତା ।

୪୫୫— ବ୍ରାହ୍ମଣ ଜାତ
ମାଙ୍କଡ ଲେଙ୍ଗେ ଗୃହି ଥାଆନ୍ତି ।

୪୫୬— ବ୍ରାହ୍ମଣ ଭାତ
କପାଳେ ହାତ ।

୪୫୭— ବ୍ରାହ୍ମଣ ପେଟ
ବରଗଡ଼ ହାଟ ।

୪୫୮— ବଳଦ ଦାନ୍ତ
ଗାଈର ଅନ୍ତ ।

୪୫୯— ବରଷା ଋତ
ଶୀତ ପାହାନ୍ତ, ଦ ପହରଅ ଘେରି
ଏତକ ବେଳେ ଯେ
ହଗି ଗଲା ସେ,
ଖାଉ ଥାଉଥାଉ ମଲା ।

୪୬୦— ବ୍ରାହ୍ମଣ କଉଡ଼ ବାଦକୁ
ପାଣ କଉଡ଼ ମଦକୁ ।

୪୬୧— ବାଢ଼ ଠୁକୁ ଠୁକୁ କାଗେ ଲଡ଼କା
ବାଟେ ଦ୍ୱିଜବର ଦେଖିବ ଏକା;
ପାଅକେ କୁମ୍ଭାର କୋଣକେ ତେଲି
ନାଥ ବୋଲେ ପୁତା ନ ପିବୁ ପେଲି ।

୪୬୨— ବାଇଗଣ ପୋକ ପୋକ ନୁହେଁ ।
ଘଇତାର କୋପ କୋପ ନୁହେଁ ।

୪୬୩— ବାସ୍ତୁର କ ଯାଏ,
ବାଅ କଲେ ବସା ଦୋହଲୁ ଥାଏ ।

୪୬୪— ବାର ବରଷର ମଉଳା ଘୋଷେ
ଖୁଡୁତା ଦେଖିଲେ ଜଙ୍ଘରେ ବସେ ।

୪୬୫— ବାହାପିଅଙ୍କ ଗୀତ
ବାହାରେ କହନ୍ତି ଚମ ବାରବୋଡ଼ି
ଘରେ ନ ଜଳଇ ବତ ।

୪୬୬— ବ୍ରାହ୍ମଣ, ବଇଦ, ବରଷା, ବଢ଼ି
ଦକ୍ଷିଣା ପାଇଲେ ଯାଅନ୍ତି ଛାଡ଼ି ।

୪୬୭— ବ୍ରାହ୍ମଣ ଗୃହ
ହଳ ହେଙ୍ଗୁ ଠେଙ୍ଗୁ ଉପରେ ଘାସ ।

୪୬୮— ବ୍ରାହ୍ମଣ ରଜା
ଶଣ୍ଢ ପଞ୍ଜା
ଉହଉହ କାଞ୍ଜି ଶୀତଳ ଭଜା ।

୪୬୯— ବିନାଶ କାଳେ ବିପରୀତ ବାଣୀ
ଗୃହରୁ ମୂଷା ପଡ଼ି ମାରନ୍ତି କହୁଣି ।

୪୭୦— ବିର ବରଗୁଡ଼ କାଙ୍ଗୁଲ ଛୁଇଁ
କାନ ପାରିଥିଲି ମାଙ୍କଡ଼ ମୁହିଁ ।

୪୭୧— ବିଲେଇଙ୍କ କଣ୍ଠ ରୋଗ
ଉଷ୍ଣା ଚଉପାଢ଼ୀ ସୁପାତ ଶେଯ
ଦନା କେତେ କଲୁ ଭୋଗ ।

୪୭୨— ବିର ମାଡ଼ ଦେଖି କୋଳଥ ଗୈପା
ବରଗୁଡ଼ି ବୋଇଲି ମଲି ଲୋ ଦୋପା ।

୪୭୩— ବୁଦ୍ଧି ନ ଦଶଇ ଘରକୁ
ବଡେଇ ଦଏ ମରକୁ ।

୪୭୪— ବୁଲି ଭାତ ଖାଏ ପକ୍ଷେ
ମୋ ଘରେ କୁଳୁଅଁ ଲକ୍ଷେ ।

୪୭୫— ବେଲ ଗଛମୂଳେ ବେଇଛୁ ଗାଈ
କେଇଟା ଅଣ୍ଡିରୀ କେଇଟା ମାଈ ।

୪୭୬— ବ୍ୟାହ ମାଇପ ଜଣେ
ଥୋଇଲି ମାଇପ ପଣେ ।

୪୭୭— ବୋପା ମାଆ ଅନ୍ଧ
ପ୍ରଜାପତି ସମ୍ବନ୍ଧ ।

୪୭୮— ବୋହୂଙ୍କ ଜର
ଚୂଲି ମୁଣ୍ଡରେ ଛାଡ଼ ।

୪୭୯— ବାଉଁଶ ନଳ ସବୁ ଖାଏ
ମୋଟୁଅ ଠେଇ ଅଖିଥାଏ ।

(ଭ) ୪୮୦— ଭଣ୍ଡାର ମୁଠି
ଟଙ୍କା ଛଅଟି ।

୪୮୧— ଭାଇ ରଜା ହେଲେ ଭଉଣୀ ହୁହେ ରାଣୀ
ଅତ ଶରଧାରେ ଡାକନ୍ତି ରଜାଙ୍କ ଭଉଣୀ ।

୪୮୨— ଭାଙ୍ଗିଲା ଜୁଆଳି ଛାଡ଼ିଲା ଯୋତ
ଝିଅ ମଲେ ଜ୍ୱାଇଁ କାହାର ଗୋତ ?

୪୮୩— ଭାଗ୍ୟ ଦୋଷୁଁ ରାମଚନ୍ଦ୍ର ଗଲେ ବନବାସ
ଭାଗ୍ୟ ଦୋଷୁଁ ନଳରାଜା କାଟେ ଘୋଡ଼ାଘାସ ।

୪୮୪— ଭାଲୁ ସଙ୍ଗେ କଲେ ଭାବ
ନିଶ୍ଚୟ ରାମ୍ପୁଡ଼ା ପାଇବ ।

୪୮୫— ଭଣ୍ଡାର ଅହନ୍ତା କଲା
କ୍ଷୌର କ୍ଷୌର ମଲା ।

୪୮୬— ଭଣ୍ଡାର ହାତରେ ପଡ଼ିଛୁ ଚୁଟି
ଯେଣିକି ତା ମନ ନଉଚି ଝିଙ୍କି ।

୪୮୭— ଭାଇ ଭାଉଜ
ବାଡ଼େ ଅଉଜ ।

୪୮୮— ଭୁଁଜ, ଗିଳ, ଖା
ମଣୋହି, ଯୋଗାଣ, ଠା ।

୪୮୯— ଭୋରେ ଓଡ଼ିଆ ପାନ ଖାଏ
ଭୋରେ ବଙ୍ଗାଳି ନିଦ ଯାଏ ।

(ମ) ୪୯୦— ମଇଁଷି ପଡ଼ିଲେ ପଙ୍କଆରେ
କାଠ ଭାଙ୍ଗୁଥିଲି ଶାଗ ତୋଳୁଥିଲି
ଲହକେ ପଡ଼ିଲି ଗହିଆରେ ।

୪୯୧— ମଇଁଷି ଶିଙ୍ଗ ଫଟା
ଯୁଝିଲା ବେଳକୁ ଗୋଟା ।

୪୯୨— ମନ ଫୁଲଣା ଗୀତଗାଏ
ଅଣୋକା ନାସ୍ତି ବାପଘର ଯାଏ ।

୪୯୩ — ମଙ୍ଗଳ ରବି
ବୁଧ ପାହାନ୍ତି
ଯେଣେ ଇଚ୍ଛା ତେଣେ ଯାଆନ୍ତି ।

୪୯୪— ମନ ଥିଲେ ଧନ ନାହିଁ
ଧନ ଥିଲେ ମନ ନାହିଁ ।

୪୯୫— ମଦ ଘଡ଼ା
କାମ ସରିଲେ ଗଡ଼ଗଡ଼ା ।

୪୯୬— ମଲୁ ଖୋଜୁଥିଲି ଯା
ବଇଦ ବତେଇଲା ତା ।

୪୯୭— ମଣିଷ ସ୍ନେହ ଦଅଦେଇ
ଗୋରୁ ସ୍ନେହ ଲହାଲେହି ।

୪୯୮— ମରଦକା ବାତ୍
ହାତୀକା ଦାନ୍ତ ।

୪୯୯— ମଲି ମୋର
କଲି ଜର
ଯାଦୁଅ ଘରଡା, କଣା ଦଅର ।

୫୦୦— ମହାନ୍ତି ମହାନଦୀ
ଏଙ୍କଠି ବିଶ୍ବାସ ନାହିଁ ।

୫୦୧— ମଗୁଣିର
ଶୀତକରେ ଶିର ଶିର ।

୫୦୨— ପୁଷ
ଶୀତକରେ ଭୁଷୁ ଭୁଷ ।

୫୦୩— ମାଘ
ଶୀତର ବଡ଼ ବାଘ ।

୫୦୪— ଫଗୁଣ
ଶୀତ କରେ ଦଗୁଣ ।

୫୦୫— ଚଇତ
ଶୀତ ଖାଇଯାଏ କଇଥ ।

୫୦୬— ମାଆକୁ ଝିଅ
ଘାଆକୁ ଘିଅ ।

୫୦୭— ମାଗି ଖାଆନ୍ତି
ସାଙ୍ଗରେ କୁକୁର ପଚଣେ ଆଆନ୍ତି ।

୫୦୮— ମାଇପି କଥା
ପାଣି ବାରତା ।

୫୦୯— ମାଇଲା ଠେଇ ଭୟ ଥେ
ଖାଇଲା ଠେଇ ଆଶା ଥେ ।

୫୧୦— ମାଉଢ଼ି ସବୁ ଜାଣେ
ଠାକୁଅ ଗୃଡ଼ି କାଣେ ।

୫୧୧— ମାଡ଼ଖିଆ ମହାଦେବ
ମାଡ଼ ଖାଇଲେ ବରଦେବ ।

୫୧୨— ମାଘ ସପତମୀକି ତଳ ଜାଉ
ଶିମ୍ବ ଗାଇଗଣ୍ଡ ପାଖେ ଥାଉ ।

୫୧୩— ମାରେ ହର ରଖେ କୋଉନ୍
ରଖେ ହର ମାରେ କୋଉନ୍ ।

୫୧୪— ମାଣ୍ଡିଆ କଙ୍କଡ଼ା ପିଠି
କେତେ ମାଡ଼ ଖାଉ ଦ୍ରମୁକ ପିଠେ ମୋ
ଶେଜରୁ ନ ଯାଉ ଉଠି ।

୫୧୫— ମା'ରେ ନା ମଲଣି
ବାଇଠା ପକେଇ ଦେଖେ ନା ମୁଁ
ପୋଇ ଖାଡ଼ ପର ହେଲଣି ।

୫୧୬— ମାଗିଲାଠାରୁ ହୀନ ନାହିଁ
ଦେଲାଠାରୁ ପୁଣ୍ୟ ନାହିଁ ।

୫୧୭— ମାଆ, ଗୃହେଁ ପେଟକୁ
ମାଇପ ଗୃହେଁ ପିଠିକୁ ।

୫୧୮— ମାଇପ ପଛକେ କାଣି
ନା କଟକିଅଣୀ ।

୫୧୯— ମାଗି ଖାଆନ୍ତି ଖୁଦ୍‌କୁଣ୍ଡା
ଯାଚଲେ ନ ଖାନ୍ତି ଛେନାମଣ୍ଡା ।

୫୨୦— ମାଗି ଖାଇବ ଯେ
ଲଗି ନ ଖାଇବ ସେ ।

୫୨୧— ମିଳିଲେ ବାଘର ଅହାର
ନ ମିଳିଲେ ପବନ ଅହାର ।

୫୨୨— ମୁଣ୍ଡବାଳ ଲମ୍ବ ଲମ୍ବ ଛୁଡ଼ଟଲେ ଯାଏ
ଅଣିର ବାଳ ଠିକଏ ଠିକଏ ସବୁ ନାଠ ଦେଖୁଥାଏ ।

୫୨୩— ମୁଖମେ ହର
ବଗଲ୍ ମେ ଛୁରୀ ।

୫୨୪— ମୁଁ ପୋଇଲ୍ ହଟି
ପାରି ଶୋଇଥାଏ ପରୁଢ଼ ମଣିଣା
ଘୋଡ଼ ହୋଇଥାଏ ପଠି ।

୫୨୫— ମେଘ ଚଇତମତା କଲା
ଗଉଡ଼ ଗାଈ ଦୁହଁ ଦୁହିଁ ମଲା ।

୫୨୬— ମେଦୁଆ ପାଗୁଠା ନ ଦଣେ
ଶାଶୂ ବୋଲୁଥାଏ, ଗାଧୋଇ ଯାଆ ତୁ
ବୋହୂ ମନଠା ଉଲ୍ଲସେ ।

୫୨୭— ମେଦୁଆ ଖର
ବୋହୂ ବେହେର
ଗୋଦଶୀ ଦାଶୀ
ଏଙ୍କର ଚରିତ ବହ୍ ନ ପାରି ।

୫୨୮— ମୋତେ ନ ଅଣ୍ଟେ ସାତ ସାଇ ଗୋବର
ପଡ଼ଶା ଘରକୁ ଦଉଚ ବଡ଼ ମହୁର ।

(ଯ) ୫୨୯— ଯାହାକୁ ସହଳ କନିଅଁ ଶାଶୁ
ଖିର ଉପରେ ଖଣ୍ଡ ବରଷୁ ।

୫୩୦ — ଯାହା ନ କରିବ ଅପେ
ତା' କୁ କରିବ ବାପେ ।

୫୩୧ — ଯାର ମନ ଯେଡ଼େ
ତାର ପ୍ରଭୁ ସେଡ଼େ ।

୫୩୨ — ଯାଉଚ ଲୋ ମାଆ ବୋହୂକୁ ଡାକ
କଡ଼ାକଅ ମୁଁ କାଖରେ ଯାକ ।

୫୩୩ — ଯାହାକୁ ରଖିବେ ଅନନ୍ତ
କି କରିପାରେ ବଳବନ୍ତ ।

୫୩୪ — ଯାଚିଲେ ମାଣିକ ଭଣ୍ଡି
ସାଇତଲେ କପାମଞ୍ଜି କଉଡ଼ି ।

୫୩୫ — ଯାହା ନ ଦେଖିବ ବେନି ନୟନେ
ପରତେ ନ ଯିବ ଗୁରୁ ବଚନେ ।

୫୩୬ — ଯାଚିଲେ ନ ଖାନ୍ତି ଖଣ୍ଡସାକର
ବୁଲି ଗୁହ୍ଟୁଥାନ୍ତି ଅଇଣ୍ଠାପତର ।

୫୩୭ — ଯାହା ଆପନା କିଆ
ତହିଁ ଇଲଜ କିଆ ?

୫୩୮ — ଯା ବାପ ଚଢ଼େ ଘୋଡ଼ା
ତା ପୁଅ ଥୋଡ଼ା ଥୋଡ଼ା ।

୫୩୯ — ଯାହାକୁ ମାରେ ଗୁରୁ ଗୋଇଠା
ଅନ୍ଧାର ଘରେ ଜଳେ ବଇଠା ।

୫୪୦ — ଯାର ଲୁଣ ଖାଇ
ତାର ଗୁଣ ଗାଇ ।

୫୪୧ — ଯାହା ନ ଖାଇବେ ଝିଅ
ତା' ଜୋଇଁଙ୍କ ପତରେ ଦିଅ ।

୫୪୨ — ଯାହା ଖାଇଥିବ ପେଟକୁ
ଯାହା ନେଇଥିବ ବାଟକୁ ।

୫୪୩ — ଯାହା ମନ ଯାହାଠି ରସେ
ପୋକସୁଙ୍ଘା ଫୁଲେ ଭଅଁର ବସେ ।

୫୪୪— ଯାହା ନାହିଁ ଭାରତେ
ତା ନାହିଁ ଭାରତେ ।

୫୪୫— ଯା ନୋହିଲ୍ଲା ବାଳକାଳେ
ତା' ନୋହିବ କାଳେ କାଳେ ।

୫୪୬— ଯା ହେବ ପଛେ ହେଉ
ଭୁଲନ୍ତା ମନ
ଛଳନ୍ତା ପାଣି, ଲେଉଟି ନ ଅସେ ଆଉ ।

୫୪୭— ଯୁଗ ଯାଏ
କଥା ରହେ ।

୫୪୮— ଯେବେ ପୂରଥିବ ତୋଲ
ସୁନାର ବଚନ ବୋଲ ।
ଯେବେ ନ ପୂରନ୍ତୁ ତୋଲ
ଫୋ' ଫା' କର ବୋଲ ।

୫୪୯— ଯେସାକୁ ତେସା
ହାରମଯାଦାକୁ ଝାଙ୍ଗିଆ ପଣା ।

୫୫୦— ଯେହୁ ଆକଟ ନ କଲ ପୋଇଲ
ତେ କା ଯେଣେ ମନ ତେଣେ ଶୋଇଲ ।

୫୫୧— ଯେ ନୁହନ୍ତ ବାଳକାଳେ
ସେ ନୁହନ୍ତ କାଳେ କାଳେ ।

୫୫୨— ଯେ ଦେଶ ଯାଇ
ସେ ଫଳ ଖାଇ ।

୫୫୩— ଯେଉଁ ରାଜରେ କରବୁ ଘର
ଅଧେ ଆପଣା ଅଧେ ପର ।

୫୫୪— ଯେ ଖାଇ ଜାଣେ
ସେ ଖୋଇ ଜାଣେ ।

୫୫୫— ଯେ ଅନ୍ଧା
ସେ ରଗେ ବନ୍ଧା ।

୫୫୬— ଯେଣେ ଇଚ୍ଛା ତେଣେ ଯା'
କର୍ମ ଘେନି ବୁଲୁ ଥା ।

୫୫୭— ଯେବେ ପାଇଥେ ଘଇତା ବୁକୁ
ସଜ ହୋଇଥାଏ ବାପ ଘରକୁ ।

୫୫୮— ଯେମନ୍ତ ମରବ ପ୍ରାଣୀ
ତାକୁ ଦଣ୍ଡ ବରଗୁଚ୍ଛ ଅଣି ।

୫୫୯— ଯେ ଯହିଁକ ଡରେ
ସେ ତହିଁକ ମରେ ।

୫୬୦— ଜୋର ଯା'ର
ମୁଲକ ତାର ।

୫୬୧— ଯୋ ଗୟା
ସୋ ଗୟା ।

୫୬୨— ଯେତେ ମାଠିବ ମାଠ
ସେଇ ଦରପୋଡ଼ା କାଠ ।

୫୬୩— ଯୋଗ ଯାଏ
ଯୋଗଣୀ ନ ଯାଏ ।

୫୬୪— ଯୋଉ ରାଇଜରେ ମାଇପି ରଜା
ତହ ତହ କାଞ୍ଜି ଶୀତଳ ଭଜା ।

୫୬୫— ଯେବେ ଶାଶୁ ମରବାର ସତ
ଦେଉଳେ ବାନ୍ଧବ ନେତ ।

୫୬୬— ଯୋଡ଼ା ପାଣିଅଣା ମାଣ୍ଡିଆ ଘୋରଣା
ପିଲ ଝୁଣି ଝୁଣି ଖାଉଛ
ଅଛଟା କାନୁକୁ ବେଲୁର ବାଡ଼
ଧକ ସକ ଉଡ଼ୁ ଯାଉଚ୍ଛ ।

(ର) ୫୬୭— ରଜା ପାଇଛୁ ଜାଣି
ହେଗୁ ମଇର ପାଣି ।

୫୬୮— ରଙ୍କ ପାଇଛୁ ଝର
ପାଣି ପିଇ ପିଇ ମର ।

୫୬୯— ରଜା ଘର ଘିଅ
କାନ ପଣତରେ ନିଅ ।

୫୭୦— ରଜା ରାଣୀଙ୍କ
କଣା କାଣିଙ୍କ ।

୫୭୧— ରଜା
ଗୋଜା ।

୫୭୨— ରଜା ଅଗରେ ସତ କହିବ
ମାଇପ ଅଗରେ ମିଛ ଭାଷିବ ।

୫୭୩— ରଥ ବାଜପୋଇ ହିଅ
ଅଣିତ, ନେଇତ, ହାର ଥୋଇତ
ବେଦୀରେ ବ୍ୟାଇଛୁ ପୁଅ ।

୫୭୪— ରସ ଆମ ଜାଡରେ ନାହିଁ
ପିତଳ ନ ଲଗାଉଁ
ପାଣି କାଚକୁ କଡ଼ଉଡ଼ ନାହିଁ
ଛୁଞ୍ଚା ହାତେ ଥାଉଁ ।

୫୭୫— ରାଣ୍ଡ ବଭାକୁ କର୍ଣ୍ଣ ନାହିଁ
କ୍ଷ ସମୁଦ୍ର ପ୍ରତିଷ୍ଠାକୁ ପାଠ ନାହିଁ ।

୫୭୬— ରାଣ୍ଡକୁ ଲଗା ନାହିଁ
କ, ଷଣ୍ଢକୁ ପଘା ନାହିଁ ।

୫୭୭— ହାତ ଦହି ଝିଅ ଜରକୁ
ଟିକରା ଗୃଷ ଢ଼ରକୁ
ଗାଁ ମୁଣ୍ଡ ଘର ଚୌରକୁ
ବୁଢ଼ା କାଳ ବଭା ପରକୁ ।

୫୭୮— ରାହୁ ଘଡ଼ିକ ରାହୁର
ଚନ୍ଦ୍ର ଘଡ଼ିକ ଚନ୍ଦ୍ରର ।

୫୭୯— ରାଣ୍ଡେ ସେଇ ଘଇତା କରନ୍ତି
ଭଲ ଭଲଅଙ୍କ ମହତ ସାରନ୍ତି ।

୫୮୦— ରାମ ଖଣ୍ଟୁଆ
ଗୁଆ ନାହିଁ ଗୁଣ୍ଡି ନାହିଁ ଛୁଞ୍ଚା ବଟୁଆ ।

୫୮୧— ରାଢ ବରଷା
ମାଆ ପରଷା ।

୫୮୨— ରାନ୍ଧୁଣି ଦାଛ
ମୁଗ ପଇତରେ ଭରୁଛି ମାଛ ।

୫୮୩— ରୂପ ନାହିଁ କାନ୍ତି ମାଡ଼ି ପଡ଼ୁଛି
ବାହା ନାହିଁ ବଦ ଛୁଡ଼ି ପଡ଼ୁଛି ।

୫୮୪— ରୂପ କାନ୍ତି
ଦେଖିଲେ ମାଡ଼ୁଛି ବାଡ଼ିବାନ୍ତି ।

୫୮୫— ରତନୀ, ପାଟ ପତନୀ ବରଗଛ ମୂଳେ ଘର
ବାପ ଜାଣି ନେଇଁ, ମାଆ ଜାଣି ନେଇଁ
ନେଇଗଲା ବୁଢ଼ାବର ।

(ଲ) ୫୮୬— ଲ ବର
ସୁନା ଫୁଲ ବୋଲି କାନରେ ଖୋସିଲି
ମୋ କରମକୁ କାନଶିର ।

୫୮୭— ଲଙ୍କାରୁ ଯେତେକ କାଠ
ସମସ୍ତେ ଅସୁର ଦାଇତ ।

୫୮୮— ଲମ୍ବା ଗୃଷ
ଘରେ ଉପାସ ।

୫୮୯— ଲଜକୁର କଙ୍କଡ଼ା ସମୁଦ୍ର ପନ୍ତାରେ ଥାଏ
ଦେଢ଼ଶୁର ଅଡ଼େ ଅଢ଼େଇ ପୁଅ ବିଏ ।

୫୯୦— ଲାଜ ନ ଥାଏ ଯେବଣ ମୁହଁକୁ
ଭଣ୍ଡାର ନ ଥାଏ ଖଜୁରବାକୁ ।

୫୯୧— ଲାଜ ନ ଥିଲେ ମର
କାଞ୍ଜିପାଣି ହାଣ୍ଡିରେ ଅମ୍ବିଲ ନ ଥିଲେ
ଅମ୍ଳ ଦଖଣ୍ଡେ ଭର ।

୫୯୨— ଲାଜ ନ ଥାଏ ଯେବଣ ମୁଖେ
ସ୍ବୈର କରୁଥାଏ ଆଲୁଅ ପକ୍ଷେ ।

୫୯୩— ଲାଜ ନାହିଁ ନିଲ୍ଲଜକୁ
ଶୁଖିଲା ଭୂଇଁରେ କଠଉ ମାଉଛି
ଠକ ଠକ ଶୁଭିବାକୁ ।

୫୯୪— ଲଜ ନ ଥେ, ଲଜଉ ଥେ
ଫଟା ମୃଦଙ୍ଗକୁ ବଜଉ ଥେ ।

୫୯୫— ଲବଣ ମୁଗୁର ବାରସି
ଦେଖେଇ ଦେବ ଫାରଶି ।

୫୯୬— ଲିପିଲେ ପୋଛିଲେ କୁଡ଼ ସୁନ୍ଦର
ଖାଇଲେ ପିଇଲେ ବୁଢ଼ ସୁନ୍ଦର ।

୫୯୭— ଲୁଣ ଖାଏ ହାଣ୍ଡି
ଚନ୍ଦ୍ରା ଖାଏ ଗଣ୍ଡି ।

୫୯୮— ଲେଉଟିଆ ଶାଗ ପଟାଳ ପଟାଳ
ତହିଁ ମାଡ଼ପଲ୍ଲା କାକର
ମୁଁ ତ ଅଟଇ ଯୁବା ବୟସୀ
କେତେ ଗୃହୁଁ ଥାଅ ନାଗର ।

୫୯୯— ଲେଖ ଲେଖିଲେ ମର୍କଟମୁହାଁକ
ଲମ୍ବନାକ କୋପ କଲେ କାହିଁକ ?

୬୦୦— ଲେଖୁ ଲେଖୁ କରଣ
ହଗୁ ହଗୁ ମରଣ ।

୬୦୧— ଲୁଗା ମୁହେଁ ଦେଲ ଢଅର
ଶାଶୁ ବଅଣରେ ପୋଚିଏ ନାହିଁ ମୋ
ଗାଁ ଯାକ ମୋର ଢଅର ।

(ଶ) ୬୦୨— ଶଉସ୍ତି
ସୂତା କାଟେ ଘୋଡ଼ା ଦଉଡ଼
ହାଟକୁ ଗଲା ବକ
ଉନ୍ତ ମାଇଲା ମୁଖ ।
ଅଇଲା ଧାଇଁ
ପଡ଼ିଲା ଶୋଇ
ଘଇତା ଅଟରେ କହିବା ପାଇଁ ।

୬୦୩— ଶାକ, ସିମିଳ, ବଗା କାଠ
ମୂର୍ଖ ସାଥିରେ ନ ଗ୍ଭଲ ବାଟ
ଯେବେ ମୂର୍ଖ ପଣେ ଗ୍ଭଲବୁ ବାଟ
ଖାଇବୁ କହୁଣୀ ରଚ୍ଚ ଗ୍ଚ୍ଚ ।

୬୦୪— ଶାଶୁ ମଲ୍ଲ
ବୋହୂ ବେଇଲ୍ଲ
ଯୋଉ ତନ
କ ସେଇ ତନ ।

୬୦୫— ଶଶୁରେ ହୋଇବେ ଗାଁ ଦଣ୍ଡୁଆସି
ଶାଶୁ ହେବେ ଦଣ୍ଡୁଆଶୁଣୀ
ମୋ ସ୍ୱାମୀ ହୋଇବେ କନକ ପାତର
ମୁଁ ହେବ ପାଟରାଣୀ ।

୬୦୬— ଶାଢ଼ୀ କ ଲୋଭ
ପେଢ଼ କ ଲୋଭ ।

୬୦୭— ଶାଗ ପୋଡ଼ବାକୁ ନ ଥେ ଲୁଣ
ଟୋକା ଖୋଜୁଥାଏ ତନ ତଉଣ ।

୬୦୮— ଶାଗ ଖରଡ଼ଲ, ଜୀର ପରଜଲ
ତହିଁରେ ବାସନା ନାହିଁ ରେ
ଶାଶୁ ଗାଳ ଦେଲେ, ନଣନ୍ଦ ବୋଇଲେ
ତହିଁରେ ତ ସୁଖ ନାହିଁରେ ।

୬୦୯— ଶାଳୁଆ ଗଜା
ଘଇତା ଉପରେ ମାଇପ ରଜା ।

୬୧୦— ଶାଶୁ ମାରୁଥିଲ୍ଲ ବୋହୂକୁ
ବୋହୂ ଘର ହୋଇ କାହାକୁ ମାରବ
ମାରୁଥାଏ ଚୁଲମୁହିଁକୁ ।

୬୧୧— ଶାଶୁ ଗରଗର ବୋହୂ ଗରଗର
ଅଡ଼ତ କରବ କଏ
ଚୁଲମୁଣ୍ଡ ଠେଇ ବଲେଇ ବୋଲଇ
ମୁଁ ଗରଗର ହୁଏ ।

୬୧୨— ଶିବା ପଥର ଜଗା କାଠ
ଅଉ ଦେବତା ମାଠ ମାଠ ।

୬୧୩— ଶିବା ଅଭଳେ ଭେପା ଖାଏ
ଦନ ପାଣି ପର ଯାଏ ।

୬୧୪— ଶୀତ ପଗୃଇ ମିତ ଭାଇକ
ଫୁଙ୍ଗୁଲା ଗାଣ୍ଡିଆ ଢରେ ନାହିଁକ
ଖାଉର ଗଞ୍ଜେଇ ଗାଉଚ୍ଛୁ ଗୀତ
ପିଠିରେ ପକେଇ ନଚ୍ଛୁ ଶୀତ ।

୬୧୫— ଶୂଦ୍ର ପଇସା ମଦକୁ
ବ୍ରାହ୍ମଣ ପଇସା ବାଦକୁ ।

୬୧୬— ଶୋଷୀ ମର୍ କାଠ
କାନ୍ଥ ଭିତର ଫାଟ
କାଖ ବାନ୍ଦୁଅ ଗୃଷ୍ଠ ।

୬୧୭— ଶୁଖିଲ ସାରୁ
ମନ ମରଗଲା ଦ ପହରୁ ।

(ଷ) ୬୧୮— ଷାଠିଏ ଶୋଲଖ ପଢ଼େ ଶୁଆ
ବିରାଡ଼ି ଦେଖିଲେ ଅଗୃଭୁଆ ।

(ସ) ୬୧୯— ସକଳ ଅଦ୍ଧିବ ବାଟରେ ଘର
କୁଲୁଅଁ ପଡ଼ଲେ କରଇ ଜ୍ୱର ।

୬୨୦— ସପନ କଥାକୁ ସତ ମଣିଅଛୁ
ବାଅକୁ ବାନ୍ଧଛୁ ଫାଶି
ସରଗ ତାରାକୁ ଆଶା କରଅଛୁ
ସେ କ ପଡ଼ବ ଖସି ।

୬୨୧— ସଙ୍ଗାଡ ସଖି
କମ୍ପ ଜ୍ୱର କଲା ତୁମକୁ ଦେଖି ।

୬୨୨— ସବୁ ଯାଉ ମହତ୍ତ୍ୱ ଥାଉ
ମହତ୍ତ୍ୱ ଗଲେ ନ ମିଳଇ ଆଉ ।

୬୨୩— ସବୁ ସଉତୁଣୀ ଥଲେମାଲେ
ଭଉଣୀ ସଉତୁଣୀ ବିଷଦେଇ ମାରେ ।

୬୨୪— ସଙ୍ଗବାଲା ଯଦ୍ଦ ହାଙ୍କସେ ଯାଇ
ଭାଙ୍ଗ ବାଲା ଯଦ୍ଦ ଠୋଡ଼େସେ ଦେଇ
ମର୍ଦ୍ଦବାଲା ଯଦ୍ଦ ରୋଜ କମାଇ
ପ୍ରୀତିବାଲା ଯଦ୍ଦ ମାଙ୍ଗସେ ଦେଇ ।

୬୨୫— ସମସ୍ତେ ଭଲ
ହଗୁର ମୁତୁର ପାରୁଡ଼ପଲ ।

୬୨୬— ସର
ବରଗଛ ମୂଳେ ଘର
ଯେ ନ ପଶିବ, ସେ ପଶିବ
କାହାକୁ କରିବ ପର ।

୬୨୭— ସବୁ ଚକୁଳରେ ଅଗୁଏ ଘିଅ
ଶାଶୁ ଦେଇଥିଲେ କୋଳଥ ପୁଅ ।

୬୨୮— ସକାଳ ପଖାଳ ଦଦ୍ରୁକ
ଚିଙ୍ଗୁଡ଼ି ଶୁଖୁଆ ପୋଡ଼ିକ ।

୬୨୯— ସଞ୍ଜ ସକାଳେ ନିଦ ଯେ ଯାଏ
ତାର ପଇସା ବଇଦ ଖାଏ ।

୬୩୦— ସବ ଚୁଆଁକୁ ଏକ ବୁଡ଼
ଗୋଟିଏ ପାପରେ କୁଳବୁଡ଼ ।

୬୩୧— ସବୁ ତରତର ସୁହାଯାଏ
ହଗିଲା ତରତର ସହ୍ୟ ନ ହୁଏ ।

୬୩୨— ସବୁଥିରେ ଥାଏ
କାହିଁରେ ନ ଥାଏ ।

୬୩୩— ସମୟେ ସୁଖ
ସମୟେ ଦୁଃଖ ।

୬୩୪— ସମ୍ପଦବେଳେ ଗୁରୁ ନ ହେବ
କ, ବିପତ୍ତି ବେଳେ କାତର ନ ହେବ ।

୬୩୫— ସହସ୍ରେ କୁଞ୍ଜରେ ଦା' ନୁହେଁ
କ, ସହସ୍ରେ ମୁଲିଆରେ ଗାଁ ନୁହେଁ ।

୬୩୬— ସାତ ଚକୁଳି ଚଉଦ ଟେଁ
ଶାଶୁ ବୋଇଲା କୋଉଁ ମୋର ସର୍ବଙ୍କେ
କାଦୁଅ ଚପୁ ଚପୁ ପାଇଲି ଫାଳ
ରଜାଙ୍କ ହାତରେ ମଲି ଦୋପା ଲ ।

୬୩୭— ସାଙ୍ଗରେ ଚର
ସାଙ୍ଗରେ ମର
ସାଙ୍ଗ ସୁଖେ ଘରଦୁଆର କର ।

୬୩୮— ସାପ ବାର ବାଙ୍କେ ଯିବ
ନଈ ସାତ ବାଙ୍କେ ଯିବ
କଥା ଶହେ ବାଙ୍କେ ଯିବ ।

୬୩୯— ସାତ ଗଡ଼ଗଡ଼ା ଗୋଇଠା ଖାଇ
ପୁଛନ୍ତି ବୋଲେ ମୋ ଘଇତା କାହିଁ ?

୬୪୦— ସାନ ବୋହୂ ପରପଞ୍ଚ
ତାର କଥାଟାଇ ଗବ ଖୁଞ୍ଚ
ବଡ଼ ବୋହୂ ପରମାଣି
ବଚନ ମୁନ୍ଦକ ପଇଡ଼ ପାଣି ତା
ପିଇ ଦେଲା ପର ଜାଣି ।

୬୪୧— ସେହୁ ଯେବେ ବଣିଆ ଲେ ମୁହିଁ ବଣିଆଣି
ସଜ ଗଢ଼ାଠାକୁ ଦେବା ଫୁଙ୍କୁନଳା ଆଣି ।
ସେହୁଁ ଯେବେ ଯୋଗୀ ହେବ ମୁଁ ବୋହିବ ଥାଳ
ତାହା ସଙ୍ଗତରେ ମୋର ଯାଉ ଦିନ କାଳ । (ପାଲା)

୬୪୨— ସବୁ ଜାଣେ
ବେହୁ ଘଇତାର ନା ନ ଜାଣେ ।

(ହ) ୬୪୩— ହଡ଼ାର ଦୁଃଖ କୁଆ ନ ଜାଣେ
ଠକ ଠକ କରି ଠେଙ୍ଗିକୁ ହାଣେ ।

୬୪୪— ହାତୀ ଜୀଇଥିଲେ ଲକ୍ଷେ ଟଙ୍କା
ମରିଗଲେ ଲକ୍ଷେ ଟଙ୍କା ।

୬୪୫— ହାଇ୍ ଘନ ଘନ ମାର କାହିଁକି
ପର ଘର ବୋଲି ଜାଣି ନାହିଁ କି ?

୬୪୬— ହାଡ଼ ଘଇତା ଯାର
ହଗିଗଲା ବେଳେ ଢୋଲ ବାଜେ ତାର ।

୬୪୭— ହାଣ୍ଡିରେ ଗାଆନ୍ତି
ଗୋଡ଼ରେ ପଡ଼ିଲେ ଗାଧୋଇଯାନ୍ତି ।

୬୪୮— ହାତରେ ନ ଥାଇ ଧନ
ପୁଅ ବାହା କର ମନ ।

୬୪୯— ହାଇ ଘନ ଘନ କେଶ ମୁଞ୍ଚିଲା ତାକୁ କହିବ ଜର
ଦାଣ୍ଡରୁ ଆସିବ ଘର ଚମକିବ ତାକୁ କହିବ ବର
ମାଇପ ବାନ୍ଧିବ ମାଆ ପରଷିବ ତାକୁ କହିବ ଘର ।

୬୫୦— ହାଇ ଫଡ଼ ଫଡ଼ ମଡ଼ୁଛି
ପକା ଡୋଳା ଝାଉଁଛି ।

୬୫୧— ହୁଠୁ ହୁଠୁ ମୋର ଅଗୁଳେଇ କି
ବାଗୁଲେଇ ସାହା ହାଣ୍ଡିଖାଇକି ।



## ଢଗ—ଦ୍ୱିତୀୟ ଭାଗ (ଗଦ୍ୟାଂଶ)



(ଅ) ୧— ଅଁଣ୍ଠା ପଥରରୁ କୁଅକୁ ହୁରୁଡ଼ାନ୍ତ ନାହିଁ ।

୨— ଅକଲେ ବୈରାଗୀ ପଥର ବୁହେ ।

୩— ଅକାଳ ଯୋଗୀ ସକାଳେ ?
ପଥ ବଡ଼ ଦୂର ।
ନଦୀ ତରଙ୍ଗ ? ନାବିକ ଧୀର ।

୪— ଅକାଳ କାଣ୍ଡ କପାଳେ ବାଜେ ।

୫— ଅଙ୍ଗାଏ ମାହାର୍ଦ୍ଦ ଯାହା, କଣିକାଏ ନିର୍ମ୍ମାଲ୍ୟ ତାହା ।

୬— ଅଜାଗା ଘା ଦେଖି ହୁଏ ନାହିଁ କି,
ଦେଖେଇ ହୁଏ ନାହିଁ ।

୭— ଅଜଗରକୁ ଦାତାରାମ ।

୮— ଅଜାତକୁ ବଣିଜ ଅଡ଼ୁଆ ।

୯— ଅଣ୍ଟିଛୁର ତଣ୍ଟି କାଟେ ।

୧୦— ଅତି ଲୋଭରୁ ତନ୍ତି ମରେ ।

୧୧— ଅତିଭକ୍ତି ଚୋରର ଲକ୍ଷଣ ।

୧୨— ଅତି ଲେମ୍ବୁ ଚିପୁଡ଼ିଲେ ପିତା ।

୧୩— ଅତି ସିହାଣାରୁ କୁଅ ଗୁହ ଖାଏ ।

୧୪— ଅତି ଫମ୍ପତରେ ପୁଅ ନାଁ ବାଣ୍ଡୁଦେବ ।

୧୫— ଅନ୍ତ ମୋଟ ପୁଅ ହଗଣା ସହେ ।

୧୬— ଅନ୍ନ ପଶିଲେ ବର୍ଣ୍ଣ ବାହାରେ ।

୧୭— ଅନ୍ଧକୁ ସାକ୍ଷୀ ସୂରଦାସ ।

୧୮— ଅନ୍ଧେ ପାଣି ବୋହିଲେ, ତନି ଜଣ କମେଇ ।

୧୯— ଅମାଳକ ରାଇଜରେ ବିଜୁଳି ଲକ୍ଷେ ଟଙ୍କା ।

୨୦— ଅପୂଜା ଦଅଁକୁ ଦେହୁରୀ ପଢରସଜରୁଣୀ ।

୨୧— ଅଣ୍ଟି ସୁନା ଓ ଭଣ୍ଡି, ପରବାଳ ଧର ଲାଭ କଣ ?
୨୨— ଅବୁଝାମଣା ରଜାକୁ ପାଳ ବୁଝା ମନ୍ତ୍ରୀ ।
୨୩— ଅବରଣରେ ବରଣ, ମଧ୍ୟ ପାତ୍ରରେ ବଳା ।
୨୪— ଅଭାଗା କପାଳରୁ ସମୁଦ୍ର ଶୁଖେ ।
୨୫— ଅଭାବରୁ ସ୍ୱଭାବ ନଷ୍ଟ ।
୨୬— ଅରକ୍ଷିତକୁ ଦୈବ ସାହା ।
୨୭— ଅଲଣାରେ କ ସୁଆଦ, ପରରେ କ ମାନ ?
୨୮— ଅସମର୍ଥକୁ ଖ୍ରୁମୁଳ ଲୋଡ଼ା ।
(ଆ) ୨୯— ଆଉଁଶିଲା କୁକୁର ମୁହଁରେ ବୁକ ଦଏ ।
୩୦— ଆଖି ବୁଜିଲେ ସଂସାର ଅନ୍ଧାର ।
୩୧— ଆଖୁ ମିଠା ବୋଲି ତା ଗଣ୍ଠି କଣ ମିଠା ?
୩୨— ଆଗତ ଚଢ଼େଇକି ବେସର ବଟା ।
୩୩— ଆଗେ ମାଡ଼, ପଛେ ବିଗୁର ।
୩୪— ଆଗ ପୁଅ ବାଘ ।
୩୫— ଆଖି ନ ଫିଟୁଣୁ ମହାଭାରତ ।
୩୬— ଆଗୁରେ ବ୍ରାହ୍ମଣ—ବିଗୁରେ ପଣ୍ଡିତ ।
୩୭— ଆଙ୍ଗୁଠି ନ ବଙ୍କେଇଲେ ଘିଅ ନ ବାହାରେ ।
୩୮— ଆଜି କଥା କାଲିକି ଅନ୍ତର ।
୩୯— ଆଜି ମଲେ କାଲିକି ଦ'ଦିନ ।
୪୦— ଆପେ ଜୀଇ ରହିଲେ ସବୁ ଅରଜ ।
୪୧— ଆ ବଳଦ, ମତେ ବିନ୍ଧ ।
୪୨— ଆଲେ ବୋଇଲେ କାଲେ ଶୁଭୁଛି ।
୪୩— ଅଣ୍ଟୁକୁଡ଼ା ବଳଦ, ମୁହଁରୁ ଜଣା ପଡ଼େ ।
(ଇ) ୪୪— ଇସ୍ ବୋଇଲେ କି ଗୋଟେ ନ କାଟେ ?
(ଉ) ୪୫— ଉଡ଼ଗଲା ଲିଅ ନୈବେଦ୍ୟ ସ୍ୱାହା ।
୪୬— ଉଠିଲା ମାଛ ମୁହଁରେ ବାଡ଼ି ।
୪୭— ଉଅଂପି କନ୍ୟାକୁ ଅଲେଇଣିଆ ବର ।
୪୮— ଉଧାର ମାଣକ କେବେ ଉଣା ନ ହୁଏ ।

(ଏ) ୪୯— ଏକଇର ବଳା ବଣୀକେଶନ ।
୫୦— ଏକା ମାଣ୍ଡିଆ ବାଇଶୀ ପଳ ।
୫୧— ଏକା ମାଘକେ ଶୀତ ନ ଯାଏ ।
୫୨— ଏକୁ ଅନୋଡ଼ ଅନୋଡ଼ ମେଣ୍ଢା ମଙ୍ଗଳପୁର ଯିବେ ।
୫୩— ଏକା ମେଘକେ ଯୋଡ଼ା ଚନ୍ଦ୍ରମା ନ ଉଏଁ ।
୫୪— ଏକା ମାଳୀର ଛଅ ଦେଉଳ ।
୫୫— ଏକା ନଈ ସହସ୍ରେ କୋଶ ।
୫୬— ଏଣ୍ଡୁଅ ଧାଉଡ଼ ଶିଝୁବାଡ଼ ଯାଏ ।
୫୭— ଏତେ ମହାବଳ ବାଘ ପଡ଼ ଗଡ଼ଖାଡ଼ରେ ଗଲା ।
୫୮— ଏ ବର୍ଷ ବେଗି, ଅଗଡକୁ ବଇଦ ।

(ଓ) ୫୯— ଓଡ଼ଣ ବଅଣରେ ପୂଜ ନାହିଁକ ରକତ ନାହିଁ ।
୬୦— ଓଡ଼ଅ ନ ଡକ୍ତିଲେ ଘର ଛୁଅନ୍ତି ନାହିଁ ।
୬୧— ଓଧ ସାଥିରେ ବଣଭୁଆ ବାଇ ।
୬୨— ଓଳିଆରୁ ପଡ଼ ଗଜା ।
୬୩— ଓଲୁଅକୁ ବଣସାରୁ ସାକ୍ଷୀ ।
୬୪— ଓହଳକୁ ବୋହଲ ଝାଣ ।
୬୫— ଓପ୍ରଧିଆ ମାଇପକୁ କୁକୁର ଖାଏ ।

(କ) ୬୬— କଟକ ଭଣ୍ଡାର ଦେଶରେ ରଜା ।
୬୭— କତରୀ ଘୋଡ଼ ହେଲେ କଣ ଯମ ଛାଡ଼ିବ ।
୬୮— କଙ୍କଡ଼ାକୁ ଗୋଳପାଣି ଭଲ ।
୬୯— କପାଳେ ନ ଥିଲେ ଭୂପାଳେ ନ ଦଅନ୍ତି ।
୭୦— କପାଳ ମନ୍ଦ ବେଳକୁ ଘର ଭିଙ୍କେ କୁମ୍ଭୀର ପାଲଟେ ।
୭୧— କର୍ପୂର ଗଲାଣି, କନା ଖଣ୍ଡିକ ଅଛି ।
୭୨— କମଳଯାକ ଇ ବାଲ, କେତେ ବାଛୁବୁ ବାଛ ।
୭୩— କରତର ଘାଅ, ସହ୍ୟ ହୁଏ ନାହିଁ କ
ସୂହେଇ ହୁଏ ନାହିଁ ।
୭୪— କଳାଷଠା ଷାଠିଏ ।
୭୫— କର୍ମ ଅବଳକୁ, ବେକ ହାର ନାଗସାପ ପାଲଟେ ।

୭୬— କହିଦେଲ କଥା ବୋହିଗଲ ପାଣି ।

୭୭— କଂସାର ଘର ପାରିକୁ କୁଲ ଗାଣ୍ଡି ଗାଣ୍ଡି ।

୭୮— କଥା କହି ଜାଣିଲେ କଦଳୀମୁଣ୍ଡା ବିକାଯାଏ ।

୭୯— କହିବା ଲୋକ ବଡ଼ ନୁହେଁ, ସହିବା ଲୋକ ବଡ଼ ।

୮୦— କଦେ଼ଇ ଲାଗି ମିନା ଦୋକାଗୀଛ ସୁନ୍ଦର ।

୮୧— କହିଲେ କୁଳ କୁଟୁମ୍ବକୁ ଲାଜ
ନ କହିଲେ କୁଳ ଭାସି ଯାଉଛି ।

୮୨— କାଉଞ୍ଚ ପାଣିରେ ପଡ଼ିଲେ ତା ଜୋଆଡ ନ ଭାଙ୍ଗେ ।

୮୩— କାଣି ବରାଡ଼ର କୁଜ ଅସର୍ପା ଉପରେ ରାଗ ।

୮୪— କାଳୀଗାଈର ଭନେ ଗୋଠ ।

୮୫— କାନି ଯୋଗୀ ମୁଣ୍ଡରେ ଜଟ ।

୮୬— କାର୍ଯ୍ୟ ତର ତର ବର୍ଣିଜ ମଠ ।

୮୭— କାଳ ଅସି ଲଠାରେ ପଶିଲାଣି ।

୮୮— କାହାର ପାଲିଙ୍କି ଉପରେ ପାଟଛତା ତ,
କାହାର ବେଢ଼ି ଉପରେ କୋରଡ଼ା ।

୮୯— କାଲ୍ଲ ଠାର କାଲ୍ଲ ମାଆ ଜାଣେ ।

୯୦— କାଉଁରଆ କାଠି ଭାଙ୍ଗିବ ପଛେ ନଇଁବ ନାହିଁ ।

୯୧— କାଣି ଆଖିରେ କଜଳ ଗାରେ ।

୯୨— କଂଜୁସର ଦୁଗୁଣ ସରେ ।

୯୩— କାନ୍ଦରେ ପଡ଼ିଲେ ବଜେଇ ଶିଖନ୍ତି ।

୯୪— କାମ ସରଲେ ବେଦୀମୁହଁ ପୋଡ଼ ।

୯୫— କାଲି କଥା ଆଜକୁ ଅନ୍ତର ।

୯୬— କାହାଣେ କଉଡ଼ିକୁ ପନିକ ବନ୍ଧା ।

୯୭— କାଠିମାସ୍ତାଙ୍କ ଅଢ଼ୁ ତେଲ ।

୯୮— କୂଅରେ ବେଙ୍ଗ ପଡ଼ିଲେ ସମସ୍ତେ
ଠେଲେ ଠେଲେ ମାରନ୍ତି ।

୯୯— କୁଳ ବୁଡ଼ାଲ୍ଲ ବେଲକୁ ଘୋଡ଼ାମୁହାଁ ପୁଅ ଜାଉ ।

୧୦୦— କୁକୁର ଲାଙ୍ଗୁଡ଼ ବ୍ରହ୍ମା ହେଲେ ବାର ବର୍ଷରେ
ସଲଖି ପାରିବେ ନାହିଁ ।

୧୦୧— କୁକୁରକୁ ମାଇଲେ କେଁ, ନ ମାଇଲେ କେ ।
୧୦୨— କୁକୁଆଙ୍କୁ କଁଅଁ କାନ୍ଥୁ ଗରୁଅ ?
୧୦୩— କୁଜ ଗେଣ୍ଡା ଧନେ ହେଲେ ଶଙ୍ଖ ପାଲଟେ ?
୧୦୪— କେଉଟ ମାରେ ମାଛ, ଖାଏ କଙ୍କଡ଼ା ।
୧୦୫— କେତେବେଳେ ଶଗଡ଼ ଉପରେ ନାହା ତ,
କେତେବେଳେ ନାହା ଉପରେ ଶଗଡ଼ ।
୧୦୬— କୋଶଲା କଅସ୍ତ୍ରିଙ୍କ ମେଘନାଦ ପାଚେର ।
୧୦୭— କୋଳି ଖାଇ କଏ ମଞ୍ଜି ପୋତୁଛି ?
୧୦୮— କୋହଳ ପାଇଲେ ଦୋଅଡ଼ ଚଷନ୍ତି ।
୧୦୯— କଡ଼କ ଉଇ, କଡ଼କ ପୁଇ ହେଲେ ଛୁଆଁଟିଏ ।

(ଖ) ୧୧୦— ଖଜୁର ଗଛକୁ କସ ବାହୁନବ ମୂଳରୁ
ପାହାଚ ପାହାଚ ।
୧୧୧— ଖଣ୍ଡା ହାଣେ ପରକ ଯଶ ନିଏ ।
୧୧୨— ଖାଇ ନନ୍ଦା ପତର ହଗା ।
୧୧୩— ଖାଇବାକୁ ପାଇଲେ ବଣଜନ୍ତୁ ବଶ ହୁଅନ୍ତି ।
୧୧୪— ଖାଇଲେ ଭ ଜାତ ଯାଏ ନାହିଁ, କହିଲେ ଜାତ ଯାଏ ।
୧୧୫— ଖାଇଲା ପୁଅ ଝିଅ ରଙ୍କ ।
୧୧୬— ଖାଇ ବସିଲେ ନଈବାଲି ସରେ ।
୧୧୭— ଖୁଣ୍ଟ ଗୁଣେ ଘୋଡ଼ା କୁଦେଇ ହୁଏ ।
୧୧୮— ଗୁଣଠେଇ ଗୁଣ ଥାଏ ।

(ଗ) ୧୧୯— ଗଛ ଭାଙ୍ଗିଲେ ମୂଳରେ ପଡ଼େ ।
୧୨୦— ଗଛ ଚଢ଼ି ନ ଜାଣିଲା ଲୋକ କୁଆ ଅଇଁଠା ଖାଏ ।
୧୨୧— ଗହମ ଗୋଟି ଗଣିତା, ରେଟି ଖାଉଛି କଏ ?
୧୨୨— ଗଭବର ମାଇପ ସମସ୍ତଙ୍କର ଶାଳୀ ।
୧୨୩— ଗର୍ବ କଲେ ଖର୍ବ ହୁଏ ।
୧୨୪— ଗାଁ କନାଅଁ ସିଙ୍ଘାଣିନାକେ ।
୧୨୫— ଗାଲୁଅଙ୍କୁ ମାଲୁଅ ସର ନୁହେ ।
୧୨୬— ଗାଲୁଅଙ୍କର ବାରବାଟୀ ଗୃଷ ।

୧୨୭— ଗୁଡ଼ଘରେ ପିମ୍ପୁଡ଼ି ପଶୁଛି ।
୧୨୮— ଗୁହକୁ ମାରିଲେ ମୁହଁରେ ପଡ଼େ ।
୧୨୯— ଗୁହ କାଢ଼ି କିଆଁ ନାକରେ ହାତ ?
୧୩୦— ଗୋଟିଏ ପୁଅ କି ପୁଅରେ ଲେଖା ?
୧୩୧— ଗୋଠ ମାଡିଲେ ଖଣ୍ଡିଆ ହଡ଼ା ମାଡେ ।
୧୩୨— ଗୋଟିଏ ହାତରେ ତାଳି ନ ବାଜେ ।
୧୩୩— ଗୋଦର ଲୋ ତୋ ଗୋଡ଼କୁ ଅନା ।
୧୩୪— ଗୋଠ ଖଣ୍ଡିଆର ଗୋସେଇଁ ମରେ ।
୧୩୫— ଗୋହମରା ଡାହୁକ, ବଉଁଶମରା ଗୁଣ୍ଡୁରି ।

(ଘ) ୧୩୬— ଘରତା ଧକସକ ବେଳେ ମାଇପ କଜଳ ଅଙ୍ଗି ।
୧୩୭— ଘଡ଼ିକେ ଘୋଡା ଝୁଣ୍ଟୁଛି ।
୧୩୮— ଘଡ଼ିକେ ଘଡ଼ି ଅନ୍ତର ।
୧୩୯— ଘର ପେଡ଼ିରୁ କୁଠାଖିଏ ପାଇଲେ ସିନ୍ଧୁଅ ।
୧୪୦— ଘର ନାଆଁ ବୋଲି କଣ ଅଣ୍ଟିରେ ନେଇ ହେବ ?
୧୪୧— ଘର ଚିକି କମ୍ପୀର ହେଲେ ଶାଳି ମରଣ ଯୋଗ ।
୧୪୨— ଘର ମା' ଡାହାଣୀ ।
୧୪୩— ଘୁଷୁରି ପେଟରୁ ମାଣିକ ଜାତ ।

(ଚ) ୧୪୪— ଚଉଦ ପାହୁଲିଆ ତଙ୍ଗାକୁ ସନ୍ତୁଆ ମଙ୍ଗୁଆଳ ।
୧୪୫— ଚକୁଳି ଖାଅ, ନା ପୁଅ ବନ୍ଧ ଗଣୁଛ ?
୧୪୬— ଚକେ ଗଲେ ବାରହାତ ।
୧୪୭— ଚମ୍ପେଇନୋଳି ନିତ କହେ କାଲି କାଲି ।
୧୪୮— ଚୁଲ୍ଲଣୀ କହୁଛି ଛୁଞ୍ଚିକୁ, ତୋ ଗାଣ୍ଡିରେ କଣା ।
୧୪୯— ଚୁର ଭଗୁଆର କାକୁଡ଼ି ବାଡ଼ି ।
୧୫୦— ଚୁଲି ନ ଜାଣିଲେ ଗୋଇଠି ବଙ୍କା ।
୧୫୧— ଚୁଷ ଉର ଉର ବଣିକ ମଠ ।
୧୫୨— ଚିଲ ଉଡ଼ିଲେ କଣ୍ଟା ଡାଳେ ।
୧୫୩— ଚିହ୍ନା ବ୍ରାହ୍ମଣର ପଇତାରେ କି ଲୋଡ଼ା ?
୧୫୪— ଚିଉ ଯେବେ ଦମ୍ଭ ଦାଣ୍ଡସାହିରେ ଘର ।

୧୫୫ — ଚେଇଁ ଶୋଇବ ଯେ, ତାକୁ ଉଠେଇବ କିଏ ?

୧୫୬ — ଚୋରର ମନ ଗଣ୍ଠିରେ ।

୧୫୭ — ଚୋରକୁ ବଠେଧ ମାଇଲେ ସିଲୁଅ ।

୧୫୮ — ଚୋରର ପଳେଇଲେ ବୁଦ୍ଧି ଅସେ ।

୧୫୯ — ଚୋରର କର ପାଇକ ପଣ ।

୧୬୦ — ଚୋରିକର ଭଲ ଲୋକ ହାବୁଡ଼େ ପଡ଼ିବ ।

୧୬୧ — ଚୋରକୁ କହନ୍ତ ଚୋରିକର,
ପାହାରକୁ କହବ ଜଗିଥା ।

୧୬୨ — ଚକ ଭିଲକୁ ଅଠା ଭିଲ ।

(ଛ) ୧୬୩ — ଛଅ ଟଙ୍କାର ଘୋଡ଼ାକୁ ନଅ ଟଙ୍କାର ଦାନା ।

୧୬୪ — ଛଟେନ୍ଦ କଉଡ଼ି ବନ୍ଦେ ଧାନ ।

୧୬୫ — ଛପନା କୋଟି ଜୀବଙ୍କୁ ବାଅନ କୋଟି ଭଣ୍ଡାର ।

୧୬୬ — ଛି ବୋଇଲେ କୁକୁର ବାରବର୍ଷ ପାଣି ଛୁଏଁନା ।

୧୬୭ — ଛେଳି ଗୋଡ଼ରେ ଯେବେ ଧାନ ମଳାହେବ
ବଳଦ ଯିବେ କୁଆଡ଼େ ?

୧୬୮ — ଛୋଟି ଥାଉ ଥାଉ ପନ୍ଧାଡ଼େ କିଏ ହଗିବ ?

୧୬୯ — ଛୋଟାକୁ ପବନସିଂ କହିଲେ
ସେ ଦଉଡ଼ି ଦଉଡ଼ି ମରେ ।

୧୭୦ — ଛୋଟ ମୁହଁରେ ବଡ଼ କଥା ।

୧୭୧ — ଛୋଟିକୁ ଶ୍ରୀମନ୍ତୀ ବୋଇଲେ
ସେ ଗୋଡ଼ ବୁଲେଇ ବୁଲେଇ ପକାଏ ।

(ଜ) ୧୭୨ — ଜଡ଼ା ତେଲ, ମେଣ୍ଢାବାଳ ।

୧୭୩ — ଜଣେ ଲୋକ ପୋଷିଲେ ଯେ
ଘରେ ହାତୀ ପୋଷିଲେ ସେ ।

୧୭୪ — ଜମ୍ବୁକଲ ଜାଗାରେ ମୁହୂର୍ତ୍ତେ ନ ରହି

୧୭୫ — ଜଳନ୍ତା ଦୀପ ତଳ ଅନ୍ଧାର ।

୧୭୬ — ଜନ୍ମରୁ ଅନ୍ଧ, ପୁଅ ନାଁ ପଦ୍ମଲୋଚନ ।

୧୭୭ — ଜାଗିଲା ଘର ଭାଙ୍ଗେ ନାହିଁ ।

୧୭୮— ଜାତ ଅଗରେ ହାତୀ କଛୁ ନୁହେ ।
୧୭୯— ଜାତଗଲା, ପେଟ ନ ପୂରିଲା ।
୧୮୦— ଜୀବ ଭଲମନ୍ଦ, ମରଣକାଳେ ଜଣାପଡ଼େ ।
୧୮୧— ଜୀଇନ୍ତେ ମଣିଷ, ଅଜୀଇନ୍ତେ ଗୋରୁ ।
୧୮୨— ଜୀବ ଥିବା ଯାଏ ଲୋଭ ।
୧୮୩— ଜୀବେ ଦୟା, ନାମେ ବିଶ୍ୱାସ ।
୧୮୪— ଜୋକ ମୁହଁରେ ଲୁଣ ।

(ଝ) ୧୮୫— ଝର ନ ପଶିଲେ ଘର ହୁଏ ନାହିଁ ।
୧୮୬— ଝାଟି ଥିଲେ କାଲିକି କାନ୍ଥ ମାଟି ଲଗିବ ।
୧୮୭— ଝିଅ ଘିଅ ସମାନ ।
୧୮୮— ଝିଅକୁ ମାରି ବୋହୂକୁ ଶିଖାନ୍ତି ।

(ଟ) ୧୮୯— ଟଙ୍କାକର ଶାଗ ଖାଇଲେ କଡ଼ାକର ବଳ ନାହିଁ ।
୧୯୦— ଟଙ୍କା ଥିଲେ ମାଆ ବାପ ଛଡ଼ା
କୋଉ ପଦାର୍ଥ ଅପୂରୁବ ।
୧୯୧— ଟୋକୀ ଦେଖିଲେ କିଏ ବା ନ ଟଳିବ,
ପରାଶର ଋଷି ତ ଟଳି ଯାଇଛନ୍ତି ।
୧୯୨— ଟେକା ହାତରୁ ଖସିଲେ ଅଣ ବାହୁଡ଼ା ।

(ଠ) ୧୯୩— ଠାକୁର ଘରେ କିଏ ନା ମୁଁ କଦଳୀ ଖାଇ ନାହିଁ ।
୧୯୪— ଠିଆ ହୋଇ ଗୋଡ଼ ଲମ୍ବେଇଲେ କଣ୍ଟୁଡ଼ ପଡ଼ିବା ସାର,
ବସି ଗୋଡ଼ ଲମ୍ବେଇଲେ ସୁନ୍ଦର ।
୧୯୫— ଠେକିଲେ ଶିଖନ୍ତି ।

(ଡ) ୧୯୬— ଡାଳୁଅ ଯୋଗୁଁ କାନଣିର ପାଣି ପାଏ ।
୧୯୭— ଡମ୍ବ ତଅଣ କି ଅଇଁଷରେ ଲେଖା ।
୧୯୮— ଡୁବିକର ପାଣି ପିଇଲେ ବ୍ରହ୍ମାଙ୍କୁ ଅଗୋଚର ।
୧୯୯— ଡେଙ୍ଗା ମୁଣ୍ଡରେ ଠେଙ୍ଗା ବାଜେ ।
୨୦୦— ଡମ ଛୋଇକେଇ ଧୋଇଲେ ଶୁଦ୍ଧ ।

(ଢ) ୨୦୧— ଢିଙ୍କି ସ୍ୱର୍ଗକୁ ଗଲେ ଧାନ କୁଟେ ।
୨୦୨— ଢିଙ୍କିଶାଳରେ କଅଁ ଢେଙ୍କାନାଳ ଶଳା ?

୨୦୩— ତିକ୍ତି ଭରଣ୍ଡିରେ ମୁଣ୍ଡଦେଇ ପାହୁରାଣିକ କାଅଁ ଡର ?

୨୦୪— ତିହ୍ନିକି ଜାଣେ ବୋଝର ଗରୁ ।

(ତ) ୨୦୫— ତାତଲା ପାଣିରେ କଣ ଘର ପୋଡ଼ି ଯାଏ ?

୨୦୬— ତନ୍ତ ତୁଣ୍ଡରେ ଛେଳ କୁକୁର ।

୨୦୭— ତୁଣ୍ଡ ନ ପିଟିଲେ ଦୁଃଖ ନ ଯାଏ ।

୨୦୮— ତୁଣ୍ଡ ନରେନ୍ଦ୍ର, ପିଠି ଅରକ୍ଷିତ ।

୨୦୯— ତୁଳସୀ ଦୁ ପତ୍ରରୁ ବାସେ,<br>ବଛୁଆତ ଦୁ ପତ୍ରରୁ କୁଣ୍ଡେଇ ହୁଏ ।

୨୧୦— ତୁଳସୀ ପତ୍ରରେ କି ସାନ ବଡ଼ ?

୨୧୧— ତେଲ ପଗ୍ନୁ ପୁଅ, ପାଣିପଗ୍ନୁ ଧାନ ।

୨୧୨— ତେଲିଆ ମୁଣ୍ଡରେ ତେଲ ।

୨୧୩— ତୋ ଗାଣ୍ଡିରେ ବୋଝେ ଗୁହ,<br>ତୁ ପରକୁ କଣ ତଅରୁଛୁ ?

୨୧୪— ତୋଠ ଜଗିଲେ ଧୋବ ପିନ୍ଧିବ ।

୨୧୫— ଥିଲାବେଳେ ଚରି କନା, ହଜିଗଲେ ମାଠ ।

(ଦ) ୨୧୬— ଦାଉ ସାଧିବ ତ ବେଳକାଳ ଦେଖି ।

୨୧୭— ଦାଣ୍ଡ ମଝିରେ ପୁଅବେଇ ଡାହାଣୀକି କାଁୟା ଡର ?

୨୧୮— ଦାତାର ଘିଅ ସରୁଛି,<br>ବ୍ରାହ୍ମଣ ସ୍ୱାହା ସ୍ୱାହା କରିବାକୁ ଡରିବ କାହିଁ ।

୨୧୯— ଦାଣ୍ଡ ଦାସୀ ଦାଣ୍ଡରେ ଗଲା,<br>ଦେଖିଲା ଲୋକକୁ କାହିଁ ଲାଜ ଲାଗିବ ?

୨୨୦— ଦାରୁ କି ସହେ କରତର ଘାଆ ।

୨୨୧— ଦାସୀଘରେ ଭାଉଆ ରଜା ।

୨୨୨— ଦାନ୍ତୁରି ନ ହୁଏ ଗଜ ମୂରୁଖ, ଦାନ୍ତୁସୀ ନ ହୁଏ ସତୀ ।

୨୨୩— ଦାରିବଇର ଠାରୁ ବଇର ନାହିଁ ।

୨୨୪— ଦୀପ ତଳ ଅନ୍ଧାର ।

୨୨୫— ଦୁ ନାବରେ ଗୋଡ଼ଦେଲେ କାଣ୍ଟୁ କାଣ୍ଟୁ ବୁଡ଼ି ମରନ୍ତି ।

୨୨୬— ଦୁଅଁ ଗନ୍ଧୁ ଗନ୍ଧୁ ମାଙ୍କଡ଼ ।

୨୨୭— ଦ ଘର କୁକୁଆଁ ଉପାସ ରହେ ।
୨୨୮— ଧନକେ ବେଶ୍, ପଦ୍ମକେ ଭେସ୍ ।
୨୨୯— ଧନକର ଭାତ, ଯୁଗକର କଥା
୨୩୦— ଧାପ ଡେଙ୍ଗିଲେ ହାତ ନଷ୍ଟେ ଶକଣ ହୁଏ ।
୨୩୧— ଦୁକୁ ଦୁକୁ ଅମ୍ମା, ନଈ ଗଡ଼ାରେ ଘର ।
୨୩୨— ଦେଖଇ ଚନ୍ଦନ ପୋଛଇ କାଠ ।
୨୩୩— ଦେଖିଲା ସାପକୁ ଗାତେ ନ ପୂରାଇ ।
୨୩୪— ଦେଶଲୋକେ ପଣସ ଖାଇଲେ ଭଣ୍ଡାର ମୁଣ୍ଡରେ ଅଠା ।
୨୩୫— ଦେଶ ମେଲିକି ରଜା ମେଲ ପାଏ ନାହିଁ ।

(ଧ) ୨୩୬— ଧଇଲା ଚଢ଼େଇ ମାଇଲା ମୂଷା ।
୨୩୭— ଧକ ସକ ବେଳେ କଜଳ ଅଖି ।
୨୩୮— ଧନ ମାଈ, ପଣ ଅଣ୍ଡିରା ।
୨୩୯— ଧର୍ମ୍ମ ଗାଈ କର୍ମ୍ମକୁ ।
୨୪୦— ଧୁଆ ମୂଲା ଅଧୁଆ ମୂଲା ସବୁ ସମାନ ।
୨୪୧— ଧୀରପାଣି ପଥର କାଟେ ।
୨୪୨— ଧୋବ ଦେଖିଲେ ଲୋଭ ଲାଗେ ।

(ନ) ୨୪୩— ନଈକୂଳରେ ଘରକର କମ୍ଭୀର ସାଥିରେ କଳି ?
୨୪୪— ନଗରେ ଛୁଣ୍ଡିବା କଥା କୁଟୁଡ଼ି ଯାକେ କଅଁ ଯିବ ?
୨୪୫— ନଡ଼ିଆ ଭିତରେ କେଉଁ ଶିରେ ପାଣି ପଶୁଛି ?
୨୪୬— ନରମାୟା ନାରାୟଣଙ୍କୁ ଅଗୋଚର ।
୨୪୭— ନ ମାଗିଲେ ଦେବତା ଖାଉ ନାହିଁ ।
୨୪୮— ନଈ ପାଣି ନଈରେ ଗଲା, ପିତୃଲୋକେ ସନ୍ତୋଷ ।
୨୪୯— ନଳଗୋଡ଼ ଘା, ଦୁଆରବନ୍ଧ ସାଉ ।
୨୫୦— ନବାବ ବସ୍ତୁର ବସ୍ତୁର କହିଲେ
ଭାତ ନ ମିଳିଲେ ପଲେଉ ଖାଅ ।
୨୫୧— ନାନା ମୁନିଙ୍କର ନାନା ମତ ।
୨୫୨— ନାହିଁ ମାମୁଁ ଠୋଉ କଣା ମାମୁଁ ଭଲ ।
୨୫୩— ନାମ ବଡ଼ା କାମ ଥୋଡ଼ା ।

୨୫୪— ନାଆଁ ନ ଥାଇ ଧୂଆଁ ନ ବାହାରେ ।

୨୫୫— ନାକରେ ଦଉଡ଼ି ବେକରେ ବନ୍ଧା ।

୨୫୬— ନିଜେ ଭଲ ତ ସଂସାର ଭଲ ।

୨୫୭— ନାଗଭକୁ ଭଉଣୀ ଜୋଇଁ ଭଲ ।

୨୫୮— ନିଜ ଶିଙ୍ଗରେ ମାଟି ନ ତାଡ଼ିଲେ
କେହି ତାଡ଼ି ଦେବେ ନାହିଁ ।

୨୫୯— ନିଜ ଓଣ୍ଟିମ ନିଜେ ନ ବଜେଇଲେ
କେହି ବଜେଇ ଦେବେ ନାହିଁ ।

୨୬୦— ନିଜ ଦୁଃଖକୁ ହାଡ଼ି ବାଉରି ନାହିଁ
ପରଦୁଃଖ କିଏ ପଗୁରେ ?

୨୬୧— ନେଇ ଅଣି ଥୋଇ ଜାଣିଲେ ଶ୍ରେରିବଦ୍ୟା ଭଲ ।

(ପ) ୨୬୨— ପଞ୍ଚ ମୁଖେ ହରି, ହରି ମୁଖେ ଜଗତ ।

୨୬୩— ପଣ୍ଡିତ ପୁଅ ମାଙ୍କଡ଼ ମାଇଲେ ଧୋକଡ଼ ହୁଏ ।

୨୬୪— ପଗଡ଼ି ଭିଡ଼ୁ ଭିଡ଼ୁ କଚେରି ବରଖାସ୍ତ ।

୨୬୫— ପରଭୃତ ମରକା ଗୁଣ୍ଡା ।

୨୬୬— ପହିଲି ବାଜି ଭୀମ ହାରେ ।

୨୬୭— ପଠାଣ ମାଡ଼ ଖାଇଲେ ମାଇପ ଆଗେ କହେ ନାହିଁ ।

୨୬୮— ପାଠ ପଢ଼ିଥିଲେ ଗୀତ ଗାଉଥାନ୍ତି
ହାଡ଼ି ବାଉରିଙ୍କ ପୁଅ ।

୨୬୯— ପାଡ଼ି ଗଲେ ଗାଣ୍ଡି ଉଶ୍ବାସ ।

୨୭୦— ପାଗ ବାନ୍ଧୁ ବାନ୍ଧୁ କଚେରି ବରଖାସ୍ତ ।

୨୭୧— ପାଞ୍ଚ ଜଣକା ଲଠି ଏକ ଜଣକା ବୋଝ ।

୨୭୨— ପାପଧନ ପ୍ରାୟଶ୍ଚିତ୍ତରେ ଯାଏ ।

୨୭୩— ପାଇଲା ଗାଈଅ ବୃହାନ୍ତି ।

୨୭୪— ପାଡୁଅକୁ କଣ୍ଟରେ ମାରି ।

୨୭୫— ପାଞ୍ଚ ଅଙ୍ଗୁଠି ସମାନ ନୁହନ୍ତି ।

୨୭୬— ପାଣିକି ପିଟିଲେ କଣ ଦୁଭାଗ ହେବ ?

୨୭୭— ପାପଙ୍କ ଦେହରେ ଛେଳି ରୋଗ ।

୨୭୮— ପାପ ପାତାଳରୁ ବାହାରେ ।

୨୭୯— ପାଲଗୋଷ୍ଠର ଅଗ ନାହିଁ କି ମୂଳ ନାହିଁ ।

୨୮୦— ପିଠି ଅରକ୍ଷିତ ମୁହଁ ନରେନ୍ଦ୍ର ।

୨୮୧— ପିମ୍ପୁଡ଼ି କି ମୁତ ପହଁରେ ।

୨୮୨— ପୁଅ ଜଙ୍ଘରେ ହଗିଲେ କଣ ଜଙ୍ଘ କାଟି ଦେବ ।

୨୮୩— ପିଠି କି ଜାଣେ ପେଟର କଥା ?

୨୮୪— ପିତ୍ତଳ ମାଠିଆ ଧୋଇଲେ ଶୁଦ୍ଧ,
ମାଟି ମାଠିଆ ଧୋଇଲେ ମାଲୁ ।

୨୮୫— ପେଟ ପୂରିଲେ ଝିଅ ଗୋବରିଆ ।

୨୮୬— ପେଟକୁ ଦେଇ ପିଠିକି ମାରିଲେ ସୁହାଯାଏ ।

୨୮୭— ପେଟ ବିକଳରେ ମାଧିଆ ଯୋଗୀ ।

୨୮୮— ପେଟ କାଟକୁ ବୋଇତବଣିଜ ସରି ନୁହେଁ ।

୨୮୯— ପେଟରେ ଭୋକ ରଖି ମୁହଁରେ ଲାଜ କରିବ ନାହିଁ ।

୨୯୦— ପୋଡ଼ିଗଲା ତଅଣରେ କି ସୁଆଦ ଥାଏ ।

(ଫ) ୨୯୧— ଫମ୍ପା ମାଠିଆର ଶବଦ ବେଶୀ ।

୨୯୨— ଫଳନ୍ତି ଗଛ ଫୋପଡ଼ ସହେ ।

୨୯୩— ଫୁଲ ମହରଗରେ ସିମିଳିଫୁଲ ଗନ୍ଧ ।

(ବ) ୨୯୪— ବଡ଼ ମାଛର କଣ୍ଟା ସାର ।

୨୯୫— ବଗଙ୍କ ବେକ ବଢ଼ିଲେ ମୀନଙ୍କ ବିପତ୍ତି ।

୨୯୬— ବ୍ରହ୍ମା ବଳବଳେଇଲେ ବେଦ ।

୨୯୭— ବସିବା ଠାରୁ କାଣିବା ଭଲ ।

୨୯୮— ବହୁତ ଲୋକରେ ମୂଷା ନ ମରେ ।

୨୯୯— ବନସ୍ତ କଣ୍ଟା ବେଲସୁଁ ଗଜା ।

୩୦୦— ବଳା ପାରିଲେ କଳା ଘୁଞ୍ଚେ ।

୩୦୧— ବସି ଖାଇଲେ ନଈବାଲି ସରେ ।

୩୦୨— ବାଘର ଘରେ ମିରିଗର ନାଟ ।

୩୦୩— ବାର ବର୍ଷର କଥା ସୁଝିଁବଲେ ନୂଆ ।

୩୦୪— ବାସିକି ରହିଲେ କୁଭା ନ ଖାଏ ।

୩୦୫— ବାର ପାହୁଲିଆ ଓଙ୍ଗାକୁ
ଗିରଗିଟିଆ ଠୋକା ମଙ୍ଗୁଅଳ ।

୩୦୬— ବାପ ପୁଏ ରାତ ଅନିଦ୍ରା ମୁଗୁର ଗାଣ୍ଡି ମେଲ୍ଲ ।
୩୦୭— ବାପ ତେଲ ବହୁନେ ଲଣ୍ଡା
ନା ପୁଅ ରଖୁଚ୍ଛ ବାବୁର ବାଳ ?
୩୦୮— ବାପ ଘଣେ ଚିଙ୍କି ଗିଲା ।
୩୦୯— ବାରହାତ ମଇ କୋଡ଼ ବେଣ୍ଟକୁ ଅଇଲାଣି ।
୩୧୦— ବାହା ସରଲେ ବେଦ ମୁହଁ ପୋଡ଼ ।
୩୧୧— ବାର ବର୍ଷର ଝିଙ୍କର ମାଟିରେ ନ ମିଶେ ।
୩୧୨— ବାର ବର୍ଷର ତପସ୍ୟା ଏକା ଶୁଖୁଅ ପୋଡ଼ାକେ ଯାଏ ।
୩୧୩— ବାଅକୁ ବଡା ।
୩୧୪— ବଳଦଟାଏ ନା ଚୋପେ ଦୁହୁଁ ।
୩୧୫— ବଳ ଥିଲା ବାହୁଟିଅ ପଙ୍କରେ ଲେଟେ ନାହିଁ ।
୩୧୬— ବଳେ ନ ସାଧିଲେ କଳେ ସାଧିବ ।
୩୧୭— ବରଷେ ଗଲେ ପୁରୁଷେ ଯାଏ ।
୩୧୮— ବାଇ ହାତରେ କାଆଁ ଖପର ।
୩୧୯— ବାଞ୍ଝ କି ଜାଣେ ବେଇବା ଦୁଃଖ ।
୩୨୦— ବାଘର ଫାଗକୁ ଡର ।
୩୨୧— ବାଘ ଭେକଲକୁ ଛେଳି ଦୁର୍ବଳ ।
୩୨୨— ବାନ୍ଧଲା ଘୋଡ଼ା ଘାସ ଖାଏ ।
୩୨୩— ବାପ ଥିଲା ପୁଅ ସଭାରେ ନ ହାରେ ।
୩୨୪— ବଅଳ ପାଚଲେ ବାଉର ହାଣ୍ଡିରେ ପେଜ ।
୩୨୫— ବଭା ବେଳେ ବାଇଗଣ ରୁଆ ।
୩୨୬— ବାଧାଡା ଶିର ଓଣ୍ଡ ଚଢ଼ ଦଏ ।
୩୨୭— ବରାଢ଼ ବେକରେ ଘଣ୍ଟି ବାନ୍ଧିବ କିଏ ?
୩୨୮— ବିଶ୍ୱାସରେ ବିଷ ଦେଲେ ବ୍ରହ୍ମାଙ୍କୁ ପାର ନ ଯାଏ ।
୩୨୯— ବୁଲେଇ ବାକଲେ ମାଣିକ ଭଣ୍ଡି ।
୩୩୦— ବୁଢ଼ଗଲା ଗୋଡ଼ ତଳକୁ ତଳକୁ ।
୩୩୧— ବେଙ୍ଗ ବୋଲେ ବେଙ୍ଗୁଲି ଲୋ
ପୃଥ୍ୱୀ କ୍ଷଣେ କ୍ଷଣକେ ଅନ ।
୩୩୨— ବେଙ୍ଗ ପେଟରେ ଘିଅ ପାର ନ ଯାଏ ।

୩୩୩— ବେଙ୍କରେ ପଢ଼ିଲେ ବଙ୍କେଇ ଶିଖନ୍ତି ।
୩୩୪— ବେଗୁନିଆ ବାଡ଼କୁ ସୁନାମୁହିଁ ଛାଟି ।
୩୩୫— ବେଙ୍ଗ ଉପରେ ଝଣ୍କର ଘାଆ ।
୩୩୬— ବେଢ଼ିଆ ଘରେ ଅଲ୍ଗୁଳ କୁଲୁଆଁ ।
୩୩୭— ବୋହୂକୁ ଉଆରୁ ଉଆରୁ ଶାଶୂ ଭଣ୍ଡାର ଘରତା କଲା ।
୩୩୮— ବୋଝ ଉପରେ ନଳିତା ବିଡ଼ା ।
୩୩୯— ବାଜ ଗୁଣେ ମିରଗ ଫୁଟୁଫୁଟିକିଆ ।
୩୪୦— ବାଅଣି ଛମାସ ତୋଉ କଣ୍ଠ ମୁକୁଲା ।
(ଭ) ୩୪୧— ଭାଗ୍ୟ ଯାର ଖେରାପ ଧଇଲା ସୁନା ଭଣ୍ଡି ।
୩୪୨— ଭାଗ୍ୟ ଯାର ଭଲ ମାଟି ଧଇଲେ ସୁନା ।
୩୪୩— ଭାତ ହାଣ୍ଡିରୁ ଗୋଟିଏ ଚିପିବ ନା ହାଣ୍ଡିକ ଚିପିବ ?
୩୪୪— ଭଗାର ନ ଥିଲେ କାଲବାନି ଭଗାର ।
୩୪୫— ଭଗବାନ କାଠର ପୋକକୁ ପଢ଼ ଖଞ୍ଜିଛନ୍ତି ।
୩୪୬— ଭଗାର ଜୀଇ ସାଧି ।
୩୪୭— ଭାଗ ପହିଲ ବାଜ ହାରେ ।
୩୪୮— ଭୁକିଲା କୁକୁର ନ କାମୁଡ଼େ ।
୩୪୯— ଭେକ ଥିଲେ ଭିକ ମିଳେ ।
୩୫୦— ଭାଗବତ ଅଧ୍ୟାକ ଗୋଟିଏ ନ ଶୁଣିଲେ କଣ ହେବ, ଶୁକ ଶୁଣନ୍ତି ।
୩୫୧— ଭୋକେ ସୁଆଦ ବୟସ ସୁନ୍ଦର ।
୩୫୨— ଭୁଲଶବା ପାଗ ବାନ୍ଧୁ ବାନ୍ଧୁ ମହାଭାରତ ଶେଷ ।
(ମ) ୩୫୩— ମଜ୍ଜନମୁହାଁକି ପରତେ ନାହିଁ ।
୩୫୪— ମାଇପ ଉପ୍ରୋଧରେ ସାନ ଶଳାକୁ ଦଣ୍ଡବତ ।
୩୫୫— ମାନିଲେ ଦେଅଁ, ନ ମାନିଲେ ପଥର ।
୩୫୬— ମଲା ଗଲା ସଂସାର ।
୩୫୭— ମନ ଥିଲେ ଫଳ ପାଇ ।
୩୫୮— ମହୁର ପୋକ ମହୁରରେ ନ ମରେ ।
୩୫୯— ମଡ଼ା ଉପରେ ଢଳୁଆର ।

୩୬୦— ମୟୂର ସଜ ହେଉ ହେଉ ଡେପଗୁ ରଜା ହେଲା ।
୩୬୧— ମଲା ପିଲାର ଗଲା ଠେଁଠ ।
୩୬୨— ମଲା ବେଳକୁ ହନୁ ସତ କହେ ।
୩୬୩— ମାଳୀକ ଛେଳ ଅଡ଼ୁଆ ।
୩୬୪— ମାହେନ୍ଦ୍ର ବେଳ ଷଣେ ।
୩୬୫— ମାଗି ଅଣିଲା ଭଅଣ ମୁଣ୍ଡକେ ।
୩୬୬— ମାଡ଼ ଭୟରେ ମାଙ୍କଡ଼ ନାଚ କରେ ।
୩୬୭— ମାରୁଥିଲେ ମହାପାତ୍ରେ ଗୃହୁଁ ଥିଲେ ଜଲକା ।
୩୬୮— ମାଆ ପେଟ କୁମ୍ଭାର ଉହା ।
୩୬୯— ମାଇଲା ଘରେ ଭୂତ ନେଇଁ ।
୩୭୦— ମିଆଁଙ୍କର ଗୃହକାଣ୍ଡ ଫିଠା ।
୩୭୧— ମୁଖ ନ ପିଟିଲେ ଦୁଃଖ ନ ତୁଟେ ।
୩୭୨— ମୂଳରୁ ମାଇପ ନାହିଁ, ପୁଅ ନାଁ ଗୋପାଳଆ ।
୩୭୩— ମୋହନକୁ ମୁକୁଣିଆଳ ବଳ ପଡ଼ଲା ।
୩୭୪— ମା'ର ପୁଅ କରଜ ଦିଏ, ବାପର ପୁଅ ଅସୁଲ୍ କରେ ।
୩୭୫— ମାରେ ସିପେଇ କତେ ସର୍ଦ୍ଦାର ।

(ଯ) ୩୭୬— ଯତ୍ନ କଲେ ରତ୍ନ ମିଳେ ।
୩୭୭— ଯମକୁ ସାତ ପୁତ ଦବ, ପଢ଼ଣା ଘରକୁ ପୁତେ ଦବ ନାହିଁ ।
୩୭୮— ଯଦ୍ବାପା କଣ୍ଟକ୍ଷୀ କନାହିଁ ନ ଥିଲା ତଦ୍ଭୁଦେ ବନାଇ ଛବ ।
୩୭୯— ଯାକେ ବିଦ୍ୟା ତାକେ ସାଜେ ।
୩୮୦— ଯାଚ ଓଳଗି, ମାଗି କଲ୍ୟାଣ ।
୩୮୧— ଯାଚିଲା କନ୍ୟା ସ୍ବତନ୍ତ୍ର ନାହିଁ ।
୩୮୨— ଯହିଁ ରାମ ତହିଁ ଅଯୋଧ୍ୟା ।
୩୮୩— ଯା ପୁଅକୁ ସାପ କାମୁଡ଼େ, ତା ମାଆ ପାଳ ଦଉଡ଼ି ଦେଖିଲେ ଡରେ ।
୩୮୪— ଯହିଁ ରଙ୍କେ, ତହିଁ କଣ୍ଟକ ।

୩୮୫— ଯେ ଗାଣ୍ଡିମୁଣ୍ଡା ଫିନ୍ଧଛନ୍ତି, ସେ କଣ ମୁଣ୍ଡବାକୁ ବାଛ ରଖିନେବ ?

୩୮୬— ଯେଉଁ ଡାଳ ଧରିଲେ ସେଇ ଡାଳ ଛିଡ଼ୁଛି ।

୩୮୭— ଯେଝା ଘଡ଼ିକ ସେଝାର ।

୩୮୮— ଯେଝା ହାତରେ ଯେଝା ରଉଦ ପାଅ ।

୩୮୯— ଯେତେ ବାଉଁଶ ସେତେ ପୋଲ ।

୩୯୦— ଯେତକ ଚୁନାକୁ ସେତକ ପିଠା ।

୩୯୧— ଯୋଗୀ ଘରେ ଭିକ୍ଷି ପଶୁରୁଛି ?

୩୯୨— ଯୋର ଯାର ମୁଲକ ତାର ।

୩୯୩— ଯୋଡ଼ାକୁ ଘୋଡ଼ା ଘର ନୁହେଁ ।

(ର) ୩୯୪— ରକ୍ଷକ ହୋଇ ଭକ୍ଷକ ହେଲେ ମରଣ ଯୋଗ ।

୩୯୫— ରଙ୍କ ଇଚ୍ଛାରେ କି ଭୋଜନ ?

୩୯୬— ରଙ୍କ ଘରେ ରାଜ କୁଳୁଅଁ ।

୩୯୭— ରଜା ପୁଅକୁ କଣ ଖଜା ଅପୂରୁବ ?

୩୯୮— ରାଣ୍ଡିର କଅଁ ଆଉଁଷରେ ଶାନ୍ତା ?

୩୯୯— ରାବଣ ଦଶ ମୁଖରେ ଖାଇଲେ ଏକା ପେଟକୁ ଯାଏ ।

୪୦୦— ରୁକୁଣା ରଥ ଅଣଲେଉଟା ।

୪୦୧— ରୋପିଲ ବୃକ୍ଷକୁ କୁଣ୍ଡ ନ ପାଏ ।

୪୦୨— ରାଜ ପାଇଲେ ଲକ୍ଷଣ ନ ବର୍ତ୍ତନ୍ତି ।

୪୦୩— ରାଗ ପରମ ଚଣ୍ଡାଳ ।

୪୦୪— ରାଣ୍ଡେ ଖାଇ ଲେଉଟଲେ ତୋଡ଼ମାଛ ମୁଣ୍ଡ ବାରବୋଡ଼ ।

(ଲ) ୪୦୫— ଲକଠକ ବାହାପିଅକୁ ପୁରାଣ ପଣ୍ଡା ସର ନୁହେଁ ।

୪୦୬— ଲଙ୍କାରେ ହର ଶବଦ ।

୪୦୭— ଲକ୍ଷେ ଅର୍ଜିଲେ ପକ୍ଷକୁ ନଅଣ୍ଟ ।

୪୦୮— ଲମ୍ବ ପଣତ ସବୁ ଅଡ଼କୁ ପାଏ ।

୪୦୯— ଲଜୁଆ ବ୍ରାହ୍ମଣ ଖାସୁଆ ଗୈର ।

୪୧୦— ଲଭ ନ ଥାଇ ବଣିଜ ନାହିଁ ।

୪୧୧— ଲଭରୁ ଲୋଭ, ଲୋଭରୁ ପାପ, ପାପରୁ ମୃତ୍ୟୁ ।

୪୧୨— ଲଅକୁ ଗୁଡ଼ ସାକ୍ଷୀ ।

୪୧୩— ଲୁହା କଅଁଳ ହେଲେ
ବଢ଼ଈ ଗେଣ୍ଠ ଗେଣ୍ଠ କର କାମୁଡ଼େ ।

୪୧୪— ଲୁହା କଷଟକୁ କମାର କଷଟ ।

୪୧୫— ଲୁହା ଜାଣି କମାର ପାଣି ଦିଏ ।

୪୧୬— ଲେଞ୍ଚୁଲା ଘାଅ ପୋଛୁଲେ ଯାଏ ନାହିଁ ।

୪୧୭— ଲୁଣ ଖାଇ କଣ କାଳ ଯିବ ?

୪୧୮— ଶଗଡ଼ ପଛକେ କଅ ବାଡ଼ରେ ପଡ଼ୁ
ଭଡ଼ା କଣ ଛାଡ଼ଯାଏ ।

୪୧୯— ଶହକେ ସୁପାର, ହଜାରକେ ପାନ ।

୪୨୦— ଶରୀର ଦେଖି ଧର୍ମ କର ।

୪୨୧— ଶତ୍ରୁକୁ ବାଳକାଳୁ ମାରବ ।

୪୨୨— ଶହେ ପାମ୍ପଡ଼କୁ ଏକା ବଧେ ।

୪୨୩— ଶହେ ହାଣ୍ଡିକୁ ଏକା ଠେଙ୍ଗା ।

୪୨୪— ଶିଖେଇ ଦେଲା ବୁଦ୍ଧି ମାଗି ଅଣିଲା ଡଅଣ ।

୪୨୫— ଶିଳ ଶିଳୁପା ଗଗନେ ଉଡ଼ନ୍ତି,
ଟିମିକା ତୁଳା ବୋଲନ୍ତି ମତେ ରଖ ।

୪୨୬— ଶୁଖିଲାରେ ଫାଳ ଘା ।

୪୨୭— ଶୋଇଲା ପୁଅର ଭାଗ ନାହିଁ ।

(ଷ) ୪୨୮— ଷଡ଼ କର୍ଣ୍ଣେ ମନ୍ତ୍ର ଭେଦ ।

୪୨୯— ଷଣ୍ଢ ମହାଦେବଙ୍କର, ଗାଈ ସହଦେବଙ୍କର,
ବଳଦ ବାପୁଡ଼ା କାହାର ନୁହେଁ ।

(ସ) ୪୩୦— ସମୁଦ୍ରକୁ ମାନ କଲେ ଅସ୍ନାହିଆ ଯାନ୍ତି ।

୪୩୧— ସମୁଦ୍ରକୁ ଶଙ୍ଖେ ପାଣି ।

୪୩୨— ସମୁଦ୍ର ଲଙ୍ଘିଲେ କୂଳ କେତେ ମାତର ?

୪୩୩— ସଦେଇ ରଙ୍ଗ ରଙ୍ଗ ।

୪୩୪— ସବୁ କୁକୁର ବାରାଣସୀ ଯିବେ,
ଅଇଁଣ୍ଠା ପତର ଚାଟିବ କଏ ?

୪୩୫— ସତ କହିଲେ ଭାଇ ଭଗାରି ।

୪୩୬— ସହ୍ବା ଲୋକ ବଡ଼ ଲୋକ ।

୪୩୭— ସତ ଶୁକ୍ଳ ମିଛ କଳା ।

୪୩୮— ସବ୍ ସେ ରୂପ୍ ଭଲ ।

୪୩୯— ସବୁଦିନ ସମାନ ନ ଯାଏ ।

୪୪୦— ସବୁ ପାଇ ନା ମଇନ ନ ପାଇ ।

୪୪୧— ସବୁ ଶିରଯାକ ବେକରେ ଲୋଟୁ ।

୪୪୨— ସଭା ବାଲରେ କା ବେଣ୍ଟି ?

୪୪୩— ସମସ୍ତେ ଯୋଗୀ ହେଲେ ଭିଖ ଦବ କିଏ ?

୪୪୪— ସାତ କଥାରେ ଘଣ୍ଟା ଭୁଲେ ।

୪୪୫— ସାନ ସାପର ବିଷ ଟାଣ ।

୪୪୬— ସାଉଣ୍ଟିଲା କାଣ୍ଡ ଯୁଦ୍ଧକୁ ନ ପାଏ ।

୪୪୭— ସାପ ବଢୁଥିଲେ ପେଡ଼ି ବଢୁଥାଏ ।

୪୪୮— ସାରୁ ଭିତରେ ମାରୁ ଥିବା କିଏ ଜାଣେ ?

୪୪୯— ସାଆନ୍ତାଣି ପାଡ଼ିଲେ ବାସେ
ପୋଇଲି ପାଡ଼ିଲେ ଗନ୍ଧାଏ ।

୪୫୦— ସିଧା ଅଙ୍ଗୁଳିରେ ଘିଅ ନ ବାହାରେ ।

୪୫୧— ସୁଧାର ଗାଈର ବାଛୁରୀ ମରେ ।

୪୫୨— ସୁନା ପୁଅକୁ କଣ ରୂପା ଅପୂର୍ବ ?

୪୫୩— ସୁନା ଖଡୁଆ ହାତରୁ ଖସେ
ପାଇଲେ କନକ ସ୍ନାହାନ ।

୪୫୪— ସେବା ଶ୍ରେର ବଣିଜ ମିଛ ।

୪୫୫— ସୁନାମୁହାଁ ଘରକୁ ବେଗୁନିଆ ଛାଟି ।

(ହ) ୪୫୬— ହଗୁ ନାହିଁ କି ବାଟ ଛାଡୁ ନାହିଁ ।

୪୫୭— ହଣ୍ଡା ମଲେ ଗୁହାଳ ଛୁଞ୍ଚା ।

୪୫୮— ହଜେ ଲସେ, ବୁଢ଼ି ଉପରେ ବସେ ।

୪୫୯— ହସ ହସ କୁଣ୍ଡା ଢାଲୁରେ ଲାଗିବ ।

୪୬୦— ହଗି ନ ଜାଣିଲେ ଥୋଡ଼ରେ ଗୁହ ।

୪୬୧— ହନୁ ମଲା ବେଳକୁ ସତ କହେ ।

୪୬୨— ହାଟ ମଝିରେ ବ୍ରହ୍ମଜ୍ଞାନ ।
୪୬୩— ହାଟୁଆ ହୁଡ଼ିଲେ ହାଟ ପାଳିଏ,
ଚଷା ହୁଡ଼ିଲେ ବରଷେ ।
୪୬୪— ହାତ ଅଳସେ ନଖ ବଙ୍କା ।
୪୬୫— ହାତ ପଶୁ ପଶୁ ବାହା ପଶେ ।
୪୬୬— ହାତ ଶଙ୍ଖା ଦରପଣ ।
୪୬୭— ହାତୀ ବନସ୍ତରେ ଥିଲେ ରଜାଙ୍କର ।
୪୬୮— ହାତେ ମାପି ଗୁଖଣ୍ଡେ ଗୁଲିବା ଭଲ ।
୪୬୯— ହାତୀ ଛୁଣ୍ଟରୁ କଳେ ପଡ଼ିଲେ
ପିମ୍ପୁଡ଼ିକି ସହସ୍ରେ ବରଷ ।
୪୭୦— ହାଡ଼ ସାହିରେ ଶାଳଗ୍ରାମ ପଡ଼ିଲେ
ଗୋରୁହାଡ଼ ଯେଜ ପିଟନ୍ତି ।
୪୭୧— ହାତୀ ପାଡ଼ବ, ହାତୀ ପାଡ଼ବ, ଫୁସ୍ ।



## ଢମାଳି (୧)

୧— କଷି ସଜନା, ଦେହକୁ ଅନା
କଳା ବାଇଗଣ କଷି
କାହିଁକି ନାଗରୀ ଅନାଉଁ ନାଉଁ ଲୋ
ବଇସ ଯାଉଛି ଖସି ।

୨— କି କହିବି କରମକୁ
ମର ଯାଉଥାଏ ସରମକୁ
ମରମ ଭିତରେ ଯାହା ହେଉଥାଏ
ସାକ୍ଷୀ ଦେଉଥାଏ ଧରମକୁ ।

୩— କେନ୍ଦୁ କାଠ
ଗୃହାଣି ଛଟକ ବଡ଼ମଠ
ଠାବ କରିଥିବୁ ଗାଈଗୋଠ
ଅମିନ ପୋଖରୀ ପାଣି
କେତେ ଅନୋଉଚ ମୋହନ ନାଗର
ପର ଘର ଭୂଅସୁଣୀ ।

୪— ଚନ୍ଦ୍ରମାକୁ କିଏଁ ବଢ଼ାଉ ହସ୍ତ
କବାଟ ପଡ଼ୁଛି ସାଢ ପରସ୍ତ
ଅନାମ ଦେଶର କଣ୍ଢି, ଫିରଙ୍ଗି ଦେଶର ଡାଳ
କୁଳୁକ ଲଗିଣ ଖିଡ଼କ ପଡ଼ୁଛି
ଫିଟେଇ ପାରିଲେ ହେଲା ।

(କାନପୁର—ନରସିଂହପୁର)

୫— ଘିଅ ଅଣିଥିଲି ଅଢ଼େଇଏ
ଗୁଡ଼ ଅଣିଥିଲି ଷଢ଼େଇଏ

ଗୃଉଳ କୁଟିଲ୍ ମାଣେ
ଛ କୋଡ଼ି କଲ୍, ନ କୋଡ଼ି କଲ୍
କୁଳ୍ପ ପୋଛୁକର ଦ କୋଡ଼ି କଲ୍
ଭାଇ ବେହେଟଙ୍କୁ ପୋଡ଼ ପିଠା ଦେଲ୍ ।
ମୁଁ ଭାଇଖାଇ ରକ୍ଷଣୀ ହୁହେଁ
ଯେ ମାଗେ ତାକୁ ହଡାଏ ଦଏ ।
( ନୟାଗଡ଼ )

୨— ଅମନ୍ତ ମାଇପ ମନ କରଛି
ମନର ମାଇପ ଶେଜ ସାରଛି
ବ୍ୟାଘ୍ର ମାଇପର ପାଳ
ପୋଇଲ୍ ମାଇପ ବନ୍ଧାପନା ଦନ
ପୁରୁଷ ବସିଛି ଭାଳ ।

୨— ଅନା ପତରକୁ ବନା ପତର
ମୂଲ୍ ଲଗୁଥିଲ୍ ପର କ୍ଷେତର
ଟିଠି ଖାଉଥିଲ୍ ଗେହା,
ଅଣ୍ଟୁ ତ ନଥିଲ କୁଣ୍ଡାଚକୁଳ
ଛୁଚୁନାହିଁ ଛେନାବଡ଼ା ।
( ସିଅରଅ, ନରସିଂହପୁର )

୮— ଅନ୍ଧ ଦେଶକୁ ଗଲ୍ ଦର୍ପଣ ବିକ
କାନ୍ଧ ହସ୍ତରେ ଦେଲ୍ ଗୋଦାନ ଟେକ
ଜଡ଼ା ମଧ୍ୟରେ ଖଡ଼ା କଲ୍ ରନ୍ଧନ
କାମୁଡ଼ା ଘୋଡ଼ାମୁଖେ ଦେଲ୍ ଚୁମ୍ବନ
ହେ ରାଜା କ କଲ୍
ବସ୍ତୁ ପ୍ରତିମାକୁ ତଳେ ଥୋଇଲ୍ ।
( ନୟାଗଡ଼ )

୯— ଗୃହ ସଙ୍ଗ ଗଲେ ଯମୁନା
ଅଣ୍ଠୁକ ପାଣିରେ ଘଟ ନ ବୁଡ଼ଲ୍
ବର୍ଷ କରୁଥାନ୍ତି ଭାବନା ।

୧୦— ଦାସେ ଗଲେ ଫାଣ୍ଡିକ
ଗୋଜ ଅଣିଲେ ଗାଣ୍ଡିକ ।

୧୧— ଦଶା ଅନୁକ୍ରମେ ବସା ମିଳିଅଛି
ଚଷାସାହି ମଶାବଣିରେ ।
( ହରଚନ୍ଦନପୁର, ନରସିଂହପୁର )

୧୨— ପ୍ରଥମେ ଦେଖିଲି ଜଷ୍ଠାଧାସ୍ତି ନା
ବଗ ମାଉଁଶ ଖାଉଛି ପୋଡ଼ିକରି ।
ଦ୍ୱିତୀୟେ ଦେଖିଲି ରାଜନାସ୍ତି ନା
ଘୋଡ଼ା ସଇସ ମାରୁଛି ଚଢ଼ିଧରି
ତୃତୀୟେ ଦେଖିଲି ନିଜନାସ୍ତି ନା
ଗୋଇଠା ମାରୁଛି ଗୋଷ୍ଠା ଗୃହ ।
( ହରିପୁର, କଟକ )

୧୩— ପତ୍ରର ସୁନା ଦଣ୍ଡିକ
ଶିମିଳି ତୁଳା ମାଣ୍ଡିକ
ରାଣ୍ଡି ସାଙ୍ଗେ ଭାବ କଲେ
ନିତ ଯାଉଥିବ ଫାଣ୍ଡିକ ।

୧୪— ମଶା
ଗଣଗଣା କଲେ ବସା,
ପଦାମାଳ କଲେ ଜ୍ୱର
ଘଣ୍ଟି ଘାଗୁଡ଼ି ଲଗେଇ ମଶା
ରହିଲେ ଗୋପାଳପୁର ।

୧୫— ସାନ ବଡ ପାଦା ଗୋବନ୍ଦା
ମକଦ୍ଦମା କର ଶୁଙ୍ଘିଲି ଷଣ୍ଢ ।
( ହରଚନ୍ଦନପୁର, ନରସିଂହପୁର )

୧୬— ଲମ୍ବଲମ୍ବ ବାଳ କୁଞ୍ଚ ତୋ ବୃଷାଳ ଉହିଁକ ଲୋଟଣୀ ଜୁଡ଼ା
ଝମ ଝମ ନାଦେ ଝୁଣ୍ଟିଆ ଶବଦେ ମୋହୁ ଉନ୍ନପୁର ପର୍ଣ୍ଣ ଲେ ।
ପ୍ରାଣ ସଜନୀ ଗୋରି, ମୋର ନୟନ ଠୋରେ ଭଗାରି ଲେ ।୧।

କଳାମେଘେ ଶାଢୀ ପିନ୍ଧୁ ଟି ସଜାଡ଼ ଲୁଗୃଭ ଆଉ ତୋ କୁଞ୍ଚ
ଯେତେ ଯତନରେ ଲୁଗୃଇ ରଖିଲେ ମତେ ଦିଶୁଥାଏ ଉଞ୍ଚ ଲୋ
ପ୍ରାଣ ସଜନୀ ଗୋର, ମୋର ନୟନ ତତେ ଭଗାର ଲୋ । ୨ ।
ଗେଠ ଖୁଗ୍ର ପ୍ରାପ୍ୟେ ଦଣ୍ଡା ଶୋହାବନ ଦହ ତୋ କେତକୀ ବର୍ଣ୍ଣ
ଦୂଇଜାନୁ ତୋର ଓଲଟ କଦଳୀ ତାକୁ ଝାମିବାକୁ ମନ ଲୋ
ପ୍ରାଣ ସଜନୀ ଗୋର, ମୋର ନୟନ ତୋତେ
ଭଗାର ଲୋ । ୩ ।

କାନେ କାନଫୁଲ ବେକେ ଚମ୍ପାହାର ହସ୍ତରେ ସୁବର୍ଣ୍ଣ ବାହୁ
ଏମନ୍ତ ଗୃଲକ ମୁଣ୍ଡରେ ପସରା ଝଲକ ପଡୁଛି ଦହ ଲୋ
ପ୍ରାଣ ସଜନୀ ଗୋର, ମୋର ନୟନ ତତେ ଭଗାର ଲୋ । ୪ ।
ହାତ ମୁଦ୍ଧ ଦେବ ଝାଙ୍କିକ ଝଗଡ଼ ଗୋଡ଼ ମୁଦ୍ଧ ଦେବ ନଦା
ଶୋଇଲୁ ଶେଜରେ ମଣୋହ୍ର କହୁଛୁ ଅଉ ବୋପା ଘର ନ ଯା
ଲୋ ପ୍ରାଣ ସଜନୀ ଗୋର, ମୋର ନୟନ ତୋତେ ଭଗାର
ଲୋ । ୫ ।

( ଖଳ ସାହୁ, ଖଣ୍ଡପଡ଼ା )

୧୭— ବାରରେ ବୁଣିଲ ଗଜା ଗହମ
ଶଶୁର ପାଇଲ ଜଗମୋହନ । ୧ ।
ଶାଶୁ ପାଇଲ କଳା ତୁଳସୀ—ନଣନ୍ଦ ପାଇଲ ଗୋଟି ଖଣ୍ଡଳା
ଯାଆ ତ ପାଇଲ ସାଙ୍ଗ ସହସା ଲୋ ଘଇତାର ବଡ଼ ହଂସା । ୨ ।
ଧାନ ଦେଇ ଥିଲୁ ତାମ୍ବିଏ
କର କୁଟିଲ କାଣ୍ଡିଲ ମାଣେ ନୋହିଲ୍ଲ
ବ୍ନ୍ଧିଲ ବାଢ଼ିଲ କଂସେ ନୋହିଲ୍ଲ
ନଈ ପରଷିବ କେତେ
ଭଗାର ହସାଇ ମାଡ଼ ମାରୁଅଛୁ
ମୋ ଦେହ ସହିବ କେତେ ? ୩ ।
ସହିଥିବ ସହିଥିବ
ବାଉଅଡେ଼ ଯେଉଁ ଗୃନ୍ଦେନୀ କୃଅ ମୁଁ
ଜୀବନ ହରିଇ ଦେବ
ଜୀବନ ହରିଇ ଦେବୁ ଲୋ ସୁନ୍ଦରୀ ଲୋକ ଲଗି କହାଇବ । ୪ ।

ଲୋକ ଲାଗି କଢ଼ାଇବୁ ରେ ସୁନ୍ଦର, କୁଅମୂଳ ଦୂବ ହେବ
କୁଅମୂଳ ଦୂବ ହେବୁ ଲୋ ସୁନ୍ଦରୀ କାଳୀଗାଈ ଚରାଇବ । ୫ ।
କାଳୀଗାଈ ଚରାଇବୁ ରେ ସୁନ୍ଦର ବଡ଼ଦାଣ୍ଡ ଧୂଳି ହେବ ।
ବଡ଼ଦାଣ୍ଡ ଧୂଳି ହେବୁ ଲୋ ସୁନ୍ଦରୀ ଶହେ ଲୋକ ଚଲାଇବ । ୬ ।
ଶହେ ଲୋକ ଚଲାଇବୁ ରେ ସୁନ୍ଦର ବାଟର ଶାହାଡ଼ା ହେବ ।
ବାଟର ଶାହାଡ଼ା ହେବୁ ଲୋ ସୁନ୍ଦରୀ ନଡ ଦାନ୍ତ ଘଷୁଥିବ । ୭ ।
ନଡ ଦାନ୍ତ ଘଷୁଥିବୁ ରେ ସୁନ୍ଦର ବାଟ ବରକୋଳି ହେବ ।
ବାଟ ବରକୋଳି ହେବୁ ଲୋ ସୁନ୍ଦରୀ ନଡ ଝାଡ଼ ଖାଉଥିବ । ୮ ।
ନଡ ଝାଡ଼ ଖାଉଥିବୁ ରେ ସୁନ୍ଦର ଜହ୍ନ ପାଖ ତାରା ହେବ ।
ଜହ୍ନ ପାଖ ତାରା ହେବୁ ଲୋ ସୁନ୍ଦରୀ ବେକ ଭାଙ୍ଗି ଗୁହାଁଥିବ । ୯ ।
ବେକ ଭାଙ୍ଗି ଗୁହାଁଥିବୁ ରେ ସୁନ୍ଦର କଳାମେଘେ ପଶିଯିବ । ୧୦ ।

( ମାଳାଦ୍ରିପୁର, ନୂଆଗଡ଼ )

୧୮— କୁଆଳି ଉହ

ଘଷି ଦେଲପର ଲାଗୁଚି ଦାହ,
ମୁଁ ତା ନ ଲେଖଇ ମାଡ଼ରେ । ୧ ।
ଯୋଡ଼ ଗୋଇଠା
ପିଠିକି ଲାଗଇ ସବୁ ଗଇଣ୍ଠା
ମୁଁ ତା ନ ଲେଖଇ ମାଡ଼ରେ । ୨ ।
ପାଞ୍ଚଣ ବାଡ଼
ଯାଉଚି ଗୋସେଇଁ ତୋଡ଼ାଣି କାଢ଼ି
ମୁଁ ତା ନ ଲେଖଇ ମାଡ଼ରେ । ୩ ।
ବଧା,
ପିଠିକି ଲାଗଇ ନଦା
ମୁଁ ତା ନ ଲେଖଇ ମାଡ଼ରେ । ୪ ।
ଗୁପୁଡା,
ପିଠିକି ଲାଗଇ ସବୁ କପଡ଼ା
ମୁଁ ତା ନ ଲେଖଇ ମାଡ଼ରେ । ୫ ।

(ଗୋପାଳପୁର, ନରସିଂହପୁର)

୧୯— ଅରେ ପୋଇଲା,
ଘର କଥା କାହିଁ ଦାଣ୍ଡେ ପଇଲା । ୧ ।
ଅଲୋ ପୋଇଲି,
ତୁ ବୋଇଲୁ ମୁଁ ବୋଇଲି । ୨ ।
ତୋହ ଘର ଠୋକାଠାକୁ ମୋର କଁପା ଡର
କାନର ବନ୍ଧଆ ବିକ୍ରି ଯିବ ବୋପାଘର । ୩ ।
ତୋହ ଘର ଠୋକାଠାକୁ ମୋର କମ୍ପା ଡର
ଶାଳରୁ ଘୋଡା ବାଛି ମୁଁ ଯିବ ଦେଶାନ୍ତର । ୪ ।
ଦେଶାନ୍ତର ଯାଇ ତୁରେ ଭୁଲିବୁ କି ମୋତେ
ପ୍ରାଣ ପବନ ନିରୋଧି ଭରଜନ୍ତୁ ତୋତେ । ୫ ।
ବାପଘର ଯାଇ ତୁ ଲୋ କି ସୁଖ ପାଇବୁ
ରତ୍ନ ପଲଙ୍କରେ ଶୋଇ ମତେ ଝୁରୁଥିବୁ । ୬ ।
(ଢେଙ୍କାନାଳ)

୨୦— ଚାଲୁ ଚାଲୁଅ କୁରୁଭ ଦାସ
କେଲା ବାଉଁଶ,
ହାଡ଼ ହାଡ଼କା ବାଜସ୍ତି ବର
ପେଟହେଁକାଳଅ ଦେଢ଼ଶୁର ।

୨୧— ଚୁହାଡ ହାଡ଼
ବଜାନ୍ତି ବାଡ଼
ବେକରେ ପକାନ୍ତି ଚମ ଦଉଡ଼
କାଟନ୍ତି ବାଉଁଶ ବୁଣନ୍ତି କୁଲା
ତେବେ ସେ ବୋଲନ୍ତି ଚୁହାଡ ପିଲା ।

୨୨— ଦାସେ, ଉଖୁଡ଼ା ଖାଇଲେ ପୋଷେ
ଉଖୁଡ଼ା କଉଡ଼ ଗୁଣ୍ଡି ନ ପାରଲେ
ପାଣିରେ ବୁଡ଼ଲେ ମାସେ ।
(ବଡାମ୍ବା)

୨୩— ଦାସେ ବଡ଼ ମୋହା, ପିନ୍ଧଥାନ୍ତି ଫେଟା
କାଟିଥାନ୍ତି ରାମାନନ୍ଦୀ—ରଖିଥାନ୍ତି ଜଟା ।
(ପୁରୀ)

୨୪— ଦେଖିଚ କି ନାହିଁ ତୁଳାଭଣା ଲଠେ
ସେହି ପରି ତୁମ ଗୋଡ଼
ତୁମ ଚରଣରେ ବଳା ଲଗିଥାଏ ବୁଲାଇ ପକାଅ ଗୋଡ଼
ଗୋ ସଙ୍ଗାତ, ବୁଲାଇ ପକାଅ ଗୋଡ଼ । ୧ ।
କୁଞ୍ଚି କୁଞ୍ଚି କରି ଲୁଗା ପିନ୍ଧି ଥାଅ ସୁନ୍ଦର ଦିଶିବ ବୋଲି
କାଚ୍ଛୁ କୁଚ୍ଛ କରି କୁଞ୍ଚ ଖୋସିଥାଅ ସୁନ୍ଦର ଦିଶିବ ବୋଲି
ଗୋ ସଙ୍ଗାତ, ସୁନ୍ଦର ଦିଶିବ ବୋଲି । ୨ ।
ଗାଧୋଇବା ପାଇଁ ରଙ୍ଗହଳଦି ଗୋ ପେନ୍ନ ବାଛୁ ରଖିଥାଅ
ସୁନ୍ଦର ଦେହକୁ ପଟାନ୍ତର ନାହିଁ ଲଅ ଭଜା ହାଣ୍ଡି ପ୍ରାୟ
ଗୋ ସଙ୍ଗାତ, ଲଅ ଭଜା ହାଣ୍ଡି ପ୍ରାୟ । ୩ ।
ଫୁଲ ନେଳକର କାଚ ପିନ୍ଧି ଥାଅ ସୁନ୍ଦର ଦିଶିବ ବୋଲି
ଯେଉଁଠାରେ ଥାଅ ଧୂମ ଉଡୁଥାଏ ଗୁଡ଼ଅ ଝୁମୁକା ବାଡ଼
ଗୋ ସଙ୍ଗାତ, ଗୁଡ଼ଅ ଝୁମୁକା ବାଡ଼ । ୪ ।
କାଉ ଉମ୍ବର ଖୋପା ଖୋସିଥାଅ ବାସ ଫୁଲ ଦିଅ ଭରି
ଫୁଲ ମଉଳିବ ପଣତ ନ ଦିଅ ବୁକୁ ଦେଇଥାଅ ଡେରି
ଗୋ ସଙ୍ଗାତ, ବୁକୁ ଦେଇଥାଅ ଡେରି । ୫ ।
ଦେଖିଚ କି ନାହିଁ ଛତୁମାସଂଧା ବେଙ୍ଗ ସେହି ପରି ତୁମ ତୁଣ୍ଡ
କଥା କହୁଥିଲେ ଧୂମ ଉଡୁଥାଏ ଛ ବୋଡ଼ କୋଡ଼ଏ ରୁଣ୍ଡ
ଗୋ ସଙ୍ଗାତ, ଛ ବୋଡ଼ କୋଡ଼ଏ ରୁଣ୍ଡ । ୬ ।
(ନୀଳାଦ୍ରିପୁର, ନୂଆଗଡ଼)

୨୫— ଖଣ୍ଡିଆ ମୁଣ୍ଡି ଲୋ ଖଣ୍ଡି ପଞ୍ଜୁରି ପାଇ ଅଣିଥିଲି ତୋତେ
ଖଣ୍ଡିଆ ମୁଣ୍ଡରେ ବାଳ କଅଁଳିଲା ଜବାବ ଦେଉଛୁ ମୋତେ ।

୨୬— ଉଣ୍ଟକପାଳି ଅସୁରୀ, ଧାଇଁ ଧାଇଁ ଖାଏ ଶଶୁରୀ ।



# ଦୀର୍ଘ ଢମାଲି (୨)

( ଶୁଖିଲା ସୁଆଗ )

ଅଇଲ ବନ୍ଧୁ ଭଲ କଲ ବସିବାକୁ ନାହିଁ ଠାଆ
ଯେଉଁ ବାଟେ ବାଟେ ଅଇଲ ବନ୍ଧୁ ସେହି ବାଟେ ବାଟେ ଯା । ୧ ।
ପାଣି ମନ୍ଦେ ଦଅନ୍ତ ବନ୍ଧୁ ଦଦରା ମାଠିଆ
ନ ବସି ବେଗେ ଯା' ମୋ ବନ୍ଧୁ କେତେ ହେବ ଠିଆ । ୨ ।
ବାସନ ଅବା ଦଅନ୍ତ ବନ୍ଧୁ ଘରେ ନାହିଁ ନୋଠା
ପଡ଼ଶା ଘରୁ ଅଣନ୍ତ ଯାଇ ଗୋଡ଼ ଅଠେ ଘେଣ୍ଠା । ୩ ।

ପିଢ଼ା ଖଣ୍ଡେ ଦଅନ୍ତ ବନ୍ଧୁ ବସନ୍ତ ତହିଁ ଦଣ୍ଡେ
କେଉଁ ବାଲକ ନେଇଛି ବନ୍ଧୁ ସବେ ଥିଲା ଖଣ୍ଡେ । ୪ ।
ଛଇଲ କିଛି ଦଅନ୍ତ ବନ୍ଧୁ ଅଙ୍ଗେ ହୁଅନ୍ତ ମାଖି ।
ଟ୍ରଚଗୁଣ୍ଡା ପଡ଼ୁଛି ବନ୍ଧୁ ଜଲ ଉଠିବ ଆଖି । ୫ ।

କଥା ହୁଅନ୍ତ ଦୁଃଖ ସୁଖ ବନ୍ଧୁ ହେଉଛି ଜର
ରୋଗୀ ପାଖେ ନ ବସି ବନ୍ଧୁ ଯାଅ ବେଗେ ଘର । ୬ ।
ଖର୍ଚ୍ଚ ଥିଲେ ଦଅନ୍ତ ବନ୍ଧୁ ପାଖରେ ନାହିଁ କିଛି
ଯାହା ହେଉଛି ମନ ବନ୍ଧୁ ବଧୂ କ କରେ ଛି ଛି । ୭ ।

ଅଇଲ ବନ୍ଧୁ ଭଲ କଲ ବସିବାକୁ ନାହିଁ ଠାଆ
ଯେଉଁ ବାଟେ ବାଟେ ଅଇଲ ବନ୍ଧୁ ସେହି ବାଟେ ବାଟେ ଯାଅ । ୮ ।

ଅଛି ଯେମନ୍ତ ଥାଅନ୍ତ ବନ୍ଧୁ କାଲି ଥିଲା ପିଠା
ଭୁଲନ୍ତ ନାହିଁ ଦହକ ବନ୍ଧୁ ତାର ଯେଉଁ ମିଠା । ୯ ।
ମୋର ତ ବନ୍ଧୁ ପୋଡ଼ା କରମ ନ ଘଟିଲା ତାହା
କଏ ଜାଣିବ ମନ କଥା ହେଉଛି ବନ୍ଧୁ ଯାହା । ୧୦ ।
ଉଚ୍ଛୁର ହେଉଛି ଯାଅ ବନ୍ଧୁ ଘର ବହୁତ ଦୂର
ଅଉ ଦନେ ଅଇଲେ ବନ୍ଧୁ ରହିବ ମୋର ପୁର । ୧୧ ।

ଦେଖୁଚ ବନ୍ଧୁ ଚୁଲ ଉପରେ ବଢ଼େ ନାହିଁ ନଡ଼ା
ଛଅଣ କର ଖାଉଛୁଁ ବନ୍ଧୁ ତୁଚ୍ଛା ଖାଲି ଗଡ଼ା । ୧୨ ।
ଘରବାଡ଼ି ତ ଭାଙ୍ଗିଛି ବନ୍ଧୁ ନ କଲେ ଦେଠିଆ
ଗଲା ରାତରେ ପଶିଣ ଚୋର ନେଲେ ମୋ ଗଣ୍ଠିଆ । ୧୩ ।
ସବୁ କଥା ତ ଲାଗୁଛି ବନ୍ଧୁ ମତେ ଅପିଠିଆ
ଦୁଃଖ ନ କର ଯାଅ ମୋ ବନ୍ଧୁ ତୁ ମୋର ଗଣ୍ଠିଆ । ୧୪ ।
ଆର ବରଷ ଆସିବ ବନ୍ଧୁ କରିଥିବ କୋଠା
ଧାନ ମୁଗ ନ କୁଟି ବନ୍ଧୁ ଦେଉଥିବୁଁ କୁଠା । ୧୫ ।

ଅଇଲ ବନ୍ଧୁ ଭଲ କଲ ବସିବାକୁ ନାହିଁ ଠା
ଯେଉଁ ବାଟେ ବାଟେ ଅଇଲ ବନ୍ଧୁ ସେହି ବାଟେ ବାଟେ ଯା । ୧୬ ।
କଛୁଦନ ଗଲେ ତ ବନ୍ଧୁ ଡାକପିବ ମୋ ପୁଅ
ଦୁଃଖ ନ କର ଏବେ ହେ ବନ୍ଧୁ ବେଗେ ପିବା ହୁଅ । ୧୭ ।
ପନପରବା ଆଣିଥିବ ଘରୁ ଆସିଲା ବେଳେ
ମୁଆଁ ଝଜାରୁ କଛୁ ହେ ବନ୍ଧୁ ଆଣିଥିବଟି ଚେଲେ । ୧୮ ।
କାଲି ତ ବନ୍ଧୁ ପଡ଼ିଥିଲା ତୁମର କଥା ଘରେ
କମାଇ ବନ୍ଧୁ ଅସୁନାହାନ୍ତି ସଦନକୁ ଥରେ । ୧୯ ।
ବଡ଼ ଆନନ୍ଦ ଦନ ଅଜ ପଡ଼ିଲା କେତେ କଥା
ଯାଅ ବନ୍ଧୁ ଉଚ୍ଛୁର ହେଲେ ପାଇବ ସିନା ବଥା । ୨୦ ।
ଭୁଜା ଥିଲା ଦଅନ୍ତି ବନ୍ଧୁ ପୁଅ କରଛି ମନା
ସିଏ ଥିଲେ ଅବଶ୍ୟ ବନ୍ଧୁ ଚାଆନ୍ତି ସନମନା । ୨୧ ।
ଯାଅ ବନ୍ଧୁ ଏଠୁ ବେଗେ ଉଚ୍ଛୁର ହେଉଛି ବେଳ
ଆଉ ତ ଗଲେ ଦଣ୍ଡେ ମାସ ଗୋରୁ ହୋଇବେ ମେଳ । ୨୨ ।
ବାଟରେ ବନ୍ଧୁ ପୋଖରୀ ଥିଲେ ଗାଧୋଇବ ତହିଁ
ଗୁଡ଼ଅ ଦୋକାନ ଅଛି ବନ୍ଧୁ ନେବ କିଣି ଖାଇ । ୨୩ ।
ଉପବାସେ ନ ଯିବ ବନ୍ଧୁ ତୁମ୍ଭଙ୍କୁ ମୋର ରାଣ
ନ ମାନଲେ ନକେ ବନ୍ଧୁ ପାଇବ ହଇରାଣ । ୨୪ ।

ଜାଣି ମୁଁ ଥାନ୍ତ ବନ୍ଧୁ ଯେବେ ତୁମ୍ଭେ ଆସିବ ବୋଲି
ଘର ଦୁଆର କରି ବନ୍ଧୁ ଚାବି ଥାଆନ୍ତ ଖୋଲି । ୨୫ ।
ଅଇଲ ବନ୍ଧୁ ଭଲ କଲ ବସିବାକୁ ନାହିଁ ଠାଆ
ଯୋଉ ବାଟେ ବାଟେ ଅଇଲ ବନ୍ଧୁ ସେହି ବାଟେ ବାଟେ ଯା । ୨୬ ।
ମୁହିଁ ତ ବନ୍ଧୁ ଶୁଣି ଅଛୁ କପରି ଯିବ ଚାଲି
ଦେଖି ତୁମ୍ଭର ଦୁଃଖ ବନ୍ଧୁ ମୋ ହୃଦ ହୁଏ ଘାଲି । ୨୭ ।
ଆଜିକି ଧନ ଛ ଦିନ ହେଲା ବନ୍ଧୁ ଦଶ ଜଣ
ଚାଲି ଯିବାରୁ ସେମାନେ ବନ୍ଧୁ ସୁଖ ନାହିଁ ମନ । ୨୮ ।
ଛାଡ଼ିଲେ ନାହିଁ ବନ୍ଧୁ ଏ ଘରୁ କୁନ୍ତୁଅଁରୁ ଜଣେ
ଗଲା ମାସରେ ସରିଛି ବନ୍ଧୁ ଚାଉଳ ମହଣେ । ୨୯ ।
କି ଯୋଗରେ ଆସିଲ ବନ୍ଧୁ ଆଜି କହୁ ନାହିଁ
ଦୁଃଖ ସୁଖ ଲାଗିଛି ବନ୍ଧୁ ସେଥିକି ଚିନ୍ତା ନାହିଁ । ୩୦ ।
ଦହ ଦିଶୁଛି ଖରାପି ବନ୍ଧୁ କହ କିନା ମୋତେ
ଜର ପରି ସେ ହେଉଛି ବନ୍ଧୁ ମତେ ତ ପରତେ । ୩୧ ।
କେମନ୍ତେ ବନ୍ଧୁ ପାଦରେ ବାଟ ଚାଲିପିବ କହ
ଶକଠ ଥିଲେ ଦିଅନ୍ତ ବନ୍ଧୁ ନୁହେଁ ମୁଁ ଅରହ । ୩୨ ।
ଅଇଲ ବନ୍ଧୁ ଭଲ କଲ ଖୁସିରେ ଏବେ ଯାଅ
ଆସୁଥିବଟି ବନ୍ଧୁ ଆମ୍ଭଙ୍କୁ ଯେବେ ସୁଖ ପାଅ । ୩୩ ।
ଦେଖିଲି ବନ୍ଧୁ ସଫଳ ହେଲା ଆଜି ମୋର ନେତ୍ର
ବନ୍ଧୁ ଦରଶନ ଠାରୁ ମୋତେ ବେଶୀ ନୁହେଁ କ୍ଷେତ୍ର । ୩୪ ।

ଅଇଲ ବନ୍ଧୁ ଭଲ କଲ ବସିବାକୁ ନାହିଁ ଠା
ଯେଉଁ ବାଟେ ବାଟେ ଅଇଲ ବନ୍ଧୁ ସେହି ବାଟେ ବାଟେ ଯା । ୩୫ ।
ପାନ ଖଣ୍ଡିଏ ଦିଅନ୍ତ ବନ୍ଧୁ ନାହିଁ ଗୁଣ୍ଡା ଗୁଆ
ଖାଲି ବଟୁଆ ପଡ଼ିଛି ବନ୍ଧୁ ଅଛି ତୁଷ୍ଟ ଧୂଆଁ । ୩୬ ।
ଧୂଆଁ ତ ବନ୍ଧୁ ତୁମ୍ଭ ଦେହରେ ଯାଏ ନାହିଁ କେବେ
କପରି ଦେବି କହ ମୋ ବନ୍ଧୁ ଖାଅ ନାହିଁ ଯେବେ । ୩୭ ।

କେବଳ ବନ୍ଧୁ ତୁମ୍ଭ ବିନା ଅମ୍ଭର କେହି ନାହିଁ
ଘର କରିଲେ ଦୁଃଖ ସୁଖ ସହୁଛୁ ସବୁ ଦେହି । ୩୮ ।
ଦେବାକୁ ଛାଡ଼ ତୁମ୍ଭଙ୍କୁ ବନ୍ଧୁ ହେଉ ନାହିଁ ମନ
ଦୁଃଖୀ ଘରେ କମା ରହିବ ତୁମ୍ଭେ ତ ଧନୀଜନ । ୩୯ ।
ଅଣ୍ଟାରେ ବନ୍ଧୁ ପଇସା ଥିଲେ ଦିଅ ମୋତେ ଅଣେ
ବୋଲିବ ନାହିଁ ମାମୁଲି ବନ୍ଧୁ ଦେଲୁଁ ରହି ଖଣେ । ୪୦ ।
ବନ୍ଧ ତଳରେ ଗୁପ୍ତ ଧନ ବନ୍ଧୁ ପାଖରେ ବାସ
କରିବ ବୋଲି ତ କହିଛନ୍ତି ପାଠେ ପୀତବାସ । ୪୧ ।

ଅଇଲ ବନ୍ଧୁ ଭଲ କଲ ବସିବାକୁ ନାହିଁ ଠାଅ
ଯୋଉ ବାଟେ ବାଟେ ଅଇଲ ବନ୍ଧୁ ସେହି ବାଟେ ବାଟେ ଯା । ୪୨ ।
କହିଲ ବନ୍ଧୁ ପିଲାମାନଙ୍କର ଦୁଃଖ ସୁଖ କଥା
ନ ଶୁଣି ବନ୍ଧୁ କେତେ ଦିନୁଁ ମନ ହେଉଛି ବ୍ୟଥା । ୪୩ ।
ଜଙ୍ଗଲରେ ବନ୍ଧୁ କେତେ କହିବ ଗୋଡ଼ ଯିବ ଫାଟି
ବାଟ ଭୁଲିବ ଉଠିବ ବନ୍ଧୁ ପଡ଼ିବ କେତେ ଘାଟି । ୪୪ ।
ଅରଟ ଖଣ୍ଡେ ଦେବ ବନ୍ଧୁ ଭାଙ୍ଗି ପଡ଼ିଛି ଘରେ
ସଜାଡ଼ି କରି ପଠାଇ ଦେବ ବନ୍ଧୁ କା ହାତରେ । ୪୫ ।
ଔଜନ ନୁହେଁ ବେଣୀ ମୋ ବନ୍ଧୁ ମୁଣ୍ଡେ ନେବ ଥୋଇ
ମଇଳା ନାହିଁ ତହିଁରେ ବନ୍ଧୁ ସଫା ଅଛି ଧୋଇ । ୪୬ ।
ଯିବ ତ ବନ୍ଧୁ ଠିକଏ ଆସ ଘର ଦୁଆର ଦେଖି
କାହିଁକି ବନ୍ଧୁ ଆସିବ ଅଉ ଅମ୍ଭେ ତ ନାରେଖି । ୪୭ ।
ଆର ବରଷ ଦୋଳ ଦିନ ବନ୍ଧୁ ତୁମ୍ଭର ଘରେ
ପାଇଥିଲୁଁ ଯେତେ ସୁଖ ହେ ବନ୍ଧୁ ଅଛି ତା ମନରେ । ୪୮ ।
ନ ସରିବ କହିଲେ ବନ୍ଧୁ ତୁମ୍ଭର ସ୍ନେହ ଯେତେ
ରାତି ପାହି ବେଳ ବୁଡ଼ିବ କହିବ ତାହା କେତେ ? ୪୯ ।
ଅଇଲ ବନ୍ଧୁ ଭଲ କଲ ବସିବାକୁ ନାହିଁ ଠାଅ
ଯୋଉ ବାଟେ ବାଟେ ଅଇଲ ବନ୍ଧୁ ସେହି ବାଟେ ବାଟେ ଯା । ୫୦ ।

(ନୂଆଗଡ଼)



# ଡମାଳି (୩)

( କୋବା ବାଡ଼ଅ )

କୋବା ପଡ଼େ ଖଇ ଝାଇ ରେ
କୋବା ପଡ଼େ ଖଇ ଝାଇ
ଗୋରକା ମନରେ ହରଷ ନାହିଁ,
ମିଛେ ବୋଲେ ନାହିଁ ନାହିଁ । ୧ ।

କୋବା ପଡ଼େ ଗ୍ରମରସ ରେ
କୋବା ପଡ଼େ ଗ୍ରମରସ,
ନାଗର ମନରେ ନାହିଁ ହରଷ
ରାମ ଲକ୍ଷ୍ମଣଙ୍କ ଗଜୁର ଅସୁଛୁ ନାଶ । ୨ ।

କୋବା ପଡ଼େ ଗ୍ରମରସ ରେ, କୋବା ପଡ଼େ ଗ୍ରମରସ
ଗୋରକା ମନରେ ନାହିଁ ହରଷ
ମିଛେ ବୋଲେ ବସ ବସ । ୩ ।

କୋବା ବାଡ଼େଇଲ୍ ବସି ରେ, କୋବା ବାଡ଼େଇଲ୍ ବସି
କୋବା ବାଡ଼ଅରୁ ପଇଲ୍ ଝସି
ଡଉପାଶେ ଚପରାଶି ରେ । ୪ ।

କଇଁଅଁ ଗଛର ଅଗି ରେ, କଇଁଅଁ ଗଛର ଅଗି
ଦାରୋଗା ବାବୁର ଛଅଟା ବଗି
ସଡ଼କ ଯାଉଛୁ ଭାଗି । ୫ ।

କଟକର ଗୁଆକାଢ ରେ, କଟକର ଗୁଆକାଢ
କଟକ ମାଇପେ ଏଡ଼େ ଚହଟି
ଢରେ ଢରେ ସୁନା ଡାଟି । ୬ ।

କଟକ ରଙ୍ଗ ପିଅଜ ରେ, କଟକ ରଙ୍ଗ ପିଅଜ
ଦବା ନବା କଥା ତେଣିକି ଥାଉ
ବଚନ ବଡ଼ ସୁଆଦ । ୭ ।

କାଳିଆ କୁକୁର ହାଡ଼ ରେ, କାଳିଆ କୁକୁର ହାଡ଼
ହାବୁଡ଼େ ପଡ଼ିଲେ ମାରବ ମାଡ଼
ସଞ୍ଜବୁଲା ଖଣ୍ଡେ ଘାଡ଼ । ୮ ।
କଠକ ପାଖେ ଝିଠକ ରେ, କଠକ ପାଖେ ଝିଠକ
ଭନ୍ଥୁଡ଼ି ବସାରେ ହାତ ମାଇଲୁ
ସମ୍ଭାଳେ ଏଇ ଗୈଟକ । ୯ ।
କଦଳୀ ପତର ହାତେ ରେ, କଦଳୀ ପତର ହାତେ
ଗିରଙ୍ଗାପତର ଚଉଦ ହାତେ,
ବଜେ କଲେ ସୋମନାଥେ । ୧୦ ।
ଗଡ଼ ଗଡ଼ ଗଲା ବେଲ ରେ, ଗଡ଼ ଗଡ଼ ଗଲା ବେଲ
ଉପର ସାହିକ ଅନାଇଁ ଦେଲ୍
ଖୋପାରେ ଫୁଟିଛୁ ଫୁଲ୍ । ୧୧ ।
ଗଲା ଓଳାତଳେ ଭାଲୁ ରେ, ଗଲା ଓଳାତଳେ ଭାଲୁ
କାଖରେ ମାଠିଆ ପେଟରେ ଛୁଆ
ଖଜୁ ଝୁମଝୁମ ଗୁଲୁ । ୧୨ ।
ଗାଈ ଗଲେ ନାଳେ ନାଳେ ରେ, ଗାଈ ଗଲେ ନାଳେ ନାଳେ
ଗାଈଙ୍କ ପଛରେ ବାଛୁରି ହଲେ
ହଜିଗଲେ ସଞ୍ଜବେଳେ । ୧୩ ।
ଗାଈ ଗୋଡ଼େ ଗଲା ମୁଦ ରେ, ଗାଈ ଗୋଡ଼େ ଗଲା ମୁଦ
ସମ୍ବଲପୁରିଆ ନାଲ୍ ହଳଦ
ଶିରେ ଶିରେ ଗଲା ଭେଦ । ୧୪ ।
ଗୁଆଗଛ ଧାର ଧାର ରେ, ଗୁଆଗଛ ଧାର ଧାର
କେତେ ଦେଇନାହୁଁ ଯୋଗୀ ଭିଖାରି
ମୋତେ ଦେଲେ ଯିବ ସର । ୧୫ ।
ଗୁଉଳ ଛେଚୁ କାଣ୍ଡିଆ ରେ, ଗୁଉଳ ଛେଚୁ କାଣ୍ଡିଆ
ଯଶପଲା ରାଜା ଗଜା ଭେଣ୍ଡିଆ
ଯୁଝିକୁ ମାଇଗାଣ୍ଡିଆ । ୧୬ ।
ଝିଙ୍କିରେ କୁଟିଲ ମୟୂର,
ମୋର ଝିଙ୍ଗି ଝିଙ୍ଗିଆ ଶଶୁର । ୧୭ ।

ଟିକିରେ କୁଟିଲି ଚଷୁ,
ମୋର ଟିଙ୍ଗି ଟିଙ୍ଗିଆ ଶାଶୁ । ୧୮ ।

ଟିକି କୁଟୁଥିଲି ଚଇତା,
ମୋର ଟିଙ୍ଗି ଟିଙ୍ଗିଆ ଘଇତା । ୧୯ ।

ଧୋବା ସାହି ବାଟେ ବୁଲି ମୁଁ ଅଇଲି ଧୋବଣି ପୋଡୁଛି ଖାର
ଝୋଙ୍କା ଧଇଅଛି କାଗଜ ପତର ଠୋକା ମାରୁଅଛି ଠାର
ସେତ କାନକୋଳି କଣ୍ଠା,
ଲାଗିଗଲେ ହବ ଝଟାପଟା ରେ । ୨୦ ।

ଧୋବା ସାହି ବାଟେ ପଶି ମୁଁ ଅଇଲି ଧୋବା ପୋଡୁଥିଲା ଖାର
ଧୋବଣୀ ବେକରେ ମୋହନମାଳ ବୋହି ପଡୁଥିଲା ଝାଳ
ସେତ କାନକୋଳି କଣ୍ଠା,
ଲାଗିଗଲେ ହବ ଝଟାପଟା ରେ । ୨୧ ।

ନଈକୁ ଫିଙ୍ଗିଲି ମୁଆଁରେ, ନଈକୁ ଫିଙ୍ଗିଲି ମୁଆଁ
ଯଶପାଲ ରଜା ମାଙ୍କଡମୁହାଁ
କାଶରେ ଲଗିଛି କାଉଁ ରେ । ୨୨ ।

ନଈକୁ ମାଠିଆ ଗଡୁରେ, ନଈକୁ ମାଠିଆ ଗଡୁ
କାନପୁର ଲୁଗା ମିଠଲ ଖଡୁ,
ରଜା ଦରବାରେ ପଡୁ ରେ । ୨୩ ।

ନଈରେ ନାଆ ଯାଉଛି ରେ, ନଈରେ ନାଆ ଯାଉଛି
ବାରହାତ ଲୁଗା କମ ପଡ଼ୁଛି,
କଥାରୁ ଜଣା ଯାଉଛି ରେ । ୨୪ ।

ନଈ ପହରିଆ ଜୋକ ରେ, ନଈ ପହରିଆ ଜୋକ
କାନର ପଗଡ଼ି ଝକମକ,
ଖଦି ଲୁଗା ବଡ଼ ସୁଖ ରେ । ୨୫ ।

ନଈରେ କୋଚିଆ ଗାତ ରେ, ନଈରେ କୋଚିଆ ଗାତ
ବଡ଼ବୋହୂ ଦେଲା ପଖାଳଭାତ
ମାଇନେଲା ସଜପାତ ରେ । ୨୬ ।

ନଈରେ କି ମାଛ ମଲା ରେ, ନଈରେ କି ମାଛ ମଲା
କାପ ହଲେଇକି କସ୍ତୁରି ନେଲା,
ଠିଆ କନ୍ଧ ପଡ଼ିଥିଲା । ୨୭ ।

ନଈକି ପିଙ୍ଗିଲି ଗିଲରେ, ନଈକି ପିଙ୍ଗିଲି ଗିଲ
ନଈ ଗୁରୁପାଖେ ମନ୍ଦାର ଫୁଲ,
ବୁଢ଼ୀକି ହିଙ୍କିଲା ଚଲ ରେ । ୨୮ ।

ନଈ ପାଣି ହୁକୁହୁକୁ ରେ, ନଈ ପାଣି ହୁକୁହୁକୁ
କିଏ ନେଇଗଲା ଜାଇଫୁଲକୁ
ଚଲ ଦଗ ରାଇଜକୁ ରେ । ୨୯ ।

ନାଅମଙ୍ଗ ପାଣି କେତେ ରେ, ନାଅମଙ୍ଗ ପାଣି କେତେ
ନାଅମଙ୍ଗ ପାଣି ଅକାତ କାତେ,
ବୁଡ଼ାଇ ମାରବ ତୋତେ ରେ । ୩୦ ।

ପାକଲା ଅମ୍ବ ସୁରତରେ, ପାକଲା ଅମ୍ବ ସୁରତ
ତୁଇ ଚମ୍ପାଫୁଲ ମୁହିଁ ମାଲତୀ, କୁଞ୍ଜବନେ ପାହେ ରାତ ରେ
ସେତ କାନକୋଲି କଣ୍ଟା,
ଲାଗିଗଲେ ହେବ ଝଟାପଟା ରେ । ୩୧ ।

ପାକେଲା ବାଉଁଶ ବାଡ଼ ରେ, ପାକେଲା ବାଉଁଶ ବାଡ଼
ଧୋବା ପିଲା ଗଲା ରାଇଜ ଛାଡ଼
ଧୋବଣୀ ରହିଛି ଦାଢ଼ି । ୩୨ ।

ବଅଲ ହଗିଲା ଲେଣ୍ଡେ ରେ, ବଅଲ ହଗିଲା ଲେଣ୍ଡେ
ମୋ ଭାଇ କରଛି କୁଡ଼ିଆ ଖଣ୍ଡେ,
ବୋହୂ ରହୁ ନାହିଁ ଦଣ୍ଡେ ରେ । ୩୩ ।

ବସନ୍ତ କୋଇଲି ରାବ ରେ, ବସନ୍ତ କୋଇଲି ରାବ
ଭଗିଆ ଘରେ ମୁଁ କହୁ ଅସିଛି,
ହଟିଲିକି ଛାଡ଼ ଦବ । ୩୪ ।

ବାଉଁଶ ଅଗରେ ମହୁ ରେ, ବାଉଁଶ ଅଗରେ ମହୁ
ମହୁ ଖାଇ ଗଲା ପଧାନବୋହୂ,
ଖୋଷା କାଟିନେଲା କାଉ ରେ । ୩୫ ।

ବାରରେ ପୋଡଲ ଜହ୍ନିରେ, ବାରରେ ପୋଡଲ୍ ଜହ୍ନି
ଏଇ ବାଟେ ଗଲା ତୋହର ନାନୀ
ଧଶିଗଲା ରଙ୍ଗ କାନ୍ଥ ରେ । ୩୬ ।

ବାରରେ ପୋଡଲ୍ ମକାରେ, ବାରରେ ପୋଡଲ୍ ମକା
ଏଇ ବାଟେ ଗଲା ତୋହର କକା,
ଧଶୁଥିଲା ରଙ୍ଗ ଛତା ଲୋ । ୩୭ ।

ବାଇ ମୁଣ୍ଡି ବାଇ ଝାଲଲୋ, ବାଇମୁଣ୍ଡି ବାଇ ଝାଲ
କୋଉ ଗଛମୂଳେ ଶୋଇଲୁ କାଲି, ଦହ ଯାଉ ସରୁବାଲି ଲୋ ।
ସେତ କାନକୋଲା କଣ୍ଟା
ଲଗିଗଲେ ହବ ଝଟାପଟା ଲୋ । ୩୮ ।

ଭିଜାଲ ମୁଗୁର ଧାନ ରେ,
ଗରଜ ପଡ଼ଲା ନିଆ
ବାଟରେ ବଇଚ୍ଛୁ ଗଜା ଜେଣ୍ଡିଆ
ଉଧାରେ ମାଗୁଛୁ ହିଆ
ସେତ କାନକୋଲା କଣ୍ଟା
ଲଟିଗଲେ ହବ ଝଟାପଟା । ୩୯ ।

ମଇଁଷି କାନରେ ଠିଙ୍କ ରେ ମଇଁଷି କାନରେ ଠିଙ୍କ
ମୋ ଭାଇ ଅଣିଛୁ ଠୋକା ମାଇପ
ଭୁଣ ଗନ୍ଧ ନାହିଁ ନାକ ରେ । ୪୦ ।

ମାଈ ମୟୂରରୁ ହଲେ ରେ
ମାଈ ମୟୂରରୁ ହଲେ,
ଅଣିରା ମୟୂର କେଳି କରୁଛନ୍ତି
ମାଳତୀ ମୁଣ୍ଡିଆ ତଳେ ରେ । ୪୧ ।

ମାଇଲ ମାଈ ମାଛକୁ ରେ
ମାଇଲ ମାଈ ମାଛକୁ,
ସବୁ ମାଛ ଯାଇ ଗୁହାରି କଲେ
ଅଣିରା ଭାଲଗଛକୁ ରେ । ୪୨ ।

ମୁଣ୍ଡିଆ ଉପରେ ଖଡ଼ା ରେ
ମୁଣ୍ଡିଆ ଉପରେ ଖଡ଼ା
ରଜା ବଜେ କଲେ ଗୁଡ଼ୁଭପଡ଼ା
ଦଶୁଥିଲା ବେଲପଡ଼ା ରେ । ୪୩ ।

ରସୁଣ ଖାଇଲା ପୋକ ରେ
ରସୁଣ ଖାଇଲା ପୋକ
ମୋ ଭାଉଜ ଗାଲରେ ଏତେ ସକସିଆ
କିଏ ଦେଲା ପାନ ପିକ ରେ । ୪୪ ।

ହାତୀ ଗଲା ଦହଲରେ ରେ
ହାତୀ ଗଲା ଦହଲ ରେ,
ଖଣ୍ଡିଆ ପୁତୁରା ବାହା ହେଉଥିଲା
ଷୋଳ ଖଣ୍ଡ ବାଇଦରେ ରେ । ୪୫ ।

ହାଣି ଗଲ ବର କୋବା ରେ
ହାଣି ଗଲ ବର କୋବା,
ଉଠ ଭାଉଆଣି, ବସା ଯାଉ ପାଣି
ଅଇଲେ ବେଠିଆ ଧୋବା ରେ । ୪୬ ।

ହାତୀ ହଜେଇଲା କାନରେ
ହାତୀ ହଜେଇଲା କାନ,
ଅଦନେ ହୋଇଛୁ ବାଉଁଶ ଧାନ
ଘରେ ରହୁ ନାହିଁ ମନ ରେ । ୪୭ ।

ହାଣ୍ଡିଆ କାଙ୍କଡ଼ ମଞ୍ଜି ରେ
ହାଣ୍ଡିଆ କାଙ୍କଡ଼ ମଞ୍ଜି,
କେଉଁ ହାଣ୍ଡିଖାଇ କରିଛୁ କାଞ୍ଜି
ବଇଶାଖ ମାସ ହ୍ୟାଣ୍ଡି ରେ । ୪୮ ।

ହାଡ଼ ତଳେ ପାଣି ଡୋଭା ରେ
ହାଡ଼ ତଳେ ପାଣି ଡୋଭା,
ପିଲା ଝିଲା ନାହିଁ, କ ବୋଲି ଡାକବ
ଆସ ମଲ୍ଲିଫୁଲଗଭା ରେ । ୪୯ ।

(ନରସିଂହପୁର ଓ କଟକ)

# ଢମାଳି (୪)

( ଢୁମ୍ପାମାଡ଼ )

୧— ମାତ ପତରିଆ ଜହ୍ନି
ମାତ ପରବତ ଡେଇଁ ଅସିଲି
ଢୁମ୍ପାର ଶବଦ ଶୁଣି ଲୋ
    ଖିରି ମଉଜ ବେଳେ
    ରଥ ଗୁଲୁଥିଲା ଧୀରେ ଧୀରେ ।

୨— କଅଁଳ କାକୁଡ଼ି ବହଳ ଗୋପା ମୁଁ କାଟିଦେଲି ପରିବାକୁ
ପାନଖିଆ ସଙ୍ଗେ ପୀରତ କଲି ମୁଁ ଝୁର ଝୁର ବୋଲିବାକୁ
ଲୋ ଗେଡ଼ ମହାନ୍ତିଆଣୀ
    ତୋର ନାସାରେ ଲୋ ତୋର ନାସାରେ
    ଯୋଡ଼ା ବସଣି ।

୩— ସବୁଆ କଜଳପାତ ଜାଇଫୁଲ ସବୁଆ କଜଳପାତ
ସବୁ ମୁହଁ ଦେଖି କଲି ପୀରତ ଲୋ
କ ଯୋଗେ ପାଇଲି ଘାତ
ଲୋ ନ'ଯା ଲବଙ୍ଗଲତା
ଫେର ଅସିଲେ କଥା ବାରତା ଲୋ, ନ'ଯା ଲବଙ୍ଗଲତା ।

୪— ସୁତା କାଟିଗଲି ଖିଏ ଜାଇଫୁଲ ସୁତା କାଟିଗଲି ଖିଏ
ଡେଙ୍ଗା ହୋଇକରି ପତଳାଟିଏ, କହ ତାକୁ ମୁରୁଛିବ କିଏ
ଲୋ ଲଙ୍କାମରିଚ ଫୁଲ,
ତୋତେ କିଏ କେତେ କଲା ମୂଲ ଲୋ ଲଙ୍କାମରିଚ ଫୁଲ ।

୫— ଅଦନ କିଆ କେତକୀ ଜାଇଫୁଲ, ଅଦନ କିଆ କେତକୀ
ତୁହ ଚମ୍ପାଫୁଲ ମୁହିଁ ମାଳତୀ, ହସିଲେ ଯିବ ପୀରତ
ଲୋ ନ'ଯା ତେଲଙ୍ଗାପେଣ୍ଠୁ
ତେଲି ଘଣା ଡାକେ କଠ କଠ ଲୋ,
ନ'ଯା ତେଲଙ୍ଗାପେଣ୍ଠୁ,
ହଉ ରେ ହଉ, ନ'ଯା ତେଲଙ୍ଗାପେଣ୍ଠୁ ।

୬— ଯା ବୋଇଲକୁ ଗଲି ଜୀବଧନ ଯା' ବୋଇଲକୁ ଗଲି
ଘଡ଼ିମାର ଜହ୍ନ କାଳି ଅନ୍ଧାର ମୋ ହାବୁସି କରୁଛି ମଲି
ମୋ ସଜ ମଉଜ ମଲ୍ଲି,
ଭାଙ୍ଗିଦିବ ଅଣ୍ଟାଭଙ୍ଗା ଗୁଲି, ମୋ ସଜ ମଉଜ ମଲ୍ଲି ।

୭— ଅମୃତାହ୍ନ ଖଣ୍ଡ ବଙ୍କା ରେ
ଅରେ ମୋର ବନ୍ଧୁ ରେ, ଅମୃତାହ୍ନ ଖଣ୍ଡ ବଙ୍କା
ଜାମୁଡ଼ାଳ ଖଣ୍ଡ ପାଣିକି ପକା ମୋ
ଖୋଷାଟି ଅଢ଼େଇ ଠଙ୍କା ।
ମୋ ନ'ଯା ଲବଙ୍ଗଲତା
ଫେର ଆସିଲେ କଥା ବାରତା ଲୋ, ନ'ଯା ଲବଙ୍ଗଲତା ।

୮— ନଈପାଣି ହୁକୁହୁକୁ ଜାଇଫୁଲ ନଈପାଣି ହୁକୁହୁକୁ
ଅଇଲ କାଳିଆ ଧଇଲ ବୁକୁ ମୋ ଛାତି କଲା ଦୁକୁଦୁକୁ
ଲୋ ଖରି ମଉଜ ବେଳେ
ରଥ ଦଉଡ଼ି ପଡ଼ୁଛି ତଳେ, ମୋ ଖରି ମଉଜ ବେଳେ ।

୯— ଗାଇବୁ ବୋଇଲେ ଗାଅ ଜାଇଫୁଲ,
ଗାଇବୁ ବୋଇଲେ ଗାଅ
ନ ଗାଇ ପାରିଲେ ଘରକୁ ଯାଅ ମୋ
ବଳଦ କୁଣ୍ଡରେ ଖାଅ
ମୋ ନ'ଯା ତେଲଙ୍ଗାପେଣ୍ଠ
ତେଲଘଣା ଡାକେ କଠ କଠ ଲୋ ନ'ଯା ତେଲଙ୍ଗାପେଣ୍ଠ ।

୧୦— କବାଟର ଝିକମିକ ଜାଇଫୁଲ କବାଟର ଝିକମିକ
ପାନ ଭାଙ୍ଗିଦେବ ଅପ ରାତକ ତ, ମୁଁ ପୂର୍ବର ପୀରତକ
ଲୋ ଗେଡ଼ ମହାନ୍ତିଆଣୀ,
ତୋର ନାସାରେ ଯୋଡ଼ା ବସଣି ଲୋ ଗେଡ଼ ମହାନ୍ତିଆଣୀ ।

୧୧— ଧୋବାଘର ତାଟି ମେଲ ରେ
ଅରେ ମୋ ବନ୍ଧୁ ରେ ଧୋବାଘର ତାଟି ମେଲା
ସୁରତ ଲଗାଇ ପୀରତ କଲା ମୋ
ସେହ୍ନ ଧାର ମୁହାଁ ପିଲା ରେ

ନ'ଯା ତେଲଙ୍ଗାପେଣ୍ଠ,
ତେଲଘଣା ଡାକେ କଠ କଠ ରେ ନ'ଯା ତେଲଙ୍ଗାପେଣ୍ଠ ।

୧୨— ଘରର ଉପରେ ଘର ଜାଇଫୁଲ ଘରର ଉପରେ ଘର
ଡନା ଖୁମ୍ବ ପର ଡନା ଦାଅର ମୋ ଚନ୍ଦର ଉଦାଅ ବର
ଲୋ ଲଙ୍କାମରଚ ଫୁଲ
ତୋତେ କାଏ ଲୋ ତୋତେ କାଏ ଲୋ
ତୋତେ କାଏ କେତେ କଲା ମୂଲ ଲୋ
ଲଙ୍କାମରଚ ଫୁଲ ।

୧୩— ଟିକି ପେଠ ତଳେ ଗାତ ଜାଇ ଫୁଲ ଟିକି ପେଠ ତଳେ ଗାତ
ଧର ମୁହଁ ସୁନାମୁଦାଅ ହାତ ମୋ
ଠେକା ପାଣି ଠେକା ଭାତ
ଲୋ ସଜ ମଉଜ ମଲି
ଭାଙ୍ଗିଯିବ ଅଣ୍ଟାଭଙ୍ଗା ଗୁଲ ଲୋ ସଜ ମଉଜ ମଲି ।

୧୪— ବଳଦ ଗୋଡ଼ରେ ବାଗି ଜାଇଫୁଲ
ବଳଦ ଗୋଡ଼ରେ ବାଗି
ଏ ଯୁବା ବୟସ ଯାଉଛି ଭାଙ୍ଗି ମୋ
ଏକା ପାନଗିଆ ଲାଗି ଲୋ
ନ ଯା ଲବଙ୍ଗଲତା, ଫେର ଅଶିଲେ କଥା ବାରତା ଲୋ
ନ ଯା ଲବଙ୍ଗଲତା ।

୧୫— ମଙ୍ଗିଷି ଗୋଠରେ ଧୁଆଁ ଅରେ ମୋ ବନ୍ଧୁରେ
ମଙ୍ଗିଷି ଗୋଠରେ ଧୁଆଁ
ଭାତ ଖାଇ ନାହିଁ ପିହାଣମୁହାଁ ମୋ
ମୋତେ ବାଭ୍ର ହେଲା କଅାଁ ଲୋ, ନ ଯା ତେଲଙ୍ଗାପେଣ୍ଠ
ତେଲ ଘଣା ଡାକେ କଠକଠ ଲୋ ନ ଯା ତେଲଙ୍ଗାପେଣ୍ଠ ।

୧୬— କାଠି କାଙ୍ଗୁଲର ଟେର ଜାଇଫୁଲ
କାଠି କାଙ୍ଗୁଲର ଟେର
ପିଲା ଯାଇ ନାହିଁ ଘଇତା ଘର ମୋ
ମୁହଁ କରେ ଫର ଫର ମୋ

ନ ଯା, ଲବଙ୍ଗଲତା, ଫେର ଅସିଲେ କଥା ବାରତା ଲୋ
ନ ଯା ଲବଙ୍ଗଲତା ।

୧୭— ନଈରେ ନାଆ ନାଉରୀ ରେ ନଈରେ ନାଆ ନାଉରୀ
ତୋ ମନେ ଅଛୁ କି ମୋ ମନେ ଅଛୁ
ମୋ ଗୃକୁଣ୍ଡା ବଣ ଧାଉଁର ଲୋ
ନ ଯା' ଲବଙ୍ଗଲତା,
ଫେର ଅସିଲେ, ଫେର ଅସିଲେ କଥା ବାରତା ଲୋ
ନ'ଯା ଲବଙ୍ଗଲତା ।

୧୮— ଦେଉଳ ଉପରେ ଇଠା ଜାଇଫୁଲ ଦେଉଳ ଉପରେ ଇଠା
ମାଆ ଦେଇ ନାହିଁ ପନିକ ପଠା
ମୋ ନଣନ୍ଦ ଦେଉଛୁ ଖୁଣ୍ଟା ଲୋ
ଲଙ୍କାମରଚ ଫୁଲ,
ତୋତେ କିଏ କେତେ କଲା ମୂଲ ଲୋ
ଲଙ୍କାମରଚ ଫୁଲ ।
( ପାଏକପଡ଼ା ଗଡ଼, ନରସିଂହପୁର )



# ଓମାଳ (୫)

( ସୁଆଦଖିଆ )

ଏଥୁ ଅନନ୍ତରେ ସୁଜନେ ଶୁଣ ଅପୂର୍ବ ରସ
ରଙ୍ଗବତୀ ବୋଲେ ମାଉସୀ ମୋର ଗର୍ଭ ଆଳସ । ୧ ।
ବହୁତ ସୁଆଦ ଖାଇବି ମୋର ହେଉଛି ମନ
ଯାହା ଖାଇବି ଲୋ ମାଉସୀ ଆଣି ଦିଅ ବହନ । ୨ ।
ଶାହାଧାନୀ ଧାନ ଗୁଣ୍ଡଳ ମୁଗ ନଡ଼ିଆ ପଡ଼ ।
ଖେରମର୍ଦ୍ଦ ଘିଅ ଅଦା ଲୋ ପଡ଼ ହେବ ଖେଚେଡ଼ି । ୩ ।
ସୁନାକେର ଧାନ ଗୁଣ୍ଡଳ ଦଶେ ବଡ଼ ଉଜଳ
ଝଭି ରସ ମଲ୍ଲି ଫୁଲରେ ବସା ଦହି ପଖାଳ । ୪ ।
ସାରୁ ଅଳୁ ବଡ଼ ବାଇଗଣ କଦଳୀରେ ମହୁର
ବୋଇତ କଖାରୁ ଆମ୍ବିଲ ଖଣ୍ଡଦିଆ ସାକର । ୫ ।
କଷି ବାଇଗଣ ସନ୍ତୋଳା କଞ୍ଚା ଭଜା ହୁଅନ୍ତା
କାଠିଆ କଦଳୀ ପକାଇ କର ଶିମ୍ବ ଗ୍ରଇତା । ୬ ।
ସାତ ପତ୍ରରିଆ ଜହ୍ନିର ଭଜା ଭେଣ୍ଡି ଆମ୍ବିଳ
ମୂଳା କାଞ୍ଜି ସଙ୍ଗେ ମେଳ ନେ କନ୍ଦମୂଳ ସୁମେଳ । ୭ ।
ସଜନା ମୁଗୁନା ଶାଗରେ ବଡ଼ କଖାରୁ ଫୁଲ
ଭଜା ହେଲେ ତାର ସୁଆଦ ଦଶ କାହାଣ ମୂଲ । ୮ ।
ବନ୍ତଲ ବଦଳୀ ମଞ୍ଜାକୁ କଞ୍ଚା କରିବ ରାଇ
ଲେଉଟିଆ ଶାଗ ଭାଜରେ ସଜ ପଖାଳ ଦହି । ୯ ।
ଶୀତଳ ମସଲା ନବାତ ପରଡ଼ ପାଣି ପଣା
ଶୀତଳ ବେଲରୁ ଖାଇଲେ ତୃଷା ହୋଇବ ଊଣା । ୧୦ ।
ଫେଣା ଚଣା ଖଜା ମିଠେଇ ସଙ୍ଗେ ରସାଳ କଷି
ସାଚ କୋର ସାଚ ଉଖୁଡ଼ା ଲଡୁ ହୋଇବ ଗଣି । ୧୧ ।

ବର ମୁଗ ବରା ବରାଙ୍ଗି ମଣ୍ଡା ·ଲଡୁ ଜଲବି
ପେଡ଼ା ସରୁଚୁଡ଼ା ଉଖୁଡ଼ା ଦୁଗ୍ଧ ସଙ୍ଗେ ଖାଇବି । ୧୨ ।
ଲେଉଟିଆ ଶାଗ ଭଜାରେ ତହିଁ ନ ଥିବ ବାଲି
କଅଁଳ ଅମ୍ବୁଲ ପକାଇ କର ହରଡ଼ ଡାଲି । ୧୩ ।
ସପୁରି ପଣସ ନଡ଼ିଆ କଷି ଗଜା ମୁଗରୁ
କଦଳୀ ଚକଟା ସଙ୍ଗେ ଲୋ କଷି ଗୁଡ଼ାଧଷାରୁ । ୧୪ ।
ତାଲମଣ୍ଡା ତାଳ ଚକୁଳି ବାସି ହେଲେ ସୁଆଦ
ବରକୋଳି ପିଠା କରିବ ପଦ୍ମ ଅରୁଆ ଖୁଦ । ୧୫ ।
ତୁଳସୀ କାଞ୍ଜିପାଣି ଶିଝିବ ଘିଅ ପରଜା ହେବ
ତାହା ଖାଇଲେ ଲୋ ମାଉସୀ ମୋର ଅରୁଚି ଯିବ । ୧୬ ।
ଘିଅ ପକା ମକା ଭଜାରେ ପଡ଼ୁ ମଠର ମଞ୍ଜି
କାନ୍ଧିଆ କମଳା ଝଭ୍ରି ଯେ କରମଙ୍ଗା କାଗେଜି । ୧୭ ।
କାଣ୍ଡିଆ କୁଣ୍ଡାକୁ ଝାଡ଼ିବ ତିଙ୍କି ମୁଣ୍ଡରେ ବସି
ବୁଢ଼ୀମାନେ ତାକୁ ଖାଇଲେ ହେବେ ଷୋଳ ବରଷି । ୧୮ ।
ଏତେ ସ୍ୱାଦ ମୁହିଁ ଖାଇବି ମୋର ହେଉଛି ମନ
ଦ୍ୱିଜ କବି କର୍ଣ୍ଣ ଭଣିଲେ ଧନ୍ୟ ନାରୀରତନ । ୧୯ ।



# ବଚନ

## ୧ । ଆଶୀର୍ବାଦ ବଚନ (୧)

୧— ତୁ ଅହ୍ୟ ସୁଲକ୍ଷଣୀ ହୋଇ ଥା ।
୨— ତୁ ଅହ୍ୟଂ ଡେଙ୍ଗୁରେ ଯାଅ ।
୩— ତୋ କାଚ ସିନ୍ଦୁର ବଜ୍ର ହେଉ ।
୪— ତୁ ସାତ ପୁଅରେ ସାଧବାଣୀ ହୁଅ ।
୫— ତୁ ସାତ ପୁରୁଷ ଉଦ୍ଧାର କର ।
୬— ତୁ ବଡ଼ ଦେଉଳରେ ନେତ ବାନ୍ଧେ ।
୭— ତତେ ରାଜ ଶ୍ରୀ ଲଗୁ ।
୮— ତୁ ବାଅ୍ୟାଳଣି ପୁରୁଷ ଉଦ୍ଧାରେ ।
୯— ତୋ ହାତରେ କାଚ, ଭୁଣ୍ଡରେ ମାଛ ଥାଇ ଦାନ ଯାଉ ।
୧୦— ତୁ ରାଜରାଣୀ ହୁଅ ମା ।
୧୧— ତୁ ଏ କୁଳକୁ କାରେଣି ହୁଅ ।
୧୨— ତତେ ଦୈବ ସାହାପକ୍ଷ ହେଉ ।
୧୩— ତୋର ବଢ଼ନ୍ତ ହେଉ ।
୧୪— ତୋର ବାଉଁଶ ଲେଖେ ବଉଁଶ ବଢ଼ୁ ।
୧୫— ତୁ ବାବୁ କୁଳକୁ ଚନ୍ଦ୍ରମା ହୁଅ ।
୧୬— ଅଷ୍ଟ ଉତ୍ତର ଶହେ ପରମାୟୁ ପାଅ ।
୧୭— ତତେ ଚତୁର୍ବର୍ଗ ପ୍ରାପ୍ତ ହେଉ ।
୧୮— ତତେ ଧନ ଜନ ଗୋପ ଲକ୍ଷ୍ମୀ ମିଳୁ ।
୧୯— ତୁମେ କୁଳକୁ ଉଜ୍ଜ୍ୱଳ ହୁଅ ।
୨୦— ତିନି ଲୋକରେ ତୋ ନାଁ ରହୁ ।
୨୧— ତୁ କର୍ଣ୍ଣ ପରି ଦାନୀ ହୁଅ ।
୨୨— ତୋର କୃଷ୍ଣ ଚରଣରେ ଲୟ ରହୁ ।
୨୩— ତତେ ରାଜରାଜେଶ୍ୱରୀ କନ୍ୟା ଲାଭ ହେଉ ।
୨୪— ତତେ ପଦ୍ମିନୀ କନ୍ୟା ମିଳୁ ।
୨୫— ତୋ ବଂଶ ବର୍ଦ୍ଧିତ ହେଉ ।

## ଆଶୀର୍ବାଦ ବଚନ (୨)

( ଘାଁ ବ୍ରାହ୍ମଣଙ୍କର )

୧— ସୌଭାଗ୍ୟ ମସ୍ତୁ
୨— ସର୍ବାରିଷ୍ଟ ଶାନ୍ତି ରସ୍ତୁ ।
୩— ଦୀର୍ଘାୟୁଷ ଭବ ।
୪— ଦୀର୍ଘାୟୁ ତ୍ୱଂ ।
୫— ମଙ୍ଗଳଂ ଭବ ।
୬— ଶୁଭଂ ଭବତୁ ।
୭— ଅଷ୍ଟ ଉତ୍ତର ଶତ ସମ୍ବତ୍ସର ଜୀବତୋସ୍ତୁ ।
୮— ମାର୍କଣ୍ଡେୟବଃ ଚିର ଜୀବନୋ ଭବନ୍ତୁ ।
୯— ସ୍ୱସ୍ତ୍ୟସ୍ତୁ ।
୧୦— ଆୟୁଷମାନ୍ ଭବ ସୌମ୍ୟ ମସ୍ତୁ ।
୧୧— ହର ଚରଣାରବିନ୍ଦ ପ୍ରାପ୍ତିରସ୍ତୁ ।
୧୨— ହରଭକ୍ତି ରସ୍ତୁ ।
୧୩— ପରମାୟୁ ରସ୍ତୁ ।
୧୪— ଅଖୁଣ୍ଡ ଭବ ।
୧୫— ଅହ୍ୟ ସୁଲକ୍ଷଣୀ ଭବ ।

## ୨ । ଅଭିଶାପ ବଚନ

୧— ତୋର ଲକ୍ଷେ ଅର୍ଜିଲେ ପକ୍ଷେକୁ ନଅଣ୍ଟୁ ।
୨— ତୋ ଘରେ କଳାକନା ବୁଲିଯାଉ ।
୩— ତତେ ଖଣ୍ଡିଆ ଘୁଅଣୀ ନଅଣ୍ଟୁ ।
୪— ହାଡ଼ ଥାଉ ଥାଉ ମାଉଁସ ମିଳେଇ ଯାଉ ।
୫— ପାଟି ପୂରୁ, ପେଟ ନ ପୂରୁ ।
୬— ଲୁଣି ଶୁଖୁଆ ଲେଖେଁ ଝଡ଼ି ପଡ଼ ।
୭— ତୋ ବଡ଼ ପୁଅ ପଡ଼ି ମରୁ ।
୮— ସଞ୍ଜେ ଫୁଟି ସକାଳେ ଯା
ଜହ୍ନିଫୁଲ ପରି ଆୟୁଷ ପାଅ ।

୯— ତୋ ଅଦ୍ଧାରୁଆ ଧନ ବାସୁଆ ଶୁଣ୍ଢୀ ହର ନେଉ ।
୧୦— ତୋତେ ରାଜଦଣ୍ଡ ପଡୁ ।
୧୧— ତୋତେ ଯମଦଣ୍ଡ ପଡୁ ।
୧୨— ତୋ ବଉଁଶ ବୁଡ଼ିଯାଉ ।
୧୩— ତୋ ହାତରୁ କାଚ ଛୁଡ଼ିପଡୁ ।
୧୪— ତୋ ମୁଣ୍ଡ ସିନ୍ଦୁର ଲିଭିଯାଉ ।
୧୫— ତୋତେ ଅଣ୍ଟୁକୁଡ଼ା ଦୋଷ ଲାଗୁ ।
୧୬— ସକାଳେ ତୋ ମୁହଁ କେହି ନ ଚାହାଁନ୍ତୁ ।
୧୭— ପକ୍ଷେ ଛୁଉଁ, ପକ୍ଷେ ବଢ଼ ।
୧୮— ତୋ ସମ୍ପତ୍ତି ନାଲି ଜଲି ଚରିଯାଉ ।
୧୯— ତୋତେ ଅକାଳ ଚଡ଼କ ପଡୁ ।
୨୦— ତତେ ଦୈବ ଭୁଷ୍ଟଭୁଷା ପଡୁ ।
୨୧— ତୋ ହାତରୁ ହାଣ୍ଡି ଝଡ଼ ପଡୁ ।
୨୨— ତୋ ମୁହଁରେ ଗଣଗଣା ମାଛି ବେଢ଼ନ୍ତୁ ।
୨୩— ତୁ ଏ ଗାତରୁ କାଢ଼ି ସେ ଗାତରେ ପୋତ ।

## ୩ । ଇତିହାସ ବଚନ

୧— ଅଇଲା କଳାପାହାଡ଼
ଭାଙ୍ଗିଲା ଲୁହାର ବାଡ଼
ପିଇଲା ମହାନଦୀର ପାଣି
ସୁବର୍ଣ୍ଣ ଥାଳରେ ଖୀରି ପରଶିଲେ
ମୁକୁନ୍ଦଦେବଙ୍କ ରାଣୀ ।
୨— ଅମେଇ ଠାରୁ କମେଇ ଯାଏ । ( ବୌଦ୍ଧ )
୩— କଟକ ଚନ୍ଦ୍ରା ବାଇମୁଣ୍ଡିଆ ।
୪— କଂସ ଦର୍ପ ଗଲାଣି, ଜଗତୀ ରହିଛି ।
୫— କାଳିଆ କପିଳା ଭେଟ ।
୬— କୀଚକ ବାହୁବଳେ ବିରାଟ ରଜା ।
୭— କୁହାମୁଣ୍ଡା କପିଳା ।

୮— ଖଳିହତାରୁ ବାଉଁଶିଅଳ ଯାଏ ।
( ନରସିଂହପୁର )

୯— ଗଙ୍ଗାଠାରୁ ଗୋଦାବରୀ ଯାଏ ।

୧୦— ତ୍ରିମିଚି ଖେଳରୁ ମହାଭାରତ ।

୧୧— ନଈରେ ବାଳିଆ ଚହଟିଲା
କଜଳ ସିନ୍ଦୁର ନାଆ ଲେ ସ୍ୱଣ୍ଡେ
ପୁଣି ଗୁଣିଆ ଲେଉଟିଲା ।

୧୨— ବସ୍ୱାଳଣି ପୁରୁଷରେ ଦେଖା ନ ଥିଲା ।

୧୩— ବାରଣ ବଡ଼େଇରେ ଦାସ୍ୱ ନା ପୁଅରେ ଦାସ୍ୱ ।

୧୪— ବାପଠୋଉ ପୁଅ ଶଙ୍କର ରଜା ବଡ଼ ।

୧୫— ଭଲା ସ୍ୱାମଚଣ୍ଡୀ ଭଲା ରେ
କଳାପାହାଡ଼କୁ ଦୁଆରେ ବସାଇ
ଭଲା ପାଣି ଅଣି ଗଲା ରେ ।

୧୬— ଲଖିଆ, ବାଙ୍କିଆ, କଛୁ କଛୁ ପିଠାଖିଆ ।
( ନରସିଂହପୁର )

୧୭— ସାତଥର ଯିବ ଗଙ୍ଗା
ଥରେ ଯିବ ଚନ୍ଦ୍ରଭାଗା ।

୧୮— ହଲଦୀ ମଗାମଣି
ସୁବର୍ଣ୍ଣରେଖା ପାର ହେଲେ କୁଟୁମ୍ବ ଦେଖାଦେଖି ।

୧୯— ସତୀ ଚଉସ୍ୱଠୋଉ ଖାନନଗରଯାଏ ।

## ୪ । କୃଷି ଡାକ ବଚନ

୧— ଅଣି ଗରଗଡ଼ା ନଉ ବାଲୁଙ୍ଗା
ମନ କଲେ ଉଠିବ କଢ଼ାଣିଆ ।

୨— ଆଖୁ ବଙ୍କା
ନ ବୁଡ଼େ ଭଙ୍କା,
ଜଡ଼ା ବଙ୍କା, ନବୁଡ଼େ ଠଙ୍କା ।

୩— ଅଗେ ବୁଣ ପଛେ ବୁଣ
ଗର୍ଭିଣୀକୁ ଢୁଣ୍ଢୁଣ୍ଢୁ ।

୪— ଅଷାଢ଼ ମାସରେ ଫୁଲ ଖରଡ଼ି
ଚଷା ଭାଗ୍ୟ ଥିଲେ ପାଇ
ଠିଆ ହୋଇ ବୁଣି ଥିଲେ
ବସି କରି ଦାଏଁ ।

୫— ଆଠ ଦମକାଣି ଷୋଳ ଅସରା
ବଢଣି ହିଁପି ହିଁପି ଚଉଷଠେ କୁଣ୍ଡାଙ୍ଗା
ତେବେ ଯାଇ ଚଷାର ହେବ ପେଟ ପୂରା ।

୬— ଅପେ ବଣିଜ ପୂତେ ଚାଷ
ଆଉ ସବୁ ଯେତେ ଫସରଫାସ ।

୭— ଉଭା ମୁଠି, ଆଉ ଦ ମୁଠି
କଆଁରି ମଞ୍ଜିରେ ପୋତିବୁ କାଠି,
ବିଲରେ ରଖିବୁ ପାଣି ସମାନ
ପର୍ବତ ଶିଖରେ କରିବୁ ଧାନ ।
ଚଷା ଭାଇ ମାନ ରେ
ଯହିଁ ପାଣି ତହିଁ ଧାନ ରେ ।

୮— କାର୍ତ୍ତିକ ମାସରେ ଦାଣ୍ଡରେ ପାଣି
ହାଟୁଆ କାଢ଼ିଲେ ବଡ଼ ଗଉଣୀ ।

୯— କାଳିଆ ବଳଦ କଷରା
ଯୁଆଙ୍କୁ ନ କରିବୁ ପସରା ।

୧୦— ଗାଈ କରିଥିବ ଗୁରୁଣ୍ଡି ଗାରଡ଼
ବଳଦ କରିବୁ ଡେପା
ଅଖୁ ବିଲକୁ ମାଣେ ନ କରିବୁ
ପାଏ କରିଥିବୁ କପା ।

୧୧— ଛାଡ଼ିବୁ ଚଉଦ ଧରିବୁ ଗୁର.
କମଣ କରିବୁ ଚାଷ କଆଁରି,
ବୁଣିବୁ ଖରଡ଼ି ପକେଇ ଖତ
ହୁଡ଼ ଖଣ୍ଡି ତଳେ ନ ଦେବୁ ହାତ,

ଦୀର୍ଘରେ ହାତ, ପ୍ରସ୍ଥରେ ହାତ
ହାଡ଼ ବାନ୍ଧଦେବୁ ଘାସ ସହିତ,
ପର୍ବତ ଶିଖରେ ବୁଣିବୁ ଧାନ
ନ ହେଲେ କାଟିବୁ ତାକର କାନ,
ଚଷାଭାଇ ମାନ ରେ
ଯହିଁ ପାଣି ତହିଁ ଧାନ ରେ ।

୧୨— ଜନ୍ମକୁ ବୋଇଲେ କର୍ମକୁ ଫଳେ ।

୧୩— ଜାଣ ନ ଜାଣ ହାମ୍ବୁଲ ଆଣ
ଖାଡ଼ଆ ଶିଙ୍ଗା ସବୁଠୋଉ ଠାଣ,
କୁଣ୍ଡଳ ଶିଙ୍ଗା ଦେଖିବୁ ଯେବେ
ଅଣ୍ଟାରୁ ପଇସା କାଢ଼ିବୁ ତେବେ,
ଆଣିଥିବୁ ମୂଳ ଶିଙ୍ଗାକୁ ରସି
କାନ୍ଦୁଥିବୁ ହାଡ଼ମୁଣ୍ଡରେ ବସି ।

୧୪— ଶିଙ୍ଗ ସରୁଆ ଲଙ୍ଗୁଡ଼ ମୋଟା
ମାଗଣା ଦେଲେ ନ ଆଣିବୁ ବେଠା ।

୧୫— ଜ୍ୟେଷ୍ଠେ କଦଳୀ ଆଷାଢ଼େ କଅ
ପୋତ ନପୋତ ହୁଅଇ ଠିଆ ।
ହାତେ ଗୃଖଣ୍ଡେକେ ଖୋଳିବୁ ଗାତ
ପଥର ଖଣ୍ଡିକେ ନ ଦେବୁ ହାତ,
ଚଉକେ ଛାଡ଼ି ଭାଙ୍ଗିବୁ ଭଣ୍ଡା
ତେବେ ସେ ଦେଖିବୁ କଦଳୀ ପେଣ୍ଡା ।

୧୬— ଛଅ ବରଷରେ ଧାନ ବାଲୁଙ୍ଗା
ଛଅ ପୁରୁଷରେ କୁଳ ବାଲୁଙ୍ଗା ।

୧୭— ଦିନରେ ଭେଲା ଭେଲା—ରାତକ ନର୍ମଳା
ନାଥେ ବୋଇଲେ ପୁତା ସେ ଦେଶ ଛାଡ଼ ପଳା ।

୧୮— ଦୂରେ ମଣ୍ଡଳ ନିକଟେ ପାଣି
ନିକଟେ ମଣ୍ଡଳ ଦୂରେ ପାଣି ।

୧୯— ପୂର୍ବେ ଇନ୍ଦ୍ରଧନୁ ପଶ୍ଚିମେ ରୋହ
ନାଥେ ବୋଇଲେ ପୁତ୍ରା ନଷ୍ଟେ ପଡ଼ଇ ଧୋଇ ।

୨୦— ପୂର୍ବେ ମେଘ ଯେବେ ପଶ୍ଚିମେ ପଶେ
ଚଜ ଗୋବରରେ ଅଂଶୋଇ ବସେ
ନାଥୋ ବୋଇଲେ ପୁତା ନିଶ୍ଚେ ବରଷେ ।

୨୧— ଫଗୁଣ ଗୁଣ୍ଡି
ଭେଦୁଅ ଖଣ୍ଡି ।

୨୨— ଫଗୁଣେ ଗୃଷ ସୁନାର କଷ
ଚଇତ ଗୃଷ କୁନ୍ଦୁ ପୋଷ
ବୈଶାଖ ଗୃଷ କୋଠକୁ ତୋଷ
ଜ୍ୟେଷ୍ଠେ ଗୃଷ ମୂଲିଆ ପୋଷ ।

୨୩— ବାଇଶା ଗରଗଡ଼ା ତେଇଶ ଝଁଡ଼ା
ପାଗ ପାଇଲେ ଉଠେ ମୁନ୍ଦା ବାପୁଡ଼ା ।

୨୪— ବଳଦ କିଣିବ ଖରୁଆ
ଗାଈ କିଣିବ ଘରୁଆ ।
ମଇଁଷି କିଣିବ ଭେଡ଼ି
ଛେଳି କିଣିବ ଦାଢ଼ି ।

୨୫— ବଇଶାଖ ଗୁଣ୍ଡି, ଭେଦୁଅ ବେଣ୍ଡି
ଅଶିଣ ଦାଣ୍ଡି,
ଧାନ କାଟି ଚଷାପୁଅ ମାରେ ହେଣ୍ଡି ।

୨୬— ଭେଦୁଅ କାଢ଼ି
ଧାନର ବଢ଼ି
ଅଶିଣ କାଢ଼ି—ଧାନକୁ ବାଡ଼ି ।

୨୭— ଯଦି ବରଷେ ମାଘର ଶେଷ
ଧନ୍ୟ ସେ ରାଜା ଧନ୍ୟ ସେ ଦେଶ ।

୨୮— ଯେବେ ବରଷେ ମାଘୁଆଣି ପାଣି
ଧନ୍ୟ ସେ ରାଜା ଧନ୍ୟ ସେ ରାଣୀ ।

୨୯— ରୁଆ ଧାନ ଥୁଆ ।

୩୦— ଶ୍ରାବଣ ଧୋଇ ବାଧେ ନାହିଁ
ଭେଦୁଅ ଧୋଇ କଣ୍ଟୁ କଣ୍ଟୁ ରହି
ଅଶିଣ ଧୋଇ ନିଷ୍ଫଳଙ୍କ ହୋଇ ।

୩୧— ଷାଠିଏ ଓଡ଼ ମୂଳା
ତହିଁରୁ ଅଧ ଗୁଳା
ତହିଁରୁ ଅଧା ଗୁଳା
ତହିଁରୁ ଅଧା ଧାନ
ତହିଁରୁ ଅଧା ପାନ
ବସି ଖାଏ ଚଷା ସ୍ତ୍ରୀର ପାନ ।

୩୨— ଶ୍ରାବଣରେ ଧନେ ନ ବରଷିଲେ ଲକ୍ଷେ ଭରଣ ଲୁଟୀ ।

୩୩— ଷଠୀ ସାତପୁର ଯାଉଛୁ ଖସି
ଇନ୍ଦ୍ରମାଆ କାନ୍ଦେ ବାଡ଼ ପନ୍ଦାଡ଼େ ବସି ।

୩୪— ହସି ପଶେ
ଓଳି ନ ଦଶେ
ସଜ ଗୋବରରେ ଅଂଶେର ବସେ
ନାଥେ ବୋଇଲେ ପୃଥା ନଷ୍ଟେ ବରଷେ ।

## ୫ । ଗାଉଁଲି ନ୍ୟାୟ ବଚନ

(ଅ) ୧— ଅଇଧେର୍କୁ ବ୍ରାଇଗଣ ଫୋପାଡ଼ିବା ନ୍ୟାୟ ।
୨— ଅଜା ଗଳସ୍ତନ ନ୍ୟାୟ ।
୩— ଅମୃତ ହାଣ୍ଡିରେ ବିଷ କଣିକାଏ ମିଶିବା ନ୍ୟାୟ ।
୪— ଅନ୍ଧାର ଘରେ ବାଡ଼ି ବୁଲେଇବା ନ୍ୟାୟ ।
୫— ଅଣ୍ଟି ସୁନା ବେଙ୍ଗି ପିତଳ ହେବା ନ୍ୟାୟ ।
୬— ଅବଧାନକୁ କୁଣ୍ଡା ଦେଇ ପୁଅକୁ ପାଠ ପଢ଼େଇବା ନ୍ୟାୟ ।
୭— ଅଲସୁଆ କର୍ମକୁ ଗଙ୍ଗା ବଳେ ହେବା ନ୍ୟାୟ ।
୮— ଅଳପ ପଇସାରେ କାଣି ମାଇପ କଲା ନ୍ୟାୟ ।
୯— ଅଣ୍ଡିରା ମୂଷା ଫଳେ ବେଇବା ନ୍ୟାୟ ।

(ଆ) ୧୦— ଆଖି ଥାଉ ଥାଉ ଅନ୍ଧ ହେବା ନ୍ୟାୟ ।
୧୧— ଆଖିରେ ଅଙ୍ଗୁଠି ଗେଞ୍ଜିବା ନ୍ୟାୟ ।

୧୨— ଅଙ୍ଗୁଠି ପଶୁ ପଶୁ ବାହା ପଶିବା ନ୍ୟାୟ ।
୧୩— ଅମ୍ବ ଝିଅ ପୁଅକୁ ଝାଳୁଅ ଭଣ୍ଡେଇବା ନ୍ୟାୟ ।
(ଉ) ୧୪— ଉଷୁନା ଧାନରୁ ଗଜା ବାହାରିବା ନ୍ୟାୟ ।
୧୫— ଉଡ଼ିଗଲା ଚଢ଼େଇର ପକ୍ଷୀ ଗଣିବା ନ୍ୟାୟ ।
(ଋ) ୧୬— ଋଷିବାଳ ଛୁଣ୍ଡେଇବା ନ୍ୟାୟ ।
(ଏ) ୧୭— ଏକାନେ ପଶି ସେ କାନେ ବାହାର ଯିବା ନ୍ୟାୟ ।
(ଓ) ୧୮— ଓଲେଇ କପାଳକୁ ଶିକା ଛୁଡ଼ିବା ନ୍ୟାୟ ।
(କ) ୧୯— କଣ୍ଟା ବାଡ଼ରେ ଲୁଗା ପକାଇ କଳ କରିବା ନ୍ୟାୟ ।
୨୦— କପା କଅଁଶିରେ ଗୋରୁ ମୁଣ୍ଡ ଥାପିବା ନ୍ୟାୟ ।
୨୧— କାକର ଚପି ଘଡ଼ା ଭରିବା ନ୍ୟାୟ ।
୨୨— କେରାଣ୍ଡି ଗୁନ୍ଥି ଶେଉଳ ପାଇବା ନ୍ୟାୟ ।
୨୩— କୋଇଲି ଉମ୍ବ ଫୁଟେଇବା ନ୍ୟାୟ ।
(ଖ) ୨୪— ଖୀରରେ ଖାର ମିଶେଇବା ନ୍ୟାୟ ।
୨୫— ଖାଇବା ପତରରେ ଧୂଳି ପିଙ୍ଗିବା ନ୍ୟାୟ ।
(ଗ) ୨୬— ଗଧର ଚନ୍ଦନ କାଠ ବୋହିବା ନ୍ୟାୟ ।
୨୭— ଗଙ୍ଗା ଜଳ ନେଇ ଗୋବର ଗାଡ଼ିଆରେ ପକେଇବା ନ୍ୟାୟ ।
୨୮— ଗୋଇଠା ମାର ପଛେ ବସ୍ତ୍ର କହିବା ନ୍ୟାୟ ।
୨୯— ଗୋବର ଗଡ଼ିଆରେ ପଦ୍ମ ଫୁଟିବା ନ୍ୟାୟ ।
୩୦— ଗୋବର ଚଢ଼େଇକ ପାଚିଲା କଦଳୀ ଦେଖେଇବା ନ୍ୟାୟ ।
(ଘ) ୩୧— ଘରୁଖାଇ ଘୋଡ଼ା ଆଗରେ ଜେଇଁବା ନ୍ୟାୟ ।
୩୨— ଘରେ ନ ପଶୁଣୁ ଗୁଳରେ ମୁଣ୍ଡ ବାଜିବା ନ୍ୟାୟ ।
୩୩— ଘାସ କାଟିଯାଇ ପରୀକ୍ଷା ପଣ କରିବା ନ୍ୟାୟ ।
୩୪— ଘୋଡ଼ାକୁ ଭାଗବତ ପଢ଼ାଇବା ନ୍ୟାୟ ।
(ଚ) ୩୫— ଚାଉଳ ମାଣକ କୁକୁରକୁ ଦେଇ ଧାନମାଣକ ଲାଗି ପର ଗୋଡ଼ ଧରିବା ନ୍ୟାୟ ।

୩୬ — ଗୁଲୁଣି ଭୁଞ୍ଜିକ ଡଆରବା ନ୍ୟାୟ ।
୩୭— ଗ୍ଳେରକୁ ମାନ କର ଖପଗ୍ରେ ଖାଇବା ନ୍ୟାୟ ।

(ଜ) ୩୮— ଜଠ ବାଉଲାରେ ଡାଟିଅ କାମୁଡ଼ିବା ନ୍ୟାୟ ।
୩୯— ଜଳନ୍ତା ନିଆଁରେ କୁହା ପକେଇବା ନ୍ୟାୟ ।

(ଝ) ୪୦— ଝିଂଟିକା ମାର ବଣି ପୋଷିବା ନ୍ୟାୟ ।

(ଡ) ୪୧— ଡହକ ଚୁଲିରେ କୁହୁଲା ପକେଇବା ନ୍ୟାୟ ।
୪୨— ଡାହାଣି କୋଡ଼ରେ ପୁଅ ଦେବା ନ୍ୟାୟ ।

(ଢ) ୪୩ — ଢନ୍ତ କୁହୁଡ ପହଁରିବା ନ୍ୟାୟ ।
୪୪— ଢାଳଗଛକୁ ବାଳ ଫୋପଡ଼ ଫୋପାଡ଼ିବା ନ୍ୟାୟ ।
୪୫— ଢନ୍ନା ଶେଣାରେ ପାଣି ଉଠିବା ନ୍ୟାୟ ।
୪୬— ଢଳକୁ ଢାଳ କରବା ନ୍ୟାୟ ।

(ଦ) ୪୭— ଦଦରା ଡଙ୍ଗାରେ ବସେଇ ମଝି ନଈକୁ
ପେଲିଦେବା ନ୍ୟାୟ ।
୪୮— ଦାସେ ଓଲଟି ଗଧ ଚଢ଼ିବା ନ୍ୟାୟ ।
୪୯— ଦାଲୁଅ ଲାଗି କାକଶିର ପାଣି ପାଇବା ନ୍ୟାୟ ।
୫୦— ଦାହେ ଦୋଷକଲେ କବରରେ ଜରିମାନା
ଦେବା ନ୍ୟାୟ ।
୫୧— ଦଅଁ ଖାଇ ଖଝୁଲି ଗିଳିଦେବା ନ୍ୟାୟ ।

(ନ) ୫୨— ନୂଆ ଡାହାଣିର ଗୁହ ଖାଇବା ନ୍ୟାୟ ।

(ପ) ୫୩ — ପର୍ବତର ମୂଷିକ ପ୍ରସବ କରବା ନ୍ୟାୟ ।
୫୪ ପର ଧନରେ ବନ୍ଧୁ ଅର୍ଜିବା ନ୍ୟାୟ ।
୫୫ -- ପାଲଗଦାରେ ଚଢ଼ି ଉଞ୍ଚାହେବା ନ୍ୟାୟ ।
୫୬— ପାଣିରେ ଘରକର କୁମ୍ଭୀର ସାଥିରେ ବାଦ କରବା ନ୍ୟାୟ ।
୫୭— ପର୍ବତକୁ ଠେକା ମାରବା ନ୍ୟାୟ ।
୫୮— ପାଞ୍ଚ ଅଙ୍ଗୁଠି ପାଟିରେ ପୁରେଇବା ନ୍ୟାୟ ।
୫୯— ପିମ୍ପୁଡ଼ି ହୋଇ ଗ୍ରୀପରୁଖା ଚଢ଼ିବା ନ୍ୟାୟ ।

୬୦— ବଇଦ ଗୃଉଳ ପଥି କରିବା ନ୍ୟାୟ ।
୬୧— ବଙ୍ଗାଳି ତନ୍ତ୍ର ନାଁ କଣିବା ନ୍ୟାୟ ।
୬୨— ବାଦକୁ ସାତପୁଅ ଦେଇବା ନ୍ୟାୟ ।
୬୩— ବାତ ଘୋଡ଼ାକୁ ହେଲେ ସାହାଣି ଚଢ଼ୁ ଖାଇବା ନ୍ୟାୟ ।
୬୪— ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼େଇବା ନ୍ୟାୟ ।
୬୫— ବିଛା ମନ୍ତ୍ର ନ ଜାଣି ସାପ ଗାତରେ
ହାତ ପୂରେଇବା ନ୍ୟାୟ ।
୬୬— ବିଲୁଅଁତରେ ଗାଣ୍ଠି ଉଷିହେବା ନ୍ୟାୟ ।
୬୭— ବିରାଡ଼ି ଅଖିବୁଜି ଦୁଧ ପିଇବା ନ୍ୟାୟ ।
୬୮— ବିରାଡ଼ି କପାଳକୁ ଶିକା ଛିଣ୍ଡିଲା ନ୍ୟାୟ ।
୬୯— ବେଙ୍ଗ ଉପରେ କୋରଡ଼ା ମାରିବା ନ୍ୟାୟ ।
୭୦— ବରଷା ଦେଖି ଛତା ଧରିବା ନ୍ୟାୟ ।

(ଭ) ୭୧— ଭିତରେ ମୂଷା ପୂରେଇ ଚୋଲ ସିଲିବା ନ୍ୟାୟ ।

(ମ) ୭୨— ମହୁରଗରୁ ଯାଇ କାନ୍ତାରରେ ପଡ଼ିବା ନ୍ୟାୟ ।
୭୩— ମେଣ୍ଢା ଗୁହାଳରେ ନିଆଁ ଲଗିବା ନ୍ୟାୟ ।

(ଲ) ୭୪— ଲେଙ୍ଗୁଡ଼ କହୁଣୀକୁ ବୋହିଯିବା ନ୍ୟାୟ ।

(ଶ) ୭୫— ଶୁଖୁଆ ମାଳ ପକେଇ ବିରାଡ଼ି ବୈଷ୍ଣବ ହେବା ନ୍ୟାୟ ।

(ସ) ୭୬— ସଜ ମାଉଁସରେ ପୋକ ପକେଇବା ନ୍ୟାୟ ।
୭୭— ସାରୁ ଖୋଳୁ ଖୋଳୁ ମହାଦେବ ବାହାରିବା ନ୍ୟାୟ ।

(ହ) ୭୮— ହାଣ କୁରାଢ଼ି ବେକକୁ ଅଣିବା ନ୍ୟାୟ ।
୭୯— ହାତରୁ ଖାଇ ଘୋଡ଼ା ଅଗରେ ଡେଇଁବା ନ୍ୟାୟ ।
୮୦— ହାତରେ ନ ମାରି ଭାତରେ ମାରିବା ନ୍ୟାୟ ।

## ୬ । ଶାସନୀ ବ୍ରାହ୍ମଣଙ୍କ ସଂସ୍କୃତ ପ୍ରବଚନ—

(ଅ) ୧— ଅଜା ଯୁଦ୍ଧେ ଋଷି ଶ୍ରାଦ୍ଧେ ପ୍ରଭାତେ ମେଘଡମ୍ବରୁ
ଦାମ୍ପତ୍ୟୋଃ କଲହ ଶ୍ଚୈବ ବହ୍ୱାରମ୍ଭଃ ଲଘୁକ୍ରିୟା ।
୨— ଅର୍ଜ୍ଜକସ୍ୟ ଦ୍ରବ୍ୟୋପଭୋଗଃ ।

୩— ଅଲ୍ପଚିନ୍ତା ଚମତ୍କାରା, ମୃତବତ୍ ଜୀବତୋ ମସୃ ।
୪— ଅନ୍ଧସ୍ୟ ଦୀପଂ ବଧିରସ୍ୟ ଗୀତଂ ।
୫— ଅପରେ କିଂ ଭବିଷ୍ୟତି ।
୬— ଅତୋ ଭ୍ରଷ୍ଟ ତତୋ ଭ୍ରଷ୍ଟ ।
୭— ଅଙ୍ଗାରଃ ଶତଧୌତେନ ମଳିନତ୍ୱ ନ ମୁଞ୍ଚତି ।
୮— ଅଜୀର୍ଣ୍ଣେ ବାରି ଭୋଜନଂ ।
୯— ଅଜୀର୍ଣ୍ଣେ ଭୋଜନଂ ବିଷଂ ।
୧୦— ଅଜ୍ଞାତ କୁଳଶୀଳସ୍ୟ ବାସୋଦେୟୋ ନ କସ୍ୟଚିତ୍ ।
୧୧— ଅତି ଗର୍ବେ ହତ ଲଙ୍କା ଅତି ମାନେ ଚ କୌରବା ।
ଅତି ଦାନେ ବଳୀର୍ବଦ୍ଧ ସର୍ବ ମତ୍ୟନ୍ତ ଗର୍ହିତଂ ।
୧୨— ଅତି ପରିଚୟା ସନ୍ତତ ଗମନା ଅନାଦରେ ଭବତି ।
୧୩— ଅତୋନଷ୍ଟ, ତତୋନଷ୍ଟ,
୧୪— ଅଦ୍ୟ ଭକ୍ଷ ଧନୁର୍ଗୁଣ ।
୧୫— ଅନଭ୍ୟାସେ ବିଷଂ ବିଦ୍ୟା, ବୃଦ୍ଧସ୍ୟ ତରୁଣୀ ବିଷଂ ।
୧୬— ଅନ୍ୟେ ପରେ କା କଥା ।
୧୭— ଅଭାବେ କାଳେ ବିପରୀତ ବୁଦ୍ଧିଃ ।
୧୮— ଅବ୍ୟବସ୍ଥିତ ଚିତ୍ତସ୍ୟ ପ୍ରସାଦୋଽପି ଭୟଙ୍କରଃ ।
୧୯— ଅମୃତଂ ବାଳ ଭାଷିତଂ ।
୨୦— ଅଲ୍ପକୋ ସ୍ୱଳ୍ପକୋ ଲୋକୋ ମନେ ବହନ୍ତି ଗର୍ବିତା
କଚୁ ବୃକ୍ଷମୂଳେ ଭେକୋ ଦଣ୍ଡଛତ୍ର ଧରାୟତେ ।
୨୧— ଅନ୍ତଃପୁରଗତା ନାରୀ ଭୂପୋଽହଂ ପରିବର୍ଜୟେତ୍ ।
୨୨— ଅସନ୍ତୁଷ୍ଟା ଦ୍ୱିଜା ନଷ୍ଟା ।
୨୩— ଅହଂ ପ୍ରକୃତ ମୂଢ଼ୋଽସ୍ମି, ପ୍ରକୃତ ନୈବ ମୂଚ୍ୟତେ ।
୨୪— ଅହୋରୂପ ମହୋଧ୍ୱନି ।

(ଆ) ୨୫— ଅତୁରେ ନିୟମୋ ନାସ୍ତି ।
୨୬— ଅଘ୍ରାଣଂ ଗୃର୍ଦ୍ଧ ଭୋଜନଂ ।
୨୭— ଅପ୍ କାର୍ଯ୍ୟଂ ତାତ୍ପର୍ଯ୍ୟଂ ପରକାର୍ଯ୍ୟଂ ଯେବା ଉବା ।
୨୮— ଅହାରେ ବ୍ୟବହାରେ ଚ ତ୍ୟକ୍ତ ଲଜ୍ଜା ସୁଖୀଂ ଭବେତ୍ ।

(ଋ) ୨୯— ଋଣଂ କୃତ୍ୱା ଘୃତଂ ପିବେତ୍ ।

(ଏ) ୩୦— ଏକାଂ ଲଙ୍କାଂ ପରିତ୍ୟଜ୍ୟ ତ୍ରୈଲୋକ୍ୟବିଜୟୀ ଭବେତ୍ ।

(କ) ୩୧— କଚ୍ଚୁ ବୃକ୍ଷ ମୂଳେ ଭେକୋ ଦଣ୍ଡ ଛତ୍ର ଧରାୟତେ ।

୩୨— କୀଟସ୍ୟ କୀଟାନ୍ତୃତେ ।

୩୩— କୂମାଣ୍ଡ ଫଳ ମତିଃପଟଂ ।

୩୪— କୋଶଲା ବଡ଼ି ସଂଯୁକ୍ତଂ ଷୁଦ୍ର କଦଳୀ ମିଶ୍ରିତଂ
ହେଙ୍ଗୁପାଣି ସମାଯୁକ୍ତଂ ଅନ୍ନଂ ମକମକାୟତେ ।

୩୫— କୁର୍ବନ୍ତୁ ମେଘାଃ କୁସୁମସ୍ୟ ବୃଷ୍ଟିଂ ।

୩୬— କାଚଃ କାଚଃ ମଣିର୍ମଣିଃ ।

(ଗ) ୩୭— ଗତସ୍ୟ ଶୋଚନା ନାସ୍ତି ।

୩୮— ଗୃହାରମ୍ଭାସ୍ତୁ ଦୁଃଖାୟ ନ ସୁଖାୟ କଦାଚନ ।

(ଘ) ୩୯— ଘୃତହୀନଂ କୁଭୋଜନଂ ।

୪୦— ଘୃତକୁମ୍ଭା ସମା ନାରୀ ତପ୍ତାଙ୍ଗାର ସମଃ ପୁମାନ୍ ।

(ଚ) ୪୧— ଚନ୍ଦନଂ ନ ବନେ ବନେ ।

୪୨— ଚଳଚିତ୍ତଂ ଚଳଦ୍‌ବିତ୍ତଂ ଚଳଜ୍ଜୀବନ ଯୌବନଂ ।

୪୩— ଚିତ୍ରଂ ଦେବାନା ମୁଦ୍‌ଗାଦନକଂ ।

(ଜ) ୪୪— ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପିଗରୀୟସୀ ।

(ତ) ୪୫— ତୃଣବତ୍ ମନ୍ୟତେ ଜଗତ୍ ।

(ଦ) ୪୬— ଦର୍ଦ୍ଦୁରା ଯତ୍ର ବକ୍ତାର ସ୍ତତ୍ର ମୌନଂ ହି ଶୋଭନଂ ।

୪୭— ଦ୍ୱୟୋଃ ବିବାଦେ ତୃତୀୟସ୍ତ ଲଭଃ ।

୪୮— ଦେବାୟ ତସ୍ମୈ ନମଃ ।

୪୯— ଦୈବେ ବଳେ ଦୁର୍ବଳେ ।

(ନ) ୫୦— ନକୁଳଃ ସର୍ବ କାର୍ଯ୍ୟାଣି ଅହି ସର୍ବସ୍ ବାଧତେ ।

୫୧— ନଗ୍ନ କ୍ଷପଣକଃ ଦେଶେ ରଜକଃ କିଂ କରିଷ୍ୟତି ।

୫୨— ନ ଚଳତି ଖଳୁବାକ୍ୟଂ ସଜ୍ଜନାନାଂ କଦାଚିତ୍ ।

୫୩— ନ ମିଥ୍ୟା ପାତକଂ ପରଂ ।

୫୪— ନରାଣାଂ ନାପିତୋ ଧୂର୍ତ୍ତଃ ।

୫୫— ନ ହର ଶଙ୍କରୋ ବ୍ରହ୍ମା ।
୫୬— ନିରସ୍ତେ ପାଦପେ ଦେଶେ ଏରଣ୍ଡୋପି ଦ୍ରୁମାୟତେ ।
୫୭— ନିର୍ବାଣ ଦୀପେ କିମୁ ତୈଳ ଦାନଂ
ଚୌରେ ଗତେ ବା କିମୁ ସାବଧାନଂ ।
ବୟୋ ଗତେ କିଂ ବନିତା ବିଳାସଃ
ପୟୋ ଗତେ କିଂ ଖଳୁ ସେତୁବନ୍ଧଃ ।
୫୮— ନମ୍ରନ୍ତି ଫଳିନୋ ବୃକ୍ଷା ନମ୍ରନ୍ତି ଗୁଣିନୋ ଜନାଃ
ଶୁଷ୍କ କାଷ୍ଠଂ ଚ ମୂର୍ଖଂ ଚ ଭଜ୍ୟତେ ନ ଚ ନମ୍ରତେ ।
(ପ) ୫୯— ପରଦାର ମହାଭୀର, ଭୀରୁ ବିଶ୍ୱାସଘାତକା ।
୬୦— ପଥି ଶୂଦ୍ର ବଦାଚରେତ୍ ।
୬୧— ପରୋପକାରାୟ ସ୍ୱର୍ଗାୟ ।
୬୨— ପୁନର୍ମୂଷିକୋ ଭବ ।
(ଫ) ୬୩— ଫଳେନ ପରିଚୀୟତେ ।
(ବ) ୬୪— ବୃଦ୍ଧା ବେଶ୍ୟା ତପସ୍ୱିନୀ ।
୬୫— ବସ୍ତ୍ର ଧୈବ କୁଟୁମ୍ବକଂ ।
୬୬— ବାଲାଂ ଚ ବାଲା କପିଲାଶ ତାଳା ।
୬୭— ବଦ୍ୟାରତ୍ନଂ ମହା ଧନଂ ।
୬୮— ବିନାଶ କାଳେ ବିପରୀତ ବୁଦ୍ଧିଃ ।
୬୯— ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା ବନିତା ଲତା ।
୭୦— ବିଦ୍ୟା ବିବାଦାୟ ।
୭୧— ବୁଭୁକ୍ଷିତଃ କିଂ ନ କରୋତି ପାପଂ ।
୭୨— ବୃଦ୍ଧସ୍ୟ ବଚନଂ ଗ୍ରାହ୍ୟଂ ଆପତ୍କାଳ ସମୁପସ୍ଥିତେ ।
୭୩— ବକାନାଂ ଦୀର୍ଘ କଣ୍ଠତ୍ୱଂ ସଫରଣାଂ ବିପତ୍ତୟେ ।
(ଭ) ୭୪— ଭିକ୍ଷା ନୈବଚ ନୈବଚ ।
୭୫— ଭେକପୋଽକୋ ରଟତି ନିତରାଂ କଃ ସମାନୋଽସ୍ତି ମହ୍ୟଂ ।
୭୬— ଭେକୋ ମକ୍ ମକାୟତେ ।
(ମ) ୭୭— ମଳଭାଣ୍ଡଂ ନ ଗୃହ୍ଲୟେତ, ଶିବ ଲିଙ୍ଗଂ ନ ଗୃହ୍ଲୟେତ୍ ।
୭୮— ମହାଜନୋ ଯେନ ଗତଃ ସ ପନ୍ଥା ।

୭୯— ମୂର୍ଖସ୍ୟ ନାସ୍ତ୍ୟୌଷଧଂ ।
୮୦— ମୌନଂ ସମ୍ମତି ଲକ୍ଷଣଂ ।

(ଯ) ୮୧— ଯତୋ ଧର୍ମ ସ୍ତତୋ ଜୟଃ ।
୮୨— ଯତ୍ନେ କୃତେ ଯଦ ନ ସିଧ୍ୟତି କୋଽତ୍ର ଦୋଷଃ ।
୮୩— ଯତ୍ରାକୃତି ସ୍ତତ୍ରଗୁଣା ବସନ୍ତି ।
୮୪— ଯଥା ଦୃଷ୍ଟଂ ତଥା ଲିଖିତଂ ।
୮୫— ଯଥା ଦେହେ ତଥା ଦେବେ ।
୮୬— ଯଥା ରଣ୍ୟେ ତଥା ଗୃହେ ।
୮୭— ଯଦ୍ଧାତା ନିଜ ଭାଲପଟ୍ଟ ଲିଖିତଂ କର୍ମାନୁସାରଂ ଫଳଂ ।
୮୮— ଯଦ୍ ବାପା କଣ୍ଟକୀ କଦାହିଁ ନ ଥିଲା
ତଦ୍ ପୁତ୍ରେ ବନାଦ୍ ଛଵ ।
୮୯— ଯଦ୍ୟପି ଶିଦ୍ଧଂ ଲୋକ ବିରୁଦ୍ଧଂ
ନାଦରଣୀୟଂ, ନାଚରଣୀୟଂ ।
୯୦— ଯମସ୍ୟ କରୁଣା ନାସ୍ତି ।
୯୧— ଯସ୍ମିନ୍ ଦେଶେ ବୃକ୍ଷୋ ନାସ୍ତି ଏରଣ୍ଡୋଽପି ଦ୍ରୁମାୟତେ ।
୯୨— ଯସ୍ମିନ୍ ଦେଶେ ଯଦାଗ୍ଚରଃ ।
୯୩— ଯାବତ୍ ମୂର୍ଖ ନ ଭାଷତେ ।
୯୪— ଯୌବନେ ମର୍କଟୀ ରମ୍ୟା ।

(ର) ୯୫— ରାଜାନୁଗତୋ ଧର୍ମ୍ମଃ ।
୯୬— ରାଜଦତ୍ତ ପୃଥ୍ୱୀ—ପିତୃଦତ୍ତ କନ୍ୟା ।

(ଲ) ୯୭— ଲୋକାପବାଦୋ ବଳବାନ୍ ମତୋମେ ।
୯୮— ଲଭ୍ୟଂ ପରଂ ଗୋବଧଂ ।

(ଶ) ୯୯— ଶରୀର ମାଦ୍ୟଂ ଖଲୁ ଧର୍ମ୍ମ ସାଧନଂ ।
୧୦୦— ଶରୀର ବ୍ୟାଧି ମନ୍ଦିରଂ ।

(ସ) ୧୦୧— ସଫର ଫରଫରାୟତେ ।
୧୦୨— ସର୍ବ ଭକ୍ଷୋ ହୁତାଶଃ ।
୧୦୩— ସଂସର୍ଗଜା ଦୋଷଗୁଣା ଭବନ୍ତି ।

୧୦୪— ସ୍ୱଭାବୋ ମୂର୍ଦ୍ଧ୍ନି ବର୍ତ୍ତତେ ।
୧୦୫— ସ୍ୱଭାବ ନୈବ ମୁଚ୍ୟତେ ।
୧୦୬— ସ୍ୱକଂ ଗୁଣଂ ମୁଞ୍ଚତ କଂ ପଲାଣ୍ଡୁ ।
୧୦୭— ସର୍ବେ ସମାନା କ୍ଷିତିପାଳ ବୃଷ୍ଟି ।

---

# ପଦ

## ଭାଗବତ ପଦ

**ଅ**—ଅଗ୍ନି ଯେସନେ ସର୍ବ ଖାଇ, ବସ୍ତୁରେ ଗୁଣ ଦୋଷ ନାହିଁ । ୧ ।
ଅଙ୍ଗୁ ଆଳସ୍ୟ ବରଜିବ, ନିନ୍ଦିତ କର୍ମ୍ମ ନ କରିବ । ୨ ।
ଅତି ଉତ୍ପାତ ଘୋର ନାଦ, କିଅବା ପଡ଼ିବ ପ୍ରମାଦ । ୩ ।
ଅନଳ ଦେଖିଣ ପତଙ୍ଗ, ଯେସନ୍ତେ ଧାବନ୍ତି ଉଦବେଗ । ୪ ।
ଅମୃତ ବିନମ୍ର ବଚନ, କହି ତୋଷିବ ପ୍ରାଣୀ ମନ । ୫ ।
ଅର୍ଜିଲ କର୍ମ୍ମ ଫଳ ଫଳେ, ଭ୍ରମଇଁ ପ୍ରାଣୀ ମହୀତଳେ । ୬ ।
ଅଳପ ଲୋକେ ଅଧିକାର, ତୁ କପାଁ ଦେଲୁ ଦାମୋଦର । ୭ ।
ଅନ୍ନ ବିହୁନେ ହଂସ ହାନି, ଯୋଗ ସାଧିବ କାହାଧେନି । ୮ ।
ଅନ୍ନ ମୋହର ନିଜ ଗୁରୁ, ଉଦ୍ଧବ କେତେହେଁ ପଗୁରୁ । ୯ ।

**ଆ**—ଆତ୍ମା କୁଶଳେ ସର୍ବ ସିଦ୍ଧି, ତରନ୍ତି ଏ ଭବ ବାରିଧି । ୧୦ ।
ଆପଣା ହସ୍ତେ ଜିହ୍ୱାଛେଦ, ତାର କେ ଅଛି ପ୍ରତିବାଦୀ । ୧୧ ।
ଆତ୍ମର ନାହିଁଟି ଅଯତ୍ନ, ଯେଣିକି ନେବେ ଗୋପୀନାଥ । ୧୨ ।
ଆପଣା ଦୋଷେ ପ୍ରାଣୀ ମରେ, ବ୍ୟାଧି ଯେସନେ କଳେବରେ । ୧୩ ।

**ଏ**—ଏ ଘୋର ସଂସାର ସାଗର, ଏଥେ ହୋ ବିଶ୍ୱାସ ନ କର । ୧୪ ।
ଏ ପୁତ୍ର ଦାର ବନ୍ଧୁ ସଙ୍ଗ, ଯେସନେ ସମୁଦ୍ର ତରଙ୍ଗ । ୧୫ ।
ଏ ମନ ଭାଳୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା । ୧୬ ।
ଏ ଦେହ ଥିଲେ ସର୍ବ ପାଇ, ଜଳେ ଯେସନେ ଚନ୍ଦ୍ର ଛାଇ । ୧୭ ।

| | | |
|---|---|---|
| **କ**—କର୍ମ କଷଣ ଦେହ ସହେ, | ଅରଣ୍ୟେ ଅଜଗର ପ୍ରାୟେ | । ୧୮ । |
| କର୍ମ ଆଦରେ ସହେ ଦୁଃଖ, | କେବେହେଁ ନୋହିବ ବିମୁଖ | । ୧୯ । |
| କର୍ମ ସରିଲେ ଫଳ ଯେବେ, | ଲବଧ କ୍ଳେଶ ମାତ୍ର ରହେ | । ୨୦ । |
| କାଷ୍ଠ ପାଷାଣ ତରୁ ତୃଣ, | ସକଳ ଦେହେ ନାରାୟଣ | । ୨୧ । |
| କେବଳ ଯଜ୍ଞେ ପଶୁବଧ, | ଅନ୍ୟତ୍ର ବଧଟି ପ୍ରମାଦ | । ୨୨ । |
| କେଶ ବସନ ଅସମ୍ଭାଳ, | ନୟନୁଁ ବହେ ଅଶ୍ରୁଜଳ | । ୨୩ । |
| କର କରଉ ଥାଇ ମୁହିଁ, | ମୋ ଶତ୍ରୁଁ ଅନ୍ୟ ଗତ ନାହିଁ | । ୨୪ । |
| କୃପଣ ଯହୁଁ ଧନ ପାଇ, | ପ୍ରାଣୁ ଅଧିକ ସଞ୍ଚୁଥାଇ | । ୨୫ । |
| **ଗ**—ଗରଳେ କଲୁ ଅଧିକାରୀ, | ସ୍ୱଭାବ ଛାଡ଼ିବ କପର | । ୨୬ । |
| ଗଗନ ଯେହ୍ନେ ସର୍ବଶୂନ୍ୟ, | ତେସନ ହେବ ଉଦାସୀନ | । ୨୭ । |
| **ଜ**—ଜୀବର ଭଲ ମନ୍ଦ ବାଣୀ, | ମରଣ କାଳେ ତାହା ଜାଣି | । ୨୮ । |
| ଜୀବକୁ ପରତ୍ରାଣ ଦାନ, | ଗୋବନ୍ଦ ବିନୁଁ ନାହିଁ ଆନ | । ୨୯ । |
| ଜନ୍ତୁଙ୍କ ତୁଲେ ରିପୁ ଖିବ, | କେବେହେଁ ହୃଦେ ନ କରିବ | । ୩୦ । |
| ଜିହ୍ୱା ମଧୁର ରସ ପାଇ, | ଲାଳସେ ଛାଡ଼ି ନ ପାରଇ | । ୩୧ । |
| **ତ**—ତ୍ରିଗୁଣ ରଜ୍ଜୁ କରେ ଧରି, | ମୃଗୀ ନଚ୍ଛଏ ନରହରି | । ୩୨ । |
| ତାତ ଜନନୀ ଉପକାର, | ଶୁଝି ପାରିବ କେ କୁମର | । ୩୩ । |
| ତୁ ଆତ୍ମା ସର୍ବଭୂତେ ପୂରି, | ବସୁ ଗୁପତ ରୂପ ଧରି | । ୩୪ । |
| **ଦ**—ଦେଖ ହୋ ଯେତେ ନଦୀନଦୀ, | ପ୍ରବାହେ ମିଳନ୍ତି ଜଳଧି | । ୩୫ । |
| ଲବଣ ଜଳେ ସେ ମିଶନ୍ତି, | ସ୍ୱନାମ ରୂପ ପାସୋରନ୍ତି | । ୩୬ । |
| ଦଣ୍ଡିବା ଶକ୍ତି ଯାର ଥାଇ, | ସେ ପୁଣି କ୍ଷମା ଆଚରଇ | । ୩୭ । |
| ଦୁଃଖେ ଅର୍ଜିତ ଯେତେ ଧନ, | ସେ କିହେଁ ସୁଖେ ପ୍ରୟୋଜନ | । ୩୮ । |
| ଦୁଷ୍ଟ ନିବାର ସନ୍ଥ ପାଳୁ, | ତୁ ନାଥ ପରମ ଦୟାଳୁ | । ୩୯ । |
| ଦୁଃଖିକୁ ସୁଖ ପ୍ରାୟେ ମଣି, | ସାଧୁ ଚଳନ୍ତି ଏ ଧରଣୀ | । ୪୦ । |
| ଦୁର୍ଗମ ପଥ ଏ ଭଜନ, | ଭୟେ ଭଜନ୍ତି ଯୋଗୀଜନ | । ୪୧ । |
| ଦୁର୍ଜ୍ଜନ କୁବଚନ ବାଣ, | ମର୍ମ ବିଦାରେ ତତକ୍ଷଣ | । ୪୨ । |
| ଦେହ ବହିଲେ ନଚ୍ଛେ ମରି, | ମରଣ ଛାରେ କମ୍ପା ଡରି | । ୪୩ । |
| **ଧ**—ଧନ କାର୍ପଣ୍ୟ ସେବା ଫଳେ, | କିବା ଅସାଧ୍ୟ ମହୀତଳେ | । ୪୪ । |
| ଧନ ଅର୍ଜିଲେ ଧର୍ମ କରି, | ଧର୍ମେ ପ୍ରାପତ ନରହରି | । ୪୫ । |

ଧର୍ମ ଛାଡ଼ିଲା ପ୍ରାଣୀଙ୍କର, ନ ଥାଏ ନ୍ୟାୟ ସୁବିଚାର । ୪୬ ।

**ନ**—ନିଜ ରକ୍ଷଣେ ଅସମ୍ଭବ, ସେ କାହୁଁ ପରକୁ ରଖିବ । ୪୭ ।
ନିଜ ଅର୍ଜିଲା କର୍ମମାନ, ଆପେ ଭୁଞ୍ଜନ୍ତି ସାବଧାନ । ୪୮ ।
ନାନା ବୃକ୍ଷରୁ ମଧୁ ଆଣି ସଞ୍ଚଇ ନିଜ ଗୃହେ ପୁଣି । ୪୯ ।
ନ ଦେଇ ନ ଖାଇ ସଞ୍ଚଇ, ତାହାର ମୁଖେ ଅଗ୍ନି ଦେଇ । ୫୦ ।

**ପ**—ପାପଙ୍କ ମଧ୍ୟେ ପରମାଦ, ଗର୍ଭିଣୀ ସ୍ତ୍ରୀ ଶିଶୁ ବଧ । ୫୧ ।
ମୂର୍ଖ ନିବେଶି ପତ୍ନୀ ପାଶେ, ଅଥବା ଚଳିବ ସନ୍ନ୍ୟାସେ । ୫୨ ।

**ଫ**—ଫେର୍ଡ଼ ତ ନ କହେ ବ୍ରାହ୍ମଣ, ଅଳ୍ପକେ ଯାଉଛୁ ପରାଣ । ୫୩ ।

**ବ**—ବଳ ବୟସ ଅଉ କାହିଁ, ପାରିବ ପୁଣ ଉପୁଜାଇ । ୫୪ ।
ବହୁତ ଲୋକ ଯହିଁ ମିଳି, ଅବଶ୍ୟ ଉପୁଜଇ କଳି । ୫୫ ।
ବୁଦ୍ଧି ବିଗୁର କାର୍ଯ୍ୟ କଲେ, ପ୍ରମାଦ ନ ପଡ଼ଇ ଭଲେ । ୫୬ ।
ବୃକ୍ଷର ତଳେ ଯେହ୍ନେ ବସି, ପଥିକେ ବିଶ୍ରାମନ୍ତି ଆସି । ୫୭ ।
ଶ୍ରମ ସାରଣ ଯାନ୍ତି ଚଳି, ସେ ବୃକ୍ଷ ନୁହଇ କାହାରି । ୫୮ ।
ତେମନ୍ତ ମାୟା ଏ ସଂସାର, କେ ପିତା କେ କାହା କୁମର । ୫୯ ।

**ମ**—ମଞ୍ଚାରୁ ପଡ଼ି ମାମୁଁ ମଲା, ମୋତେ ହୋ ଦଇବ ରଖିଲା । ୬୦ ।
ମହତେ ଯାହା ଆଚରିବେ, ଇତରେ ତାହାହିଁ କରିବେ । ୬୧ ।
ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ । ୬୨ ।
ମଦ୍ୟପ ଯେହ୍ନେ ମଦ ଖାଇ, ସତ୍ୟ ଅସତ୍ୟ ନ ଜାଣଇ । ୬୩ ।
ମୂଳୁଁ ମାଇଲେ ଯାଉ ସର, ଦେବଙ୍କ ସଙ୍ଗେ କିମ୍ପା କଳି । ୬୪ ।
ମହତ ଜନ ହୋଇଥିଲେ, ଶରଣ ସମ୍ଭାଳଇ ଭଲେ । ୬୫ ।

**ଯ**—ଯାହାର ଯେମନ୍ତ ସ୍ୱଭାବ, ଗୁରୁ ବଚନେ କିସ ହେବ । ୬୬ ।
ଯାହାର ପୂର୍ବ ଭାଗ୍ୟ ଥିବ, ତା ପୁଅ ବୈରାଗୀ ହୋଇବ । ୬୭ ।
ଯୁଗକୁ ଯୁଗ ଏହି ମତେ, ପରମାନନ୍ଦ ଏ ଜଗତେ । ୬୮ ।
ଯେ ପକ୍ଷୀ ଉଡ଼େ ଯେତେ ଦୂର, ଜାଣଇ ସେ ତାର ବେଭାର । ୬୯ ।
ଯେ ଦ୍ରବ୍ୟ ପରେ ସମର୍ପିବ, ପୁଣି ଗ୍ରହଣ ନ କରିବ । ୭୦ ।
ଯେ ଗଲା ତାର ପଥ ବାହି, ଶୋକ ସନ୍ତାପ କିଛି ନାହିଁ । ୭୧ ।
ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ । ୭୨ ।

**ଲ**—ଲୋକେ ହୋଇବେ ଗଲବଲ, ନାଶିବେ ଭୁବନମଣ୍ଡଳ । ୭୩ ।
ତେଣୁ ହୋଇବେ ଅଳ୍ପାୟୁଷ, ପାପେ ସକଳେ ଯିବେ ନାଶ । ୭୪ ।

**ଶ**—ଶ୍ରୋତା ବକତା କେହି ନାହିଁ, ବେଦନ କରୁ କାହିଁ ପାଇଁ । ୭୫ ।

**ସ**—ସକଳ ଦେଖୁ ତୁ ନୟନେ, ତୋରେ ନ ଦେଖେ ସର୍ବଜନେ । ୭୬ ।
ସକଳ ଘଟେ ନାରାୟଣ, ବସନ୍ତ ଅନାଦ୍ୟ କାରଣ । ୭୭ ।
ସକଳ ତୀର୍ଥ ତୋ ଚରଣେ, ବନ୍ଦିକା ଯିବ କ୍ଷ କାରଣେ । ୭୮ ।
ସକଳେ ହୋଇ ଏକ ମୁଖ, ଡାକିଲେ ନାରାୟଣ ରଖ । ୭୯ ।
ସର୍ବେ ହୋଇବେ ଏକାକାର, ନ ଥିବ ବେଦର ବିଗ୍ଭର । ୮୦ ।
ସାକ୍ଷାତ ଗୁରୁ ଯେ ଈଶ୍ୱର, ଗୁରୁଙ୍କୁ ନ ମଣିବ ପର । ୮୧ ।
ସର୍ବେ ଚଳିବେ କାଳ ବଳେ, କଥା ରହିବ ମହୀ ତଳେ । ୮୨ ।



# କୃଷକ ବୋଲି

## ପ୍ରଥମ ଭାଗ

### ଗୃଷଗୀତ (୧)

୧— ଏ···ଏ···ଏ···

ରାଏ ତ ଅଧଠାରୁ ଯୁଚି ମୁଁ ଦେଲି ହଳ
ବିଲକୁ ଯାଉ ଯାଉ ପହଡ଼େ ହେଲା ବେଳ
ଲଙ୍ଗଳ ଫାନ୍ଦ ଦେଇ ରେ କଣ୍ଠିରେ ଦେଲି ହାତ
ପଛକୁ ଅନାଇଲି ଆସୁ ତ ଅଛି ଭାତ
ଭାତ ତ ଆସୁଅଛି ରେ······
ଢୋରାଣୀ କଛି ନାହିଁ
ହଡ଼ାକୁ ପେଲି ପେଲି ଦେହେ ମୋ ଜ୍ଞାନ ନାହିଁ, ହୋ—
ଭାତ ଧରି କମଳା ତ······
ହାଡ଼ମୁଣ୍ଡେ ଠିଆ
ଗୀତ ତ ଗୃର ପଦ ରେ ବୋଲିବୁ ହଳିଆ
ପାଠ ତ ପଢ଼ି ନାହିଁ ଲୋ ନାହାକ ଗୃହାଳୀରେ
ଗୀତ ମୁଁ ବୋଲି ନାହିଁ ଲୋ କମଳା
ପାଞ୍ଚ ହଳିଆ ରେ
ଗୀତ ତ ଗୀତ ଲୋ ଗମ୍ଭୀର ପହଲରେ
କି ଗୀତ ବୋଲିବ ଲୋ କମଳା ।
ଧରିଛି ହଡ଼ା ହଳେ ହୋ ।
ଅ···ହ···ହ ।

୨— ଏ···ଛକଡ଼ା ନକଡ଼ାକୁ କଣିଲି ହଡ଼ା ହଳ
ଗୋଟିଏ ମନେଇ ଯେ ଆରେକ ଠିଆଗର ହୋ ।

୩— ଏ···ସାନ ହଡ଼ା ବୋଲଇ ରେ ବଡ଼ ହଡ଼ା ଭାଇ
ସାଉକୁ କହ ତ ସେ ଲଙ୍ଗଳ ନେଉ ବହି
ଅମେ ଦୁଇ ଭାଇ ଚରିବା ଯେ ବନ୍ଧତଳେ ଯାଇ ହୋ ।
( କରଡ଼ା ଗାଡ଼ିଆ, ଅନୁଗୁଳ )

୪— ଏ···ହଡ଼ା ବଳଦକୁ ତ ହଳିଆ ମଙ୍ଗୁ ନାହିଁ
କାହୁଁ ଅଣିଦେବ ଗଜା ଯେ ଦାମୁଡ଼ି
ମଲକଡ଼ି ଦେଇ
ତୋହ କାନ ମଲକଡ଼ି ତୋହ କାନେ ଥାଉ
ଠେଙ୍ଗ ପେଲା କରି ଲୋ ମାରିବା ଯେ
ବରଷ ମୁଣ୍ଡ ପାଉ ହୋ ।

୫— ଏ ··ହଳ ତ ଧରି ଗଲି ଅଭମ୍ଭ ପଞ୍ଜରକୁ
ଅଖା ତ ଠେକ ଦେଲି ହର ଶବଦକୁ
ବହନ ବୁଣିଲି ନବରନ୍ ମଞ୍ଜି
ହେତୁ ପାଇ ବୃଚ୍ଛ ହୋ ଉଠିଲା
ଫଳିଲା ଲ୍ଲାନ ମଞ୍ଜି ହୋ ।

୬— ଏ···ନଈ ତ ନଈ ଲୋ ବାରି ବାଙ୍କ ନଈ
ଅଗ ବୁଲେ ନଙ୍ଗଳ ପଛେ ବୁଲେ ମଇ ହୋ,
ଶଶୁର ଅରଠକୁ ବୋହୁର କପାଶୀଇ
ନଣନ୍ଦ ବାଣ୍ଡିର ନାଠିକ ବଞ୍ଚଣା
ବୁଲଏ ସାଇଁ ସାଇଁ ହୋ ।
( ହରଦାସପୁର )

୭— ଏ···ଧାନ ତ ମହାପାଳ ଗୁଉଳ ମାଧୁଆ
କୋଉ ଝିଅ ପୁଅ ଲୋ ଉଚ୍ଛୁର ଗାଧୁଆ
ଉଚ୍ଛୁର ଗାଧୁଆ ଲୋ ନ ଶୁଖଇ ମଥା
କେବଣ ପ୍ରକାରେ ବୁଡ଼ ଯେ ପାରିଲୁ
ପଦ୍ମରେ ଅଲତା ଯେ—

ପଝୃରେ ଅଲତା ତ ଧୋଇ ଦେଲେ ଯିବ
ଆଖିର କଜଳ କାନ୍ଦଲେ ମଉଳିବ
ବଣିଆଁ ପୁଟୁଳିର ନାଲି ଯେ ସିନ୍ଦୁର
ମଥାରେ ବସ୍ତିକ ହୋ— ।
( ଖଲ୍‌କୋଠ )

୮— ଏ···ଅଖୁ ତ ଗଣ୍ଡିନ୍ତ ଦୁଇ ମୁଣ୍ଡ ତୁଲ
ଶାଶୁ ସଙ୍ଗେ ବୋହୂ ଯେ ବଉଳ
ନଣନ୍ଦ ଧାନ ଫୁଲ ଯେ ।

୯— ଏ···ଧାନ ଧାନ ଧାନ
ଧାନ ବୋଲି ଯାକୁ କହ୍
ଧାନ ତ ନାହିଁ ଯେ ନବଖଣ୍ଡ ମଧ୍ୟ
ଥୋକେ ଦେବତା ସେ ପ୍ରଶଂସା ଭଣନ୍ତି
ଅମୃତ ବୀଜ ମଝେ ଅସିଚ୍ଛ ଦେହ ବୋହ୍ମ ହୋ ।
( ବାଙ୍କି )

୧୦— ଏ···ଗନ୍ଧ୍ରବ ବଳରେ କାବତା ହଳ ହଳ
ସୁବର୍ଣ୍ଣ ଲଙ୍ଗଳକୁ ରୁପାର ଜୁଆଳ
ବଳଦ ହଳ ମନ ଯେ ପବନ
ହଳିଆ ବନମାଳୀ ଯେ ।

୧୧— ଏ···ଖଇର ଖୁଣ୍ଟିଆ ମୋ ବାନ୍ଧଣର ଈଶ
ବାଘ ପାଣିଖାଏ ଠେକ ଦେଇ ନାଶ
ଘୋଡ଼ା ପାଣି ଖାଏ ଲେ···
ବାଖର ବୁଡ଼ାଇ
ହାତୀ ପାଣି ଖାଏ ତ···ହିମାଳି ହିମାଳି ହୋ ।

୧୨— ଏ···ରାମ ନେଲେ ହଳ ତ ଲକ୍ଷ୍ମଣ ମଇ
କୋଡ଼ ଦଗେ ମେଘ ରେ ବରଷା
ତନ୍ତଲେ ବେନା ଭାଇ ହୋ ।
(ଠାଙ୍ଗିଆପଡ଼ା, ଖୁରୁଧା)

୧୩— ଏ···ହଡ଼ା ବଳଦକୁ ଯେ ଯୁଆଳିଆ ଘାସ
ଗୋଡ଼ କ ନ ଖାଡ଼ ରେ ମେଲ୍‌ଦେଇ ଅସ ଯେ··· ।

୧୪— ଏ···ଏ କାଆର ପାଣି ତ ସେ କଅଣ୍ଟ ପଣେ
କଖାରୁଆ କରଣ୍ଡି ଯେ କର ଭାଙ୍ଗି ଅଛେ ।
ଗୋଟି ତ କରଥିଲା ସବୁ ଚକୁଳି ଲୋ
ଝଲମଲ୍ ଦଣେ ହୋ··· ।
(ହୁଡ଼ଦୋଳ)

୧୫— ଏ···କାଠ କୁଡ଼ୁଣୀରେ ତ କୁଟିଲ୍ ଧନାଁ
କପାଳବନ୍ଧାରେ ଟିଆ ଲୋ ପଡ଼ିଲ୍
ମାଳ ତ ଚନ୍ଦନାଁ ହୋ ।
ମାଳ ତ ଚନ୍ଦନାଁକୁ ନ ରୁଚଇ ଭାତ
ଅଳପ କର ରାନ୍ଧ ଗୋ ରାନ୍ଧୁଣୀ
ଗୃଡ଼ଳ ମାଣ ସାତ ଯେ ।
ଗୃଡ଼ଳ ମାଣ ସାତ ଅଡ଼ାଇଗୁଣ୍ଡା ଭାତ
ଆକାଶ କଇଁଆକୁ ଯେ
ଚଳ୍‌କା ରୋହୁ ମାଛ ଯେ ।

୧୬— ଏ···କ ମାଛ ମାଇଲ୍ ତ ଠୋକା ବଡ଼ଛୁଆ
ବଡ଼ଛୁ ପକାଇ ତୁ ମୁଖରେ ହେଲ୍ ଠିଆ
କଅଣ ବୋଇଲ୍ ତ ପଧାନ ସାନବୋହୁ
ମାରଦେବ ମାଛ ଯେ ପାଠଲଞ୍ଜା କଡ଼
ପାଠଲଞ୍ଜା କଡ଼ଂ ତ ବାସିକ ଗନ୍ଧଅ
ମାରଦେବ ଗୋଡ଼ା ଲୋ ଠଙ୍ଗୁଡ଼
ବୋହୂ କରବୁ ଆମ୍ଭେଳା ଯେ— ।

୧୭— ଏ···ମାଛ ମାରଗଲ୍ ତଂ କେରାଣ୍ଡି କଣ୍ଟିଆ
ନାନୀ ଅପା ଡାକ ଯେ ଦେଉଛୁ
ଠଗୋଡ଼ର ଝୁଣ୍ଟିଆ ଯେ ।

୧୮— ଏ···ଠେକ ଠେକ ପାଣି ତ କାଢ଼ଇ କୁଅଁରୁ
ଝୋପି ଝୋପି ଝାଳ ହୋ ବୁହଇ
ବସନ୍ତ ମୁହଁରୁ
ପାଣିକ ନ'ଯା ବୋହୂ ବାଲ୍‌ବନ୍ଧ ଚୁଆ
ବାଲ୍ ଲଗେ କାଚ ହୋ ଉଜଳ
ଧନକୁ ଧନ ନୂଆ ହୋ ।

୧୯— ଏ···ବାଲ୍‌ବନ୍ଧେ ଗୋଷ୍ଠି ନ କର ଗରବ
ମାରବ ନହଡ଼ା ଅଡଡ଼ା ଛଡ଼ିବ
ଛଅଁଣିଅ ନଦୀ ଗଙ୍ଗା ଯେ ଯମୁନା
ଲେଭେଇ ଦେଇ ଯିବ ହୋ ।

୨୦— ଏ···ପାଣିକ ନ'ଯା ବୋହୂ ସୋଲ୍‌ହର ଗାଡ଼ୁଆ
ମୋଲ ଗହଳରେ ଯେ ନ ବୁଡ଼େ ମାଠିଆ
ସୋଲ କାଟିଦେବ ସାନ ଯେ ଦିଅର
ବୋହୂକୁ କୁମ୍ଭ ଯୋଡ଼ା ହୋ··· ·· ।

( ନରସିଂହପୁର )

୨୧— ଏ···କାନ୍ଧ କାନ୍ଧ ଗୋଷ୍ଠି ଲୋ ସତ୍ୟ କରିଇଲୁ
ଏକା ଘରେ ଦୁଇ ଲୋ ଦୁଆର
ଗୋଷ୍ଠି ତୁ ଭେନେ କରିଇଲୁ ହୋ ।

୨୨— ଏ···ବଉଲା ବଳଦର ତ ପାଣିକ ଧାଉଣି
ପାଣି ନ ଖାଉଣୁ ଯେ ମାଡ଼ଇ ଚଉଣି ।
ଖାଅ ଖାଅ ବଉଲା ପାଣିରେ ଦୋଷ ନାହିଁ
ଯୋଉ ସାଧବର ତୁ ରେ ବଳଦ
ତା ଘରର ଭୁଆସୁଣି ହୋ— ।

୨୩— ଏ···ଅଦନ କୁହୁଡ଼ ତ ମାଡ଼ଇ ଲଠିବୁଦା
ବାର ହାତ ଲମ୍ବ ହୋ ଚଉଁରି
କାକର ଲଗି ଓଦା ଯେ··· ।

୨୪— ଏ...ଗାଈ ତ ଗୁହାଳକୁ ପେଲ୍ ପଶେ ଧଣ୍ଡ
ବୁଡ଼ୀ ଗଉଡ଼ୁଣୀ ଯେ ହରୁଅ
ଦାମ୍ଭୋଡ଼ିଅ ଷଣ୍ଢ ଯେ... ।

୨୫— ଏ...କାଳୀ କେଉଟୁଣୀ ଲୋ ତା ନାମ କଇନ୍ତା
ଶିବ ଦେଉଳରେ ଲୋ ନିଅମ
ତୋର ଭଣୋଇ ଘଇତା ହୋ... ।

୨୬— ଏ...ଆଗରେ ହଳ ଦେଇ ଭାଇ ଦାହ କଲୁ ଝିନ
ପଛ ହଳଆର ଯେ ସରୁନାହିଁ ଦନ
ଦେଇଥିଲେ ଥର ଯେ ତୋରାଣୀ ସାହୁଘର
ତାଟିଆ ମଙ୍ଗେ ଲୁଣ ହୋ...... ।

୨୭— ଏ..ତେଲ କିଣିଥିଲ୍ ଝୁଣ୍ଟି ଦେଲ୍ ଗଲା
ଘିଅ କିଣିଥିଲ୍ ବହାଡ଼ ଖାଇଲା
ବଳାଇ ଥିଲ୍ ସରୁ ଯେ ଚଉଁରା ପାନିଆଁ
ମୂଷା ଘେନିଗଲା ହୋ...... ।
( ତାଳଚେର )

## ଗୃହଗୀତ (୨)

୧— ଏ...ଅଇଲାଣି କଳାମେଘ ବରଷିବ ମହୁ
ଖରଡ଼ ଗଜା ଚେଡବ ପହୁଣ୍ଡ ମଣୋଉଁ
ଦ, ଦ ପତର ଧାନ ମୋ ମିସିମିସି କଳା
ଦେବତା ଏ ପ୍ରଶଂସନ୍ତି ନବଖଣ୍ଡ ଭେଳା
ଜୀବକୁ କାରେଣି ଧାନ ସାହୁକାର ସାହୁ
ଏ ଗୀତକୁ ଭଣିଛନ୍ତି ଯେ ରଜାଘର ବୋହୂ ହୋ... ।

୨— ଏ...ଅଇଲା ଖରାକାଳ ଛତା ତଳେ ଘାଇ
ଚଇତ ମାସେ ନିମ୍ବ ହୋ ବଉଳ
ଗୋସ୍ୱା ତ କାମେ ବାଇ ହୋ... ।

୩— ଏ…ଅଳକା ସୁନ୍ଦରୀ ତେଲଘର ଝିଅ
ତେଲ ହଳଦୀରେ ଯେ ପଗୁଛ ଅଛୁ ଦାହ
କଳୁରି ପଟାରେ ପହାରନ୍ତ ହୋ
ମାଗି ଦେଲେ ଦାହ ହୋ… ।

୪— ଏ…ଆମ୍ବ ବଉଳଇ ତ ଡାହୁ କ ଡାହୁ ଲାଗି
ତୁମେ ବଉଳାବ ଟୋ ନଣନ୍ଦେ
ପୁରୁଷ ଅଙ୍ଗ ଲାଗି ହୋ… ।

୫— ଏ…କଣାରୁ ପଡର ତ ମାରଦେଲି ଅଂଶୁ
କଳା ଭ୍ରମରକୁ ଯେ କହିବ
ଗୁକେର ଛାଡ଼ି ଅସୁ ଯେ… ।
ଛାଡ଼ି ମୁଁ ନ ପାରଇ ରଜାଘର ସେବା
ତନୁ ପାଡେଲାକୁ କହିବ
ଆନ ବରେ ଯାଅ ଯା ଯେ… ।
ଆନବର, ସ୍ୱାମୀରେ ମୋହର କାର୍ଯ୍ୟ ନାହିଁ
ବରଷକେ ଥରେ ହୋ ନଇଲେ
ମରିବି ବିଷ ଖାଇ ହୋ… ।
( ବୌଦ୍ଧ )

୬— ଏ…କଳା କୁମ୍ଭାଟୁଆ ତ ହରଣର ବୁକୁ
ନାଗ ବିଷ ଦେଇ ହୋ ମାଇଲା
ପୁରୁଷ ଭ୍ରମରକୁ ହୋ… ।
( ବଡ଼ାମ୍ବା )

୭— ଏ…କାଳିଆ ବଳଦର ପିଟିରେ ପଲଣ
ବ୍ୟାହ ମାଇପକୁ ତେଲ ଯେ ହଳଦୀ ଅକାରଣ
କନିଅାଁ ମାଇପ ମୋ ନଅ ତୁଣ୍ଡୀ ଶାଳୀ
ବେଳ ଜାଣି ସେବା ଯେ
ନ ହେଲେ ମାଡ଼ ଗାଳି ହୋ… ।
( ପଟାମୁଣ୍ଡେଇ )

୮— ଏ...କାଠ ଗଦା ତଳେ ତ ଚମ୍ପେଇନୋଳି ମଲ
ଚମ୍ପାଗଦା ପ୍ରାୟେ ହୋ ବଇଷ
ଦାରୁଣ ଦୁଃଖ ଦେଲ ହୋ... ।
( କେନ୍ଦ୍ରାପଡ଼ା )

୯— ଏ...କି ଖୋଷା ଖୋସିଲୁ ବୋହୂ ଘରକୁ ଅନାଇଁ
ଖୋଷା ହେଲା ନାଗ ଲେ ଫେଣିଅଁ
ଭଲ ତ ଦଶୁନାହିଁ ହୋ .. ।
( ଜଗତସିଂହପୁର )

୧୦— ଏ...ଖରବେଳେ ଗୋରୀ ନ ଯିବୁ ପାଣିକି
ମଉଳି ଯିବ ମୁଖ ଦହ ତ ଯିବ ଶୁଖି
ଆଜ ସତେ ମୁଁ ଏପରି ବୋହୂ ପାଇବି
ଶରଦ ରାଧି ଚନ୍ଦ୍ରମାମୁଖୀ ହୋ... ।

୧୧— ଏ...ଗମ୍ଭୀର ଗମ୍ଭୀର ତ ଗୁଆଗଛ ଚେର
କାଦ ପଣି ଦେହ ଯେ ଘାରଇ
ଯୁବା ସ୍ତ୍ରିରୀଙ୍କର,
ଯୁବା ସ୍ତ୍ରିରୀଙ୍କର ତ ମଇଁଷୀ ଗୋଠ ଖିରୀ
ସେ ଖିରୀ ଖାଇଲେ ଯେବେ ରେ ଭେଣ୍ଡିଏ
ମରିବ ଝୁରି ଝୁରି ହୋ... ।

୧୨— ଏ...ଗାଅଁକୁ ଅଇଲେ ତ ମଙ୍ଗଳଚଣ୍ଡିଆ
ଦୁବଧର ଶୁଭ ହୋ ମନାସ କହୁଲି ଭେଣ୍ଡିଆ
କହୁଲି ଭେଣ୍ଡିଆ ମନ ତ ରାଧିକାରାଣୀ ଠାରେ ।
କନକ ପଦ୍ମ ଫୁଟିଛୁ ହୋ କାଳିନ୍ଦ ହ୍ରଦରେ
ପଦ୍ମତୋଳା ଫୁଙ୍କିବ ଯେବେ ରେ ଭେଣ୍ଡିଏ
ଗଳିଲ ପାତାଳରେ ହୋ ।
( ଅଠମଲ୍ଲିକ )

୧୩— ଘୁମାଇଁ ଘୁମାଇଁ ତ କେତେ ଯାଉ କାଦ
ଶୋଇଲି ଶେଜରେ ତ ହଜିଲି ବାହାବଦ

ମୋର ବାହାବଦ ଛ ପାଇଥିଲେ ଦେବ
ଯେଉଁଥି ପାଇଁ ଅଳ ହେ କରୁଚ
ତହିଁରେ ଜଉମୁଦ ହୋ··· ।
ଜଉମୁଦ ସୂଖେ ତ ଜଉମୁଦ ଥିବ
ଖୋସା କଣା କର୍ ହୋ ଭ୍ରମର
ବାସନା ହର୍‌ନେବ ହୋ··· ।
(ସୋନପୁର)

୧୪— ଏ···ଚିପି ଚିପି ଚଢେ଼ଇ ଯୋଡଷ ଫୁଲେ ବାଇ
ଗୋଷ୍ଠି ଦେଲ୍ ଗୁଡ଼ ହୋ ଗଞ୍ଜାଇ
ଭାବ ତ ବେଳେ ନେଇ ହୋ··· ।
(ଦେବଭୂମି, ନରସିଂହପୁର)

୧୫— ଏ···ଧଅର ଭାଉଜ ରହିଲେ ପ୍ରବାସରେ
ଧନ କଣ୍ଠ କଲେ ତାଲ ପତରରେ
ତାଲ ତ ପତ୍ର ଉର୍ ଲାଗିଗଲେ ଯିବ
ଅଙ୍ଗୁଳି ରେଖା ମୋ କଣ୍ଠ କର ହୋ ଧଅର
ସବୁଦନେ ଥିବ ହୋ ।
(ଗଣ୍ଡପଡ଼ା)

୧୬— ଏ···ନଈ ସେପାର୍ ତ ଧଅରଙ୍କ ଗୃଷ
ଡଙ୍ଗା ଚଢ଼ି ଭାତ ହୋ ବୋହିବ ବରଷା ଗୃରମାସ
ବରଷା ଗୃରମାସ ଧଅରଙ୍କୁ ଅଣ
ଘର ଖାଉନ୍ଦକୁ ଲୋ ଝଂଜକା
ପଡ଼ଆ ଭଙ୍ଗା ଗୃଷ ଯେ··· ।
ପଡ଼ଆ ଭଙ୍ଗା ଛାଡ଼ କପାତାସ କର
ବାଡ଼ୁଅ ରହିଲେ ସାନ ଯେ ଧଅର
ବୁଡେ଼ଇ ଦେବେ ଘର ହୋ··· ।

୧୭— ଏ···ନଣନ୍ଦ ଭାଉଜ ଗାଧୋଇ ଗଲେ ନଈ
ନଣନ୍ଦ ପଗୃରଇ କ କରୁଥିଲେ ଭାଇ

ଅଲକ୍ଷୁକ ନଣନ୍ଦ ଲାଜ ନାହିଁ ତୋତେ
ଭାଇର କଥାଯାକ ପଗ୍ଭରୁଛୁ ମୋତେ
ମୁହିଁ ନହାରୁଣ୍ଡୁ ତୋ ଭାଇ ହାରିଲା
ଗ୍ରହ ଅଧଠାରି ତ ତୋରାଣୀ ମାଗିଲା ।
ମୁହିଁ ଅଲକ୍ଷଣୀ ତ ନ ଦେଲି ତୋରାଣୀ
ମାଠିଆ ଅଜାଡ଼ ପିଉଥିଲେ ପାଣି,
ଜର କଲା ବୋଲି ହୋ ଶୋଇଲେ
ଭେଣ୍ଡିଆ ଗୁଣମଣି ହୋ··· ।

୧୮— ଏ···ପଧାନ ଘରର ତ କରତ ପଟା ଭାଡ଼ି
କେଡ଼େ କଚଡ଼ାଏ ଝିଅ ଲେ ପଡ଼ିଲୁ
ଡାହାଣ ପଟେ ମାଡ଼ି ହୋ···
ଡାହାଣ ପଟେ କାହାଣେ ସୁବର୍ଣ୍ଣ ମୋହର
ହେଲେ କି ହେଲା ଯେ
ବର ମୁହିଁଟି ବାନ୍ଦର ହୋ··· ।

୧୯— ଏ···ପଧାନ ବାଡ଼ିପଟେ ଅନ୍ଧାରୁଆ କୂଅ
ପାଣି କାଢୁଥିଲା ରଇତ ଘର ଝିଅ
କାନ ମଲକଡ଼ି ହୋ ଯାଚଇ
ପଧାନ ସାନପୁଅ ହୋ···
ତୋହ କାନ ମଲକଡ଼ି ତ ତୋହ ପାଖେ ଥାଉ
ଯେଉଁଥି ପାଇଁ ଅଳି ହେ କରୁଚ
ମୋ ସ୍ୱାମୀ ନିନ୍ଦା ଯାଉ ।
ତୋ ସ୍ୱାମୀ ନିନ୍ଦା ଗଲେ ମୁଁ ଜାଣିବ କେମନ୍ତେ
ହଳଇ ଦେବ ରେ ଗୋଡ଼ୁ ବାହୁକ
କାଳିଆ ତୋହର ନିମନ୍ତେ ହୋ··· ।

୨୦— ଏ·· ବାଆକୁ ଥରହର ଓଶସ୍ତ ପତର
ତା ସଙ୍ଗେ ମଇତର କଦଳୀ ପତର
ଶାଶୁ ସଙ୍ଗେ ବୋହୂ ଯେ ମକର
ନଣନ୍ଦ ଧାନ ଫୁଲ ହୋ··· ।

୨୧— ଏ···ବାଡ଼ ବାଇଗଣ ତୋଳୁଥିଲି ନଇଁ
କାଲିଅଙ୍କୁ ଡର ମାଡୁଛୁ ଯେ ପଶିବ ବାଡ଼ ଡେଇଁ ହୋ···
ଚନ୍ଦେଇ ଭାଙ୍ଗିବ ମୋ
କୋଳକୁ ଅଉଜାଇ ହୋ··· ।
( ଉତ୍ତରଖଣ୍ଡ-ନରସିଂହପୁର )

୨୨— ଏ···ବାପଘର ଗାଁ ଲୋକ ନ ଜାଣନ୍ତି ପର
ଉଇ ପିଣ୍ଡା ଦେଖି କହନ୍ତି କଦଳୀ ବାର ଘର
କଦଳୀ ବାର ଘର ବଉଳ ଚଛ ଛାଇ
କହୁ କହୁ କହିଦେଲି ଯେ···
ଦାଅରକୁ ଭାଇ ହୋ··· ।
( ନୟାଗଡ଼ )

୨୩— ଏ···ବାପଘର ଯିବ ବୋଲି ବୋହୂ ବାନ୍ଧେ ପେଡ଼ି
ଦାଅର କାନ୍ଦଇ ଯେ ଗୁଳବାଡ଼ ଧରି
ନ କାନ୍ଦ ନ କାନ୍ଦ ଦାଅର ହୋ
ପଣତେ ପୋଛ ଲୁହ
ଆଗତ ଏଇ ଦିନେ ଆସିବ ହୋ···
କାଖରେ ଧରି ପୁଅ ।
କାଖରେ ଥିବ ପୁଅ
ଆଗରେ ଚାଲୁଥିବ ଝିଅ
ଲୋକ ପଚାରିଲେ ବଖାଇ ହୋ କହିବ
ଦାଅର ଆଡ଼ ପୁଅ ହୋ ।
ଦାଅର ଆଡ଼ ପୁଅ ତ ଖୋଲାଇବ କୂଅ
ବାଟେ ଦେବ ପଣା ଯେ ଛତର
ବଉଦ ରଜା ଝିଅ ହୋ··· ।
( ଦାଶପଲ୍ଲା )

୨୪— ଏ···ମାଟିର ମାଠିଆ କାଖକୁ ହେଉ ଲଗା
ମୁଣ୍ଡର ମାଟିଆ ଯେ ହୋଇ ଯାଉଛୁ ଅଲଗା ହୋ··· ।

୨୫— ଏ...ମୁରୁଲା ଫାଟି ଫୁଲା ଗଗନେ ଗଲା ଉଡ଼ି
ସେହିମତ ପର ହୋ ପୁରୁଷ
ବଚନ ଯାଏ ବୁଡ଼ି ହୋ... ।
(ବୌଦ୍ଧ)

୨୬— ଏ...ଯେଉଁ ଧନ ନାମ ପୁଅଣି ହୋଇଗଲା
ପୋଡ଼ଫାଡ଼ ମେଘ ତ ଖଣ୍ଡିଏ ଧଇଲା
ପୋଡ଼ଯାଉ ନାମ ହୋ ବାଟରୁ ବାହୁଡ଼ିଲା ହୋ... ।
(ଢଗିରଆ)

୨୭— ଏ...ଲମ୍ବ ଲମ୍ବ ନଡ଼ିଆ ପାଚଲ ଷଢ଼େଇ
ମଞ୍ଜପୁରେ ରବ ଦେଉଛୁ ବସନ୍ତ ଚଢ଼େଇ
ବସନ୍ତ ଚଢ଼େଇର ପକ୍ଷୀ ହଳଦିଆ ।
କାହିଁନେଇ ଚଉ ମୋ ମାଇଲା
ବାଟ ତ ବଳଦିଆ ହୋ... ।
(ସତ୍ୟବାଦୀ)

୨୮ — ଏ...ଲେଉଟିଆ ଶାଗ ତ କଅଁସ କଅଁସ
ପାଣି ବୋହୁଥିଲେ ମାଉସୀ ଝିଅସ
ଶାଗ କାଟିବାକୁ ଦାଢ଼ ହୋ ସାବେଳା
ବେଳା ହସ୍ତେ ଧର ହୋ... ।
(ନରସିଂହପୁର)

୨୯— ଏ...ଶଗଡ଼ ଗୁଳାକୁ ଫିଙ୍ଗିଲ ପାଞ୍ଚଣ
କରଚ କାଟିଲ ପ୍ରାଯ୍ୟେ ତ କାଟୁଛୁ
ବୁଟି ମୋ ବାଙ୍ଗେର ବଚନ ହୋ... ।

୩୦— ଏ...ଶଶୁର ବୋଲଇ ମୋ ବଡ଼ବୋହୂ ଭେଲା
ଖୁଆ ଦମକାଇ ମାଠିଆ ଭାଙ୍ଗିଲା,
ଶଶୁରେ ଶଶୁରେ ମୋର ଠୁଲେ ଦୋଷ ନାହିଁ
ଘେଟ ଭୂଅ ଲମ୍ବ ଦଉଡ଼ା ହାରୁସି ଗଲା ତହିଁ ହୋ... ।

୩୧— ଏ...ମଇଁଷି କଟାଳିଆ ଶିଙ୍ଗରେ ହାଣେ ଦଳ
ହେଲାବେଳେ ବୋହୂ ମେଲଣି ଯେ
ମେଘରେ ନାହିଁ ବେଳ ହୋ... ।

୩୨— ଏ···ହାଟ ତ କରିଗଲ ହଟିଆ ସଙ୍ଗରେ
ନାନା ହାଟ କଲା ଯେ ହଟିଆ
ତେଲଙ୍ଗି ବାଇଦଟେ ହୋ··· ।
(ହୁଡୋଲ)

## କୃଷିଗୀତ (୩)

୧— ଏ···ଏହୁ ପରବତେ ତ କେଉଁ ଦାଉଁ ଅଛୁ
ଦାଉଁ ପୂଜିବାକୁ ତ ଦେହୁରି ଆସୁଛୁ
ଲକ୍ଷେ ବେଲପତ୍ରି ଧରି ହୋ ଦେହୁରି
ତା ଦୁଃଖ ଜଣାଉଛୁ ଯେ··· ।

୨— ଏ•••କାଳିଆ ଘୋଡ଼ାକୁ ତ ବାଖର ଶହେ ଠଙ୍କା
ଛାଡ଼ଦେଲେ ମାଡ଼ ଯେ ବସିବ ଅଜାଯୁ ଗଡ଼ ଲଙ୍କା
ଅଜାଯୁ ଗଡ଼ ଲଙ୍କାରେ ଦଲେଇ ପାଞ୍ଚ ଜଣ
ପଚାଶି ପାଏକରେ ସେ ଗଡ଼ ନିରମାଣ
ହାତୀ ଛତ ଧରି ତ ନପାରନ୍ତି ଭେଦ
ଗଡ଼ କାନ୍ଥି ତଳୁ ଝରି ହୋ ବହୁଛୁ
ଯମୁନା ନାମେ ନଦୀ ହୋ··· ।

୩— ଏ···ଜବ ଜବ ଡମ୍ବରୁ କଇଲାସ ପୁରୀ
ଉଙ୍କଧର ନାଥ ନେ ସେ ସ୍ଥାନେ ବିଜେକରି
ଉଙ୍କୁ ବାରେଣି ମହାମନ୍ତ ସାର
ଉହ ତ ଉହ ବିଷ ହେ ଈଶ୍ୱର
କି ଗାଇ କଲ ପାର ହୋ••• ।

୪— ଏ···ଜବ ଜବ ଡମ୍ବରୁ ବଜାନ୍ତି ଅନନ୍ତ
ନାଭି କମଳୁ ବ୍ରହ୍ମାଙ୍କୁ କଲେ ଜାତ,
ଆଉ କଥା ମାନ ତାଙ୍କୁ ତ କହିତ
ପାଦରୁ ଗଙ୍ଗାକୁ କଲେ ସେହୁ ଜାତ

କନ୍ଦେଇ ଅଁ କର ଦେଖେଇଦେଲେ ତୁଣ୍ଡ
ନାଭି ତ···କମଳରେ ପୁରିଛୁ ଯେ
ଅଶେଷ ବ୍ରହ୍ମାଣ୍ଡ ହୋ··· ।

୫— ଏ···ମୋ ମନ ତ ବାଇଆ ପବନ ଥୟ ନାହିଁ
ଯେଉଁଠି ମନ ଯେ ରହିବୁ
ସେ ଥାନ ଖୋଜ ଯାଇ ହୋ··· ।
( ବାଣପୁର )

୬— ଏ···ସବୁ ତ ମନ ବୋଲୁରେ ମୋହର ମୋହର
ପିନ୍ଧିଲା ବସ୍ତ୍ର ଖଣ୍ଡି ରେ ନୁହଇ କାହାର
ଦଢ଼ ଖଣ୍ଡି ନେଇ ଛୁଡ଼ା ଖଣ୍ଡି ଦେବେ
ମଶାଣି ଭୂଇଁରେ ଧନ ରେ ପକାଇ
ତୋ ମୁଖେ ଅଗ୍ନି ଦେବେ ହୋ··· ।
ତୋ ମୁଖେ ଅଗ୍ନି ଦେଇ ଯିବେଟି ଯେଝାଘର
ଗାଆଁର ଶେଷ ମୁଣ୍ଡରେ କାଟିବେ ତନ୍ନାଗାର
ଯୁଗକୁ ଯୁଗ କାନ୍ଦବ ମାଆ ଥିଲେ ତୋର
ଭଉଣୀ କାନ୍ଦବ ରେ ଛ ମାସ ଅନ୍ତର ।
ଯାହାକୁ କରିଚୁ ଘରର ଘରଣୀ
ସେ ଖୋଜେ ଅନ୍ୟ ବର ହୋ··· ।
( ଢେଙ୍କାନାଳ )

୭— ଏ···ହରଡ଼ା ଗଛ ମୂଳରେ କିଏସେ ତନ୍ନି ଜଣ
ମଧେ ତ ବଜପେ୍ ମୋ ନିରଗୁଣ ବ୍ରହ୍ମ
ଭୁଜକେ ଲଙ୍ଗଳ ତ ଭୁଜକେ ଧାନକେଣ୍ଡା
ପଛେ ମୋ ଧନୁ ଧର ନହୁଲିଆ ଭେଣ୍ଡା
ଅଗେ ତ ପୁଷ୍ପଗଦା ପ୍ରାତ୍ୟେକ ତନୁ ଶୋଭା
ମନୁଁ ତ ପାସୋର ନ ଯାଏ ରେ
ଶିରଷ ଫୁଲ ଗୋଭା ହୋ··· ।

ଶିରଷ ଫୁଲ ପୋଭ୍ ତ ଭିତରେ ପାଷାଣ
ପାଷାଣ ମଧ୍ୟେ ଅଗ୍ନି ଜଳୁଚ୍ଛ ନିଶିଦିନ
ଗୃହିଁଦେବ ଶକତ କାହାର ଯେ...
ଯାଦେ ତ ସର୍ବେ ଲୀନ ହୋ... ।
( ଶୁଣ୍ଟିଡା, ଅନୁଗୁଳ )

## ଗୃଷ ଗୀତ ( ୪ )

—ରାମାୟଣ—

ଏ...ରାମ ତ ରାମ ପଦରେ ସ୍ୱର୍ଗକୁ ନାଗ୍ରଣି
ପୂର୍ବ ତ ପାଣି ନେଇ ପଶ୍ଚିମେ ଉଜାଣି
ଏହା ତ ପାଣି ଭାଇରେ ବଡେଇ ନେଇ ପାରୁ
ଧୋଇ ମରୁଡ଼ିକ କପାଳେ ଭସ୍ମ କରୁ
ସାତକୁ ଗୁଣ୍ଡିବ୍ରରେ ରଜାକୁ ଦେବୁ କର
ତୋହ ଦୁଆରକୁ କେହ୍ ଯେ ନ ଯିବେ
ନ ଦେବୁ ଭଣ୍ଡକର ଯେ... । ୧ ।
( ଆଠଗଡ଼ )

ଏ...ରାମ ନାମ ପଦ ଗୃରଯୁଗେ ସତ
ଦଶଆ ଭିତରେ ବାନ୍ଧି ନେବେ ରଥ
ନଦୀ କ ପୋଖରୀ ରାମ ଶୂନ୍ୟରେ ନେଲେ ବାନ୍ଧ
ଭୋକ୍ ବେଳେ ଦଧି ମୋ ଖାଇଲେ
ବନ୍ଧ ତ ମୁଦା ଦେଇ ଯେ... । ୨ ।

ଏ...ରାମ ତ ମୋହର ବାର ବରଷର
ଲକ୍ଷ ବନ୍ଧବାକୁ ନାହାଲ ବେଳ ଶର
ଲକ୍ଷ ବନ୍ଧ କନ୍ୟା ହୋ ଆଣିଲେ
ମିଥିଲ ରାଇଜର ଯେ...

ଏ...କିଏ ଦେବେ ବୋଲ୍ ତ ବୋଇଲେ ଜନକ
ଦଶରଥ ରାମୁଙ୍କୁ ଚଲାଉ ପତ୍ର ଲେଖ
ଏହା ଲେଖା ଘେନି ତ ସତାନନ୍ଦ ଯାଉ
ଧାଇ ମୃଦୁସୁଲ୍ ତ ରାମୁରେ ଜଣାଉଁ

ପାଠ ଶାସ୍ତ୍ର କଲେ ଅଯୋଧ୍ୟା ଦଣ୍ଡଧାରୀ
ବଭା ଲଗ୍ନ ଯୋଗ ହୋ···ଶୁଝିଲ
ରାମଙ୍କୁ ନେଲେ ବର ହୋ··· । ୩ ।

ଏ··· ରାମଙ୍କୁ ବର ନେଇ ତ କଲେକ ବରବେଶ
ଶ୍ରୀରାମ ଲଲାଟରେ ଖଞ୍ଜିଲେ ମୁକୁଟ
ହସ୍ତରେ ବାନ୍ଧଲେ ଅଷାଢୁଆ ସୂତା
କନ୍ଧରେ ଲମ୍ବାଇଲେ କନକ ପଇତା
ବେଦ ଉଚ୍ଚାରିଲେ ସୁବେଦୀ ବ୍ରାହ୍ମଣ
ଝିଅ ବଭା କଲୁ ରଜା ଦେବୁ କ କ ଦାନ
ରାଇଜ ସହିତେ ମୁଁ ଦେଲି ବଡ଼ପଣ
ଚନ୍ଦାଇଲି କୋଠ ହେ ଭଣ୍ଡାର
ଅମୂଲ୍ୟ ରତନ ଯେ··· । ୪ ।

( ଗଞ୍ଜାମ )

ଏ··· ରାମ ବଭାଘରେ ହୋ ଲକ୍ଷ୍ମଣ ବରଜାତ
କନକ ବେଦୀ ତଳେ ମୋ କଳା ଧଳା ଛତ
କଳା ଧଳା ଛତ ତ ସୁବର୍ଣ୍ଣ ଝାଏଣି
ମୁକୁତା ପେନ୍ଥି ପେନ୍ଥି ଯେ ହୀରା ତ ଖୋସଣି
ବଭା ସମ୍ଭରବେ ତ ହିଶାଖା ମୁକୁଟ
ବେଗେ ସଜକର ସୀତାଙ୍କୁ ଯେ
ଲକ୍ଷ୍ମଣ ବାହୁ ରଥ ହୋ··· । ୫ ।

ଏ··· ସୀତାଙ୍କୁ ଶ୍ରୀରାମ ବଭାହେଲ ବେଳେ
ସତ୍ୟ କରାଇଲେ ଯେ ମଜଣଯ୍ୟା ଘରେ
ଶ୍ରୀରାମ ସତ୍ୟ କଲେ କୁଳଦୀପ ଛୁଇଁ
ଶପଥ କରି କହିଲେ ସଖିରେ ଯେ—
ତୋ ବିନୁ ଅନ୍ୟ ନାହିଁ ହୋ । ୬ ।

ଏ··· ନହୁଲ ନହୁଲ ତ ନହୁଲ ମାରସ
ସୀତା ଯୋଉଁ ଦନ ହୋ ନହୁଲ
ଶ୍ରୀରାମ ବନବାସ ହୋ । ୭ ।

ଏ··· ଜହ୍ନ ନିରମଳ ତ ପୁନିଅଁ ହେବ କାଲି
ଚନ୍ଦ୍ରମାକୁ ରାହୁ ହୋ ଘୋଟିଛି
ଝିଅକ ବିଜୁଳି ଯେ । ୮ ।

ଏ··· ରାମ ତ ଲକ୍ଷ୍ମଣ ବନକୁ ବାହାର
ମାତାଙ୍କୁ ଓଳଗିଣ ଧଇଲେ ଧନୁଶର
ମାତାପ୍ରେ ବୋଇଲେ ବାବୁରେ ସୁକଲ୍ୟାଣ ହେଉ
ଜନକ ରଷିଝିଅ ଜାନକୀ ତୋ ସଙ୍ଗେ ବନ ଯାଉ ହୋ । ୯ ।

ଏ··· ରାମ ତ ମୋହର ଏକଇର ବଳା
ଉହିଁକ ଜାନକୀ ନ କରବୁ ହେଳା
ବେଳକାଳ ଜାଣି ଦେବୁ ତୁ ଅନ୍ନପାଣି
କିଛି ଦିନେ ରାମ ଯେ ରାଜନ
ହେବୁ ତୁ ପାଟରାଣୀ ହୋ । ୧୦ ।

( ରଘୁନାଥପୁର, କଟକ )

ଏ··· ରାମ ବନବାସ ତ ଚଉଦ ବରଷ
ବାଟରେ ଶୁଣିଲେ ପିତାମ୍ଭେ ଗଲେ ନାଶ
ପିତାପ୍ରେ ଯା'ନ୍ତୁ ନାଶ ଭରଥ ହେଉ ରଜା
ପୁତ୍ର ମୋ ଭୁଲେ ରାଇଜ ପାଳନ୍ତୁ
ଅଯୋଧ୍ୟା ଜନପ୍ରଜା ହୋ । ୧୧ ।

ଏ··· ଭରଥ ବୋଲଇ ମୁଁ ରାଜ୍ୟରେ ରଜା ହେବ
ମାଣିକ ଜମିକ ମୁଁ କାହାଠେ କର ନେବ
ନନ୍ଦଘୋଷ ରଥ ଉପରେ ଯେ
କଳସ ଚଳାଇବ ହୋ । ୧୨ ।

( ଖୁରୁଧା )

ଏ··· ହର ପର୍ବୁରନ୍ତି ଗଉରୀ ଦେବୀ ଶୁଣି
ହରଡ଼ା ବୃଛ ମୂଳେ କିଏ ସେ ତିନି ଜଣି
ଆଗରେ ଶ୍ରୀରାମ ପଛରେ ଲକ୍ଷ୍ମଣ
ମଝରେ ଦେବୀ ଯେ ଜାନକୀ
ଅଯୋଧ୍ୟା ଗଣ୍ଡିଧନ ହୋ । ୧୩ ।

ଏ···ଶ୍ରୀରାମ ଯୋଗୀ ହେଲେ ସୀତାୟୀ ଯୋଗିଅଣୀ
ଭକ୍ଷି କନ୍ଦମୂଳ ପିଅନ୍ତି ଝରପାଣି
ପତର କୁଡ଼ିଆକୁ ବୋହିଲେ ଯୋଡ଼ି ପାଣି
ପିନ୍ଧିଲେ ବୃକ୍ଷର ବକଳ ହୋ ସୀତାୟୀ ଠାକୁରାଣୀ
ବଡ଼ କଷ୍ଟ ଦେଲୁ ରେ ବିଧାତା
ଅଯୋଧ୍ୟାରୁ ଆଣି ହୋ । ୧୪ ।

ଏ···ବରଷିବୁ ମେଘରେ ନ କରିବୁ ଝର
ରାମ ଯାଉଛନ୍ତି ହେ ବନକୁ ମାୟା ତ ମୃଗମାର ।
ମାୟା ମୃଗ ମାରି ଯେ ରାମ ପକାଇ ଦେଲେ ତଳେ
କ, କ ଜନ୍ତୁ ବୋଲି ରାମ ଚିହ୍ନି ନ ପାରିଲେ
ବେତ୍ରାକ୍ଷ ମିରଗ ସଅମ୍ବର ଦଣ୍ଡା
ମଢ଼ିଆ ଦୁଆରେ ଧନୁ ହୋ ଡେରିଲେ
ଜଳ ଟୁ ଦିଅ ସୀତା ହୋ··· । ୧୫ ।

ଏ···ସୀତା ସୀତା ବୋଲି ଯେ ରାମ
ଡାକିଲେ ଡାକ ଗୁରୁ
ସୀତା ଘରେ ନାହିଁ ଗୋ କେ ଦେବ ଜଳଝର
ସୀତା ଥିଲେ ଜଳ ହୋ ଦିଅନ୍ତା
ରାବଣ ନେଲା ହରି ହୋ । ୧୬ ।

ଏ···ରାବଣ ହରି ନେଇରେ ଲଙ୍କାପୁରବ କାହିଁ
ଅଶୋକ ବନରେ ହେ ଅସୁରୀ ଜଗାଇ
ସହସ୍ରେ ଅସୁରୁଣୀ ତ କହୁଛନ୍ତି ବାଣୀ
ସ୍ଥିର ରାବଣକୁ ଦେହ ଗୋ ନ ଦେବୁ
ଶ୍ରୀରାମ ଘରଣୀ ହୋ । ୧୭ ।

ଏ···ପୂର୍ବଦିଗ ଅରୁଣ ପଶ୍ଚିମେ ଉଇଁବ
ସମୁଦ୍ର ଲୁଣିପାଣି ହେବେ ମଧୁର ହୋଇବ
ତେବେ ତ ସୀତାୟୀ ଠାକୁରାଣୀ
ଦେହ ତ ନ ଛୋଇବ ହୋ । ୧୮ ।

ଏ···ସହସ୍ର ଅମ୍ବରଣୀ ତ କଦ୍ରଛନ୍ତ ବାଣୀ
ଘଟ ଗଣ ମାରବ କେଉଁବା ଦୋଷେ ମୋ
ସୀତାଏ ଠାକୁରାଣୀ ହୋ । ୧୯ ।
ଏ···ସୀତାଏ ଠାକୁରାଣୀଙ୍କ କଏସେ ବୋଲେ କାଳୀ
ସୋରଷ ଫୁଲରୁ ସୀତା ମୋ ଉଜ୍ଜ୍ୱଳ
ଚନ୍ଦ୍ରମା ନୁହେ ସର ହୋ । ୨୦ ।
( ନରସିଂହପୁର )

ଏ···ପାଣି ତ ସରୁ ସରୁ ଯାଉଥିଲା ବୋହି
ଜଳକୁ ଗୁହଁ ଗୁହଁ ପଡ଼ିଗଲା ଘାଇ
କହ ଲୋ ବଗୁଲି ସତ କରି କହ
ରାବଣ ହରି ନେଲା କି
ଜନକ ରଜାଝିଅ ହୋ । ୨୧ ।
( ମୂଲବସନ୍ତ )

ଏ···ଶ୍ରୀରାମ ପଚ୍ଛୁଚନ୍ତି ବଗୁଲି ମୁହଁ ଗୁହିଁ
ଏ ବାଟେ କିଏ ଗଲା ଦେଖିଚୁ କି ତୁହି
ମୁହିଁ ତ ପକ୍ଷୀ ଜୀବ ନ ଜାଣଇ କିଛୁ
ଅହାର ନିମନ୍ତେ ଜଳକୁ ଗୁହିଁଛୁ
ଜଳକୁ ଗୁହଁ ଗୁହଁ ପଡ଼ିଗଲା ଘାଇ
ପୁଷ୍ପକ ବିମାନ ରଥେ ଗଲେଣି ବଇଦେହୀ ହୋ । ୨୨ ।
( ନରସିଂହପୁର )

ଏ···ଅମ୍ବ ତ ଅମ୍ବିଲା ସୁଆଦ ବରକୋଳି
ଶ୍ରୀରାମ ଭୋଗକଇଲେ ଲକ୍ଷଣ ଦେଲେ ଟୋଳି
ବନର ଫଳକୁ ରାମ ହୋଇଲେ ଭାଜନ
ଫୁଟିତ କଲା ବୁକୁ ଦାଣଇ ମୋ
ପାଇଲେ କଷଣ ହୋ । ୨୩ ।
ଏ···ମନେ ମନେ ହନୁ ଯେ କରଇ ଗୁମାନ
ମୁଇଁ ସୀତାଙ୍କୁ ଖୋଜି ଦେବି ଏ ତିନି ଭୁବନ
ଏଥୁ ତ ନ ପାଇଲେ ଭୋ ରାମ
ଦଇଆ ପାରି ପୁଣ ହୋ । ୨୪ ।

ଏ···ମୁଁ ତ ଦରିଆ ପାର ହୋଇ ପଶି ଖୋଜିବି ଘରଘର
ଏଥି ତ ନ ପାଇଲେ ହେ ରାମ
ମୁଁ ତ ହୋଇବି ଭ୍ରମର ହୋ । ୨୫ ।
( ମୟୂରଭଞ୍ଜ )

ଏ···କହଇ ଅଙ୍ଗଦ ଯେ ଶୁଣ ହେ ଦଶକନ୍ଧ
ଏଡ଼େ ବଡ଼ ଯୋଦ୍ଧା ହୋଇ ଅରଜିଲୁ ମନ୍ଦ
ଶ୍ରୀରାମ ଘରଣୀକୁ ତୁ ଆଣିଲୁ ଚୋରାଇ
ଜାଣିଲେ ରାମ ତ ମାଡ଼ ଯେ ମାରିବେ
ଦରିଆ ପାର ହୋଇ ହୋ । ୨୬ ।

ଏ···ରାବଣର ପୁଅ ତୁ ବୋଲାଉ ଇନ୍ଦ୍ରଜିତ
ଚଢ଼ି ତୁ ନାହୁଁ ବାବୁ ଦେବ ଦ୍ରୋଣ ରଥ
ସେ ରଥେ ଚଢ଼ିଲେ ବାବୁ ଜିଣନ୍ତା ନାହିଁ କେହି
ଭଲ ତ ଜିଣିଗଲା ବୀର ରେ ଲକ୍ଷ୍ମଣ
ଧନୁରେ ଗୁଣ ଦେଇ ହୋ । ୨୭ ।

ଏ··· ରାମ ରାବଣର ଘୋର ଯୁଦ୍ଧ ବେଳେ
ବାଜିଲା ବ୍ରହ୍ମଶର ଲକ୍ଷ୍ମଣ ହୃଦୟରେ
ବାଜି ବ୍ରହ୍ମଶର ତ ଭେଦିଲା ପାଛାଲକୁ
ଶଗଡ଼ ତୁମ୍ବ ପ୍ରାୟେ ଲକ୍ଷ୍ମଣ ବୀର ବୁକୁ
ଧାର ଧାର ହୋଇ ଯେ ରୋହିର ଗଲା ବୋହି
ଦେଖି ରଘୁନାଥ ଯେ ବିକଳ
ଅହା ମୋ ଲକ୍ଷ୍ମଣ ପରି ଭାଇ ହୋ । ୨୮ ।

ଏ···ଲକ୍ଷଣ ପରି ଭାଇକି ଅନେକ ଡାଅରିଲି
ଅଗଭର ହୋଇ ରେ ନଯୁଝ ବୋଇଲି
ମୋର ଶପଥ ତୋତେ ଜାନକୀର ରାଣ
ଅଗଭର ହୋଇ ରେ ନଯୁଝ ଲକ୍ଷଣ
ନଯୁଝ ବୋଇଲାକୁ ଯୁଝିଲେ ବଳେ ଯାଇ
ବିନାଦୋଷେ ପ୍ରାଣ ହୋ ହାରିଲେ
ଲକ୍ଷ୍ମଣ ପରି ଭାଇ ହୋ । ୨୯ ।

ଏ···ଯେବେ ତୁ ଯୁଦ୍ଧେ ଯିବୁ ଅଙ୍ଗଦ କରେ ଧିବୁ
ଘୋର ଯୁଦ୍ଧ ବେଳେ ବୀର ହୋ ଲକ୍ଷ୍ମଣ
ପଛୁଲ ଘୁଞ୍ଚା ଦେବୁ ହୋ । ୩୦ ।

ଏ···ଅଯୋଧ୍ୟାରେ ଥିଲେ ତୁ ବୋଲନ୍ତୁ ଦଶ୍ରୁ ପାଶ
ଅବହେଳେ ପରାଣ ହାରନ୍ତୁ ଜାନକୀ ଲାଗି କର
ପିତା ମାତା ଥିଲେ ଯେ କି କରିବେ ଭାଇ
ତୁହ ମୁହିଁ ଥିଲେ ବୀର ରେ ଲକ୍ଷଣ
ଜାନକୀ ମିଳଇ ରେ । ୩୧ ।

(ବରଗଡ଼)

ଏ···ଶୂନ୍ୟରେ ହନୁମନ୍ତ ବିକମି ଯାଉଥିଲା
ବାଟରେ ଭରଥ ଯେ ବାଟୁଳି ମାଇଲା
ପଡ଼ି ଉଠି ହନୁ ତ ସୁମରେ ରାମ ରାମ
ଭରଥ ପଚାରେ କପି ତୁ କାହାର ନନ୍ଦନ ?
ବାଳୀର ଭଣଜା ମୁଁ ପବନର ସୁତ
ଯାଇଥିଲି ରାମ କାର୍ଯ୍ୟରେ ହୋ
ନେଉଛୁ ମାଲ୍ୟବନ୍ତ ହୋ । ୩୨ ।

(ବଉାମ୍ବା)

ଏ···ଇନ୍ଦ୍ରଜିତ ମଲା ବୋଲିରେ ଲଙ୍କାରେ ବାରତା
ରାଣୀ ମନ୍ଦୋଦରୀ ତ କାନ୍ଦଇ କି କଲୁ ବିଧାତା ରେ । ୩୩ ।

ଏ···ଜଗତୀ ଉପରେ ଯେ ରାବଣ ମୋହ ଯାଇ
ରାଣୀ ମନ୍ଦୋଦରୀ ତ ମଥା ଯେ କୋଡ଼ଇ
କି କଲୁ ବିଧାତା ରେ ଦେଲୁ କେତେ ଦୁଃଖ
ଦିନରେ ନିଦ ନାହିଁ ଦିବସେ ନାହିଁ ଭୋଖ
କେମନ୍ତେ ରଜନୀ ଯାଇବ ଯେ
ଗୁହିଁବ ସ୍ୱାମୀ ମୁଖ ଯେ— । ୩୪ ।

(ଭଗୀରଥ)

ଏ···ଯେତେବେଳେ ରାମଚନ୍ଦ୍ର ମାରିଲେ ରାବଣକୁ
ବ୍ରହ୍ମ ହତ୍ୟା ଦୋଷ ଯେ ଲାଗିଲା ତାହାଙ୍କୁ
ବ୍ରହ୍ମହତ୍ୟା ଦୋଷ ଯେ କେମନ୍ତେ ଯିବ ମାର
ଆପଣା ନାମ ଆପେ ଯେ ଭଜିଲେ
ବ୍ରହ୍ମାଣ୍ଡ ଠାକୁର ହୋ । ୩୫ ।

( ରଣପୁର )

ଏ···ଭାଜିଲା ଲଙ୍କାଗଡ଼ ସୁବର୍ଣ୍ଣ ଚଡ଼ାଗଡ଼
ହନୁମନ୍ତ ଭାଗେ ହୋ ପଡ଼ୁଛୁ
ଚନ୍ଦନ ଗୁଆ ପେଡ଼ି ଯେ । ୩୬ ।

ଏ···ଗୁହାଁକନା ମନ ରେ ଚନ୍ଦନ ଟୀକାକୁ
ଗୁହିଁଲେ ପାଇବୁ ତୁ ଶୂନ୍ୟ ପୁରୁଷକୁ
ଶୂନ୍ୟ ପୁରୁଷର ତ ଉତ୍ତମ ବେଭାର
କାଉଁରୀ ମଣ୍ଡଳ ଯୋଗୀ ହୋ ଉପରେ
ଭ୍ରମର ଗୁମ୍ଫା ଘର ଯେ । ୩୭ ।

ଏ···ଭ୍ରମର ଗୁମ୍ଫା ଘରକୁ ସ୍ୱର୍ଗ ମୂଳେ ବାଟ
ତଳଗୁେପା ପ୍ରାୟେ ଯେ ଲାଗିଛୁ କବାଟ ।
କବାଟ ଫେଡ଼ି ଗୁହାଁ ମୂଢ଼ ମନାଇଁ ରେ
ବସିଛୁ ଗୋଲା ହାଟ ହୋ । ୩୮ ।

ଏ···ଗୋଲାହାଟ ପରେ ତ ରାଘବ ପାଟଣା
ରାମନାମ ଗୋଟି ତ ହେଉଛୁ ବିକା କଣା
ହାଟ ଥାଉ ଥାଉ ତ କର ବିକା କଣା
ହାଟ ସରିଗଲେ ମୂଢ଼ ରେ ମନାଇଁ
ତୁ ହେବୁ ପଥ ବଣା ଯେ— । ୩୯ । *

( ଅନୁଗୁଳ, ତରାସ )

---

* ସଙ୍ଗୀତଗୁଡ଼ିକ ବଭିନ୍ନ ସ୍ଥାନରୁ ସଂଗୃହୀତ ହୋଇ ଧାରାବାହିକ ଭାବରେ ସଜାଇ ଦିଆଯାଇଛି ।

## କୃଷ୍ଣ ଗୀତ (୫)

( ରାଧାକୃଷ୍ଣ )

୧— ଏ···ଛଇଲ ଛୁଣ୍ଡାଳିଆ ଗୋପରେ ହେଲେ ଜାତ
କ୍ଷୁଦ୍ର କଥାମାନ ତ ପାଞ୍ଚିଲେ ବହୁତ ହୋ ।

୨— ଏ···କହ୍ନାଇ କହ୍ନାଇ ବୋଲି ଯେ ମାଏ ଦେଲେ ଡାକ
କହ୍ନାଇ ଖେଳୁଅଛୁ ତ ଗୋପ ଦାଣ୍ଡଯାକ
ହୃଦରେ ବ୍ୟାଘ୍ରନଖ କଣ୍ଠରେ ପଇତା
କାହିଁ ଟି ହଜାଇଲୁ ରେ କହ୍ନାଇ
ଦୋସର ସୁନା ସୂତା ହୋ ।

୩— ଏ···ମୋ ଦୋସର ସୁନା ସୂତା ଯେ କହ୍ନାଇକି ଶୋହେ
ଶିରୀ ତ ଶୋହାବନ ଗୋ ରାଧିକେ
ଜଗୁଜନ ମୋହେ ରେ ।

୪— ଏ···ମାଏ ତ ଡାକ ଦେଲେ ବାବୁ ବନମାଳୀ
ଗୋପରୁ ଲବଣୀ ଯେ ଖାଇଲୁ ଚୋରି କରି
ଦାଣ୍ଡେ ଘାଟେ ବାବୁ ଅଟେ ତୋହର ବୋଲଣା
ଘାଟକେ ମାଉଁଶ ତୋ ପିଞ୍ଜିବ କଳାକହ୍ନା
ଭାଙ୍ଗିବ ତୋ ଗାରିମା ହୋ ।

୫— ଏ···ଘାଟ ଧରି ମାଏ ଯହୁଁ ଉଠିଲେ ଝଟତ
କଳାକାହ୍ନୁ ବକଲେ ରୋଦନ କରନ୍ତ
ଖାଇ ତ ନାହିଁ ଲବଣୀ ଦେଖ ମୋର ତୁଣ୍ଡ
କଅଁଳା ପୁଅ ଗର୍ଭେ ଯେ ମାଏ ଦେଖିଲେ ..
ଅଶେଷ ବ୍ରହ୍ମାଣ୍ଡ ହୋ ।

୬— ଏ···ଫୁଲ ତ ଫୁଟିଅଛୁ ଗଗନ ଶିଖରେ
ନାଡ଼ ନାହିଁ ଫୁଲ ରହୁଛୁ ଶୂନ୍ୟରେ
ସେ ଫୁଲ ଫୁଟନ୍ତେ ତ ଜଗତ କରେ ବାସ
କଅଁ। କଢ଼ି ଖିଅ ହୋ କେଶବ
ଛୁଇଁଲେ ଯିବ ନାଶ ହୋ ।

୭— ଏ···ପାକେଲା ଅମ୍ବକୁ ତ କୁଅ କରେ କେଳି
ଶ୍ରୀକୃଷ୍ଣ ପଗୁରନ୍ତ ଦୂତ ଲୋ ରାଧିକା କେତେ ଭଲ ଯେ ।
୮— ଏ···ବାଳି ଗେଲ ତ ଘରେ ହୋଇଥିଲ ବଭା
ନାମ ନ ଜାଣିଲ ହୋ ଶ୍ରୀହରି ରାଧିକା ନବଯୁବା ହୋ ।
୯— ଏ···ରାଧିକା ନବଯୁବା କେତେ କାଳ ଥିବ
ଫୁଲ ଫୁଲିରଙ୍କ ବଇସ ପୂଛିଲେ ମଉଳିବ ହୋ ।
୧୦— ଏ···ଫୁଲ ତ ମହରଗ ଲୋ ଶିମିଳି ଫୁଲ ଗଭା
କହୋଇ କ ବାର ଯେ ବରଷ ରାଧିକା ନବଯୁବା
ରାଧିକା ନବଯୁବା ଭାଗ୍ୟେ ଥିଲେ ପାଇ
ନାଆଁ ପାଣେ ଘିଅରେ ବଉଳ
ତେସନ ଭରଲାଇ ହୋ ।
୧୧— ଏ···ରାଧିକା ପଗୁରନ୍ତ ଦୂତୀ ଯେ ମିତଣିକ
ଦିନେ ମୁଁ ଏକା ଗଲି ଯମୁନା ପାଣିକ
ଯମୁନାରୁ ନୀର ଧରି ନେଉଥିଲି ବେଳେ
କାହ୍ନୁକୁ ଭେଟିଲି ଯେ କଦମ୍ବ ତରୁତଳେ
କଦମ୍ବ ତରୁମୂଳେ କୃଷ୍ଣ ବସିଥିଲେ ଏକା
ତା କରେ ଥିଲା ବରହ ଯେ ବଇଁଶୀ
ଡାକନ୍ତି ମୋ ପ୍ରାଣ ରାଧିକା ହୋ ।
୧୨— ଏ···ରୂପାର ବାହାଙ୍ଗି କ ସୁବର୍ଣ୍ଣର ଶିକା
ଭାର ବୋହୁ ଥିଲେ କଳା ହୋ କହ୍ନାଇ
ଗୋପ ଦାଣ୍ଡେ ଏକା ଯେ ।
୧୩— ଏ···ଗୋପ ଦାଣ୍ଡେ ଏକା ତ କେହୁ ନାହିଁ ସଙ୍ଗୀ
ଏକା ବଂଶୀ ଧ୍ୱନି ଡାକ ହୋ ଦେଉଛୁ
ମୋ ପ୍ରାଣ ରାଧିକା ଯେ ।
( କେନ୍ଦୁପଲ୍ଲି, କେନ୍ଦ୍ରାପଡ଼ା )
୧୪— ଏ···କଳା କଳା ଦିଶଇ ତ ବନର ଯେ ମଇଁଷି
ଖାଉଛି ଦୁଧ ଭାର ଯେ ଗଉଡ଼
ହସ୍ତରେ ତ ବଇଁଶୀ ହୋ ।

୧୫— ଏ···ହସ୍ତର ବଇଁଶୀ ବାଜଇ ଘନଘନ
ସର୍ଗର ଦେବତା ଯେ ଛାଡ଼ିଲେ ଅସନ
ଚଷାପୁଏ ଛାଡ଼ିଲେ ଲଙ୍ଗଳର ଯେ କଣ୍ଟି
ପାଇକେ ଛାଡ଼ିଲେ ଯେ ଡାଲ ଖଣ୍ଡା ମୁଠି
ଦଧି ଯେ ମନ୍ଥୁଥିଲେ ମାଇଁ ରାଧିକେ
ଛାଡ଼ିଲେ ଖୁଆମୁଠି ଯେ— ।

୧୬— ଏ···ଛାଡ଼ି ଖୁଆମୁଠି ତ ଦାଣ୍ଡରେ ହେଲେ ଠିଆ
ଦାନ୍ତରେ ତରଣ ଧରଣ ମୋ କଲା କହ୍ନାଇ
ତୋ ବଇଁଶୀ ଦଣ୍ଡେ ରୁହା ହୋ ।
( କରଡ଼ାଗାଡ଼ିଆ, ଅନୁଗୁଳ )

୧୭— ଏ···ରାଧିକା ଦୂତୀକା ଏ ଦୁହେଁ ସାଙ୍ଗିଆ
ନଦୀ ତୋଠେ ବେଲ ମୋ ବୁଡ଼ଇ
ଶ୍ରୀକୃଷ୍ଣ ନାଉରିଆ ହୋ ।

୧୮— ଏ···ନାଉରି ଭାଇର ତ ପର୍ବତମାଳେ ଘର
ନାବ ତ ଗଢ଼ାଇଛୁ ଅକାଠ ସିନ୍ଧୁକଲ
ଅକାଠ ସିନ୍ଧୁକଲେ କାମ୍ଭୀର ଭେଲା ଭେଲା
ତହିଁ ତ ବସି ନାବ ଯେ ବାହୁଛୁ
ଏକଇ ନାରି ବଲା,
ଏକଇ ନାରି-ବଲା ନାମ ଗୋଟି ହର
ଅଗ ମଙ୍ଗେ ବସ ମୋ ରାଧିକା ସୁନ୍ଦେରି
ପଛ ମଙ୍ଗେ ବସ ଗୋ ଦୂତୀକେ
ନେବ ମୁଁ ପାରି କରି ଯେ— ।

୧୯— ଏ···ପାରିକରି ନେଇ ଶୁଖରେ କଲ ଠିଆ
ପାର କଲ ମୂଲ ମାଗଇ ଭାବ ତ ବନୋଦିଆ
ଭାବ ବନୋଦିଆ ତ ହଟିଆ ନାଗର
ହସ୍ତ ପକାଇଲେ ଯେ ରାଧିକା ଉପର
ଥିରି ଥିରି କରି କୃଷ୍ଣ ହିଆରେ ଦେଲେ ହାତ
ସହି ନ ପାରଲେ ମାଇଁ ଗୋ ରାଧିକେ
ମାଇଲେ ଯୋଡ଼ି ନାତ ଯେ ।

୨୦— ଏ···ନାଚେକ ମାର୍ ନାଚେ ଫୋପଡ଼ାଇ ଦେଲେ
କଦମ୍ବ ତଳେ ଯାଇ ମାଧବ ପଡ଼ିଲେ
କୃଷ୍ଣ କଦମ୍ବ ତଳୁ ଉଠିଣ ବସିଲେ
ରାଧିକା ମୁହଁ ଚାହିଁ ଅଳପ ହସିଲେ
ବଥାଉ ଥିବ ବେନି ଗୋ ଚରଣ
ଘଷିବ ବୋଲିଲେ ହୋ । ( ଅଠମଲ୍ଲିକ )

୨୧— ଏ···ନାବ ତ ଦଦରା ଲୋ ଝଲକ ପଶେ ପାଣି
ଜଣ ଜଣ କର ପାର୍ ଯେ କରବ
ଗୋପର ଗଉଡୁଣୀ
ଗୋପର ଗଉଡ଼ୁଣୀ ଗୋପେ ହୁଅ ବାଇ
ଶ୍ରୀରାମ ବନ୍ଧା ବେଳେ ଲୋ ନ ଗଲ ବନ୍ଧାଇ
ତେଣୁ ଶାପ ଲୋ ପାଇଲ
ବୁଲଇ ବକ ଦହ ଗୋ— ।
( ବଲାଙ୍ଗିର )

୨୨— ଏ···ପାହ୍ରଗଲା ରଜନୀ ରେ ଉଦୟ ହେଲେ ଭାନୁ
ରାଧିକା ଘରେ ଶ୍ରେଜ ରେ ନବୀନ କଳାକାହ୍ନୁ
ନବୀନ କଳାକାହ୍ନୁ ଯେ ଅତି ସୁକୁମାର
ମଉଳି ଯିବ ତନୁ ଯେ ନ ମାର ନ ମାର ହୋ ।
ମାରିବାକୁ କାହାର ଯିବ ହାତ
ରାଧା ଧରନ୍ତେ କୋଳେ ସବେ ତ ନିଷତ ହୋ ।

୨୩— ଏ···କାଳିଆ କାଳିଆ ତ ନ ବୋଲିବୁ ମୋତେ
ଗୁରକାଲ କଳା ଗୋ ବତାଇ ଦେବ ତୋତେ
କୋଇଲିର କଳା ତ କୁହୁକଣ୍ଠ ବାଣୀ
ଯମୁନାର କଳା ତୁ ଦେଇଛୁ ଭାଉଆଣି
ମରଚର କଳା ତ ସବୁଠାରୁ ରାଗ
କଜ୍ଜଳର କଳା ସଖି ଗୋ ରଞ୍ଜିଛୁ
ନୟନ ବେନି ଭାଗ ହୋ ।

୨୪— ଏ···ନାବ ତ ଦଦରା ଯେ ଝଲକ ପଶେ ପାଣି
ଜଣେ ଜଣେ ପାରି କରିବ ଗୋପର ଗଉଡୁଣୀ
ଗୋପର ଗଉଡୁଣୀ ଗୋପେ ତୁ ବୋଲାଉ
ଲବଣୀ ମାଗିଲେ ଯେ ପଣତ ଘୋଡ଼ାଉ
ଅବଶ୍ୟ ଯେବେ ଲୋ ଖାଇବ ଛଡ଼ାଇ
ଗୋପରେ କହ ଯାଇ ଯେ··· ।

୨୫— ଏ···ଗୋପରେ କହ ଯାଇ ଧରାଇ ଦେବୁ ସତେ
କଂସ ରଜା ମୋର ଗୋ ମଉଳା
ସେ ତ କି କରିବ ମୋତେ ହୋ— ।

୨୬— ଏ···କଳା କହ୍ନାଇକି ମୋହର ବଡ଼ ଡର
ବାଟରେ ଦେଖିଲେ ତ ବୁହାଇ ନେବ ଭାର
ରୁପାର ବାହାଙ୍ଗିକୁ ସୁବର୍ଣ୍ଣର ଶିକା
ଭାର ବୋହୁଥିବେ କଳା ଯେ କହ୍ନାଇ
ନିକୁଞ୍ଜ ବନେ ଏକା ହୋ ।

୨୭— ଏ···ନିକୁଞ୍ଜ ବନ ଏକା ମାରଇ ଝାଞ୍ଜକା
ଏକା ବଂଶୀ ସ୍ୱନ ଡାକୁଛି
ମୋ ପ୍ରାଣ ରାଧିକା ହୋ ।

୨୮— ଏ···କହନ୍ତି ବାସୁଦେବ ରାଧିକା ମୁହଁ ଚାହିଁ
କିପାଇଁ ହସି ପଦେ ନ କହୁ ପ୍ରାଣସହି
କୃପଣ ଧନ ପ୍ରାୟେ କରି ଯେ ଥିଲି ଗଣ୍ଠି
କେଉଁ ତ ଅବଗୁଣେ ମାଇଁ ଗୋ ରାଧିକେ
ଛାଡ଼ିଲି ଖୁଆମୁଠି ଗୋ ।

୨୯— ଏ···କହନ୍ତି ବାସୁଦେବ ରାଧିକା ମୁହଁ ଚାହିଁ
କିପାଇଁ ମଥା ଟେକି ନ ଚାହୁଁ ପ୍ରାଣସହି
ଛଇଲବର କହେ ଶୁଣ ଅହେ ଭୀରୁ
ଛନ୍ଦ କପଟରେ ତୋରେ କେ ଜିଣିପାରୁ ।
ଭୁଜକୁ ଭୁଜ ମାଡ଼ି ଆସି ମୋ ଅଙ୍କେ ବସ
ତୋ ଆଧି ଲାଗି ବ୍ୟାଧି ମଦନ ହେଉ ନାଶ ହୋ ।

୩୦— ଏ···ବରଜନେଜି କହେ ଶୁଣ ହେ ନବରଙ୍ଗ
ଜର କଲ ବୋଲି ହୋ କହିବ ତୁମ୍ଭ ମାତା ଅଗ
ଗୋପର ଯେତେ ବୈଦ୍ୟ ଡକାଇ ଅଣାଇବ
ଜର ଛାଡ଼ି କର ତ ଔଷଧ ଭାଗ ଦେବ
ଔଷଧ ଭାଗଦେବ ମୋହର ହସ୍ତ ଛୁଇଁ
ଲୋକେ ପଚାରିଲେ ହୋ କହିବ
ରାଧିକା ମୋହ ମାଇଁ ହୋ ।

୩୧— ଏ···ଗୋପରୁ ଗୋପୀନାଥ ଅସିବେ ବୋଲି ହର
ଶେଜ ମୁଁ ଶେଜାଇଲି ଯେ ପାଖୁଡ଼ା ଜାଇମଲ୍ଲି
ପାଖୁଡ଼ା ଜାଇ ମଲ୍ଲି ଗୁଙ୍ଗଡ଼ାରେ ଭର
ମୋ ପୁରୀ ନଇଲ ହେ ମାଧବ
ଅନ୍ଯେ ଗୋପୀଏ ମଲ୍ଲିଁ ଝୁର ହୋ ।

୩୨— ଏ···ଆମ୍ବ ବନେ କୋଇଲି ତେନ୍ତୁଳି ବନେ ଶୁଆ
ଶାଳ ମୋ ବନେ ସାର ମେ
ଭୁଷଇ ଭାବ ବନୋଦଅ ହୋ ।

୩୩— ଏ···ଭାବ ବନୋଦଅ ଯେ ହଟିଆ ନାଗର
ହସ୍ତ ପକାଇଲେ ତ ରାଧିକା ଉପର
ଭାବେ ବଶ କଲେ ଯେ ରାଧାଙ୍କୁ
ବ୍ରହ୍ମାଣ୍ଡ ଠାକୁର ହୋ ।
( ନୂଆଗଡ଼ )

୩୪— ଏ···ଚନ୍ଦ୍ରମେଘି ଶାଢ଼ୀ ପିନ୍ଧି ସୁନ୍ଦରୀ ରାଧିକା
ଧର୍ମ୍ମକୁ ସୁମରଣି ବାହାରିଲ ଏକା
ସତ୍ୟ ଯେବେ ଧର୍ମ୍ମ ତୁହି ବାଞ୍ଛା ପୂର୍ଣ୍ଣ ହେବ
କଦମ୍ବମୂଳରେ ଯେ ବଂଶୀ ବାଜୁଥିବ ହୋ ।

୩୫— ଏ···କୁହୁଡ଼ି କୁହୁଡ଼ି ତ ମେଲ ଦେଲି ନାଆ
ଏକୁଟିଆ ରାଧିକା ମୋ ଅରକୂଳେ ଠିଆ

ଅକାତ ଜଳେ ନାଆ ଯାଉଅଛୁ ମେଲ
ଆଗ ମଙ୍ଗେ ବସିଛୁ ମୋ ରାଧିକା ସୁନ୍ଦରୀ
ଉରସି ପାଖକୁ ତ ଯାଉଛୁ
ରସିକ ନାଉରୀ ହୋ ।

୩୬— ଏ···ରସିକ ନାଉରୀ ତ ଭୁଜ ଦେଇ ଭିଡ଼ି
ପାଦେ ଛନ୍ଦାଛନ୍ଦ ହେଲେ ଯେ
କୁହୁଡ଼ି ଗଲ୍ଲ ଭିଡ଼ି ହୋ ।

୩୭— ଏ···କଦମ୍ବ ତରୁ ତଳେ ବଜାଏ କହ୍ନା ବେଣୁ
ନ ଚନ୍ତି ଗୋପୀ ଗୋପାଳେ ମଧ୍ୟରେ କଳାକାହ୍ନୁ
କଳା ତ କହ୍ନାଇକି ହେଲଣି ବଡ଼ ଡର
ବାଟରେ ଦେଖୁ ଦେଖୁ କାହ୍ନୁ ବୋହିନେବ ଭାର
ଭାର ତ ବୋହିନେବ ଯେ ମଥୁରା ଦେଶକୁ
ଯତନେ ରାଧିକା ଯେ ସୁବେଶ
କହ୍ନାଇ ଭେଟକୁ ହୋ ।

୩୮— ଏ···ଚନ୍ଦ୍ରମାବଦନୀ ମୁଁ ଦେଖିଲି ପ୍ରାଣସହି
ଗୃନ୍ଦକ ଉପରେ ଯେ ଗୃନ୍ଦ ଅଛୁ ଉଇଁ
ମୋ ଗୃନ୍ଦ ତ ବନ୍ଦାଇବ ଗୋ ରାଧିକେ
ଗୋବିନ୍ଦ ଶିରେ ନେଇ ହୋ ।

୩୯— ଏ···ରାଧା ତ ମାଧବ ଯୋ ସୁରତ ଭାବ ବେଳେ
ଚନ୍ଦ୍ରଶେଣୀ ଗୋଟୋଏ ଅଇଲ୍ଲ ତହିଁ କାଳେ
ମାତା ବୋଲେ ପୁଅ ରେ ମୋ ଘର ବୁଡ଼ିଲା
ବିପକ୍ଷ କଳା ଭୂତ ରାଧାକୁ ଗିଳିଲ୍ଲ ।
ରାଧାକୁ ଗିଳି କରି ନ ପୂରିଲ୍ଲ ପେଟ
ମୋତେ ତ ଗିଳିବାକୁ ଜଗି ରେ ବସିଛୁ
ଦୁପୁର କନ୍ଧ ବାଟ ହୋ ।
( ଗଞ୍ଜାମ )

୪୦— ଏ···କହନ୍ତି ରାଧିକା ଦୂତୀ ଗୋ ମୋତେ ଜ୍ୱର କରୁଛି
ବିରହ ଜରକୁ ଔଷଧି ଦୂତୀ ଜାଣୁନା କିଛି ?
କଦମ୍ବମୂଳଆ-କଦଳୀଭଜା ଠାରେ ମୋ ମନ
କାଉଞ୍ଚମାଳଆ-କାଞ୍ଜିକି ଦୂତୀ ଅଣ ବହନ ହୋ ।

୪୧— ଏ···ନାରାୟଣ-ଜହ୍ନି ରାଇତା ମୋର ମନକୁ ଜିତା
ପତିତପାବନ-ପଇଡ ଦୂତୀ ଗ୍ଲାଜୁ ଅରୁଚି ।
ଗୋପୀନାଥ-ବଡ଼ ବେଶର ତହିଁ ଥିବଟି ପାଣି
କଅଁଳ ଅମ୍ବୁଲ ରାଇତା ଦୂତୀ ଭାତ ନେବଟି ଝାଣି ହୋ ।

୪୨— ଏ···ଚକା ଗୁଆ ଖଣ୍ଡ ଗୁରି ଗୋ ବାଅ କୁନ୍ଦଅ ପାନ
ଲବଙ୍ଗ ଅଳେଇଚ ମିଶିତ ତହିଁ ଖଇର ଚୂନ
ଚକ୍ରଧର ସରୁରୁଜଳ କୃଷ୍ଣ ନାମେଟି ଘିଅ
ଶ୍ରୀକୃଷ୍ଣ ପଦରେ ରାଧାକୁ ବେଗେ ପରଶି ଦିଅ ହୋ ।
( ସାଗର, ନରସିଂହପୁର )

୪୩— ଏ···ଦଧି ଦଧି ତ ବୁଲିଗଲେ ସାଇ
ରାଧିକାର ଦହି ତ କୁହିଁ ନ ଯୋଗାଇ
ବଡ଼ ଦୋଗୁରୁଣୀ ମାଇଁ ଯେ ରାଧିକା
କହ୍ନେଇ ସଙ୍ଗେ ବାଇ ହୋ ।

୪୪— ଏ···ଦହି ଦହି ତ ବୁଲିଗଲେ ସାଇ
ରାଧିକା ଦହିରୁ ତ ସୁଆଦ ଆଉ ନାହିଁ
ରାଧିକା ଦୋଗୁରୁଣୀ କଏସେ କହଇ
ବିନା ଦୋଷେ ଗଞ୍ଜି ହୋ ମାରୁଛି
କହ୍ନେଇ ଦୋଷ ଦେଇ ହୋ ।
( ବଣେଇ )

୪୫— ଏ···ବାଇଦ ମୁରୁଦଙ୍ଗ ପିତଳ କାହାଳୀ
ହରି ବୃନ୍ଦାବନେ ହୋ ରାହାସ
ନାଚୁଅ ବନମାଳୀ ହୋ ।
( ପୁରୀ )

୪୬— ଏ···କହୁଛନ୍ତି ଗୋପୀମାନେ ଉଦ୍ଧବଙ୍କୁ ଡେକି
କେଉଁ ଅପରାଧରେ ହେ ଉଦ୍ଧବ ଆମ୍ଭଙ୍କୁ
ଶ୍ରୀକୃଷ୍ଣ ଗଲେ ଛାଡ଼ି ହୋ ।

୪୭— ଏ···ଛାଡ଼ି ଆମ୍ଭଙ୍କୁ ଗଲେ ମଥୁରା ନଗର
ଆମ୍ଭଠୁ କୁବୁଜାଟି ହୋଇଲା ସୁନ୍ଦର
କ୍ଷୀର ପନୀରଠୁ ଅଧିକ ହେଲା ଯେ
ଗୋପଙ୍କର ନୀର ହୋ ।
( ରଣପୁର )

୪୮ — ଏ···ବନମାଳୀ ନାମକୁ ରେ ବନମାଳା କରି
ଅତି ଯତନ କରି ହୋ ଗଳାରେ ଲମ୍ବାଇଲା
ବନମାଳୀ ନାମ ହୋ ନଉକା
ଭବରୁ ପାର ହେଲି ଯେ ।
( ବୋକୋଡ଼ା, ନରସିଂହପୁର )

## ଗୃଷଗୀତ ( ୭ )

ଜଗନ୍ନାଥ

ଏ···ପୋଖରୀ ହୁଡ଼ାକୁ ଯେ କାଟିଗଲି ଗୁଣ୍ଡି ଘାସ
ଏଇଠାରେ ଗୀତ ଯେ ଭଣିଲେ
ମଠକୁ ଗଲେ ଦାସ ହୋ । ୧ ।

ଏ···ମଠକୁ ଯାଇ ଦାସ କି କରୁଥିଲେ ବସି
ଜଗମୋହନ କଥା ମୋ କହୁଥିଲେ ହସି
ଖଣ୍ଡେ ଥିଲା ଫଟା ଯେ ମର୍ଦ୍ଦଳ
ଠିପୁଥିଲେ ବସି ଯେ । ୨ ।

ଏ···ଜହ୍ନ ତ ନିରମଳ ଆକାଶ ମଣ୍ଡଳ
ଗଜ ତ ପାଣି ଖାଏ କାଳିନ୍ଦୀ ହ୍ରଦର
କାଳିନ୍ଦୀ ହ୍ରଦେ ଗଜ ଯେ ଖାଉଥିଲା ପାଣି
ଆଡ଼େଇ ଡାକଦେଲା ରଖ ହେ ଚକ୍ରପାଣି

ରଖିଲ ରଖିଲ ବୋଲି ବଢ଼ାଇ ଦେଲେ ଭୁଜ
ଜଳର କୁମ୍ଭୀରକୁ ଯେ ଛେଦନ
ନାସ୍ତର ଗଲ୍ଲ ଗଜ ହୋ । ୩ ।

ଏ...ବନରୁ ଶବର ବାହାରିଲା ବେଳେ
ମୃଗ ଚରୁଥିଲା ଅରଣ୍ୟ କାନ୍ତାରେ
ତାହା ଦେଖି ଶବର ତୃଷିତ ଭାବ ବୋଧ
ଚଉପାଶେ ଜାଲ ବେଢ଼ାଇଲା ନେଇ
ମୃଗୁଣୀ ଗର୍ଭମାସ ତା ସଙ୍ଗେ ବାଳଶିଷ
ଆତଙ୍କେ ଡାକିଲା ରଖ ହେ ପୀତବାସ
ରଖିଲ ରଖିଲ ବୋଲି ଟେକ ଦେଲେ ଭୁଜ
ଜଳର କୁମ୍ଭୀରକୁ ଛେଦଣ ଯେ
ରଖିଲେ ପ୍ରଭୁ ଗଜ ହୋ । ୪ ।
( ନାଅଳ, କଟକ )

ଏ...ସିଆଳି ଲତା ତଳେ ଯେ
ପ୍ରଭୁ ଖେଳୁଥିଲେ ଦୋଳି
ଶବର ବାନ୍ଧିଲା ଯେ ମୃଗ ଜାନ ବୋଲି
ବାନ୍ଧିଲ ବାନ୍ଧିଲ ଶବର ଶୁଝିଲ ପିତ୍ତରଣି
ଜାଣି ତ ନ ପାରିଲ ରେ ଶବର
ଶଙ୍ଖ ଚକ୍ର ଚିହ୍ନ ହୋ । ୫ ।
( ଝଙ୍କଡ଼ )

ଏ...ଧାଇଁ ମୁଁ ଧପଡ଼ ତ ମୃଦଙ୍ଗେ ଦେଲି ହାତ
ପ୍ରଥମେ ବନ୍ଦିଲି ଯେ ଓଡ଼ିଶା ଜଗନ୍ନାଥ
ଦ୍ୱିତୀୟେ ବନ୍ଦିଲି ମୁଁ ପତର ସଉରୁଣୀ
ଝାଲ ଗମ ଗମ ଗୋ ମଙ୍ଗଳା
ଫକଟତାରଣୀ ଯେ । ୬ ।

ଏ...ଆଷାଢ଼ ମାସରେ ମେଘ ଗରଜନ
ନନ୍ଦଘୋଷ ରଥେ ବିଜେ କୃଷ୍ଣ ଅରଜୁନ
ପଞ୍ଚାଳି କନ୍ୟା କରଛୁ ରାଧାଚକ୍ରେ ପଣ
ଲକ୍ଷ ଭେଦ କନ୍ୟା ଆଣିଲେ ଅରଜୁନ ହୋ । ୭ ।

ଏ…ଲକ୍ଷ ତ ବନ୍ଧ କନ୍ୟା ଆଣିଲେ ପାଞ୍ଚାଳ
ଲକ୍ଷେ ରଜା ମୁଖେ ତ ଲଗାଇଲେ କାଳି ହୋ । ୮ ।

ଏ…ଗନ୍ଧର ବଳରେ ତ ଉଡ଼ଇ ମୁଗବୋଡ
ପତିତପାବନ ଯେ ବାନା ମୋ ଉଡ଼ୁଛି
ଛିଅ ଦେଇ ପୁଅ ହୋ ପାଇଛି
ଓଡ଼ିଶା ଗଜପତି ଯେ । ୯ ।

ଏ…ହର ଅରଜୁନ ତ ମାଉସୀ ପୁଅ ଭାଇ
ଜୀବ ଗଲା ବେଳେ ହେ ଅର୍ଜୁନ
ନ ଛୁଇଁଲ କେହି
ନ ଛୁଅଁ ନ ଛୁଅଁ ବାବୁ ବଢ଼ାଇ ଦିଅ ଧନୁ
ଧନୁହୁଲେ ପ୍ରାଣ ହୋ ହାରିଲେ
ନବୀନ କଳାକାହ୍ନୁ ଯେ । ୧୦ ।

ଏ…ହାଣିଲ୍ ମହାନମ୍ବ ଭସାଇ ଦେଲ୍ ଜଳେ
ସେ ଯାଇଁ ଲଖିଲା ବାଙ୍କି ମୁହାଣରେ
ଦେବତା ବୋଲି ପୂଜା ଯେ ପାଇଲା
ବଡ଼ ଦେଉଳରେ ହୋ । ୧୧ ।
(ଦାଣପଲ୍ଲା)

ଏ…ବଡ଼ ଦେଉଳରେ କଏସେ ବାନ୍ଧେ ନେତ
ଓଡ଼ିଶାକୁ ଦାଗ ଯେ ବାରେଣୀ
ନନ୍ଦିଘୋଷ ରଥ ଯେ । ୧୨ ।

ଏ…ଅଷାଢ଼ ମାସେ ସଖି ମେଘ ଘଡ଼ଘଡ଼ି
ବାହାରିଲେ ପ୍ରଭୁ ଯେ ନନ୍ଦିଘୋଷ ଚଢ଼ି
ନନ୍ଦିଘୋଷ ରଥେ ଯେ ନନ୍ଦର ନନ୍ଦନ
ତାଳଧ୍ୱଜ ରଥେ ବିଜେ ଭାଇ ତ ବଳରାମ
ଦେବୀ ରଥେ ଚଢ଼ିଣ ସୁଭଦ୍ରା
ଗୁଣ୍ଡିଚା ଗମନ ହୋ । ୧୩ ।
(ବଡ଼ଡଣା)

ଏ•••ଅଖୁବାଡ଼କ ତ ନହସି ପଡ଼େ ଗଜ
ବଡ଼ଦାଣ୍ଡେ ଦେଖି ନେ ଅସିଲ
କାଳିଆ ସୁନାସନ ହୋ । ୧୪ ।

ଏ•••କାଳିଆ ସୁନାସଜକୁ କନକପଦ୍ମ ଶହେ
ଜମ୍ବୁନଦ ସୁନା ମୋ ଥୁପି ଥୁପି ବୁହେ ହୋ । ୧୫ ।

ଏ•••ଜଗନ୍ନାଥ ପ୍ରଭୁତ ସ୍ନାହାନ ମଣ୍ଡପରେ
ଲକ୍ଷେ ଯୋଡ଼ା ପାଣି ଯେ ନହୁଡ଼ନ୍ତି ଶିରେ
ମଥା ଗରୁ ହେଲ ତ ହୋଇଲ ମହାଜର
ଭଉଣୀ ସଙ୍ଗେ ଭାଇ ମୋ
ପଶିଲେ ଅଣସର ହୋ । ୧୬ ।
(ବଣେଇ)

ଏ•••କାଳିଆ କାଳିଆ ତ ବୋଲନ୍ତି ଯାହାକୁ
ବାରଣ ବଢ଼େଇ ତା ରଥ ଗଢ଼ିବାକୁ
ତେରଶ ବ୍ରାହ୍ମଣ ତା ଭୋଗ ରାନ୍ଧିବାକୁ
ପହଣ୍ଡିକେ ପାଠ ହୋ ମୁଚୁଳା
କାଳିଆ ବସିବାକୁ ହୋ । ୧୭ ।

ଏ•••ମୁଚୁଳା ଫାଟି ତୁଳା ଉଡ଼ିଲ ଗଗନରେ
ଝୁଲ ତ ଝୋପି ଝୋପି ହେ ସେବକେ
ଚନ୍ଦନ ପିଚକାରେ ହୋ । ୧୮ ।

(ପାଟକୁଦ)

ଏ•••ଗୁଣ୍ଡିଚା ମଣ୍ଡପ ମୋ ଚଉଦ ଯୋଜନ
ଖନ୍ଦାରେ ମହାସୁଆର ଯୋଟଣୋ ବଳରାମ
ଗମ୍ଭୀର ଜହାଜେ ତ ସୁଭଦ୍ରା ହୋ
ଖେଳନ୍ତି ଭଗବାନ ହୋ । ୧୯ ।

ଏ•••ଖେଳୁ ଖେଳୁ ଶବ ଯେ ଅଢ଼େଇ ପ୍ରହର
ସୁଦର୍ଶନ ତେଜ ଲାଗି ତ ପଳାଏ ଅନ୍ଧାର

ବରୁଣଜେମା ପୁଛନ୍ତ· ନଣନ୍ଦଙ୍କୁ ଯାଇ
ଅଳକୁକ ନଣନ୍ଦ କେଉଁଠି ଥିଲୁ ଲୁଚି
ଭ୍ରୂଆମ୍ବୁଣୀ ହୋଇ ତ ସରମ ନ କଲୁ
ଭାଇ ସଙ୍ଗେ ଜଣେ ହୋଇ ଯେ
ସପତଣୀ ହେଲୁ ଯେ । ୨୦ ।

ଏ···ସପତଣୀ ତୁହେଁ ମୁଁ ଗୋ ଜନକଦୁଲଣି
ଗୋପପୁତ୍ରର ଅଛୁ ଯେ ଚନ୍ଦ୍ରା ସପତଣୀ
ରାଧିକା ମାନଭଞ୍ଜନ କଲେକ ଶିଗ୍ରପଛ
ବଡ଼ ଦେଉଳେ ପଶିଲେ ଯେ
ବରଷାରେ ତନ୍ତ୍ର ହୋ । ୨୧ ।

ଏ···ଗୁଣ୍ଡିଚ୍ଚ ଘରକୁ ଯେ ବାହୁଡ଼ା ଘର କୋଣେ
ମୋ ଷୋଳ ଚକ ରଡ଼ ଯେ ଦେଉଛୁ
କାଳିଆ ପାଦଦାଣ୍ଡେ ହୋ । ୨୨ ।

( ତେଲଙ୍ଗ )

ଏ···ଜଗନ୍ନାଥ ପ୍ରଭୁ ହେଲେ ବଶବ ବନ୍ଦାଣୀ
ଖମ୍ବକେ ଲଗେଇଲେ ଷୋଳ ଷୋଳ ଶେଣୀ
ଶେଣୀକେ ସାତକାଣ୍ଡ କାଣ୍ଡକେ ବତା ତନ
ଗମ୍ଭୀର ଉଝଟିଲ କଳା ତ ମୁଗୁନ ହୋ । ୨୩ ।

ଏ···କଳା ତ ମୁଗୁନ ହୋ ପାଝଯାକେ ସାର
ପଥୁରଆ ଲହଣକୁ ଲହୁଣୀ ପ୍ରକାର
ନହଣ ହେଲ ଥୁଣ୍ଟା ମୁଗୁନ ଅଷ୍ଟେ ପଡ଼
ଚନ୍ଦନ ଶଇଲକୁ ସର୍ପେ ତ ଛନ୍ତ ବେଢ଼ି ହୋ । ୨୪ ।

( ପାଲଲହଡ଼ା )

ଏ···ଗୋବନ୍ଦ ଗୋପାଲ ଯେ ନାମ ଗୋବର୍ଦ୍ଧନ
ଗରୁଡ଼ ପିଠିରେ ଯେ ବଜପୃ ଭଗବାନ
ନେଇ ତୁ ଦେଖାଇବୁ ରେ ଗରୁଡ଼
ଦ୍ୱାରକା ଭୁବନ ହୋ । ୨୫ ।

ଏ•••ଦ୍ୱାରକା ଭୁବନ ଯେ ଈଶ୍ୱରଙ୍କ ସ୍ଥାନ
ତହିଁ ତ ମଲେ ଗତ ଯେ ମୁକତ
ବଇକୁଣ୍ଠ ସ୍ଥାନ ହୋ । ୨୬ ।
( ପୂର୍ବଦଗ, ନରସିଂହପୁର )

ଏ•••ବଡ଼ ଦେଉଳକୁ ଯେ ଚଉଣି କବାଟ
ମାଛିକୁ ଶାଙ୍କୋଳ ହେ ଯମକୁ ନାହିଁ ବାଟ
କବାଟ ଫେଡ଼ ଗୁହାଁ ମୂଢ଼ ରେ ମନାଇ
ବସିଛି ଗୋଲହାଟ ହୋ । ୨୭ ।

ଏ•••ଗୋଲହାଟ ମଧେ ଯେ ଶ୍ରୀହରି ପଛଣା
ହରି ନାମ ତହିଁ ଯେ ହୁଅଇ ବିକା କିଣା
ହାଟ ତ ଭାଗିଗଲେ ମୂଢ଼ ରେ ମନାଇଁ
ବସିଲ ଠାବ ବଣା ହୋ । ୨୮ ।
( ଶଙ୍ଖାମାର, ବଡ଼ାମ୍ବା )



# କୃଷକ ବୋଲି

## ଦ୍ୱିତୀୟ ଭାଗ



### ଶଗଡ଼ିଆ ଗୀତ ( ୧ )

୧—ଏ···ଦୂରକୁ ସୁନ୍ଦର ତ ପରବତ ମାଳ
ଗାଁକୁ ସୁନ୍ଦର ତ ନଡ଼ିଆ ଗୁଆ ଡାଳ
ବନ୍ଧୁକୁ ସୁନ୍ଦର ତ ଦଶଇ ଦୂର ବାଟ
ସିନ୍ଧୁକୁ ସୁନ୍ଦର ତ ନନ୍ଦଡ଼ାଭଙ୍ଗା ଘାଟ
ସଭାକୁ ସୁନ୍ଦର ତ ପଧାନ ସାନଭାଇ
ଗୋଠକୁ ସୁନ୍ଦର ତ ଦୁହାଁଳିଆ ଗାଈ
ଘରକୁ ସୁନ୍ଦର ଯେବେ ଲୋ ଘରଣୀ
ନ ଯିବୁ ବାପ ଘର ଲୋ । ହ, ହ, ହ ।

୨—ଏ···ବଉଳା ବଳଦର ତ ଗରୁଡମ ଗୁଳି
ଗୁଳି ଯେ ଥିର ଥିରରେ ବଉଳା
ଉଡ଼ିବ ଗଙ୍ଗା ବାଲି ରେ । ହ, ହ, ହ ।

୩— ଏ···ଘଣ୍ଟି ଗଢ଼େଇଲି ପିତଳ ମିଶେଇ
ସେ ଘଣ୍ଟି ବାନ୍ଧିଲି ବଉଳା ବେକେ ନେଇ
କାହିଁ ତ ହଜାଇଲୁ ରେ ବଉଳା
ଖୋଲ ଖଣ୍ଡା ନେଇ— । ଅ, ହ, ହ ।

୪— ଏ···ଜେଇଁ ନାହିଁ ଖାଲ ତ ଜେଇଁ ନାହିଁ ଖଣ୍ଡା
ଯାଇଥିଲି ନଈ ଯେ ସେପାର
ସୁଏ ହେଲ ବଣ୍ଡା ହୋ । ହ, ହ ।

( କଳାମାଟିଆ, ନରସିଂହପୁର )

୫— ଏ···ଭିତର ପଗ୍ଡ଼ରେଇ କତୁର୍ରିଆ ଭଇ
ପାହାନ୍ତିଆ ତରା ଯେ ବାଙ୍କିଆ ହୁଲଠେଇ ହୋ ।

୬— ଏ···ଗାଧୋଇ ପାଧୋଇ ମାଧୋଇ ଘରକୁ ପଳାସଇ
ପଖାଳ ଭାତେ ମାଡ଼ ଯେ କରବ
ଶାଗ ତ ଖରଡ଼ାଇ ରେ—ହ, ହ. ।
( ଏକତାଲ, ନରସିଂହପୁର )

୭— ଏ···ବାର ତ ବାଇଗଣି ଯେ ଆଙ୍କଡ଼ ହେଲେ ବୋହୂ
ବସି ତ ଅଛୁ ବୁଢ଼ା ରେ ମାହୁନ୍ଦା
ଗାଲରେ ହାତ ଦେଇ ହୋ—ହ, ହ ।

୮— ଏ···ହାଣି ଦେଲ ବାଉଁଶ ନଟେଇ ଦେଲ କଣି
ଦଦରା ମାଠିଅକୁ ଲୋ ଦୂର ଦେଣ ପାଣି
ଯେବେ ତୁ ମାଠିଅ ରେ ରଖିବୁ ମହତ
ମୁଁ ତ କୁଳର ଭୁଆସୁଣୀ ରେ—ହ, ହ ।

୯— ଏ···ଶଗଡ଼ ଉଠାଣିରେ ବଳଦକୁ ଭଡ଼ା
ଗୋର କ ଉଠାଣି ଧନ ରେ
ପଡ଼ିଛୁ କୁମ୍ଭ ଯୋଡ଼ା ହୋ—ହ, ହ ।

୧୦— ଏ···ଶଗଡ଼ିଆ ଭାଇ ତୁରେ ଶଗଡ଼ରେ ଯାଉ
କାଠିମରା ଭାତ ଯେ ଲୁଣ ଘେନ ଖାଉ ହୋ—ହ, ହ ।

୧୧— ଏ···କାନ୍ଦଇ ବେହେରାଣୀ ପୁରୁଣା ଗୋଠ ମାଡ଼ି
କୋଉଣ୍ଡି ଗୋଠେ ମଲ ହେ ବେହେରା
ପଡ଼ିଛୁ ଝାମ୍ପି ବାଡ଼ି ହୋ—ହ, ହ ।

୧୨— ଏ···କାନ୍ଦଇ ବେହେରାଣୀ ଗୋଠକୁ ଅନାଇଁ
ଝୀକା ଗୁଉଁରିଆରେ ଦାଚୁରି
ଗୋଠରେ ଦଶୁ ନାହିଁ ହୋ—ହ, ହ ।
( ଢେଙ୍କାନାଳ )

୧୩— ଏ···ରଜା ହେଲେ ଯୋଗୀ ଯେ
ରାଣୀ ଯୋଗୀଅଣୀ
ପଥର କୁଡ଼ଅକୁ ଯୋଡ଼ ଯୋଡ଼ ପାଣି
କେତେ କଷ୍ଟ ଦେଲା ଯେ ବିଧାତା
ଅଯୋଧ୍ୟାରୁ ଅଣି ଯେ—ହ, ହ, ହ ।

୧୪— ଏ···ମାଇଲା କାବତ ମୁଁ ଧଇଲା ପଥରରେ
ଭାବ ବେଳେ ଘାଡ଼ ହେ ଯାଉଛ
ଚଡ଼ାଇ ବିନୋଦରେ
ଚଡ଼ାଇ ବିନୋଦରେ ଗଲେକ ରଘୁନାଥ
ବାହୁନି କାନ୍ଦନ୍ତି ଜେମା ଗୋ ଜାନକୀ
ରଥ ତ ଗୁରୁପାଖ ଯେ—ହ, ହ ।
( ଶ୍ରଦ୍ଧାପୁର, ନରସିଂହପୁର )

୧୫— ଏ···ବନସ୍ତ ପୋଡ଼ାଲରୁ ଶାଳୁଅ ମେଲେ ଗଜା
ଦଉଡ଼ା ପକାଇ ଦସ୍ତି ସାଧେ ବଙ୍ଗଦେଶ ରାଜା
ତା ନାମ ଗୋବନ୍ଦେଇ
ବାର ବରଷକୁ ରାଜା
ଯାଉଛୁ ଯୋଗି ହୋଇ ହୋ— ହ, ହ ।

୧୬— ଏ···କାହିଁକ କାନ୍ଦୁ ଗୋସ୍ୱା ତୋହର କଏ ମଲା
ବାର ବରଷର ଟୋକା ହୋ ଦଅର
ଯୋଗୀତ ହୋଇଗଲା ।
ଯୋଗୀ ହୋଇଯାଇ ତ ନ ବୋହିବ କନ୍ଥା
ଦ୍ୱାରେ ଦ୍ୱାରେ ଭିକ୍ଷା ହୋ ମାଗିବ
ନ ବୋଲିବ ମାତା ଯେ— ହ, ହ ।

୧୭— ଏ···ନଈ ତ ନଈ ଯେ ବାର ବାଙ୍କେ ନଈ
ଅଣ୍ଡିରା ରାଜହଂସ ଯାଇଛୁ ପାଣି ଖାଇ
ମୋ ପକ୍ଷୀର ପାଦ ନାହିଁ ଡାଳେ ତ ବସଇ
ଏହା ତୁ କହି ଦେବୁ ରେ ପାଠୁଆ
ମୂରୁଖ ପଗୁରଇ ହୋ— ହ-ହ ।

୧୮— ଏ···ମନ ତ ପଗ୍ଚୁରଇ ଚଇତନ ଭାଇ
ଗୁରୁ ମୋ ଦରଶନ କେଉଁଠାରେ ପାଇ
ଅସିବୁ ସିବୁ ମନ ରେ ସନ୍ଧ୍ୟା ଧୂପ ବେଳେ
ଗୁରୁ ମୋ ଦରଶନ ପାଇବୁ ଗରୁଡ଼ ପଛରେ
ଗରୁଡ଼ ଗରୁଡ଼ ତ ଗରୁଡ଼ବାହନ
ନେଇ ତ ଦେଖେଇବ ଗରୁଡ଼ ଦ୍ୱାରକାଭୁବନ
ଦ୍ୱାରକା ଭୁବନେ ତ ଈଶ୍ୱରଙ୍କ ସ୍ଥାନ
ଯହିଁ ମଲେ ତ ଗତ ମୁକତ
ପିଣ୍ଡକୁ କାରଣ ହୋ— ହ, ହ ।

୧୯— ଏ···ନଈ ତ ନଈ ଯେ ବାର ବାଙ୍କେ ନଈ
ଆଗରେ ପାଞ୍ଚ ହଳ ପଛରେ ଗୃଲେ ମଇ
ଡାହାଣ ବଳଦ ଝାଲେଣ୍ଟ କାଠି ଖରେ ବାଇ ହୋ ।

୨୦— ଏ···ଖିବା ତ ଧନ ନଈ ବଢ଼ଇ କେମନ୍ତେ
ମାରୁଛୁ ନହଡ଼ା ଯେ ପରବତ ଉପରେ
ମହା ତ ଦାରୁମାନେ ଯାଉଛନ୍ତି ଭାସି
କାଳ ତ ସର୍ପମାନେ ଫେଣା ଯେ ଟେକିଛନ୍ତି
ସର୍ପକୁ ଶୃଙ୍ଖଳ ଯେବେ ହୋ ଗରଜନ
ବ୍ରହ୍ମାଏ ବର୍ଗୁରନ୍ତି ହୋ ।

୨୧— ଏ···ପୋଖରୀ ହୁଡ଼ାଟି ଗୃର ଚାଉରସ
ଡିମ୍ବ ପାରିଥିଲା ଅଣ୍ଡିରା ରାଜହଂସ
ଏକ ଗୋଟି ଡିମ୍ବକୁ ଦୁଇଗୋଟି ଛୁଆ
ଗୋଟିଏ ନୀଳବର୍ଣ୍ଣ ଗୋଟିଏ ହଳଦିଆ
ମାଆ ନାହିଁ ପିଲା ଦାଣ୍ଡରେ ଖେଳୁଛି
ବାପ ନାହିଁ ପିଲା ଶୂନ୍ୟରେ ଉଡ଼ୁଛି ହୋ । ହ, ହ, ହ ।

୨୨— ଏ···ସାତ ତାଳେ ପାଣିକି ଚଉଦ ତାଳେ ପଙ୍କ
ଯହିଁରେ ବସା କଲା ମଣିଚୂଳ ସର୍ପ

ମଣିଚୂଳ ସର୍ପର ଯେ ଦୁର୍‌ କର୍ଣ୍ଣ ନାହିଁ
ଗାଈକୁ ଛୁଇଁଲେ ଯେ ବାଛୁରୀ ମରଇ
ଆଜ ତ ଗୋପପୁରେ ଯେ ଗାଉଡ଼
ତା ବିଷ ଝଡ଼ୁନାହିଁ ଯେ— । ହ, ହ ।

୨୩— ଏ···ଶାଗ ଶାଗ ବୋଲି ଡାକଗଲା ବୁଢ଼ୀ
ଶାଗ ମୁଁ ତୋଳିଗଲି କଇଁଶିକାକୁଡ଼ି
ଶାଗ ତ ନେଉଟିଆ ମଦରଙ୍ଗା କଡ଼ି
ହେଙ୍ଗୁ ତ ମହିଚରେ ଶାଗ ତ ସୁଆଦ
ରାନ୍ଧୁଣୀ ଅଧା ବୁଢ଼ୀ ହୋ । ହ, ହ ।

୨୦— ଏ···ହାଣିଦେଲି ମାଟି ଠେକିଦେଲି ଗୁଡ଼ା
ବାଇଗଣ ଲଗା ମୋତେ କହିଦେବ ବୁଢ଼ା
କରମ ଅବଗୁଣେ ଫଳିଲା ବାଇଗଣ
ଯୋଡ଼ା ଯୋଡ଼ା
ଯୋଡ଼ା ଯୋଡ଼ା ଦେଖି ପଧାନ ନ ପାରିଲା ତେଜିଁ
ବାଇଗଣ ତ ତୋଳୁଅ
ତହିଁ ତ ଭାବ ନାହିଁ ହୋ ।

୨୪— ଏ···ପଧାନ ଘରର ତ ଲଣ୍ଡି ସିଙ୍ଗି ଗାଈ
ପଧାନ ନାଇଚ ଯେ ଜାଉଁଳା ଯନ୍ତ୍ର ବାହି
ମୋତେ ସାଥି କର ବୁଢ଼ା ହେ ପଧାନ
ମାରିବା ଟିହିଲାଇ ଯେ ।

୨୨— ଏ···ଖିରା କଲା ବୋଲି ତ ଗଲି ଶୀତଳକୁ
ବୋହୁଛୁ ମଳୟ ଯେବେ ହୋ ପବନ
ଗଙ୍ଗା ଅଧରକୁ ଯେ ।

୨୭— ଏ···ବଳଦ ଶୋଷେଇଲେ ଡାଳୁଅ ପାଳ ଖାଇ
ଭାଉଜ ଭାତ ନେଲା ଦାଅର ଖାଉ ନାହିଁ
ଖାଅ ଖାଅ ଦାଅର ମୁହଁକୁ ଅନାଇଁ
ଘରକୁ ଗଲେ ବୋଧ ହେବ କରିବ
ମୋ ଖାଉନ୍ଦ ଠିକ ଭାଇ ହୋ—ହ, ହ ।

୨୮— ଏ…ବାଡ଼ର ମଜନା ତ ଦୁଆରକୁ ଘର
କଥା ଲହସରେ ହୋ ବୋଇଲି
ଦଅରକୁ ଭାଇ ହେ! ।

୨୯— ଏ…ଗଡ଼ର ବାଲରେ ତ ମୋଟି ମୋଟି କଥା
ମୋତେ ଘରଡ଼ ଦଅର ନ ହେବୁ ଅନେ ବାହା
ଯେବେ ବାଘ ହେବୁ ତୁ ମାଆବାପ ବୋଲେ
ଛୁଣ୍ଡାଇବ ଦୋଳ ଯେ ମୁଣ୍ଡକୁ
ବରଣ ବେଦୀ ତଳେ ଯେ ।

୩୦— ଏ…ନ ଛୁଣ୍ଡା ନ ଛୁଣ୍ଡା ବୋହୂ ଏ ଦୋଳ ମୁଣ୍ଡକୁ
ଯେତେକ ପାଇବା ମୁଁ ଦାନ ଯଉତୁକ
ଗୋଡ଼କୁ ଗୋଡ଼ ବଲା ମଥାକୁ ମଥାମଣି
ଅଣ୍ଟର ଦରବେ ଅଣିବ ବୋହୂ ଲୋ
ତୋର ସାଙ୍ଗକୁ ସଉତୁଣୀ ଯେ— ହ, ହ ।

୩୧— ଏ…ଭଗା ତ ଅରଟକୁ ଭଗା ଗଉଚୁଣି
ହରେ ନାମ ଭଜରେ ବଉଳା
ଦଶା ଫିଟିବ ଏହ୍ନକ୍ଷଣି ହୋ ।

୩୨— ଏ…ଭଗିଚୁ ଜୁଆଳ ମୋ ଛୁଡ଼ଗଲା ଯୋଇ
ଅଦଆ ସାହୁ ଡାକୁଚୁ ଯେ
ଘରତରୁ ହଲ ଯୋଇ ।
ଅଦଆ ସାହୁକୁ ମୋ ଠୁଲେ ଲଜ ନାହିଁ
ଶୁଖିଲା ସୂଆଗୁଚ୍ଛ ରେ ଫିଠି ତ ସାଉଁଲାଇ ହୋ ।

୩୩— ଏ…କାଳୀର ଗୋସ୍ୱାର ଯେ ଏକଇ ବୟସୀ
କାଳୀକୁ ଦଂଶିଲା ଯେ କଉଡ଼ିଆ ଚାଉ
ଗୋସ୍ୱା ଦେହେ ବିଷ ତ ଘାରିଲା
ବର୍ଣ୍ଣେ ତା ହଳଦୀ କ ଯେ ।
( ହରପୁର, ନରସିଂହପୁର )

୩୪ — ଏ···ଠୋକସ୍ତି କିଅରରେ ହଜାଲ୍ଲି କସ୍ୱାଠ
ଠଳିପଡ଼େ ଠୋକା ମନ ବଡ଼ ହୋ ଉଛାଠ
ପୈଠିବ ନିଜ ବାଠ ହୋ ।

୩୫— ଏ···ଡାଲ ତ ସଲଗ ଲେ ଖଜୁସ୍ତି ଅଡବାଙ୍କ
ସାଉଁଳିଲ୍ଲ କେଶ ଯେ ନ ଭାଞ୍ଜିଇ
ଗଞ୍ଜାଇ ଅଡ଼ ଝାଙ୍କ ଯେ ।

୩୬— ଏ···ଗୁଲ ଗୁଲ ବଲଦରେ ଟୁଣ୍ଡିଡାଉ ପଥ
ଶ୍ରୀହର ଧଇଲେ ଲେ ସୁନାର ଲଙ୍ଗଲ
ଅର୍ଜୁନ ବାହୁ ରଥ ଯେ ।
( ଅନନ୍ଦପୁର )

## ଶଗଡ଼ିଆ ଗୀତ (୨)

( ବୋଇତ ବୋଲ )

୧— ଏ ··ଡେଙ୍ଗା ତାଳଗଛ ତ ଖାଇଲେ ବାଦୁଡ଼ି
ବୋଇତୁଁ ସାତ ଭାଇ ନଇଲେ ବାହୁଡ଼ି
ବାପଘରେ ଝିଅ ହୋ ରହିଲ୍ଲି
କରମ ଅଦର ହୋ ।

୨— ଏ···ଉଡ଼ଇ ଗେଣ୍ଡାଳିଆ ନ ବସଇ ଡାଳେ
ମଇର ସ୍ୱାଇଜ ଜଡ଼ା ହୋ ମାଲପା
ଡେଙ୍ଗେଇ ଅଗବାଳେ ହୋ ।

୩— ଏ···ଉଡ଼ଇ ଗେଣ୍ଡାଳିଆ ନ ବସଇ ଡାଳେ
ମଇର ସ୍ୱାଇଜ ଜଡ଼ା ହୋ ମାଲପା
ବାଙ୍ଗେର କଳାବାଳେ ହୋ ।

୪— ଏ···ବୋଇତ ଗୁହ୍ରପାଖେ ମୁଁ ବୁଲିଲି ବେଢ଼ାଏ
ସିମିଳା ଦେଶ ଶିଙ୍ଗ ହୋ ପାନିଅଁ
ଦାନ୍ତ ତ ବଣାଣଏ ହୋ ।

୫— ଏ···ସାଧବାଣୀ ପୂଜଇ କାଳୀ·ଶମ୍ଭେଶ୍ୱରୀ
ସିମ୍ମଳ ଦ୍ୱୀପୁଁ ବୋଇତ ହୋ
ଆସିବଣି ଫେରି
ଲଙ୍କା ଦ୍ୱୀପେ ଅଟ୍କାଲ ଛୁଣ୍ଡି ନେ
ବାଉଳା ବତାସ
ଅମାପ ଦରିଆରେ ମୋ ସାଧବ
ଅଣଶ୍ୱାସ ହୋ ।
ରମଣୀମଣି ଲମ୍ବା କୁଞ୍ଚିତ ଭେରିବାଳ
ସୁମରି କାନ୍ଦେ ସାଧବ ହୋ
ଅକାତ ସିନ୍ଧୁଜଳ ହୋ ।

୬— ଏ···ବାଘୁା ଚଢ଼େଇର ଅଗଡାଳେ ବସା
ବାଆଁକଲେ ଛୁଡ଼ ଯେ ପଡ଼ବ
ଠାକୁର ଭରସା ହୋ ।
ଠାକୁର ଭରସାରେ ତ
ବୋଇତ ଗୁଲେ ଏକା
ସାତ ସମୁଦ୍ର ଆରପାରି ହୋ
କରିବ କଣା ବକା ହୋ ।
(ଟଂପେଶ୍ୱର, ନରସିଂହପୁର)

୭— ଏ···ବୋଇତ ମେଲିଛୁ ହୋ ହାତି ଦ୍ୱୀପ ତଳେ
ଭଉଣୀ ରୁସିଛୁ ଗମ୍ଭୀର ଉହାଳରେ
ନ ରୁଷ ନ ରୁଷ ଭଉଣୀ ଆଣିଅଛୁ ବର
ସଲଖ ସୁନ୍ଦର ଭେଣ୍ଡା ଯେ
କାଉଁରି ଦେଶେ ଘର ହୋ— ।

୮— ଏ···ପୃଥ୍ୱୀ ପର୍ଯ୍ୟଟନ ତ କରୁଛୁ ଏକା ଥରେ
ତା ସରସମ ନାହିଁ ହୋ ଘୋଡ଼ା ଦଅଡ଼ରେ
ଘୋଡ଼ା ଗୁଡ଼ତଅଛୁ କଏ ସେ ଦେବ ଝିଅ
ନାଡ କଲ ଘୋଡ଼ା ହୋ ଦଅଡ଼
ପାଷାଣ କଲ ଦେହ ହୋ ।

୯— ଏ···ମାଉସୀ ଘରକୁ ଯେ ଝିଅଟି ଗଲା ରୁଷି
ବାଛୁ ବର ଦେବୁ ଲୋ ମାଉସୀ
କାଇମାଲେ ପଣି
ଅଛୁ ଅଛୁ ବର ଝିଅ
ଜମ୍ବୁ ଦ୍ୱୀପେ ଘର
କିସ ବାହୁନାରେ ଲୋ ଝିଅସ୍ତୀ
ଡାଉ ଗୋଡ଼ହି ଗୋଦର—ହୋ ।
( ବୋକୋଡ଼ା, ନରସିଂହପୁର )

## ଶଗଡ଼ିଆ ଗୀତ (୩)

( ଲଙ୍କା ଦାଣ୍ଡଧୂଆ )

୧— ଏ···କହନ୍ତି ପାର୍ବତୀ ଆଗରେ ଶୂଳପାଣି
କାନ୍ଦଇ ଅଯୋଧ୍ୟାର କଉଶଲ୍ୟା ରାଣୀ
କଲେ ଯେ ଗମନ ରାମ ଅଗମ୍ୟ ବନମାର୍ଗେ
କମଳମୁଖୀ ସୀତା ମୋ ଗୋଡ଼ାଇ ଗଲା ସଙ୍ଗେ ହୋ ।

୨— ଏ···କ୍ଷଣକେ ଛାଡ଼ିଲେ ରାମ ଅଯୋଧ୍ୟାର ଆଶ
ଖୋଜି କନ୍ଦମୂଳ ଯେ ତରୁତଳେ ବାସ
ଖଟଣି ପାରୁଣେ ତ ଜନକକୁମାରୀ
ଖଣ୍ଡେ ଦୂରେ ଜଗିଥାନ୍ତି ଯେ ଲକ୍ଷ୍ମଣ ଧନୁର୍ଧାରୀ ହୋ ।

୩—ଏ ···ଗହନ ବନେ ରାମ ବୁଲୁଥିବେ କାହିଁ
ଗାଆଁ ନ ମାଡ଼ିବ କକେୟୀ ଅଛୁ କହି
ଗୋଡ଼ାଇ ଗଲେ ଲକ୍ଷ୍ମଣ ଭାଇର କଷ୍ଟ ଦେଖି
ଗଜେନ୍ଦ୍ରଗମନୀ ଜାନକୀ ଯେ ଶରଦଚନ୍ଦ୍ରମୁଖୀ ହୋ ।

୪—ଏ···ଘୋର ବନସ୍ତେ ରାମ ତରୁତଳେ ବାସ
ଘର ତୋଳି ବସିଲେ ବରଷା ଚାରିମାସ
ଘୋର ବନେ ରାମର ବନ୍ଧୁ ସଖା ନାହିଁ
ଘେନି କୋଳରେ ବସିଲେ ମୋ
ବସାଇ ବଇଦେହୀ ହୋ ।

୫— ଏ···ନହୁଲ ବୟସୀ ମୋ ସୀତା ରଘୁନାଥ
ନମୀଣି ପର୍ଯ୍ୟନ୍ତେ ବନସ୍ତେ କଲେ ବାସ
ନିର୍ଦ୍ଦୟା କଇକେୟୀ ଛଦ୍ମ ବୁଦ୍ଧି କଲା
ନବୀନ ଘନଶ୍ୟାମ ମୂରତିକୁ ଯେ
ବନକୁ ପେଷିଦେଲା ହୋ ।

୬— ଏ···ଚଉଦ ବରଷ ରାମ ବୁଲିଲେ ଘୋର ବନ
ଚିନ୍ତାଭରେ ରାମର ତନୁ ହେଲା କ୍ଷୀଣ
ଚରଚନ୍ତି ଲକ୍ଷ୍ମଣ ବଣରୁ ମୃଗ ମାରି
ଚରଣ ଚୁପନ୍ତି ଯେ ଜନକକୁମାରୀ ହୋ ।

୭— ଏ···ଛତ୍ରିବର ରାମର ଅଯୋଧ୍ୟା ଭୁବନ
ଛତ୍ରଦଣ୍ଡ ଟେକାଇ ଖଟନ୍ତି ମନ୍ତ୍ରୀଗଣ
ଛଦ୍ମ ପାଞ୍ଚିଲେ ରଜା ଦଶଦଶ ନାଶ
ଛାର ସ୍ତ୍ରୀ ବୋଲେ ହୋ ପଡ଼ିଲେ
ହୋଇଣ ସ୍ତ୍ରୀ ବଶ ହୋ ।

୮— ଏ···ଯହୁଁ ଅଯୋଧ୍ୟାରୁ ଗଲେକ ରଘୁନାଥ
ଜୀବନ ହରାଇଲେ ନୃପତି ଦଶରଥ
ଜାଣିଣ ବଶିଷ୍ଠ ପେଷି ଦେଲେ ଚର
ଯା—ବେଗେ ଭରତକୁ ଅଣିବ ଅଛଇ ଅଜାଘର ହୋ ।

୯— ଏ···ଝୁରଇ ଭରତବୀର ସୁମରି ରଘୁସାଇଁ
ଝର ଝର ନୟନୁଁ ଅଶ୍ରୁ ଯାଏ ବୋହି
ଝାଡ଼ ପଶୁ ସଙ୍ଗେ ରାମ ହୋଇବେ ଗଣତା
ଝାଡ଼ ଖଣ୍ଡେ କଷ୍ଟ ତ ସହିଲେ ମୋ
ଲକ୍ଷ୍ମଣ ରାମ ସୀତା ହୋ ।

୧୦— ଏ···ନୃପତି ହୁଅନ୍ତେ ରାମ ଅଯୋଧ୍ୟା ଭୁବନ
ନକ୍ଷତ୍ରପନ୍ତି ଜାଣି ଖଟନ୍ତେ ମନ୍ତ୍ରୀଗଣ
ନବ ରତ୍ନ ହାର ଜାନକୀ ଗଳେ ଶୋହି
ନୂଆ ପାଟେ ଅଭିଷେକ ଯେ ହୁଅନ୍ତେ
ସୀତା ମାଈ ହୋ ।

୧୧— ଏ…ଟୀକାଫିତ ଅଟନ୍ତି ମୋର ରଘୁନାଥ
ଟାଣି ପଣେ ଖଟନ୍ତେ ଷୋଳପାଦ ଗତ
ଟାଣି କହୁବାରୁ ନାହାନ୍ତି ରହୁଥିଲେ
ଟେକି ଶିବଧନୁ ହୋ ଭାଙ୍ଗିଲେ
ସୀତାପ୍ରୀ ବାନ୍ଧି ବେଳେ ହୋ !

୧୨— ଏ…ଠିକେ ଭରଥ ଅଗେଣ ବଶିଷ୍ଠ ମୁନି ଭଣି
ଠିକେ ସତ୍ୟ କରାଇଲେ କଇକେୟୀ ରାଣୀ
ଠାକୁର ରଘୁନାଥ ଯିବେ ଘୋରବନ
ଠିକେ ରାଜ୍ୟ ପାଳିବ ଅଯୋଧ୍ୟା ଭୁବନ ହୋ ।

୧୩— ଏ…ଡାକି କଇକେୟୀ ଶ୍ରୀରାମ ଆଗେ କହି
ଡୋର କଉପୁନି ତପସ୍ୱୀ ବେଶ ହୋଇ
ଡାକି କହୁଛନ୍ତି ରାମ ନ ମାଡ଼ିବା ଦେଶ
ପିତା ସତ୍ୟ ପାଳିବୁ ରାମ ଚଉଦ ବରଷ ହୋ ।

୧୪— ଏ…ଢଳଇ ଭରଥବୀର ସୁମରି ରଘୁସାଇଁ
ଢଳଢଳ ନୟନୁଁ ଅଶ୍ରୁ ଯାଏ ବୋହି
ଢମ ପଣ କଲୁ ଯେ ମୋହର ଜନନୀ
ଢାଲେ କେତେହେଁ ଦେହ ଧରିବେ ତ
କଉଶଲ୍ୟା ରାଣୀ ହୋ ।

୧୫— ଏ…ଅନାସ୍ତ ବାଧିବ ରାମ ଲକ୍ଷଣ ବେନି ଭାଇ
ଅଗ୍ନିରୁ ଜନମ ତ ମୋ ଜାନକୀ ବଇଦେହୀ
ଅନାସ୍ତ କରିଗଲେ ଅଯୋଧ୍ୟା ଜନପ୍ରଜା
ଅବହେଳେ ପ୍ରାଣ ହାରିଲେ ଯେ ଦଶରଥ ରାଜା ହୋ ।

୧୬— ଏ…ତହୁଁ ତ ଭରଥବୀର ପାଚ ମନ୍ତ୍ରୀ ଘେନି
ମାତୃଗଣ ସହିତେ ବଶିଷ୍ଠ ତପି ମୁନି
ସୈନ୍ୟ ବଳ ଘେନି ଭରଥ କରଇ ଗମନ
ରହିଲେ ଭରଦ୍ୱାଜଙ୍କ ମଠେ ସେ ଭରଥ
ଶତ୍ରୁଘନ ହୋ ।

୧୭— ଏ···ଅଯୂ ଜାଣିବାକୁ ଭ୍ରତ ମୁନିଙ୍କି ପୁଛଇ
ଥିବେ କେଉଁ ଅରଣ୍ୟେ ରଘୁକୁଳସାଇଁ
ଅଯୂ ଜାଣି ମୁନି ବଦନ୍ତି ବାରତା
ଥିବେ ପଞ୍ଚବଟୀ ବନେ ମୋ ଲକ୍ଷ୍ମଣ
ରାମ ସୀତା ହୋ ।

୧୮— ଏ···ଦ୍ୱନେକ ରହି ଭ୍ରତ ତହୁଁ ଚଳି ଗଲେ
ଦୂରୁଁ ଦେଖି ଲକ୍ଷଣ ଶ୍ରୀରାମଙ୍କୁ ବୋଲେ
ଦଣ୍ଡଛନ୍ନ ଠେକାଇ ଅଯୋଧ୍ୟା ରାଜା ହେଲେ
ଦୁଇ ଭାଇନ୍ତି ମାରିବେ ଦଶରଥ ବଳେ ହୋ ।

୧୯— ଏ···ଧନୁଧର ସଜ ହୁଅ ହୋ ରଘୁନାଥ
ଧରଣୀ ଲୋଟାଇବ ଶତ୍ରୁଘନ ଭ୍ରତ
ଧର୍ମବନ୍ତୀ ସୀତଯୂ। ହରଷ ତାହା ଶୁଣି
ଧୀରେ ରଘୁନାଥ ବୋଲନ୍ତି କଅଁଳ ଗୁରୁବାଣୀ ହୋ ।

୨୦— ଏ···ନଇକ୍ଷଣଙ୍କୁ ଚୁହିଁ ଶ୍ରୀରାମଚନ୍ଦ୍ର କହି
ନେବାପାଇଁ ଆମ୍ଭନ୍ତ ଭରଥ ଅସିଛନ୍ତି
ନଇକ୍ଷଣ ଶାନ୍ତ ତ ରାମର ବୋଲ ଶୁଣି
ନୃପବୀର ରାମ ଚରଣ ନମଇଁ ଭ୍ରତ ମଣି ହୋ ।

୨୧— ଏ···ଫୁଟି ଅଶ୍ରୁଜଳ ବୋହଇ ବେନି ଆଖି
ଫାଟି ପଡୁ ହୃଦ ତ ଶ୍ରୀରାମ କଷ୍ଟ ଦେଖି
ଭାଇର ଶୋକଭରେ ଶ୍ରୀରାମଚନ୍ଦ୍ର କାନ୍ଦି
ଫୁଟା କମଳମୁହିଁ ମୋ ଜାନକୀ
ଶାଶୁ ପାଦେ ବନ୍ଦି ହୋ ।

୨୨— ଏ···ବଶିଷ୍ଠ କହନ୍ତି ଶୁଣ ହୋ ରାମ ରାଜା
ବହୁକଷ୍ଟ ପାଇଲେ ଅଯୋଧ୍ୟା ଜନପ୍ରଜା
ବଜେକର ଜାନକୀଙ୍କୁ ଘେନିଣ ରଥର
ବାହୁଡ଼ି ଅଯୋଧ୍ୟାପୁର ସୁଖେ ଭୋଗକର ହୋ ।

୨୩— ଏ···ଭାଳି ରଘୁନାଥ ଯେ ବଶିଷ୍ଠ ଆଗେ କହ
ଭଗ୍ନ ହେବ ପିତା ସତ୍ୟ ବାହୁଡ଼ି ଗଲେ ମୁହିଁ
ହେ ଗୁରୁ ଦଶରଥ ଧର୍ମ୍ମ ନାଶ ଯିବ
ଭରଥ ରାଜା ହେଉ ଅଯୋଧ୍ୟା
ସବୁରି ଧର୍ମ୍ମ ଥିବ.ହୋ ।

୨୪— ଏ···ମନ୍ତ୍ରୀ ପାତ୍ର ଘେନି ଭରଥ ପା ଏ ପଡ଼ି ଶୋଇ
ମୁଁ ଯେ ଅଯୋଧ୍ୟା ନ ଯିବି ରଘୁକୁଳସାଇଁ
ମନ ଜାଣି ରାଘବ ରତ୍ନ ପାଦୁକା ଦୁଇ ଦେଲେ
ମଣିମୟ ସିଂହାସନେ ଭରଥ ଛତ୍ର ତ ଧରାଇଲେ ହୋ ।

୨୫— ଏ···ଯହୁଁ ଭରଥବୀର ବାହୁଡ଼ା ବିଜେକଲେ
ଜାନକୀ ସଙ୍ଗତେ ରାମ ବନସ୍ତେ କ୍ରୀଡ଼ା କଲେ
ଯାଇଣ ଦଣ୍ଡକାଅରଣ୍ୟ ପରବେଶ
ଜାଣିଣ ରାବଣ ଅଇଲା ହୋଇ ଯତି ବେଶ ହୋ ।

୨୬— ଏ···ରାବଣ ମାୟାଭି ତପସ୍ୱୀ ରୂପ ଧରି
ମଢ଼ିଆ ଦୁଆରେ ତ କନକ ମୃଗ ଚରି
ରାମ ଗୋଡ଼ାବନ୍ତେ ମୃଗ ପଳାଇଣ ଗଲା
ରାମ ବାଣ ବାଜନ୍ତେ ଲକ୍ଷ୍ମଣେ ଡାକ ଦେଲା ହୋ ।

୨୭— ଏ···ଲକ୍ଷ୍ମଣ ଯାଆନ୍ତେ ରାବଣ ସୀତାୟା କର ଧରି
ଲଙ୍ଘି ପୁଷ୍ପକ ବିମାନେ ବସାଇ ଦଶଶିରୀ
ଲବଣ ସିନ୍ଧୁ ଡେଇଁ ଲଙ୍କାଗଡ଼େ ପଶି
ରଖିଲା ଅଶୋକ ବନରେ ଯେ ସୀତାୟା
ଶୁଭ୍ରକେଶୀ ହୋ ।

୨୮— ଏ ··ବାହୁଡ଼ି ଦେଖେ ରାମ ପତ୍ର କୁଡ଼ିଆ ଛୁଛା
ବାମେ ଜାନକୀ ଡାକି ପଡ଼ିଗଲେ ମୂର୍ଚ୍ଛା
ବନ ଜୀବ ଜନ୍ତୁଙ୍କୁ ପଚାରନ୍ତି ଦେଖି
ବଇଦେହୀ ମୋ କୁରଙ୍ଗନୟନୀ
ଲୁଚିଛି କେଉଁଠି ହୋ ।

୨୯— ଏ···ସୀତା ସୀତା ଡାକି ରାମ ତହୁଁ ଚଳିଗଲେ
ସିଦ୍ଧାନ୍ତ ପକ୍ଷୀଜଟା ଶବରୁଣୀ ବୋଲେ
ସୁଗ୍ରୀବଠାରୁ ରାମ ପାଇଲେ ବାରତା
ସୁବର୍ଣ୍ଣ ଲଙ୍କା କଟକେ ରହିଛନ୍ତି ସୀତା ହୋ ।

୩୦— ଏ···ସୁଗ୍ରୀବ ସଙ୍ଗେ ରାମ ମିତ ଯେ ବସିଲେ
ସପତ ଶାଳା ବୃକ୍ଷ ବାଣକେ ଛେଦିଲେ
ସହସ୍ରେ ହାଡ଼ ଦୈତ୍ୟର ଚରଣେ ଫିଙ୍ଗିଦେଲେ
ସ୍ତ୍ରୀଗ୍ରୀରନୁ ଲଗି ମୁଁ ବାଳିକୁ ମାରିବି ବୋଇଲେ ହୋ ।

୩୧— ଏ···ସୁଗ୍ରୀ ସଙ୍ଗେ ମିତ ରାମ ବାଳିକୁ ବଧ କଲେ
ସମୁଦ୍ରେ ବନ୍ଧ ବାନ୍ଧି ସାଗର ପାରି ହେଲେ
ସମୁଦ୍ର ମଧ୍ୟେ ଲଙ୍କା ଯେ କଟକ
ବାନରେ ଜୁର କଲେ
ଶେଷେ ରାବଣ ମାରି ବିଭୀଷଣକୁ ରାଜ୍ୟ ଦେଲେ ହୋ ।

୩୨— ଏ···ହନୁକୁ ପଠାଇ ସୀତାଙ୍କୁ ଅଣାଇଲେ
ହସି ପୁଷ୍ପକ ବିମାନେ ବାହୁଡ଼ା ବିଜେ କଲେ ହୋ ।

୩୩— ଏ···କ୍ଷଣେ ଅଯୋଧ୍ୟାରେ ହୋଇଲେ ପ୍ରବେଶ
ଛାମୁରେ ହାଉଁଛାଳି ଶତ୍ରୁଘନ ଭ୍ରାତ
ଅଯୋଧ୍ୟା ଜନପ୍ରଜା ମଣିମା ମଣିମା ଡାକନ୍ତି
ସାରଳା ଦାସ କବିଙ୍କି ଶ୍ରୀରାମ ଉଦ୍ଧାରନ୍ତି ହୋ ।

## ଶଗଡ଼ିଆ ଗୀତ (୪)

( ମନାଇଁ ଦାଣ୍ଡଧୁଆ )

୧— ଏ···କହଇ ଚଇତନ ଶୁଣ ହୋ ମନ
କର ତୁହି ଚିନ୍ତା ଶ୍ରୀଗୁରୁ ଚରଣ
କଲ୍ମଷ ଖଣ୍ଡନ ହୋଇବ ତୋହର
କର ତୁହି ଚିନ୍ତା ଶ୍ରୀଗୁରୁ ଚରଣ ରେ ମନାଇଁ
ଭବୁ ହୋଇଯିବୁ ପାର ହୋ ।

୨— ଏ···ଖୀରସିନ୍ଧୁ ମଧ୍ୟେ ପରମ ଅଛଇ
ଖଟାଇ ପାରିବୁ ଯେବେ ମନକୁ ତୁହି ନେଇ
ଷଟେଣୀ ଲୟ କଲେ ଛାଡ଼ିବ ମାୟା ଡୋର
ଖଗପତି ନାଥ ହୋ ମନାଇଁ ଅଛୁ ତୋ ହୃଦୟୁର ହୋ ।

୩— ଏ···ଗୋଲ୍ହାଟ ପରେ ଅନାହତ ଧ୍ୱନି
ଗୁରୁ ଆଶ୍ରେ କଲେ ଚିହ୍ନିବୁ ମୃଦ୍ଧନି
ଗହ ଗହ ଶବଦେ ଲୟ କରିଥିବୁ
ଗମି ପାରିଲେ ମୂଢ଼ ରେ ମନାଇଁ କଳୁଷ ନାଶିବୁ ହୋ ।

୪— ଏ···ଘଟେ ଘଟେ ଦେଖ ପୂରି ରହିଛନ୍ତି
ଘୋର ବିପତ୍ତିରୁ ତାରିବେ ଶ୍ରୀପତି
ଘେନ ତୁ ମନରେ ସବୁ କର୍ମ ଏଡ଼ି
ଘୋଷ ରହି ପାଦରେ ମନାଇଁ
ମାୟା ତ ଯିବ ଛାଡ଼ି ହୋ ।

୫— ଏ···ଙଅଁସ ନାଶିରେ ଉଦୟ ହୋଇଅଛୁ ଗୁନ୍ଦ
ଙଜାଣି ଠେକିଲେ କିଛୁ ତହିଁ ନାହିଁ ଛନ୍ଦ
ଊର୍ଦ୍ଧ୍ୱମୁଖେ ହଂସ ଜପୁଅଛୁ ନାମ
ଅର୍ଦ୍ଧମାତ୍ରା ପରେ ମୂଢ଼ ରେ ମନାଇଁ
ବିଜୟ ନବଘନ ହୋ ।

୬— ଏ···ଚିତ୍ତରେ ଡୋର ନ ପଶିବ ଚୋର
ଚକ୍ରଧର ପାଦ ତୁହି ଚିନ୍ତା କର
ଚେତନା ଦୁଆର ଚେତାଇବୁ ଚେତ
ଚତୁର୍ଦ୍ଦଶ ପୁରେ ମୂଢ଼ ରେ ମନାଇଁ
ପୂରି ରହିଛନ୍ତି ହୋ ।

୭— ଏ···ଛାଡ଼ ମୋହ ମାୟା ଚିତ୍ତ ଥୟ କର
ଛନ ଛନ ମନ ନ କର ତୋହର
ଛାଡ଼ି ଯିବ ତୋର ଆତଜାତି ପଥ
ଛାଇ ପ୍ରାୟେ ଦେଖ ମୂଢ଼ ରେ ମନାଇଁ
ଅଛନ୍ତି ପ୍ରତ୍ୟକ୍ଷ ହୋ ।

୮— ଏ...ଜୀବ ପରମକୁ ଏକ ବୁଝ କର
ଜପ ଏକାକ୍ଷର ହୃଦରେ ତୋହର
ଯମ ରାଜା ଦଣ୍ଡି ନ ପାରିବ ତୋତେ
ଜଗତଯାକ ଦେଖ ମୂଢ଼ ରେ ମନାଇଁ
ରହିଛି ଗୁପତେ ହୋ ।

୯— ଏ...ଝଁରଝଁର ହୋଇ ବହୁଛି ମକରନ୍ଦ
ଝଁରକୁ ଲୟ କରିଅଛନ୍ତି ସଦାନନ୍ଦ
ଏଡ଼ଣି ଗୁରୁ ଆଦେଶକର
ଝଁର ଲୟ କଲେ ତୁ ମୂଢ଼ ରେ ମନାଇଁ
ଜଗତୁ ହେବୁ ପାର ହୋ ।

୧୦— ଏ...ଞାଗରବର ହରି ଞକଣ୍ଠରେ ଛନ୍ତି
ଞୟନେ ନ ଦଶନ୍ତି ବିହାର କରନ୍ତି
ଞୟନେ ଦେଖିଲେ ତୁ ହୋଇବୁ ସଫଳ
ଞାମ ଅଶେ କଲେ ମୂଢ଼ ରେ ମନାଇଁ
ଜଗତୁ ହେବୁ ପାର ହୋ ।

୧୧— ଏ...ଟଳଟଳ ମନ ନ କର ତୋହର
ଟିକକେ ନାଶଯିବ ଏ ତୋହର ଘର
ଟଙ୍କଧର ଚରଣ ପଙ୍କଜକୁ ଆଶ
ଟଳି ନ ଯିବୁ ମୂଢ଼ ରେ ମନାଇଁ
ହୋଇଲେ ବିଶ୍ୱାସ ହୋ ।

୧୨— ଏ...ଠଅ ଶୂନ୍ୟ ପରେ କରିଛନ୍ତି ବାସ
ଠିକ କରି ବୁଝ ବୁଝ ଗୁରୁପାଶ
ଠଣି ପଦ୍ମଚରଣ ବିନୁ ଅନ୍ୟ ନାହିଁ
ଠିକେ ନାରାୟଣ ଦାସ ହୋ କହଇ
ମନ ହେଉଅଛୁ ବାଇ ହୋ ।

୧୩— ଏ···ଡରୁ ଅଛୁ ତୁହି କିପାଇଁ ହୋ ମନ
ଡୋଳେ ଦେଖିଲେ ତୁ ପାଇବୁ କାରଣ
ଡୋଳାକୁ ନେଇ ରଖି ଭ୍ରୂଲତା ମଧ୍ୟରେ
ଡର ଭୟ ତୋହର ହୋ ମନାଇଁ
ଗୁଲ୍ ତ ଯିବ ଦୂରେ ହୋ ।

୧୪— ଏ···ଢମପଣ ଛଡ଼ଣୀ ଚିତ୍ତ ସ୍ଥିର କର
ଢାଙ୍କୁଣିରେ ବେଦ ଅଛଇଁ ତୋହର
ଢଳହଳ ରୂପକୁ ନୟନରେ ଅନା
ଢଳାଗଲେ ଢାଙ୍କୁଣି ମୂଢ଼ ରେ ମନାଇଁ
ନିର୍ବେଦ ହେବୁ ହିନା ହୋ ।

୧୫— ଏ···ଅଣାସୂତ୍ରେ ମନ ପରଚେ ତୁ ହୁଅ
ଅଣାକାର ନାଥଙ୍କୁ ତୁ ହୃଦୟରେ ଧାୟୁ
ଅଣାକାର ନାଥଙ୍କୁ ତୁ ଲୟ କରିଥିବୁ
ଅଣ ସାଧନାରେ ମୂଢ଼ ରେ ମନାଇଁ
ସଡ଼ ତୁ ପାଇବୁ ହୋ ।

୧୬— ଏ···ତତ୍ତ୍ୱ ବସ୍ତୁରଣା ଚିତ୍ତୁଁ ଭ୍ରାନ୍ତ ତେଜ
ତତ୍ତ୍ୱକାର ନାଥ ହୃଦପଦ୍ମେ ଭଜ
ତର୍କ ବୁଦ୍ଧି ତୁହି ନ ଢେଳିଲୁ ମନେ
ତତ୍ତ୍ୱ ଉପଦେଶ ମୂଢ଼ ପାଇବୁ
ସାଧୁ ତ ଦରଶନେ ହୋ ।

୧୭— ଏ···ଥପା ଘରେ ଥାଇ କେତେ ଅଣ୍ଟ କରୁ
ଥୟ କର ମନ ଭଜ ମହାମେରୁ
ଥାନ ବ୍ରହ୍ମ ରନ୍ଧ୍ରେ ବଙ୍କନଳେ ଗୁହାଁ
ଥଥିପଟେ ରହିଛୁ ମୂଢ଼ ରେ ମନାଇଁ
ଶଙ୍ଖଚକ୍ରବାହା ହୋ ।

୧୮— ଏ···ଦୟାସାଗର ଯେ ଅଟନ୍ତି ଦାଶରଥି
ଦୀନଜନ ବାନ୍ଧବ ଭଗତ ଜନପତି
ଦୟାକର ପ୍ରଭୁ ଅର୍ପିତେ ନ ମାର
ଦିବସ ହେଉଛି ଅନ୍ଧାର ମୂଢ଼ ରେ ମନାଇଁ
ହୃଦୟେ ସ୍ମର ହୋ ।

୧୯— ଏ···ଧ୍ୟାନେ ଧରଛନ୍ତି ଭୁଷଣ୍ଡି ଶଙ୍କର
ଧ୍ୟାୟି ପଦ୍ମପାଦ ହୋଇଲେ ଅମର
ଧୂନୀକି ଧ୍ୟାୟିଣ ଅମନେ ଦିଅ ମନ
ଧରି ପାରିଲେ ମୂଢ଼ ରେ ମନାଇଁ
ପାଇବୁ କାରଣ ହୋ ।

୨୦— ଏ···ନାଗଛବିର ହର ନିକଟେ ନାହାନ୍ତି
ନୟନେ ଦିଶନ୍ତି ତ ବିହାର ନ କରନ୍ତି
ନୟନ ବୁଜି ଦେଖି ହୋଇବୁ ସଫଳ
ନାମେ ଅଶେ କର ମୂଢ଼ ରେ ମନାଇଁ
ହେବୁ ତୁ ଅଜାମ୍ବର ହୋ ।

୨୧— ଏ···ପରମ ଆଶ୍ରୟ ମନ କରିଥିବୁ ତୁହି
ପଦ୍ମପାଦ ତଳେ ମନ ରଖି ଥିବୁ ଦେଇ
ପରତେ ହୁଅ ମନ ପବନକୁ ଚିହ୍ନ
ପଦ୍ମ ବିକାଶିଲେ ମୂଢ଼ ରେ ମନାଇଁ
ଭୃଙ୍ଗ ବନ୍ଦ ପୂର୍ଣ ହୋ ।

୨୨— ଏ···ଫୁଲପଣ କରିଣ ମରୁଅଛୁ କେତେ
ଫୁଲ ଫୁଟିଅଛି ନ ଦେଖିଲୁ କେବେ
ଫୁଲ ବାସନାରେ ଫଳ ମଣ୍ଡପତ
ଫଳ ରହିଅଛି ମୂଢ଼ ରେ ମନାଇଁ
ଅମୃତ ଫଳାତ ହୋ ।

୨୩— ଏ···ଏ ବଙ୍କନାଳ ପରେ ଅଭେଦରେ ଅଛି
ବନମାଳୀ ନାମ ବମ ହୃଦେ ଘୋଷି
ବେଳ ଥାଉଁ ବିଗୁର କର ତୁ ବହନ
ବେଳ ବୁଡ଼ିଯିବ ମୂଢ଼ ରେ ମନାଇଁ
ନ ଚିହ୍ନିଲୁ ମନ ହୋ ।

୨୪— ଏ···ଭାବକୁ ନିକଟ ଅଛନ୍ତି ଭାଗବତ
ଭବଭୟ ବନ୍ଧନରୁ କରିବେ ମୁକତ
ଭ୍ରାନ୍ତି ତେଜିଣ ତୁ ନିର୍ଭୟ କର ଚିତ୍ତ
ଭଣେ ନାରାୟଣ ଦାସ କହଇ
ମୁଁ ମୂଢ଼ ଅରକ୍ଷିତ ।

୨୫— ଏ···ମନେ ମନେ ବିଗୁର କରଥିବୁ ତୁହି
ମରିବୁ ନିଶ୍ଚୟ ସଂଶୟ ଏଥି ନାହିଁ
ମାୟାଜାଲ କାଟ ହରିଙ୍କ ଆଶ୍ରେ କର
ମରଣ ଜାଣିବୁ ହୋ ମନାଇଁ
ବସିବୁ ସ୍ୱର୍ଗପୁର ହୋ ।

୨୬— ଏ···ଯାଉଁଳି କବାଟ ଅଛୁ ଶିଶୁମୁନା ଦ୍ୱାରେ
ଯେବେ ଜାଣିପିବୁ ତାହା ଅନାହତ ପୁରେ
ଯୋଗମାର୍ଗ ଜାଣି କରଥିବୁ ଲୟ
ଜ୍ୟୋତ ରୂପ ଦେଖିବୁ ମୂଢ଼ ରେ ମନାଇଁ
ପାପ ତ ଯିବ କ୍ଷୟ ହୋ ।

୨୭— ଏ···ରାଜୀବଲୋଚନ ପ୍ରଭୁ ଶଙ୍ଖଚକ୍ର ବାହା
ରାମ ଅବତାର ପ୍ରଭୁ ଲକ୍ଷ୍ମୀଦେବୀ ନାହା
ରାହାସ ଲଗିଛୁ ଦବା ରାଏ ନାହିଁ
ରା' ଶବଦରେ ମନାଇଁ ହୃଦରେ
ଘୋଷ ତୁହି ହୋ ।

୨୮— ଏ···ଲଲାଟର ଲିଖନ ଅନ୍ୟଥା ନୁହଇ
ଲୋଭ ମାୟା କାମେ ଜଡ଼ିତ ତୋର ଦେହୀ
ନାହିଁ ତୋତେ ବାଟ ଅଖଡ଼େ ନ ମର
ଲୟ କାଳେ ମୂଢ଼ ରେ ମନାଇଁ
ଜଗତୁ ହେବୁ ପାର ହୋ ।

୨୯— ଏ···ବଂଶୀବଟ ମୂଳେ ବିଜୟ ନବଘନ
ବଦନ ଦିଶୁଅଛି ନବୀନ ଘନଶ୍ୟାମ
ବଂଶୀଧ୍ୱନି ଶୁଣି ଚିତ୍ତ ସ୍ଥିର କର
ବଚନେ କହୁ ତ ମନାଇଁ
ପାରିବ କାହା ସ୍ଥିର ହୋ ।

୩୦— ଏ···ଶମନକୁ ନ ଡର ସର୍ବ ଜୀବେ ହର
ଶରଣ ପଶ ମନ ପଦ୍ମପାଦ ଧରି
ଶୁଚରେ ଶୁଚରେ ନାମ ଆଶ୍ରା କର
ସଦଗୁରୁ ପ୍ରଶନେ ମୂଢ଼ ରେ ମନାଇଁ
ଫିଟିବ ଅନ୍ଧାର ହୋ ।

୩୧— ଏ···ଶ୍ୟାମଘନ ରୂପକୁ ଡୋଳାରେ ତୁ ଦେଖ
ସଚରାଚର ମହୀ ଅଟଇ ପ୍ରତ୍ୟକ୍ଷ
ସଙ୍ଗତରେ ଅଛଇ ତୋତେ ନ ଦିଶଇ
ଶୂନ୍ୟର ବକଳ ମୂଢ଼ ରେ ମନାଇଁ
କାଢ଼ ତୁ ହୃଦେ ଧାଇ ହୋ ।

୩୨— ଏ···ଶ୍ରୀନୀଳକନ୍ଦରେ ବିଜୟି ନରହରି
ଶଙ୍ଖଚକ୍ର ଗଦା ଶାରଙ୍ଗ ଧନୁ ଧରି
ଶ୍ରୀୟାଦେବୀ ଲକ୍ଷ୍ମୀ ଖଟନ୍ତି ପୟରେ
ସଂଶୟ ଫିଟିବ ମୂଢ଼ ରେ ମନାଇଁ
ପଶ ତୁ ଶରଣରେ ହୋ ।

୩୩— ଏ···ହରଷ ହୋଇ ମନ ହରିଙ୍କି ଅଶ୍ରେକର
ହରିବେ ଗତ ଦୋଷ କଲୁଷ ତୋହର
ହୃଦ ପଦ୍ମ ମଧ୍ୟରେ କରିଛନ୍ତି ବାସ
ହେଜିଲେ ଦର୍ଶନ ପାଇବୁ ମୂଢ଼ ରେ ମନାଇଁ
ହରିବେ ଗତ ଦୋଷ ହୋ ।

୩୪— ଏ···କ୍ଷମାସାଗର ପ୍ରଭୁ ଅଭୟ ଚରଣ
କ୍ଷମେ ନାରଣ ଦାସ ପଶିଲି ଶରଣ
କ୍ଷମା କରିବେ ପ୍ରଭୁ ଗତ ଜନ୍ମ ଦୋଷ
କ୍ଷମାସାଗର ଦୋଷ ରେ ମନାହିଁ
ଖଣ୍ଡିବେ ମୋହ ପାଶ ହେ । ଧ୍ରୁ, ଧ୍ରୁ, ଧ୍ରୁ ।

## ଶଗଡ଼ିଆ ଗୀତ (୫)

( ଯୋଗୀନ୍ଦ୍ର ଦାଣ୍ଡଧୁଆ )

୧— ଏ···କହଇ ସୁନ୍ଦରୀ ହୋ ଉତ୍ତମ ଭାବ ବହି
ଓଲଟ ତରୁମୂଳେ ସଦାନନ୍ଦ କହି
ଓଲଟ ତରୁମୂଳେ ତ୍ରିବେଣୀ ତିନି ଧାର
ସତ ରଜ ତମ ଏ ତିନି ପ୍ରକାର
ଓଲାଣି କମଳ ଉପରକୁ କର
କେଶରେ ମୁଦ୍ରିତ ହୋଇଛି ଭ୍ରମର
କେଶରେ ମୁଦ୍ରିତ ହୋଇବାକ ଯେବେ
ମୃତ୍ୟୁ ଦେବ ଛାର ହୋ ଯୋଗୀନ୍ଦ୍ର
ବଞ୍ଚିଇ ହେବ ତେବେ ହୋ ।

୨— ଏ···ଖଣ୍ଡ ଖଣ୍ଡ କରି ପକାବନ୍ତି ବାରି
କାଠରୁ ବ୍ରହ୍ମ ଯାଏ ସର୍ବଘଟେ ପୁରି
ନବଧା ଭକତ ଭାବ ନ ଜାଣନ୍ତି କେହି
ଖେଳଇ ଲହରୀ ଜଳେ ନନ୍ଦର ଯତ ଦେହୀ
କ୍ଷଣେ କ୍ଷଣେ ବାସନା ଭୋଗ ପାଉଅଛି
ହରିନାମ ଧରି ଦେହକୁ ରଖିଛି
କ୍ଷଣକେ ଛାଡ଼ିଲେ ନରହେ ଠିକାଏ
ଚତୁର୍ଦ୍ଦା ମୂରତ ହୋ ଯୋଗୀନ୍ଦ୍ର
ଗଗନ ଉଦୟେ ହୋ ।

୩— ଏ...ଗଗନ ଶିଖରେ ଗୋଲ୍ହାଟ ପରେ
ଗହ ଗହ ଧ୍ୱନି ଶୁଭୁଛି ସେଠାରେ
ଧ୍ୱନିକୁ ଜାଗି ଯୋଗୀ ନିଶ୍ୱାସ ଅଟକି
ଚଞ୍ଚଳ ଚିତ୍ତକୁ ନିଶ୍ଚଳ କରି ରଖି
ମନମତ ହସ୍ତୀକୁ ଅଙ୍କୁଶ ଜ୍ଞାନ କରି
କାଉଁରି ମଣ୍ଡଳ ଅଛଇଁ ଅବୋରି
ଚଉଦନ ଦ୍ୱାରକୁ ପ୍ରହରୀ ଜଗାଇ
ପିଣ୍ଡ ଜଗାଇଛି ଯୋଗୀନ୍ଦ୍ର
ବ୍ରହ୍ମାଣ୍ଡ ଅବୋରଇ ହୋ ।

୪— ଏ...ଘନ ଘନ ବଂଶୀ ବଜାନ୍ତ ନରହରି
ଅଶେଷ ବ୍ରହ୍ମାଣ୍ଡ ସର୍ବ ଘଟେ ପୂରି
ସେ ବଂଶୀ ଧ୍ୱନି ଶୁଣି ଆଲେ ଲୋ ରାଧିକା
ଇନ୍ଦ୍ରଶାଳାପୁରେ ଶୋଇ ଥାଉ ଏକା
ଚନ୍ଦ୍ରଶାଳା ପୁରେ ରତ୍ନବେଦୀ ତହିଁ
ଚଉପାଶେ ହୀରା ଅଡ଼ଙ୍ଗ ଅଟଇ
ମଦନ ଅରତେ ହେଉ ଥାଉ ବାଇ
ଚ୍ଚିହ ବଂଶୀ ଧ୍ୱନି ହୋ ଯୋଗୀନ୍ଦ୍ର
ଘେନ ତୁ କହାଇ ହୋ ।

୫— ଏ...ଉଅଁସ ନିଶିରେ ଉଅନ୍ତି ଚନ୍ଦ୍ରମା
ଉଅଁସ ନିଶିଚନ୍ଦ୍ର ଦର୍ଶ କରି ଅନା
ଉଜ୍ଜ୍ୱଳ ଦିଶୁଛି ନୟନେ ଦେଖି ରହ
ଉଅଁସ ନିଶି ଗୁନ୍ଦ ତୁ ପାଇବୁ ନାହିଁ
ଉଦେ ଅଛ ଯୋଗୀ ଜାଗିଲେ ନ ପାଇ
କାମେଶ୍ୱର ଚକେ ନିଶ୍ଚଳ ହୋଇ ରହ
ଫୁଟିଲା ତମିର ଉଦେ ହେଲେ ଭାନୁ
ଝଳ ନ ପାଉଲେ କୋଟି କୋଟି ମନୁ ହୋ
ଯୋଗୀନ୍ଦ୍ର, କୋଟି କୋଟି ମନୁ ହୋ ।

୨— ଏ···ଚଞ୍ଚଳ ଚିତ୍ତକୁ ନିଶ୍ଚଳ କରି ରଖି
ଚତୁର୍ଦ୍ଦଳ ମଧ୍ୟେ ଫୁଟିଛି ପଦ୍ମମୁଖି
ଗୁଲଣି ଧରି ଯୋଗୀ କମଠ ଦୁଧ ଦୁହିଁ
ସେ ଦୁଧ ଖାଇଲେ ଅମର ହୁଅଇ
ଗୁରୁ ବେଦ ପଢ଼ି ଯୋଗୀ ହେଉଅଛି ଧନ୍ଦ
ଦେଖି ହୃଦୟରେ ରାହୁକୁ କଲ୍ ବନ୍ଧ
ବିଶ୍ୱକର୍ମ୍ମା ଅସି ସହସ୍ର କାଟଇ
ତହୁଁ ଜନମିଲ୍ ଯୋଗୀନ୍ଦ୍ର
ବ୍ରହ୍ମାଣ୍ଡ ଆଦରଇ ହୋ ।

## ଶଗଡ଼ିଆ ଗୀତ ( ୨ )

( ମନୁଆଁ ଦାଣ୍ଡଧୁଆ )

୧— ଏ···କୁମ୍ଭୀ କଟକରେ ଏକଇ ଧନବନ୍ତ
ପଚିଶ ହଳିଆ ଲଗାଇ ଥାଇ ନିତ୍ୟ
ଖରା କ ବରଷା ତ ବିଶ୍ରାମ ଦଣ୍ଡେ ନାହିଁ
ଖୋଜି ଲଗାଇଛି ଖଣ୍ଡି ଯେ ସାକରରେ ମନୁଆଁ
ଖାଇଲେ ହେବୁ ବାଇ ହୋ ।

୨— ଏ···ଗଗନ ଶିଖେ ଗଣ୍ଡି ପୋତିଲ୍ ଯତ୍ନ କରି
ଗଜ ଗମ୍ଭୀରକୁ ଯେ ଚଉରସ ଭରି
ଘେନି ରସାଣିଲ୍ ବହିଣ ଗୁଣେ ଦାନ୍ତ
ଘୋଟି ରହିଅଛି ମୂଢ଼ ରେ ମନୁଆଁ
ବେଢ଼ ଚଉକତ ହୋ ।

୩— ଏ···ଉଦେ ଉଦେ ବାଙ୍କିଆ ବଙ୍କୁ ନାଳେ ଡେରି
ଅଚଳ ଚକ୍ର ଗୁନ୍ଧ କଣ୍ଟା ଘଲକୁ ଅଛି ଗଳି
ଗୁରୁ ଚଉରସେ ସେ ମୁଷଳ ନେଇ ଭରି
ଗୁଲ୍ଚିଛି ମହାଯନ୍ତ୍ର, ମୂଢ଼ ରେ ମନୁଆଁ
ଚଉଦଗେ ଫେର ହୋ ।

୪— ଏ···ଛନ୍ଦଛୁ ନାସିକା ପବନ କଣ୍ଟୁରୀ କ
ଛନକା କରଛୁ ଝୋକା ବଳଦ ହଳକ
ଯାଉଛୁ ଯାଉଁଳ ଶାଉଁଳ ଲଞ୍ଜ ଠେକ
ଯହିଁକ ପବନ ନ ଗମେ ରେ ମନୁଆଁ
ଗମଇ ତହିଁକ ହୋ ।

୫— ଏ···ଝାଡ଼ ମଧୁବନ ତ ପକାଉଅଛୁ ଫେଡ଼
ଝଗଡ଼ ଶ୍ରେଣିରୁ ସମ୍ଭାଳ କର
ଲୋଭଅ ନାମେ ତହିଁ ଏକଇ ବାନ୍ଧାଣି
ନିର୍ଭର ହୋଇ ବସି ରେ ମନୁଆଁ
ଦେଉଅଛୁ ପଣି ହୋ ।

୬— ଏ···ଟାଣ କଲେ କରରେ ପିଠଣା ଧର ପିଠି
ଟାକଲ୍ ଫୁଟାଇ ତ ଦେଉଅଛୁ ଡାକ
ଠାବ କରଥାଇ ତ ଠାବରୁ ନ ଉଠଇ
ଠିକେ ଠାବ କର ହେ ମନୁଆଁ
ଠକ ହର କହ ହୋ ।

୭— ଏ···ଡୁବୁ ଡୁବୁ ରସ ଯେ ପଡୁଅଛୁ ଗଳ
ଡାକଇ ମହାରସ ନ ରହେ ସମ୍ଭାଳ
ଢଳ ପଡ଼ୁଅଛୁ ଯେ ସୁଆର ସଳଖରୁ
ଢାଳେ ପାଉଅଛୁ ରେ ମନୁଆଁ
ବ୍ରହ୍ମାଣ୍ଡ ବଣାକୁ ରେ ।

୮— ଏ···ଅନନ୍ତ କେଶରୀ ନାମେ ଏକଇ ବାନ୍ଧୁଣୀ
ବାନ୍ଧୁଛୁ ମହାରସ ହୋ ଦେଉଅଛୁ ଛାଣି
ତଳେ ବ୍ରହ୍ମ ଅଗ୍ନି ଯେ ଜଳଇ ପ୍ରକୃତ
ତ୍ରିଗୁଣ ତାଡ଼ୁକୁ ମୂଢ଼ ରେ ମନୁଆଁ
ପକାଉଅଛୁ ଖୁଣ୍ଟି ହୋ ।

୯— ଏ···ଥଣ୍ଟୁ କର ଦଣ୍ଡେ ରେ ରଖଇ ସମ୍ଭାଳି
ଥାନମାନ ଖୋଜି ଯେ ପକାଉଅଛୁ ଜାଲି
ଦଇବ ନାମେ ତହିଁ ରେ ଏକଇ କୁମ୍ଭାର
ଦଅଁ ଛପନ ଗଣ୍ଡା ଗୋଟି ତ କାନିକାରେ
ଗଢ଼ଇ ନିରନ୍ତର ହୋ ।

୧୦— ଏ···ଧନେ ଧନେଶ୍ୱର ନାମେ ଏକଇ ସାଉକାର
ଧନ ଦେଣା ନାହିଁ ରେ ମାଗଣା କାରବାର
ନିଲାଦ୍ରି ସାହୁ ନାମେ ରେ ଏକଇ ଗୁଡ଼ିଆ
ଲବଧ ନାମଚନ୍ଦ୍ର ମୁଢ଼ି ରେ ମନୁଆଁ
କରଇ ଖଜା ମୁଆଁ ହୋ ।

୧୧— ଏ···ପସରା ବାଢ଼ିଥାଇ ରେ ଅଛନ୍ତି ଦାନୁ କର
ପଣି କାହାଣକୁ ରେ ସୁଆଦ ସମସର
ଫୁଟି ବାସୁଅଛୁ ରେ ବାସନା ଅମୂଲି
ଫେଡ଼ି ଗୃଖ ମୁଢ଼ ରେ ମନୁଆଁ
ବାସକୁ ନ ଭୁଲ ହୋ ।

୧୨— ଏ···ବାହାରକୁ ରଙ୍ଗ ରେ ଭିତରକୁ ଫିକା
ବଜାଉଛୁ ବାଦ୍ୟ ରେ ନିର୍ଗୁଣ ଝୁମୁକା
ଭାବଇ ଅନ୍ଧ 'ହର' ହୋ ଭାବ ନ ଜାଣଇ
ଭଜ ସାଧୁ ସନ୍ଥ ଚରଣେ ହୋ ମନୁଆଁ
ସେ ଭାବ ଦେବେ କହ୍ନ ହୋ ।

୧୩— ଏ···ମୋହମାୟା ସଂସାରେ ନ ଭୁଲ ମୂଢ଼ମନ
ମଧୁସୂଦନ ନାମକୁ ରେ କର ମଧୁପାନ
ଜାଗି ମାଖ କରରେ ଜଡ଼ଯାଉ ଅଠା
ଗୃଣି ପାନ କର ରେ ମନୁଆଁ
ସୁଆଦ କି ମିଠା ହୋ ।

୧୪— ଏ···ରାମକୃଷ୍ଣ ନାମକୁ ରେ ପ୍ରିୟରସ କର
ଏକ ଦିବସରେ ହୋ ଯିବ ଢୋର ଢୋର
ଲଭ ହେବ ଲଘୁ ରେ ହୋଇବ ତୋହର
ନାମ ମହାମନ୍ତ୍ର ମୂଢ଼ ରେ ମନୁଆଁ
ଅକ୍ଷୟ ଭଣ୍ଡାର ହୋ ।

୧୫— ଏ···ବହିଲେ ନ ସରଇ ରେ ବାରମାଢ଼ ସୁନା
ବାରେ ଗୁହାଁ ମନ ରେ ନେବେ ଉଡ଼େ ବାନା
ଶ୍ରୀମୁଖ ସୁନ୍ଦର ରେ ସୁଧାରସ ପ୍ରାୟେ
ସାଧୂମାନେ ଯାହା କହିଲେ ରେ ମନୁଆଁ
ଅନ୍ୟକୁ ଦୃଶ୍ୟ ନୁହେଁ ହୋ ।

୧୬— ଏ···ସମ ହୋଇଥାଇ ରେ ସକଳ ଘଟେ ପୂର
ସମୁଦ୍ର ନୁହଇ ରେ ମାରୁଛୁ ଲହରି
ସରୋବର ନୁହଇ ରେ ହୋଇଛୁ ସମତୁଲ
ଶଚୀପତି ନୁହେ ରେ ମନୁଆଁ
ବରଷୁଛୁ ଜଳ ହୋ ।

୧୭— ଏ···ହର ନୁହେଁ ଶିବର ଶକତି ଅଛୁ ବୋହି
ହଂସ ପକ୍ଷୀ ନୁହେ ଯେ ଡେଣା ପିଛିଡ଼ଇ
ଛୁଆ ଛନ୍ଦ ଛନ୍ଦ ରେ ଉମ୍ବର ଭିତର
ଘର ଅନ୍ଧ ହର ଭାବଲ ରେ ମନୁଆଁ
ସିଂହ ଛୁଆକୁ ସୁମର ହୋ ।

## ଶଗଡ଼ିଆ ଗୀତ (୭)

( ବାରମାସୀ ଦାଣ୍ଡଧୂଆ )

୧— ଏ···ଅଦ୍ୟ ମଗୁଶିର ହିମ ପରବେଶ
ଜାଣିଲେ କୃଷ୍ଣ ତ ରାଧିକା ମନ ତୋଷ
ଖୋଜାଇ ଲେଢ଼ାଇ ପାଇଛୁ ସଙ୍ଗାତ
କଷ୍ଟେ ଏ ଦୁଃଖୀ ଜନ ଫେଡ଼ିବେ ଆରତ ହୋ ।

୨— ଏ···ପୂଷମାସରେ ମୋ ରାଧା ସଙ୍ଗେ ରମି
ହାତେ ଜପାମାଳି କଣ୍ଠେ ମୋ ତୁଳସୀ
ସେହୁ ଜପାମାଳ ଗୋବିନ୍ଦ କଳେବର
କୃଷ୍ଣ କଥା ମିଶଣି ଥିବଟି ମନର ହୋ ।

୩— ଏ···ମାଘରେ ମାଧୋଇ ଆସିବେ ବୋଲି କରି
ଶେଜ ଶେଜାଚରୁ ପାଙ୍ଗୁଡ଼ା ଜାଇ ମଲ୍ଲି
ମାଣିକର ଦୀପମାନ ଚଉପାଶେ ଜାଳି
ଉଜାଗର ହୋ ମାଧବ ପ୍ରହାଇ ଦେବା ନିଶି ହୋ ।

୪— ଏ···ଫଗୁଣମାସରେ ସଖି ଗୋବିନ୍ଦଙ୍କ ଦୋଳ
ସ୍ୱର୍ଗରେ ଜୟ ଜୟ ମଞ୍ଚରେ ହୁଳହୁଳି
ଫଗୁ ଗୁଣ୍ଡିରେ ମାୟେ କ୍ଷିମାଣି ମିଶାଇ
ଫଗୁ ତ ଖେଳୁଥିଲେ ରାଧା ମୋ ଗୋବିନ୍ଦ
ଶ୍ରୀ ବୃନ୍ଦାବନେ ଯାଇ ହୋ ।

୫— ଏ···ଚଇତ ମାସରେ ଧନ ରେ ପଲ୍ଲବିତ ବନ
ମଧୁ ମଧୁ କୋଇଲି ରାବିଲେ ଘନ ଘନ
ଘନ ଘନ ବଂଶୀଧ୍ୱନି ଶୁଣି ଦେହ ସହୁ ନାହିଁ
କି ବୁଦ୍ଧି କରିବି କହ ମୋ ପ୍ରାଣ ସହି ହୋ ।

୬— ଏ···ବଇଶାଖ ମାସରେ ଗୀରିଷମ ଖରା
ଗନ୍ଧ ଚନ୍ଦନ ପିଚକା ମାରନ୍ତି ଅପସରା
ଫୁଲର ବଞ୍ଚଣା ଧରିଥିଲେ ମାଏ
ମୋ ପୁରେ ନଇଲେ ନିଷ୍ଠୁର ଗୋବିନ୍ଦ ଯେ
ବାଳୁତ ତନୟେ ହୋ ।

୭— ଏ···ଜ୍ୟେଷ୍ଠ ମାସରେ ଗୀରିଷମ ଖଙ୍ଗ
ଗନ୍ଧ ଚନ୍ଦନ ଯେ ଲେପନ୍ତି ପ୍ରଭୁ ଅଙ୍ଗ
ସ୍ନାହାନ ସାରି ପ୍ରଭୁ ଅଣସରେ ଗଲେ
ସ୍ତିରି ନାରୀ ଯୁବା ଯେ ବୟସ
ବାଟରୁ ବାହୁଡ଼ିଲେ ହୋ ।

୮— ଏ...ଅଷାଢ଼ ମାସରେ ଗୁଣ୍ଡିଚ୍ଚୁ ବୋଲି ଯାତ
ରଥରେ ବିଜୟେ କଲେ ପ୍ରଭୁ ଜଗନ୍ନାଥ
ଆଗରେ ବଳଭଦ୍ର ରେ ମଧ୍ୟରେ ସୁଭଦ୍ରା ଦେଇ
ପଛେ ମୋ ଗୃଲନ୍ତ ବଳିଆର ଭୁଜ
କମଳାଦେବୀ ସାଙ୍ଗି ହୋ ।

୯— ଏ...ଶ୍ରାବଣ ମାସରେ ଘୋର ତ ବରଷା
ସବୁ ଜୀବ ଜନ୍ତୁର କହ୍ନେଇଙ୍କ ଆଶା
ହଂସ ଓ ମୟୂର ଡାହୁକ କଲେ ରଡ
କାମ ଅଗତେ ଡାକଇ ରାଧା ହୋ
ରଖ ତୁ ଯଦୁପତି ହୋ ।

୧୦— ଏ...ଭାଦ୍ରୁଏ ଜନମିଲେ ଶୀର ତ ମାଧୋଇ
ନାହି ନାଡ଼ କାଟି ଏନ୍ତୁଡ଼ି ସେକଇ
ସଜମାୟେ ଦୋଳିରେ ଥୋଇ ଦୋଳିଗୀତ ଗାଇ
ତୋତେ ପାଳିଥିଲି ରେ ମାଧବ
ସ୍ତନରୁ ଶୀର ଦେଇ ହୋ ।

୧୧— ଏ...ଅଶିଣ ମାସରେ କୁଅଁରଅ ଜହ୍ନ
ଲକ୍ଷ୍ମୀ ସଙ୍ଗେ ପଶା ତ ଖେଳନ୍ତି ନାରାୟଣ
ଯେଉଁ ଦିନୁ ରାଧା ହୋଇଲେ ପ୍ରିୟବତୀ
ମୋ ପୁରେ ନଇଲେ ନିଠୁର ଗୋବିନ୍ଦ
ପାଇଲେ ଅପଖ୍ୟାତି ହୋ ।

୧୨— ଏ...କାର୍ତ୍ତିକ ମାସରେ ରାହି ଦାମୋଦର
ଶ୍ରୀକୃଷ୍ଣ ବିଜୟ ଯେ ରାଧିକା ମନ୍ଦିର
ସମ୍ପୂର୍ଣ୍ଣ ହୋଇଲା ଏଥି ବାରମାସ
ଦାଣ୍ଡଧୁଆ ଭଣନ୍ତି ଯେ ବଳରାମ ଦାସ ହୋ ।

## ଶଗଡ଼ିଆ ଗୀତ (୮)

( ପଞ୍ଚବର୍ଣ୍ଣୀ ଦାଣ୍ଡୁଆ )

୧— ଏ···ବରଷିବୁ ମେଘ ରେ ନ କରବୁ ଝଡ଼
ରାମ ତ ଯାଇଛନ୍ତି ହୋ ଘୋର ତ ବନକୁ
ମାୟା ମୃଗ ମାର ହୋ ।

୨— ଏ···ସୁବର୍ଣ୍ଣର ମୃଗ ବୋଲି ତ ଧାଇଁଗଲେ ହେଲେ
ଅଗି ପିଚୁଲାରେ ରାମ ତ ପଶିଲେ
ବନ ତ ମଧ୍ୟରେ ହୋ ।

୩— ଏ···କରେ ଘେନି କୋଦଣ୍ଡ ମୋ
ଗୋଡ଼ାଇଛନ୍ତି ପଛେ
ଧାଇଁ ତ ଅଛି ମୃଗ ଯେ ଅଟରେ
ହଲଇ ସ୍ୱର୍ଣ୍ଣ ପୁଚ୍ଛେ ହୋ ।

୪— ଏ···ସୁବର୍ଣ୍ଣର ପୁଚ୍ଛ ଗୋଟି ତ ଦିଶଇ ସୁନ୍ଦର
ନୀଳ ନବଘନ ବରନ ହୋ ଶ୍ରୀରାମ
ବୁଲନ୍ତି କନ୍ଦର ହୋ ।

୫— ଏ···ବାହୁ ବେନି କି ଅବା ଅଟଇ କରଶୁଣ୍ଡି
ତହିଁ ମଧ୍ୟେ ଶୋଭା ତ ପାଉଅଛି
ରାମକାଣ୍ଡ କୋଦଣ୍ଡ ହୋ ।

୬— ଏ···କୋଦଣ୍ଡ କାଣ୍ଡ ସନ୍ଧି ପେଷିଦେଲେ ରାମ
ଶର ଯାଇଁ ମୃଗ ଶରୀରେ ହୋ
ଭେଦନ୍ତେ ଗଲା ପ୍ରାଣ ହୋ ।

୭— ଏ···ପ୍ରାଣ ଯିବାବେଳେ ମୃଗ ଡାକିଲା ଉଚ୍ଚକର
ରକ୍ଷାକର ବାବୁ ବୀର ରେ ଲକ୍ଷ୍ମଣ
ଧନୁର୍ଦ୍ଧର ଧର ହୋ ।

୮— ଏ···ମାୟାମୃଗ ବୋଲି ତ ରାମ ପକାଇଦେଲେ ଛଳେ
ଆନ ମୃଗ ମାର ରାମ ଯେ ଫେରିଲେ
ବନରୁ ଚଞ୍ଚଳେ ହୋ ।

୯— ଏ···ମୃଗ ହାକ ଯାଇ ତ ଭେଦିଲ ଜାନକୀ କର୍ଣ୍ଣରେ
ଲକ୍ଷ୍ମଣକୁ ଡାକ କହନ୍ତ ଜାନକୀ
ପରାଣ ବ୍ୟାକୁଳେ ହୋ ।

୧୦— ଏ···ସ୍ୱାମୀ ତ ଡାକନ୍ତ ମୋର ଗହନ କାନନେ
ଯାଅ ଯାଅ ବାବୁ ବୀର ହୋ ଲକ୍ଷଣ
ମୋ କାନ୍ତ ସନ୍ନିଧାନେ ହୋ ।

୧୧— ଏ···କହନ୍ତ ସତ୍ତମିତ୍ରୀ ଗୋ ମାତ ନ କରବ ଚିନ୍ତା
କୋଟିବ୍ରହ୍ମାଣ୍ଡର ନାଥ ଅଛନ୍ତ ଶ୍ରୀରାମ
ରଣେ ତ ଜତକ୍ଷିତା ହୋ ।

୧୨— ଏ···ବାମ ବୁଢ଼ା ଅଙ୍ଗୁଳି କୋଣକୁ ତ୍ରିପୁର
ସର୍ ହେବ କ ମାତ ଗୋ ଜାନକୀ
ଟୀକାଏ ଭାଇଙ୍କର ହୋ ।

୧୩— ଏ···ନିଶ୍ଚିନ୍ତେ ବସ ମାଏ ଗୋ ଆସିବେ ଏହିକ୍ଷଣି
ବରସ ବୁଢ଼ା ଗୋ ମାଏ ଜାନକୀ
ଜଗତ ଠାକୁରାଣୀ ହୋ ।

୧୪— ଏ···ଲକ୍ଷେ ରଜା ପୁଅ ତ ଥିଲେ ମିଥିଲାରେ
ଶିବଧନୁ କରେ ମାତ ଗୋ ଜାନକୀ
ଭାଙ୍ଗିଲେ ନିମିଷରେ ହୋ ।

୧୫— ଏ···କ୍ଷତ୍ରିୟ କାଳାନଳ ପରଶୁଧର ଅଣ୍ଟେ
ଭେଟିଲେ ପରା ମାତା ଗୋ ଜାନକୀ
ହାରିଲେ ବାଟେ ବାଟେ ହୋ ।

୧୬— ଏ···ଦେଖିତ ଖର ଦୂଷଣ ତ୍ରିଶିରା ବଡ଼ାଇ
ଚୌଦ ସହସ୍ର ସୈନ୍ୟ ମେଳେ ମାତା ଗୋ ଜାନକୀ
ପଡ଼ିଲେ ରଣଭୂଇଁ ହୋ ।

୧୭— ଏ···ଭାଇଙ୍କ ଶର ଗୋଟି କାଳାନଳ ଜାଣି
ଦୁଷ୍ଟ ବଧିବାକୁ ମାତା ଗୋ ଜାନକୀ
ଜନିଲେ ମଝେ ଆସି ହୋ ।

୧୮— ଏ...ଲକ୍ଷ୍ମଣ ବାଣୀ ଶୁଣି ଯେ କୋପିଲେ ଠାକୁରାଣୀ
କ୍ରୋଧରେ କହନ୍ତି ବୀର ରେ ଲକ୍ଷଣ
ତୁ କହୁଚୁ କୁଟ ବାଣୀ ରେ ।

୧୯— ଏ...ଅସିଲୁ କପଟରେ ଯେ ମୋ ସ୍ୱାମୀ ସଂଗତରେ
ରାମଙ୍କୁ ମରାଇ ମୋତେ ରେ ନେଇଣ
ଦେବୁ ତୁ ଭରଥ କରେ ହୋ ।

୨୦— ଏ...ଭରଥ ପାଟରାଣୀ କରିବ ମୋତେ ନେଇ
ଏହୁ କଥା ଛନ୍ଦ ବୀର ରେ ଲକ୍ଷଣ
ଅସିଚ୍ଛ ସଙ୍ଗେ ଧାଇଁ ହୋ ।

୨୧— ଏ...କୁଟ ଓ କପଟରେ ତୋ ହୃଦ ଅଛି ପୂରି
ମାୟା ତପସ୍ୱୀ ପରି ବୀର ରେ ଲକ୍ଷଣ
ହୋଇଚୁ ଅଜ୍ଞାକାରୀ ହୋ ।

୨୨— ଏ...ମୋ ସ୍ୱାମୀ ବହୁନେ ମୁଁ ପ୍ରାଣ ଧରିବ କା ଷଣେ
ଯେବେ ଭାଇଠି ସ୍ନେହ ଅଛି ରେ
ଯାଅ, ମୋ କାନ୍ତ ସନ୍ନିଧାନେ ହୋ ।

୨୩— ଏ...ଜାନକୀ କଟୁବାଣୀ ଲକ୍ଷ୍ମଣ ହୃଦେ ପଶି
ବେଳୁଁ ବେଳ କ୍ରୋଧ ହୋ ଘାରିଲା
ପଡ଼ିଲା ବଳ ଖସି ହୋ ।

୨୪— ଏ...ଭାଇଙ୍କ ଆଜ୍ଞା ମାନି ଗୋ ଜଗିଥିଲି ମୁହିଁ
ତୁମ୍ଭ ଆଜ୍ଞା ଧରି ତ ମାତ ଗୋ ଯାଉଛି
ଦୋଷ ମୋର ନାହିଁ ହୋ ।

୨୫— ଏ...ହାନି ଲାଭ ବେଦନାକୁ ନକଲ ବିଗୁର
ପଦ ମୁଁ ଆଶ୍ରିତ ଭୃତ୍ୟ ଗୋ ମାତ ଜାନକୀ
ତୁମ୍ଭର ପରଗୁରୁ ହୋ ।

୨୬— ଏ...ଯେଣିକି ପେଷିବ ମାତା ଗୋ ତେଣିକି ଯିବ ମୁହିଁ
ଦୋଷ ମୋର ଯେତେ ମାତ ଗୋ ଜାନକୀ
କ୍ଷେମିବ କୃପାମୟୀ ଗୋ ।

୨୭—–ଏ···ଦଣ୍ଡକ ଅରଣ୍ୟ ଏ ଅସୁରଙ୍କର ଘର
କୁଟ କପଟରେ ମାତ ଗୋ ଜାନକୀ
ଆସିବେ ତୋ ପାଶର ଗୋ ।

୨୮— ଏ···ବ୍ରହ୍ମା ବିଷ୍ଣୁ, ଶିବ ବୋଲି ଗାର ତିନି କାଟି
ତେଣି ନ ଆସିବୁ ମାତା ଗୋ ଜାନକୀ
ଭାଇଙ୍କ ରାଣ ମେଣ୍ଟି ଗୋ ।

୨୯— ଏ···ଧନୁଶର ଘେନି ତ ଲକ୍ଷଣ ବାର ଗଲେ
କ୍ଷଣକ ମଧ୍ୟରେ ବୀର ଯେ ଲକ୍ଷଣ
ଅଦୃଶ୍ୟ ହୋଇଲେ ହୋ ।

୩୦—ଏ···ବେଳକାଳ ଊଣ୍ଡି ଯେ ବାହାର ରାବଣ
ମଢ଼ିଆ ଦୁଆରେ ମିଳେ ଯେ ତୁରତେ
ଭିଖାରି ବ୍ରାହ୍ମଣ ହୋ ।

୩୧—ଏ···କର୍ଣ୍ଣେ ତ ତମ୍ବା କୁଣ୍ଡଳ କରେ ନଉଥାଳ
କଟୀରେ କଷିଛୁ ମାୟା ତପସ୍ୱୀ
ବୃକ୍ଷର ବକଳ ହୋ ।

୩୧—ଏ···ଭିକ୍ଷା ଦିଅ ମାତା ବୋଲି ପକାଇଲା ହୁରି
ପଥଶ୍ରମ ହୋଇ ମାଏ ଗୋ ଆସିଛୁ
କ୍ଷୁଧାରେ ଜୀବ ଥରି ହୋ ।

୩୩—ଏ···କ୍ଷୁଧାର କଷ୍ଟ ମାଏ ଗୋ ନ ପାରୁଛୁ ସହି
କଷ୍ଟେ ପ୍ରାଣ ମୋର ଗଲା ଗୋ ସୁନ୍ଦରୀ
ଅଥୟ ହେଲା ଦେହୀ ଗୋ ।

୩୪—ଏ···ଜନକର ଜେମା ଯେ ବୋଲନ୍ତି ରହ ବାବୁ
ମୃଗ ମାରି ଗଲେ ସ୍ୱାମୀ ଯେ ଦିଅର
ଫେରିଲେ ଭିକ୍ଷା ନେବୁ ହୋ ।

୩୫—ଏ···ବୋଲଇ ମାୟା ଯତି ସାତ ନିଶ୍ୱାସରେ
ଭିକ୍ଷା ନ ଦେଲେ ମାଏ ଗୋ ଅଧର୍ମ
ବୋଲନ୍ତି ଶାସ୍ତ୍ରରେ ହୋ ।

୩୬—ଏ···ଜୀବ ଥିଲେ ସିନା ମୁଁ ଭୁଞ୍ଜିବି ଫଳମୂଳ
ଝୀକାଏ ବିଳମ୍ବ ହେଲେ ମାଏ ଗୋ
ମୋତେ ଭଖିବେ ଶୃଗାଳ ହୋ ।

୩୭—ଏ···ଧର୍ମ ହାନି ହେବ ବୋଲି ଫଳ ଧରି କରେ
ପ୍ରବେଶ ହୋଇଲେ ମାତା ଯେ ଜାନକୀ
ମଢ଼ିଆ ଦୁଆରେ ଯେ ।

୩୮—ଏ···ସୀତାଙ୍କୁ ଦେଖି ବୈଦେହୀ ହୋଇଲା କାମେ ଘାରି
ମାୟା ରୂପ ଛାଡ଼ି ନିଜ ରୂପକୁ
ଧରିଲା ବେଗ କରି ହୋ ।

୩୯—ଏ···ବୋଲଇ ଶୃଙ୍ଗମୁହିଁ ବନରେ କଷ୍ଟ ପାଇ
ରହିଛୁ କପାଇଁ ଦେବୀ ଗୋ ଜାନକୀ
ଆସ ମୋ ସଙ୍ଗେ ତୁହି ଗୋ ।

୪୦—ଏ···ଭଦ୍ରେ ବୋଲନ୍ତି ଦେବୀ ଯେ ଫଳମୂଳ ନିଅ
ଭିଖାରି ହୋଇ ବାବୁ ହେ ଶ୍ଳେଷ ମୁହେଁ
ବଡ଼ କଥା କୁହ ହୋ ।

୪୧—ଏ···ନୁହଇ ଭିଖାରି ମୁହିଁ ଗୋ ଅଟଇ ଲଙ୍କମଣି
ବିଶ୍ରବା ଋଷିଙ୍କର ଜ୍ୟେଷ୍ଠ ଯେ ନନ୍ଦନ
ରାବଣ ନାମ ପୁଣି ଗୋ ।

୪୨—ଏ···ଜନକସୁତା କହେ ଶୁଣ ରେ ମନ୍ଦମତି
ଜଳନ୍ତା ଅନଳେ ପଶି ରେ ନ ମରି
ତୋତେ ମାରିବେ ମୋର ପତି ହୋ ।

୪୩—ଏ··· କେମନ୍ତ ପତିକୁ ଯେ ପତି ବୋଲି ମଣୁ
ଲଙ୍କାପୁରି ଶିରୀ ଭୋଗ ରେ ଜାନକୀ
ଆସ ମୋ ସଙ୍ଗେ ତେଣୁ ହୋ ।

୪୪—ଏ···ମୁଁ ଅଟେ ଋଷି ପୁଅ ତୁହ ତ ଋଷି ଝିଅ
ରାଜ କୁଳବଧୂ ତୁହ ଗୋ ଜାନକୀ
ଏବେ ରାଜରାଣୀ ହୁଅ ହୋ ।

୪୫— ଏ...ନଅଣ ଅନେଶ୍ୱର ମୋର ପାଠ ମହାଦେଈ
ତୋ ପାଦେ ଗଡ଼ିବେ ସର୍ବେ ଲୋ
ଆସ ତୁ ଗୃହମୁହିଁ ହୋ ।

୪୬— ଏ...ସ୍ୱର୍ଣ୍ଣ ମୃଗ ଦେଖି ତୁ ଗୋ କରଥିଲୁ ଲୋଭ
ସୁବର୍ଣ୍ଣ ପୁରୀ ଲଙ୍କା ମୋର ଗୋ ଜାନକୀ
କର ତୁ ସର୍ବ ଭୋଗ ହୋ ।

୪୭ —ଏ...କାମପାଳ ଦିଗପାଳ ପର୍ଯ୍ୟନ୍ତେ ମୁହିଁ ଯେ ସୁନ୍ଦର
ନେତ୍ରକୋଣେ ବାଟେ ମୋରେ ଗୋ ଜାନକୀ
ଦେଖ ଚିତ୍ତ କର ସ୍ଥିର ହୋ ।

୪୮ — ଏ...ଚଉଦ ଭୁବନେ ମୁହିଁ ଷତ୍ରିଙ୍କ ଶିରୋମଣି
ମୋ ପାଦେ ଖଟନ୍ତି ଦେବତାଏ
ମୋହର ମନ ଜାଣି ହୋ ।

୪୯— ଏ...ବ୍ରହ୍ମା ପଢ଼େ ବେଦ ନୃତ୍ୟ କରେ ସଦାଶିବ
ଯମ ବାଡ଼ି ତାହି ମୋର ଗୋ ଖଟଇ
ପାକ କରଇ ଅଗ୍ନି ଦେବ ହୋ ।

୫୦— ଏ...ଏତେ ବିଭବରେ ସଖୀ
ତୋ ପାଶେ ହେଲି ବନ୍ଧା
ଆସ ଆସ ପ୍ରାଣ ମିତଣି ନଦଅ ଆଉ ଧନ୍ଦା ହୋ ।

୫୧— ଏ...ରାବଣ ବାଣୀ ଶୁଣି ଯେ କୋପିଲେ ଠାକୁରାଣୀ
କ୍ରୋଧରେ କହନ୍ତି ଦେବୀ ଯେ ଜାନକୀ
ପାପିଷ୍ଠ ହୁଅ ତୁନି ହୋ ।

୫୨— ଏ...ମୋ ସ୍ୱାମୀ ପାଦତଳ ଯେ ଧୂଳିକୁ ସମ ନୋହୁ
ସେ ସିଂହ ତୁ ଶୃଗାଳ ତ ବଡ଼ିମା କଥା କହୁ ହୋ ।

୫୩— ଏ...ପର ନାରୀ ହରଣରେ ରେ ବଳାଇଅଛୁ ମତ
ପୋଡ଼ୁ ପୋଡ଼ୁ ବୀରପଣ ରେ ପାମର
ପୋଡ଼ୁ ତୋ ଷତ୍ରି ବୃତ୍ତି ହୋ ।

୫୪— ଏ...ଯେବେ ଭଲ ଗତି ଅଛୁ ଫେରିଯାଅ ଘର
ମୋ ସ୍ୱାମୀ ଆସି ଗଲେ ରେ ପେଶିବେ ଯମପୁର ହୋ ।

୫୫— ଏ...ପରନାଗ୍ନି ବାରୁ ରେ ବଡ଼ବାଅନଳ
ତହିଁ ଝାସି ନ ପଶ ତୁ ପତଙ୍ଗ
ପୂରିବ ତୋର କାଳ ହୋ ।

୫୬— ଏ...ମରିବ ନାହିଁ ସୀତା ଗୋ ବ୍ରହ୍ମା ଦେଲି ବର
ତୋରେ ଦେଖି ଗୋ ସୀତୟା
କରେ ମୋରେ କାମଜ୍ୱର ହୋ ।

୫୭— ଏ...ବିକଟାଳ ରୂପ ତ ରାବଣ ଅସୁର
ପୃଥ୍ୱୀ ତ ଥରିଲା ମୋ ଥରିଲା
ବେଳେ ତ ସ୍ୱର୍ଗପୁର ହୋ ।

୫୮— ଏ...ଭୟେ ତ ସୀତା ଯାଇ ହୋ କୁଟୀରେ ପଶିଲେ
ପଣତ କାନି ଧରି ହୋ ଦାନବ
ସୀତାଙ୍କୁ ନେଲା ବଳେ ହୋ ।

୫୯— ଏ...ରଥେ ତ ବସାଇ ଜାନକୀ ଘେନିଲା ଦଶମାଥ
ଆକାଶ ମାର୍ଗରେ ଉଡ଼େ ହୋ ଚଳିଲେ
ପୁଷ୍ପକ ନାମେ ରଥ ହୋ ।

୬୦— ଏ...କାନ୍ଦନ୍ତି ଜାନକୀ ଯେ ଶ୍ରୀରାମ ଗୁଣ ଗୁଣି
ଆହା ପ୍ରାଣନାଥ ଅଯୋଧ୍ୟାପତି ମୋ
ରାଘବ ରଘୁମଣି ହୋ ।

୬୧— ଏ...ମୁରୁଛି ନ ପାରି ନାଥ ମୁଁ ଅଇଲି ସଙ୍ଗତର
ପଦସେବା କରି ବଞ୍ଚି ତ ରହିଲି
ବନସ୍ତ ଭିତର ହୋ ।

୬୨— ଏ...କରମ ଅବଲକୁ ହେମ ମୃଗ ଦେଖି
ପଠାଇ ଦେଲି ଗହନ ବନେ ତ
ଏବେ ହୋଇଲି ନିରମାଖି ହୋ ।

୬୩— ଏ...ଅନ୍ତର୍ଯ୍ୟାମୀ ଭବିଷ୍ୟତ କଥା ଜାଣି କରି
ସଙ୍ଗେ ଆଣୁ ନ ଥିଲ ପ୍ରଭୁ ହେ ଦାସୀକୁ
ବିପଦକୁ ବାରି ହୋ ।

୬୪— ଏ…ତୁମ୍ଭର ଚନ୍ଦ୍ରମା ଅଙ୍ଗରେ କଳଙ୍କ ମୁହିଁ ଦେଲି
ନିନ୍ଦା ସମୁଦ୍ରେ ପ୍ରଭୁ ହେ ତୁମ୍ଭଙ୍କୁ
ଭସାଇଣ ଦେଲି ହୋ ।

୬୫— ଏ…କପଟ ବେଶ ଧରି ଯେ ପାପିଷ୍ଠ ଲଙ୍କନାଥ
ବଳେ ଧରି ମୋତେ ଘେନି ହୋ ଯାଉଛି
ବସାଇ କରି ରଥ ଯେ ।

୬୬— ଏ…ସହଜରେ ଅବଳା ମୁଁ ବଳ ମୋର କିସ
ଦୁର୍ବଳ ଦେଖି ବ୍ୟାଘ୍ର ପରାୟେ ନେଉଛି
ଲଙ୍କଈଶ ହୋ ।

୬୭— ଏ…ଅହେ ବନଗିରି ଲତା ପଶୁପକ୍ଷୀ କୁଳ
ଫେରିଲେ ସ୍ୱାମୀଙ୍କୁ ମୋର ତ କହିବ
ମୋ ଦୁଃଖ ସକଳ ହୋ ।

୬୮— ଏ…ସ୍ୱଦୟା! ଦାସୀଠାରେ ପ୍ରଭୁ ହେ ଯେବେ ଥିବ
ପାପିଷ୍ଠ ଦଇତକୁ ପ୍ରଭୁ ହେ ବିନାଶି
ଦାସୀକୁ ଅଣିବ ହୋ ।

୬୯— ଏ…ସୀତାଙ୍କ ଶୋକ ଶୁଣି ତ ଜଟାୟୁ ବାହାରିଲା
ରାବଣ ସଙ୍ଗେ ଯାଇ ହୋ ବହୁତ ଯୁଝିଲା
ଖଡ଼ଗେ ହାଣିଲା ପାପିଷ୍ଠ ଅସୁର ହୋ
ଭୂମିରେ ପଡ଼ିଲା ହୋ ।

୭୦— ଏ…ଚଳିଗଲା ରଥ ଯେ ମିଳିଲା ଲଙ୍କାପୁରି
ଅଶୋକ ବନରେ ରଖାଇ ରାବଣ
ଫେରିଲା ନିଜ ଘର ହୋ ।

୭୧— ଏ…ଲକ୍ଷେ ଅସୁରୀ ଜଗିଲେ ଜାନକୀର ପାଶ
ଦିବାରାତ୍ର ଶୋକ ଯେ କରନ୍ତି
ଡରାଏ ଲଙ୍କଈଶ ହୋ ।

୭୨— ଏ…ଡରନ୍ତି ଅସୁରୁଣୀ ଯେ ଜାନକୀ ଆଗେ ବସି
ନ ଶୁଣନ୍ତି ଦେବୀ ମୋ ଜାନକୀ
ରାମନାମ ଘୋଷି ହୋ ।

୭୩ — ଏ···ମୃଗ ମାରି ରାମ ତ ଫେରିବାର ବେଳେ
ଲକ୍ଷଣ ଯାଉ ପାଶେ ଯେ ଭେଟିଲେ
ଦେଖିଲେ ରାମ ତୋଳେ ହୋ ।
୭୪— ଏ···ଲକ୍ଷ୍ମଣଙ୍କୁ ଦେଖି ରାମ ହୋଇଲେ ଚାଟକା
ପଚ୍ଚରନ୍ତି ବାବୁ ବୀର ହୋ ଲକ୍ଷଣ
ଅସିଲୁ ତୁହି ଏକା ହୋ ।

୭୫— ଏ···ସୀତାମ୍ବା ମୋହର ଏବେ ଗଲା କାହିଁ
କି ଅବା ଦନୁଜେ ଆସିଲେ
ତୋଠାରୁ ନେଲେକ ଛଡ଼ାଇ ହୋ ।
୭୬ — ଏ···ବୋଲନ୍ତି ଲଇକ୍ଷଣ ଶୁଣ ହୋ ଜ୍ୟେଷ୍ଠ ଭ୍ରାତ
ତୁମ୍ଭ ଡାକ ଶୁଣିଣ ଦେବୀ ଯେ ଜାନକୀ
ବଡ଼ ତ ଦୁଃଖିତ ହୋ ।
୭୭— ଏ···ପେଷିଲେ ଖୋଜିବାକୁ ତ ବୁଝାଇ କହିଲି
ସେ ଯାହା କହିଲେ ଦେବ ହେ ସେ କଥା
ସହି ନ ପାରିଲି ହୋ ।
୭୮ — ଏ···ଚଞ୍ଚଳ ଯିବା ଆସ ହୋ ପ୍ରଭୁ ଶୃପପାଣି
ଏକା ତ କୁଟୀରେ ମୋ ବସିଥିବେ ତ
ଜନକଦୁଲଣୀ ହୋ ।
୭୯— ଏ···ତର ତର ହୋଇ ରାମ ତ ମୃଗ ଭାର ଧରି
ଲକ୍ଷଣ ସହିତ ଫେର ଯେ ଆସନ୍ତି
ଡାକନ୍ତି ଡାକ ଗୁରୁ ହୋ ।
୮୦— ଏ···ଜଳ ଅଣ ସୀତା ଗୋ ଉତ୍ତର ନ କର
ସୁବର୍ଣ୍ଣ ହରଣ ନୁହେଁ ଗୋ ସୀତାମ୍ବା
କଲା କପଟ ଅସୁର ହୋ ।
୮୧ — ଏ···ପିଞ୍ଜରା ଘଡ଼ ଶୁଆ ତ ପଳାଇଗଲା କାହିଁ
ହାତ ବଢ଼ାଇଲେ ଅଜ ହେ ଶ୍ରୀରାମ
ସେ ତ ଫେରିବ ନାହିଁ ହୋ ।

୮୨— ଏ···ମଢ଼ିଅ ଦୁଆର ତ ପଡ଼ିଅଚ୍ଛି ଖୋଲି
କାହିଁ ନ ଦେଖିଲେ ବୀର ମୋ ଶ୍ରୀରାମ
ବନେ ତ ବୁଲି ବୁଲି ହୋ ।

୮୩— ଏ···ବନଜନ୍ତୁମାନେ ତ ପାରୁଶ ମଣାଇ
ଦକ୍ଷିଣ ଦିଗକୁ ଚଳିଯାନ୍ତି ଯେ
ପଥ ଦିଅନ୍ତି ଚହ୍ନାଇ ହୋ ।

୮୪— ଏ···କାନ୍ଦନ୍ତି ଶ୍ରୀରାମ ଯେ ଜାନକୀ ଗୁଣ ଗୁଣି
କାହିଁ ଛାଡ଼ିଗଲୁ ମୋ ଜୀବ ଜୀବନ ହୋ
କନକବରଣୀ ହୋ ।

୮୫— ଏ···ମତେ ନ ଦେଖିଲେ କ୍ଷଣେ ହେଉଥାଉ ବାଇ..
କପାଁ ବନବାସେ ଆସିଲୁ ମୋ
ଶରଦଚନ୍ଦ୍ରମୁହାଁ ହୋ ।

୮୬— ଏ···ନୂହୁଛ ନ ପାରୁ ତ ଗୋଡ଼ାଇ ଅଇଲୁ
ରାଜସୁତା ହୋଇ ତ ଜାନକୀ
ଫଳ ମୂଳ ଯେ ଖାଇଲୁ ହୋ ।

୮୭— ଏ···ବନଫୁଲ ମାଳ ତ ମଣ୍ଡୁଥାଉ ଅଙ୍ଗେ
ରାଜସୁଖ ତେଜ୍ୟା କରି ଗୋ ଜାନକୀ
ରହିଲୁ ମୋର ସଙ୍ଗେ ହୋ ।

୮୮— ଏ···ସୁଖ ବେଳର ଗୋ ସାଥି ନୋହୁ ତୁହି
ଦୁଃଖ ବେଳେ ସଖୀ ମୋ ବୈଦେହୀ
ମୋ ଦୁଃଖେ ହେଲୁ ବାଇ ହୋ ।

୮୯— ଏ···ଅନ୍ଧାର ଘରକୁ ତ ଦେଖିଲେ ଡରୁଥାଉ
ଏବେ କେଉଁ ଅନ୍ଧାରରେ ତୁ ତ
ଲୁଚି କରି ରହୁ ହୋ ।

୯୦— ଏ···କାନ୍ଦେ ରଘୁପତି ଦେଖି ଭୟେ ବୁଜୁ ଆଖି
କେଉଁ ଦୁଷ୍ଟ ଦାନବ ତ ଗରବେ
ଲୁଚାଲୁ ପ୍ରିୟ ସଖି ହୋ ।

୯୧— ଏ···ବାତୁଳ ପରି ରାମ ଡାକୁଛନ୍ତି କେତେ
ଲତା ଉହାଡ଼େ କି ଲୁଚିଚ
ଦେଖା ଦିଅ ମୋତେ ହୋ ।

୯୨— ଏ···ରାମଙ୍କ ବିଳାପ ଶୁଣି ବୋଧନ୍ତି ଲଇକ୍ଷଣ
ନ କର ଚିନ୍ତା ଭାଇ ହୋ ଆଣିବା
ଜାନକୀ ଅନ୍ୱେଷଣ ହୋ ।

୯୩— ଏ···ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯହିଁ ଥିବେ ସତୀ
ଖୋଜି ଆଣି ଦେବି ହୋ ଜ୍ୟେଷ୍ଠ ସୋଦର
କହୁଛୁ ଛୁଇଁ ପୃଥ୍ୱୀ ହୋ ।

୯୪— ଏ···ବଣ କନ୍ଦର ଅଗ୍ନି ତ ଜଳ ମଧ୍ୟେ ଥିଲେ
ଆଣିବି ନିଶ୍ଚୟେ ହୋ ଜ୍ୟେଷ୍ଠ ସୋଦର
ମିଛ ନାହିଁ ଭଲେ ହୋ ।

୯୫— ଏ···ଆସ ଯିବା ଭ୍ରାତ ତ ବିଳମ୍ବ ନ କର
ବିପଦ ବେଳେ ଅଧଇର୍ଯ୍ୟ ନୁହେଁ ହୋ
ବଢ଼ିବ ଦୁଃଖ ଭାର ହୋ ।

୯୬— ଏ···ଲଇକ୍ଷଣ ସଙ୍ଗେ ହୋ ପ୍ରଭୁ ଖଣ୍ଡେ ଦୂର ଗଲେ
ବନସ୍ତ ଘୋର ଗହନ ହୋ
ଜଟାୟୁ ପଡ଼ିଛି ଦେଖିଲେ ହୋ ।

୯୭— ଏ···ଆୟୁଷ ହୋଇ ଶେଷ ଅଛି ତ ବାକି ପ୍ରାଣ
ସୀତାଙ୍କ ବାରତା ସେ ତ କହିବ
ଶୁଣିବେ ରଘୁନାଥ ହୋ ।

୯୮— ଏ···ମୁଖେ ରାମ ରାମ ଯେ ଘୋଷୁଛି ପକ୍ଷୀବର
ଆଖି ତ ମିଟିମିଟି କରି ଗୃହିଁଛି ଯେ
ଦେହୁ ବୋହୁଛି ରକ୍ତଧାର ହୋ ।

୯୯— ଏ···ଜଟାୟୁ ତ ଅଟଇ ଦଶରଥ ମିତ
କହିଲା ରାମ ଆଗେ ବିକଳେ ମୋ
ଜାନକୀ ବୃତ୍ତାନ୍ତ ହୋ ।

୧୦୦— ଏ...ଲଙ୍କାର ରାବଣ ତ ସୀତାୟା ନେଲା ହରି
ବାଟ ଓଗାଳି ଯୁଦ୍ଧ ହୋ କରିଲି
ଗୋଡ଼ରେ ଦେଲା ଶର ହୋ ।

୧୦୧— ଏ...କହୁ କହୁ ପରାଣ ଛାଡ଼ିଲା ଦେହୁ ତାର
ଲକ୍ଷଣଙ୍କୁ ଚାହିଁ ରାମ ଯେ କହନ୍ତି
ଚିତା ସଜ କର ହୋ ।

୧୦୨— ଏ...ଚିତା ସଜ କରି ପକ୍ଷୀ ଦେହ ଦାହ କଲେ
ସୀତାୟା ଯିବା ପଥ ତ ଶ୍ରୀରାମ
ଲକ୍ଷଣେ ଖୋଜିଲେ ହୋ ।

୧୦୩— ଏ...ହସନ୍ତି କାନ୍ଦନ୍ତି ରାମ ଗଡ଼ନ୍ତି ଧୂଳିରେ
ଆହା ସୀତା ବୋଲି ଡାକେ ଜାକନ୍ତି
ଆସ ତୁ ସଖି ବାରେ ହୋ ।

୧୦୪— ଏ...ଲକ୍ଷଣ ପ୍ରବୋଧ ଶୁଣି ରାମ ହୋନ୍ତି ତୁନି
ଗହନ ବନେ ପାଦ ତ ଚାଲନ୍ତି ମୋ
ରଘୁକୁଳମଣି ହୋ ।



# ସମର ବୋଲି

## ୧—ପାଏକ ବୋଲି

### ୧—ପାଏକ ଅଭିନନ୍ଦନ

ଶ୍ରୀ ଶ୍ରୀ ଶ୍ରୀ ଅଷ୍ଟଉତ୍ତର ଶ୍ରୀ
ବୀର ଶ୍ରୀଗଜପତି ଗଜ ଈଶ୍ବର
ଅଖଣ୍ଡ ଖଣ୍ଡ ମହୀମଣ୍ଡଳ ଲ୍ଲଟେ କଳେବର
ବୀରାଧିବୀରବର ପ୍ରତାପି ଗଉଡ଼େଶ୍ବର
କଳିଯୁଗ ଷଣ୍ଢା
ଝାଡ଼ ପାତିଶା ଖଣ୍ଡା
ନବକୋଟି କର୍ଣ୍ଣାଠ କଳବର୍ଗ ଚଣ୍ଡା
କ୍ଷତ୍ରିକୁଳ ଲଞ୍ଜା, ଭୈରବୀ ଧୂପ ଖଣ୍ଡା
ପରମେଶ୍ବରଙ୍କ ଧଣ୍ଡା-ସୁଦର୍ଶନ ଚକ ଝଣ୍ଡା
ଅଦ୍ୟରେ ଅଦପତି
ମହୀରେ ମହୀପତି
ତଳେ ବସୁମତୀ
ଉପରେ ଧର୍ମ୍ମଦେବତା
ଅତୁଳ ବଳ ପରାକ୍ରମ ନୃପତିଙ୍କ ନୃପତି
ସୁବର୍ଣ୍ଣ ସିଂହାସନରେ ବିଜୟ କରଅଛନ୍ତି

ସଂଗ୍ରାମେ ସହସ୍ର ବାହୁ ବୀରଙ୍କ ଶିରୋମଣି
ପାତ୍ରମନ୍ତ୍ରୀ ଚଉପାଶେ ସେବକ ଖଟଣି ।
ଢାଳନ୍ତି ଚାମର ପାଖେ ଲୋକେ ବାଜେ କାହାଳ ମହୁରୀ
ଭାଟ କୈବାର କରେ ଖୁଣ୍ଟିଆ ଡାକେ ପୁରୀ ହୁର ଜୁର
ଛାମୁରେ ଉଭା ଚଣ୍ଡ ସୁବର୍ଣ୍ଣ ବେତ ଧରି
ଆଲଟ ଦାସ ହାଥେ ଅନେକ ସେବାକାରୀ
ଡାହାଣେ କଟାରୀ, ବାମପାରୁଶେ ଢାଲ ତରୁଆରି
ଆଗେ ଚୋପଦାର
ଶ୍ରୀ ଶ୍ରୀ ଶ୍ରୀ ପଦ୍ମରେ ଅର୍ଗଲ ତୋଡ଼ର
କଳା ଧଳା ଛତ୍ର ଯେ ଉଡ଼ଇ ଫର ଫର
ପ୍ରଭୁଙ୍କ ମଥାରେ ଖୋଲଇ ପାଗ
ବଇରୀ ନ ରହଇ ଆଗ
ରାଜ୍ୟ ଅଠର ମଣ୍ଡଳ ନୃସିଂହପୁର
ଶୁଦ୍ଧ ଖଣ୍ଡାୟତ ବୀର
ମାନସିଂହ ହରିଚନ୍ଦନ ମହାପାତ୍ରଙ୍କ ପରିଗୃର
ଶାହାଣା ଗୋମଣା ଖଣ୍ଡା ତରବାର ଧରି ଛାମୁରେ ହାଜର
ଲକ୍ଷେ ରାଜାଙ୍କ ମଉଡ଼ମଣି ମହିମା ଭୋ ଜୁହାର ।

( ନରସିଂହପୁର )

## ୨—ପାଏକ ଦାଣ୍ଡୁଆଳ

ଚକ୍ରଧର ବର **ଚକର** ଗୁରୁ ଠେକଣ ଦେଲେ
ଭଗବାନ ଭଗ **ଭଟକା** ଅଣ୍ଟେ ପିଠ ବୋଇଲେ । ୧ ।
ନାରାୟଣ **ନୋଧ** ସାଧିଲେ ଶୋଧ ପାଇବୁ ତୁହ
ମଧୁସୂଦନ **ମୁଣ୍ଡା ଟିପାରେ** ଅଡ଼ ପେଶ ପେଲଇ । ୨ ।
**ଛେଲ ଶିଳମଣି କିପାରେ** ଛେଲ ଛନ୍ଦ ମାରିବୁ
ଶ୍ୟାମଘନ **ଗଦା ଶାୟଣା** ଅଡ଼ ଧରି ପିଟିବୁ । ୩ ।
ପବନ **ପରଞ୍ଜ** ଖଣ୍ଡାକୁ ଶୂନ୍ୟେ ଉଜାଣି ଠେକ
ଶିଶୁମୁନେ **ଖଣ୍ଡା** ଗଳାଲେ ତୁ ଯେ ହେବୁ ନିଦକ । ୪ ।

ଭାବଗ୍ରାହୀ ଭୂତନାଥଙ୍କ ତୁଲ୍ୟ କର ଗୁହିବୁ
ଦୁଷ୍ଟ ଦଳନ ଦାଉଣିରେ ଖଣ୍ଡା ହସ୍ତ ଥୋଇବୁ । ୫ ।
ମାନ ମୁନ ଧର ଖଣ୍ଡାକୁ ଦାଢ଼ ସୂତ୍ରେ ଗୁଳବୁ । ୬ ।
ବ୍ୟାଘ୍ର ବାଟି ଠେସ ଆସନ ତହିଁ ଝଟେ ପବନ
ପା, ଦାଉଲ ପଦ୍ମପାଦରେ ଝାଟଣେ ଧର ଥା ମନ । ୭ ।
ଦାଉଲ ପରେ ଆରାପକ୍ଷୀ ଦଗ ଦାହନ କହ୍ରି
ଅଦ୍ୟ ଅବତାରେ ପତାକା ନନ୍ଦଘୋଷେ ଉଡ଼ଇ । ୮ ।
ଗୁର ଗିର ଗୁର ଗୋବାହ ମେରୁ କୁମ୍ଭ ଆସନ
ପ୍ରକୃତମାନେ ଖଟ କଳାରେ ଝାଣି ଧର ଥା ମନ । ୯ ।
ଘଡ଼ଘଡ଼ ରଡ଼ି ଶବଦେ ମାରି ଗୋଡ଼ ଗର୍ଜନ
ଶତ୍ରୁଲୋକେ ଭୟେ ଭାଜିବେ ଦୂରୁ ଦେଖି ନୟନ । ୧୦ ।
ଯାଦବ ପୁତ୍ରେ ଝମ୍ପା ବାନ୍ଧ ରେ ପେଟି ମିଶାଇ ଭଡ଼
ଅନନ୍ତ ଅର୍ଗଳ ତୋଡ଼ର ବାମ ଗୋଡ଼େ ସଜାଡ଼ । ୧୧ ।
ଏମନ୍ତ ଭେକ ବହ୍ନି କର ରେ ତନି ବେଳ ଜୁହାର
କାଇମାଟି ସେବା କଲେ କ ଅଗ ବର୍ତ୍ତିନ ଡାର । ୧୨ ।
ବସିଲ୍ପ ଠାବରୁ ବର୍ତ୍ତିନ ମହା ସୁଖରେ ପାଇ
ଲେଉଟି ନ ଅସେ ଘରକୁ ଦୂରୁ ବର୍ଗଣ ନେଇ । ୧୩ ।
କ୍ଷିତିପତି ଗତ ସାଆନ୍ତେ ସିଂହ ନୀଳାଦ୍ରିପତି
ମାନସିଂହ ହରିଚନ୍ଦନ କହେ ପାଏକ ଗତ । ୧୪ ।

( ନରସିଂହପୁର )

## ୩—ହତିଆର ଜନ୍ମ କଥା

ମଧୁ ନାମେଣ ଏକଇ ଦଇତ
ତାହାକୁ ମାର ପ୍ରଭୁ ଲୀଳା କଲେ ଜାତ
ସେ ତନ ଖଣ୍ଡ ହୋଇଲା
ଖଣ୍ଡେ ହୋଇଲା ହସ୍ତି ଅଙ୍କୁଶ
ଖଣ୍ଡେ ପାତାଳେ ପ୍ରବେଶ
ଆଉ ଖଣ୍ଡେ ବଞ୍ଚିଥିଲା
ତହିଁ ଛତିଶ ଖଣ୍ଡି ଶସ୍ତ୍ର ଯେ ହୋଇଲା । ୧ ।

ଶିକୁଳି, ଚକ୍ର, ଚମ୍ପୁଟା, ଗଦା, ମୁଦ୍‌ଗର
କୋଦାଳ, ପନଖା, ଭାଲ ଯେ ଲୌହ ଲଙ୍ଗୁର । ୨ ।
ଦାଉଲି, ସାବେଳ ବର୍ଚ୍ଛା, ଯେ ଖଣ୍ଡା, କଟାର
ଧନୁଶର, କୁନ୍ତ, ଛେଲ, କାଛ ତରବାରି । ୩ ।
ସୁନାଚରି, ଖାମଣା × × ×
× × × ×

## ୪—ନଳଜନ୍ମ କଥା

କପିଳାର ଚର୍ମୁ ଜନ୍ମ ହେଲା ଜାତ
ବିଶ୍ୱକର୍ମା ତହିଁ ହୋଇଲେ ଆଦଅନ୍ତ । ୧ ।
ଶାଳନଅଁ ସଜାଡ଼ିଲେ ବିଲୋଚନ ଦେବ
ପାଚଂଜ ଦେବୀ ଜନ୍ମ ମାଡ଼ିଲେକ ବେଗ । ୨ ।
ବ୍ରହ୍ମାଙ୍କଠାରୁ ଅଗ୍ନି ଅଣିଲେକ ଯାଇ
ଲଗିଲା ଅଗ୍ନି ଯେ ହୁତାଶନ ହୋଇ । ୩ ।
ହାଥେ ଧର ହାଥୁରି ଗଢ଼ିଲେ ଶୂଳସାଇଁ
ହାତୁରି ହୁତାଶନରେ ଦଗଧ ନ ହୋଇ । ୪ ।
ତାହା ଦେଖି ଆଶ୍ଚର୍ଯ୍ୟ ହୋଇଲେ ପଂଚଜ
ଛତଣ ଗଣ୍ଡି ଶସ୍ତ୍ର ଗଢ଼ିଲେ ପଶୁପତ । ୫ ।
ଯାହାକୁ ଯେଉଁ ଶସ୍ତ୍ର ଦେଲେ ତୋଳି
ବ୍ରହ୍ମା ବିଷ୍ଣୁ ମହେଶ ତନିଜଣ ମିଳି । ୬ ।
ନାରାୟଣଙ୍କ ଶସ୍ତ୍ର ଯେ ନବକାର ନେଲେ
ତେତ୍ରୟା ଯୁଗେ ସେ ଅସ୍ତ୍ର ପର୍ଶୁରାମଙ୍କୁ ଦେଲେ । ୭ ।
ସେହି ଶସ୍ତ୍ର ଘେନ କଲେ ପୃଥିବୀ ପର୍ଯ୍ୟଟନ
ଏକବିଂଶ ବାର ପୃଥ୍ୱୀ କଲେକ ଭ୍ରମଣ । ୮ ।
ସେହି ଶସ୍ତ୍ରେ ରାମଚନ୍ଦ୍ର ରାବଣ ବଧିଲେ
ଦ୍ୱାପରେ ସେହି ଶସ୍ତ୍ର ଅର୍ଜୁନକୁ ଦେଲେ । ୯ ।
ସୁଦର୍ଶନ ଅସ୍ତ୍ର ଅଗ୍ନି ଶ୍ରୀକୃଷ୍ଣଙ୍କୁ ଦେଲେ
ମହାଭାରତ ଯୁଦ୍ଧ ପାଣ୍ଡବେ ଜୟ କଲେ । ୧୦ ।

କଳି ଯୁଗେ ସେହି ଶସ୍ତ୍ର ନାମ ହେଲା ନଳ
ମନଭେଦ ବ୍ରାହ୍ମଣର ଦୁଇଜଣ ମିଳ । ୧୧ ।

(ପାଏକ ବାରବାଟୀ)
ନରସିଂହପୁର

## ୫—ଖଣ୍ଡା ରହସ୍ୟ

ସାତ ଖଣ୍ଡରେ ଖଣ୍ଡା ହୋଇଛୁ ଯୋଡ଼ା
ବ୍ରହ୍ମା ବିଷ୍ଣୁ ମହେଶ୍ୱର ହୋଇଲେକ ଲୋଡ଼ା । ୧ ।
ଅଙ୍ଗେଇତ ଋଷିପାତେ ଖଣ୍ଡା ହୁଏ ଗଢ଼ା
ଅଠବନ୍ଧେ ଖଣ୍ଡା ଯହିଁ ଯାହା ଲୋଡ଼ା । ୨ ।
ଦୁଇ ମୁଖ ବହେ ଖଣ୍ଡା ମୁଠେ ତଲବାର
ମୁଣ୍ଡ ଦୁଇମୁଖ ହୋଇଥାଏ ଖାମଣ୍ଡାର । ୩ ।
'ପରଞ୍ଜ ବାହୁର ମାପ ଜାଣେ ଶସ୍ତ୍ରକାର
କେଉଁ ଖଣ୍ଡା ରଣ ଜଣେ ଶୁଣ ତା ବିସ୍ତାର । ୪ ।
ଧ୍ୱଜବନ୍ଧ, ଗଜବନ୍ଧ, ସିଂହ ବୃଷ ବନ୍ଧ
ଧ୍ୱଂସବନ୍ଧ, ପାନବନ୍ଧ, ନଖ କୂର୍ମ୍ମବନ୍ଧ । ୫ ।
ଏକ ଗୁଞ୍ଜାଶରୁ ଅଠଗୁଞ୍ଜାଶ ଅଙ୍ଗୁଳ
ତହୁଁ ବଳିଗଲେ ଧୂପ ଧରେ ପୃଥ୍ୱୀଶ୍ୱର । ୬ ।
ରଣ ବିବାଦେ ଖଣ୍ଡାର ଯେତେକ ରହସ୍ୟ
ଗୋପତରେ ପାର୍ବତୀଙ୍କୁ କହିଲେ ମହେଶ । ୭ ।

( ପାଏକ ବାରବାଟୀ )

## ୬—ଅଠବନ୍ଧ ଖଣ୍ଡା

(୧) ଅଠଗୁଞ୍ଜାଶି ଅଙ୍ଗୁଳ ଧ୍ୱଜବଂଧ କହି
ଏହାକୁ ରଖିଲେ ଯଶ ବହୁତ ହୁଅଇ । ୧ ।
ପୌରୁଷ ହୁଅଇ, ଶତ୍ରୁଗଣ ସାଧ୍ୟ ହୋଇ୍ୟେ
କ୍ଳେଶ ମିଳେ, ଦନ୍ତ ଦନ କ୍ରୋଧି ହୋଇଯାଏ । ୨ ।
ଦେଶରେ ଭ୍ରମଇ କିବା ବନବାସୀ ହୁଏ
ଉତ୍ତମ ବନିତା ତାକୁ ଅପେ ଲଭ ହୁଏ । ୩ ।

(୨) ସତରଗୃଳକଶ ଅଙ୍ଗୁଳ ରାଜବଂଧ କହ୍ନ
ଏହାକୁ ରଖିଲେ ଗୃହ ପ୍ରତିଷ୍ଠା ହୁଅଇ । ୪ ।
ଯଶ କୀର୍ତ୍ତି ସଂପତ୍ତି ଯେ ତାହାର ହୁଅଇ
ବିଦ୍ୟାବନ୍ତ, ଚୋର ଭୟ, ରାଜଦୃଷ୍ଟି ହୋଇ । ୫ ।
ଚିତ୍ରିଣୀ ବନିତା ଯୋଗ ତା ଭାଗ୍ୟରେ ଥାଏ
କୁଳକୁ କାରେଣି ଏକ ପୁତ୍ର ଉପୁଜାଏ । ୬ ।

(୩) ସିଂହବନ୍ଧ ବୋଲିଣ ଯେ ସହସ୍ର ଅଟଇ
ଛୟାଳିଶି ଅଙ୍ଗୁଳ ଲମ୍ବ ଅଟେ ସେହ୍ନ । ୭ ।
ଯୁଦ୍ଧେ ପରାଜୟ ପୁଣି ଲଭେ ଅପଯଶ
ମିତ୍ର ଶତ୍ରୁ ହୋନ୍ତି ସଙ୍ଗ ଜନ୍ତୁ ଯାନ୍ତି ନାଶ । ୮ ।
ଅଧମ ବନିତା ଭୋଗେ ହୁଏ ମାଂସାହାର
ହୁଅଇ ବନ୍ଧୁ କୁଟୁମ୍ବେ ଅରଣ୍ୟ ବିହାର । ୯ ।

(୪) ପଞ୍ଚଗୃଳକଶ ଅଙ୍ଗୁଳେ ବୃଷବନ୍ଧ ହୋଇ
ଯେ ଗୃହେ ରହିବ ଶତ୍ରୁ ମିତ୍ର ତା ହୁଅଇ । ୧୦ ।
ରାଜ ସ୍ନେହ ଗୋରୁ ଲାଭ ସନ୍ତୁଜନ ହୋଇ
ଅବହେଳେ ପତିବ୍ରତା ପଦ୍ମିନୀ ଲଭଇ । ୧୧ ।

(୫) ଚଉରାଳିଶ ଅଙ୍ଗୁଳ ଧ୍ୱଂସବନ୍ଧ କହ୍ନ
କୁଳ ନାଶ ଅର୍ଥନାଶ ଯା ଗୃହେ ରହଇ । ୧୨ ।
ରଣରେ ଅଜୟ ପୁଣି ସଦା କଷ୍ଟ ପାଇ
ବହୁ କ୍ରୋଧି ରଣରଙ୍ଗେ ଲୋଥ ସେହୁ ଯାଇ । ୧୩ ।
କାଠ ଶଂଖିନୀ ବାଳାକୁ ଲଭ୍ୟ କରେ ସେହି
ରଣକାରି ବୃତ୍ତି ତେଜି ଭୋଗି ନ ପାରଇ । ୧୪ ।

(୬) ତେୟାଳିଶି ଅଙ୍ଗୁଳ ଯେ ପାନ ବନ୍ଧ କହି
କୃଷିକାରି ଅନ୍ନବସ୍ତ୍ର ବହୁତ ଲଭଇ । ୧୫ ।
ବଡ଼ କୁଳେ ଜାତ ପୁଣି ବହୁ କ୍ରୋଧି ହୋଇ
ଶସ୍ତ୍ର ଜୟେ କୀର୍ତ୍ତି ଅକୀର୍ତ୍ତି ଯେ ତାର ନାହିଁ । ୧୬ ।
ହସ୍ତିନୀ କନ୍ୟାକୁ ଲଭେ ହୁଏ ବଳବାନ
ଅତି ଲୋଭୀ ମିଥ୍ୟାବାଦୀ ଅତି ନୀଚ ମନ । ୧୭ ।

(୭) ବସ୍ତ୍ରାଙ୍କଣି ଅଙ୍ଗୁଳ ଯେ ନଖବନ୍ଧ କହ୍ନ
ଯା ଗୃହେ ପ୍ରବେଶ ତାର ବନ୍ଧୁ ନାଶ ଯାଇ । ୧୮ ।
ଖର ଦୋଷେ ଅପମୃତ୍ୟୁ ବହୁତ ହୁଅଇ
ନିଜ ମୃତ୍ୟୁ ହୁଏ ପୁଣି ବଂଶ ନାଶ ଯାଇ । ୧୯ ।
ରମଣୀ ହାଥରେ ଯେବେ ପଡ଼ଇ ଏହି ବନ୍ଧ
ରଣେ ଜିତେ ତାର ହୁଏ ସର୍ବ ବୈରୀ ବଧ । ୨୦ ।

(୮) ଏକଗୃହଣ ଅଙ୍ଗୁଳ ଭାଇ କୁର୍ମବନ୍ଧ କହ୍ନ
ଭ୍ରାତା ପତ୍ନୀ ମୃତ ହେବ ସଂଶୟ ଯେ ନାହିଁ । ୨୧ ।
ଅବର ଦୋଷ ଯେ ପୁଣ କୁର୍ମବନ୍ଧେ ଥାଇ
ବଡ଼ ବନ୍ଧରୁ ବଳଲେ ଧୂମ ସେ ବୋଲଇ । ୨୨ ।
ବୁଝି ବଗୁର ମାଇକେ ଘେନିବେ ଏ ବନ୍ଧ
ନିଜ ମାପେ ଭଲେ ଭଲ ମନ୍ଦେ ହୋଏ ମନ୍ଦ । ୨୩ ।

( ନରସିଂହପୁର )

## ୭ – ଖଣ୍ଡା ଉଲାଗିବା ଗୀତ

ଗାଡ଼ିଞ୍ଜି ଗଣପତି, ଭଦ୍ର କାଳିକା
ପରଞ୍ଜେ ପାଟଣି ରହିଛୁ ଏକା । ୧ ।
ଗଣ୍ଡାରେ ବ୍ରହ୍ମା କରଛନ୍ତି ଘର
ଅଭୟ ଅଛୁ ଅଜୟ ପଞ୍ଜିର । ୨ ।
ଆହୁତ ପରେ ବାଜିତ ଅଛୁ
ସିଂହଡ଼ାରେ ସିଂହବାହିନୀ ରହିଛୁ । ୩ ।
ମଥାରେ ରହିଅଛୁ ରାହୁ
ଏତେ ବୋଲି ଖଣ୍ଡା ଉଲୁଚ ଯାଉ । ୪ ।
ଚଣ ବଢ଼ାଦେ ଯେତେଣେ ଇଚ୍ଛା ଯାଇ
ଭୈରବୀ ସାହା ଦୁର୍ଗାଙ୍କୁ ଧ୍ୟାଇ । ୫ ।

( ବୋଡ଼କୋଡ଼ା )

## ୮—ପାଏକ ବେଶ

(୧) ଅଡ଼ମେ ଅଡ଼ ବନ୍ଧ କଙ୍କଣ କୌପୁନୀ
ହେଲେଟି ଧୁମାଧୁମି
ହସ୍ତମେ ରସ ବାଉ଼ ଚୈତନ୍ୟ ମୃଦୁନ,
ଗଳମେ ଘ୍ରୀମ
ଉୁଡ଼ମେ ଉୁଡ଼
ଜାନୁମେଁ ଜାନୁଘଣ୍ଟି
ବାହାମେ ବାଘମୁହିଁ ବାହୁଟି
ପାଦେ ପାମେସ୍ତ୍ରି ଲୁନ ଲୁନ ବାଜେ
ସିଂହା ମିରଗା କନ୍ଧେ ବାହାଜେ
ଅଖଣ୍ଡ ବଭୂତ କପୋଳକୁ ସାଜେ
ମଥାମେ ଖୋଳର ପାଗ କଣ୍ଠମେ କଣ୍ଠାସ୍ତ୍ରି
ଶିରମେ କଳାଟିଯା ସିନ୍ଦୂର ଶିସ୍ତ୍ରି

(୨) ବାମେଁ ଯମଦାଢ଼ ଡାହାଣେ ଟୋଢ଼ର କାତ
କର୍ଣ୍ଣରେ କୁଣ୍ଡଳ ଘାଘ ଭୈରବ ମୂରତ । ୧ ।
ଦୁର୍ଗା ଦେଲେ କାଛଠା କାଳିକା ଦେଲେ କାଳୀ
ମାଟି ପିଣ୍ଡରେ ମାଟି ଭାଇ ହୋଇଅଛୁ ବୋଲି । ୨ ।
ଈଶ୍ୱରଙ୍କ ସିଂହ ଦଣ୍ଡାରୁ ଅଡ଼ବନ୍ଧ ହୋଇ
ବାନାଓର ମାଳା ବନ୍ଧିଲୁ ତହିଁ ଭାଇ । ୩ ।
ବାସୁକି ବୋଲଣ ଯେ ଅଟଇ ଏକ ନାଗ
ସେ ଅପି ମଥାରେ ମୋର ହୋଇଅଛୁ ପାଗ । ୪ ।

## ୯—ପାଇକ ଅଗୁଳ ଓ ଫିଠାଣ

(୧) ଥୋ ମୁହଁ କଳା ଥୋ ଭୂଇଁ ରେ
କଳା ଲଗେଇଚୁ କୋଉ ମୁହଁରେ । ୧ ।
ପୋଛୁପକା କଳା ରଞ୍ଜିଦେବା ଅମ୍ଭେ
ନ ଜାଣିଲେ ଦୋଷ ରଙ୍ଗ ଅରମ୍ଭେ । ୨ ।

ପିତା ମାତା ଋଣ ଦେଉଅଛୁ ତୋତେ
କଳାଟିପା ଅଦ୍ୟଜନ୍ମ କହିଦେବୁ ମୋତେ । ୩ ।

**ଉତ୍ତର—**

ନ ପକା ନ ପକା ଭାଇ ଶ୍ରୀଗୁରୁଙ୍କ ଋଣ
କଳାଟିପା ଆଦ୍ୟଜନ୍ମ ଆମ୍ଭଠାରୁ ଶୁଣ । ୧ ।
ବୋଇତଆଳ ସାଧବ ଯେ ବୋଇତ ମେଲାଇ
ତହିଁରେ ଅଛନ୍ତି ଧନ୍ୱନ୍ତରି ରାଇ । ୨ ।
ଘିଅରେ ବୁଡ଼ାଇ ଯେ ତେଲରେ ଜଳାଇ
ସେହି କଳା ଧେନ ମୁହିଁ ଯାଉଅଛୁ ମୁହିଁ । ୩ ।
ଶ୍ରୀଗୁରୁଙ୍କ ଋଣ ମୋତେ ପକାଇଥିଲୁ ଭାଇ
ଗୁରୁଙ୍କ ଆଜ୍ଞାରୁ କଳାଟିପା ଜନ୍ମ ତୋତେ ଦେଲି କହି । ୪ ।

୨—ମା' ତୋର କେଳୁଣୀକି ବାପ ତୋର ଭାଟ
ସାତ କଡ଼ା ସିନ୍ଦୁର ମାରି ଗୁହଳୁଅଛୁ ବାଟ । ୧ ।
କେ ଦେଲା ସିନ୍ଦୁର ସେ କାହିଁ ହେଲା ଜାତ
କହିଦେବୁ ଭାଇ ସିନ୍ଦୁର ଆଦଅନ୍ତ । ୨ ।
ସଦଗୁରୁଙ୍କ ଋଣ ଦେଉଅଛୁ ତୋତେ
ସିନ୍ଦୁରର ଆଦଜନ୍ମ କହିଦେବୁ ମୋତେ । ୩ ।

**ଉତ୍ତର—**

ଯେବଣ କାଳେ ଶ୍ରୀରାମ ବନବାସ ଗଲେ
ଉଦେଗିରି ବନେ ପ୍ରବେଶ ହୋଇଲେ । ୧ ।
ଉଦେଗିରି ବୋଲି ପର୍ବତର ନାମ
ସେ ପର୍ବତରୁ ସିନ୍ଦୁର ହୋଇଲାକ ଜନ୍ମ । ୨ ।
ସୀତାଙ୍କ ଶ୍ରୀଅଙ୍ଗର ଶ୍ରମଝାଳ ଗଳି
ପାଷାଣେ ପଡ଼ନ୍ତେ ଲାଲ ଦିଶିଲା ତକ୍ଷଣି ।
ତାହା ଦେଖି ଆଶ୍ଚର୍ଯ୍ୟ ହୋଇଲେ ରଘୁନାଥ
ଚାରିଭାଗ କରି ତାହା ବାଣ୍ଟିଲେ ତୁରିତ ।
ଭାଗେ ହନୁମାନକୁ ଦେଲେ
ଭାଗେ ଚଣ୍ଡି ଚାମୁଣ୍ଡାଙ୍କୁ ଦେଲେ ।

ଭାଗେ ସାଧୁଙ୍କୁ ଦେଲେ
ଭାଗେ କ୍ଷତ୍ରିଙ୍କୁ ଦେଲେ । ୫ ।
ସେହି ସିନ୍ଦୂର ମଥାରେ ଅଛି ମୋର
ତୁ ଥାଅ ମୁଁ ଯାଉଛି ଦେଶ ଫେର । ୬ ।

୩।—ଏକାଧୁଷି ବେଳା ମଣ୍ଡନା ପଦ କରଟେ ଧ୍ୟାନ
ତାହା କୃପା ଲେଶ ପାଇ ମୁଁ ପଦ କରେ ରଚନ । ୧ ।
ଶୁଣ ହୋ ପାଇକ ଶୂତରେ ତୋତେ ପଚାରେ ମୁହିଁ
କ୍ଷତ୍ରି ବୃତ୍ତି ବିଦ୍ୟା ସାଧନ ତାହା ପାଇଲୁ କାହିଁ ? ୨ ।
କାହେ ପାଶେ ଥିଲା କେମନ୍ତେ ଏଥି ହେଲା ପ୍ରକାଶ
ପ୍ରମାଣ ପ୍ରବନ୍ଧେ କହିଣ ମୋର ସଂଶୟ ନାଶ । ୩ ।
କାଛୁଲା, କଂଢିଆ, ଟୋପର, ଆରିପଷୀ ସିନ୍ଦୁର
ବାହୁଟି, ଅଡ଼ବନ୍ଧ ଆଦ ଘଣ୍ଟି ଘାଗୁଡ଼ି ହାର । ୪ ।
ଢାଲ, ଖଣ୍ଡଶରୀ ବନ୍ଧାଉ ଏହା କହ ପ୍ରମାଣ
କେତେ ହସ୍ତ କେତେ ଅଙ୍ଗୁଳ ମାପକର ବଖାଣ । ୫ ।
'ପାଇକ' ହୋଇ ଶବ୍ଦ କାହୁଁ ଏହା କହ ବୁଝାଇ
ଏ ବେଶ ଭୂଷଣ ହୋଇଛୁ କାହା ନାମକୁ ଧ୍ୟାଇ ? ୬ ।
କେଉଁ ଦଗକୁ ଦୃଷ୍ଟିଦେଇ ବେଶ କରୁ ଧାରଣ
ମସ୍ତକେ ପାଗକୁ ବାନ୍ଧିଲୁ କାହା ନାମ ସ୍ମରଣ ? ୭ ।
ପାଇକ ହୋଇ କାହାଠାରୁ ଜାତ ହୋଇ ଅଛନ୍ତି ?
କେଉଁଠାରେ ଏ ବିଦ୍ୟା ଥିଲା ମର୍ତ୍ତ୍ୟେ କି ରୂପେ ଖ୍ୟାତି ? ୮ ।
ନବଗୁଣରେ ଅଡ଼ବନ୍ଧ ବାନ୍ଧିଅଛୁ କନ୍ଧରେ
ନବଦେବତା ବାସକର ରହିଛନ୍ତି ତହିଁରେ । ୯ ।
ଗ୍ରନ୍ଥିମଧ୍ୟେ ନବଦେବତା କରଛନ୍ତି ଆଶ୍ରୟ
କହିବୁ ତାଙ୍କ ନାମମାନ ମୋର ଯିବ ସଂଶୟ ।୧୦।
ଗୁରୁ ସେବିଥିଲେ ଏମାନ କହିଦେବୁ ପ୍ରମାଣ
ନ କହିଲେ ତୋତେ ଦେଉଛି ଚନ୍ଦ୍ର ସୂର୍ଯ୍ୟଙ୍କ ଆଣ । ୧୧ ।
ଅଡ଼ବନ୍ଧେ ରହିଅଛନ୍ତି ଦେବତା ଅଷ୍ଟାଦଶ
ଗୋଟି ଗୋଟି କରି ବୁଝାଅ ନାମ କର ପ୍ରକାଶ । ୧୨ ।

କହ୍ନ ନ ପାରଲେ ଏମାନ ବେଶ ଥୁଅ ବହନ
ଦେଉଛୁ ମାତା ପିତା ରେ ସଦଗୁରୁଙ୍କ ସ୍ତଣ । ୧୩ ।

**ଉତ୍ତର—**

ଏଥୁଅନ୍ତେ ବଢ଼୍ଗେ ଶୁଣିମା ତ୍ରେତା ଯୁଗ ଚରିତ
ଆଦଶକ୍ତି ଯୋଗମାୟାଙ୍କୁ ପୂଜେ ରେଣୁକା ସୁତ । ୧ ।
ପର୍ଶୁରାମ ପୂଜା କରନ୍ତେ ଦେବୀ ହେଲେ ପ୍ରସନ୍ନ
କ୍ଷତ୍ରିବୃତ୍ତି ଆଦି ସମସ୍ତ ଯାଚି ଦେଲେ ବହନ । ୨ ।
ମହାଖେଳା ବିଦ୍ୟା ଅବର ପର୍ଶୁରାମ ପାଇଲେ
ଯୋଗମାୟା ବର ପ୍ରସାଦେ ଜନପୁର ସାଧିଲେ । ୩ ।
ଯୋଗମାୟା ବର ପ୍ରସାଦେ ଜନପୁରେ କ୍ଷତ୍ରିୟେ
କ୍ଷତ୍ରିବୃତ୍ତି ନୀତ ଲଙ୍ଘିଲେ କାହୁଁ ନ କର ଭୟେ । ୪ ।
ଏକବିଂଶ ବାର ଭ୍ରମିଣ ଯୋଦ୍ଧା କଲେ ନିପାତ
ତାଙ୍କଠାରୁ ବିଦ୍ୟା ଶିଖିଲେ ଭରଦ୍ୱାଜଙ୍କ ସୁତ । ୫ ।
ଦ୍ୱାପରେ ହସ୍ତିନା ନଗରେ ଦ୍ରୋଣୋ ହେଲେ ପ୍ରବେଶ
ତାଙ୍କଠାରୁ ବିଦ୍ୟା ଶିଖିଲେ ଧୃତରାଷ୍ଟ୍ରଙ୍କ ଶିଷ୍ୟ । ୬ ।
ଶତେ ଭ୍ରାଥ ସଙ୍ଗେ ମିଳଣ ଧୃତରାଷ୍ଟ୍ର ନନ୍ଦନ
ଶସ୍ତ୍ର ତରୁଆର ଧନୁକ କ୍ଷତ୍ରିବୃତ୍ତି ସାଧନ । ୭ ।
ସେଠାରୁ ସାଧନା ବିଦ୍ୟା ଯେ ମର୍ତ୍ତେ ହେଲା ପ୍ରକାଶ
ପାଇକ ବେଶ ମୁଁ ଧରଲି ପାଇ ଗୁରୁ ଆଦେଶ । ୮ ।
କସରତ ସାଧନା ବିଦ୍ୟା ଯେ କ୍ଷତ୍ରିକୁଳେ ଉତ୍ତମ
ଭରଦ୍ୱାଜ ସୁତ ସୁମର ସେ ଯେ ହେଲା ଭଆଣ । ୯ ।
କେତେହେଁକ କାଳେ କ୍ଷତ୍ରିଙ୍କ ବୃତ୍ତି ପାସୋର ଗଲା
ଇଳା ପୁନ ବେଳା ପ୍ରସାଦେ କ୍ଷତ୍ରିବୃତ୍ତି ବଞ୍ଚିଲା । ୧୦ ।
ସେଠାରୁ ପାଇକ ବେଶେ ମୁଁ ହେଲି ମର୍ତ୍ତ୍ୟେ ପ୍ରକାଶ
ଏଳାଧୂଷି ବେଳା ମନ୍ତ୍ରନା ମୋତେ କଲେ ପୌରୁଷ । ୧୧ ।
ଭରଦ୍ୱାଜ ସୁତ ମସ୍ତକେ ପାଠ ଝୁଲ ଖଞ୍ଜିଲେ
ଅଶ୍ୱତ୍ଥାମା ଢାଲ ବଦାଉ ଯାଚି ଆନନ୍ଦେ ଦେଲେ । ୧୨ ।

ଘଣ୍ଟି ଘାଗୁଡ଼ି ନରସିଂହ ଦେଲେ କଣ୍ଠିରେ ମୋର
ଅଭେଦ କବଚ ଶରୀରେ ଦେଲେ ରବି କୁମାର । ୧୩ ।
କଣ୍ଠାଗ୍ରି ଶସ୍ତ୍ର ତରୁଆରେ ଦେଲେ ମେଘ ବାହନ
କାରଣ ମାରଣ ତାରଣ କହିଦେଲେ ଫାଲ୍‌ଗୁନ । ୧୪ ।
କଟାର ଅଣି ଆଗ୍ରପଣୀ ବାନ୍ଧି ଦେଲି ବାହୁରେ
ଶ୍ରୀରାମ ସୁମର ସିନ୍ଦୁର ଶିରୀ ଘେନାଲି ଭାଲରେ । ୧୫ ।
ଯାହା ପଗୁରଲ୍ଲି ଶସ୍ତ୍ରଙ୍କ ମାପ ଅଙ୍ଗୁଳ କେତେ
ପାଇକ ହୋଇଣ ଗୁପତ କାର୍ଯ୍ୟ କରୁ କହୁଁତେ । ୧୬ ।
ଯେଉଁ ମାପ ଯେଉଁ ଜାଣଇ ଶୁଭ ଅଶୁଭ ବାର
ପାଆ ଏକୁଁ ହେଲି ପାଇକ ଜାଣ ହେଲେ ବଗୁର । ୧୭ ।
କାଷ୍ଟଯେ ପାଆକୁ ବଢ଼ାଇ ରଖିଥିବୁ ତୁ ଧରି
ଏ ବେଶ ଭୂଷଣ ହୋଇବୁ ଧୃଷି ନାମକୁ ଘୋଷି । ୧୮ ।
ଖିର ଦଗକୁ ଦୃଷ୍ଟି ଦେଇ ବେଶ କର ଧାରଣ
ମସ୍ତକେ ପାଗକୁ ବାନ୍ଧିବୁ କୃଷ୍ଣ ନାମ ଧ୍ୟାଇଣ । ୧୯ ।
ପାଇକ କୁଳ ଜାତ ହେଲେ ଚନ୍ଦ୍ରସୂର୍ଯ୍ୟଙ୍କଠାରୁ
ନବଗ୍ରହ ନବ ଦେବତା କହିଅଛନ୍ତି ଗୁରୁ । ୨୦ ।
ପର୍ଶୁରାମ ବିଦ୍ୟା ଅଟଇ କ୍ଷତ୍ରିବୃତ୍ତି ସାଧନ
କାଳେ ଲୋପ ହେଲା ସର୍ଜିଲେ ମହା ମେଘ ବାହନ । ୨୧ ।
ବହୁତ ଆନନ୍ଦ ହୋଇଲି ପାଇ ବେଶ ଭୂଷଣ
ରାଜସଭା ତଳେ ପ୍ରବେଶ କଲି ରାଜଦର୍ଶନ । ୨୨ ।
ରଙ୍ଗ ଦେଖି କଲେ ପ୍ରଶଂସା ମୋରେ ରାଜାଧୀଶ୍ୱର
ହାର ବାହୁଟି ସ୍ୱର୍ଣ୍ଣବଳା ପାଇଲି ପୁରସ୍କାର । ୨୩ ।

## ୧୦—କ୍ଷତ୍ରି ଚରିତ ( ୧ )

ବିଶୁଦ୍ଧ ଆଖ୍ୟାନେ ଶୁଣନ୍ତୁ ବୁଧେ ହୋଇ ସୁମତି
ବର୍ଣ୍ଣିବି କ୍ଷତ୍ରିୟ ଚରିତ ଶୁଣ ଦେଇଣ ଶ୍ରୁତି । ୧ ।
ପୃଥ୍ୱୀ ଶାନ୍ତି ରକ୍ଷା ପାଇଁକି ଭାବି ପ୍ରଭୁ ମାନସ
ନିରାକାର ଗର୍ଭୁ ଜନମ ହେଲେ କ୍ଷତ୍ରିୟ ବଂଶ । ୨ ।

ଜମ୍ବୁ ଜମ୍ଭୁକ ବର୍ଣ୍ଣିକ କୃତୀ ଧନିଷ୍ଠା ପୁଣି
ତାଙ୍କଠାରୁ ଜନ୍ମ ହୋଇଲେ ଧୁଣି ଛଡ଼ ନନ୍ଦନ । ୩ ।
ସେ ଛଡ଼ ନନ୍ଦନ ବୀର୍ଯ୍ୟରୁ ହେଲେ ଷାଠିଏ ଜଣ । ୪ ।
ଷାଠିଏ ନନ୍ଦନ ବୀର୍ଯ୍ୟରୁ ଶହେ ଅଶୀଟି ସୁତ
ଷଡ଼ ଶସ୍ତ୍ର ସୁତ ସମସ୍ତେ ଅତି ସଂଗ୍ରାମେ ଜିତ । ୫ ।
ଦେଖି ନିରାକାର ବଳିଷ୍ଠ ପୁତ୍ର ଅତି ସନ୍ତୋଷ
ଏହିପରି ହେଲା ବିସ୍ତାର ଜାଣ କ୍ଷତ୍ରିୟ ବଂଶ । ୬ ।
କ୍ଷତ୍ରିବିଦ୍ୟା ଶିକ୍ଷା ଦେବାକୁ ଯାଇ ଖୋଜିଲି ଗୁରୁ
ଶୁରସେନ ନାମେ ପୁରୁଷ ଜନ୍ମିଥିଲେ ଅଗରୁ । ୭ ।
ଅଖଡ଼ାଶାଳରେ ପହଞ୍ଚି ବନ୍ଦି ଶ୍ରୀଗୁରୁ ପାଦ
ଗଦା ମୁଦ୍‌ଗୁର ସାଧନାରେ ସ୍ମରିଲେ ହନୁ ହୃଦ । ୮ ।
ଖଣ୍ଡା ଖପର ସାଧନାରେ ସ୍ମର କାଳିକା ନାମ
ଧନୁ କୁନ୍ତ ଚକ୍ର ଶାୟକେ ସୁମରଣା ଶ୍ରୀକୃଷ୍ଣ । ୯ ।
ବର୍ଚ୍ଛା ଶର କାତି କଟାରି ଧରି କ୍ଷତ୍ରିଙ୍କ ଠାଣି
ଶିକୁଳି, ଚମୁଠା, ଲଙ୍ଗୁର ଧରି ବୋଲନ୍ତି ରାମ । ୧୦ ।
ମଧୁସୂଦନ ନାମ ସ୍ମରି ସୁତେ ହେଲେ ବାହାର
ବିପଦ ସ୍ଥାନରେ ହୃଦରେ ସ୍ମରି ଶ୍ରୀ ଗଦାଧର । ୧୧ ।
ଖଣ୍ଡା ଧରି କ୍ଷତ୍ରି ଅଂଶରୁ ଜାତ ଯେ ଖଣ୍ଡାୟତ
ମହତ ଯୋଗୁଁ ହୋଇଛୁ ମହାନାୟକ ଖ୍ୟାତ । ୧୨ ।
ବିପଦମାନ ଘୁଞ୍ଚିଯିବ ସେହୁ ହୋଇବ ଜୟୀ
ପାଏକ ବିଦ୍ୟା ଏ ସାଧନା କବି ଏ ରସ କହି । ୧୩ ।

( ନରସିଂହପୁର )

## କ୍ଷତ୍ରି ଚରିତ (୨)

କର ଯୋଡ଼ି କରେ ଜଣାଣ ଦେବ କମଳାପତି
କର ବାରେ ମୋରେ କରୁଣା ନାଶ ହେଉ ଦୁର୍ଗତି । ୧ ।
କ୍ଷିତିରେ ଜନମି କ୍ଷତ୍ରିୟ ବୃତ୍ତି ଅଛୁ ଆଦର
ଖଣ୍ଡନ୍ତୁ ମୋହର ଦୁର୍ଦ୍ଦଶା କ୍ଷମାସାଗର ହରି । ୨ ।

ଗରମ୍ଭ ରଷ୍ଟଙ୍କୁ ବିନାଶି ହୃଦେ ଦିଅ ସାହସ
ଗଞ୍ଜିବ ଗର୍ବ ବଳଙ୍କୁ ଦେବ ରମାବିଳାସ । ୩ ।
ଘୋର ଅରଣ୍ୟ ଘୋର ବନେ ମୋତେ ସହାୟ ହୁଅ
ଘଡ଼କେ ସଙ୍କଟୁ ତାରଣ ମତେ ରକ୍ଷାରେ ନିଅ । ୪ ।
ଚଞ୍ଚଳ ଗତିଙ୍କୁ ଦିଅନ୍ତୁ ମତ୍ସ୍ୟରୂପୀ ଶ୍ରୀହରି
ଚୂଳିବା ତର୍କ ମୁଁ ଶିଖିବି କଚ୍ଛ ମୂର୍ତ୍ତି ସୁନ୍ଦର । ୫ ।
ଛତରେ ମତରେ ପରଶୁଧର ରହନ୍ତୁ ମୋର
ଛନ୍ଦ ତର୍କ ଥାନେ ସାହାଯ୍ୟ ହଳଧର ସୋଦର । ୬ ।
ଜାଲ କୁମନ୍ତ୍ରଣା ସ୍ଥଳରେ ଧାହା ବାମନ ମୂର୍ତ୍ତି
ଯନ୍ତ୍ରତନ୍ତ୍ର ମନ୍ତ୍ର ବରଦ ସାହା ହେବେ ମୋ କତି । ୭ ।
ଝାଡ଼ଣ ଆଡ଼ଣ ତାଡ଼ଣ ବିଦ୍ୟା ସାଧନା ଠାର
ଝଟତ ସପକ୍ଷ ହୋଇବେ ମତେ କୋଦଣ୍ଡଧର । ୮ ।
ନ୍ୟାୟ ସନ୍ଧିସ୍ଥଳେ ବଉଧ ହୃଦେ ଦେବେ ମୋ ବୁଦ୍ଧି
ଅରିଷ୍ଟ ନାଶିଣ କଳଙ୍କି କାର୍ଯ୍ୟ କରିବେ ସିଦ୍ଧି । ୯ ।
ଝାଣ ଗବ ଷ୍ଟଡ଼ ତୋ ଆଗେ କହେ ପାଏକ ଭାଇ
ଝିପି ଅସ୍ତ୍ରଶସ୍ତ୍ର ସମସ୍ତ ଏହା ପାଇଲ ମୁହିଁ । ୧୦ ।
ପାଏକଙ୍କ ଏ ଯେ କବଚ ଠିକ ଗୁରୁଙ୍କ ବାକ୍ୟ
ଠିକେ ନ ଶିଖିଲେ ଠିକର ଚନ୍ଦେ ଛୁଡ଼ବ ବେକ । ୧୧ ।

( ତଗିରିଆ )

## ୧୧—କଳି (୧)

କୋପେ ଷଣ୍ଢି ବୋଲେ ବାଣୀ
ମାରିବ ଅଜ ମୁଁ ଯୋଡ଼ା କହୁଣୀ
କେତେ ହେଉଅଛୁ ଝାଣିଝୁଣି, ଖାର ରେ । ୧ ।
ଖଳବୁଦ୍ଧି ତୁମ୍ଭେ କଲ
ଖରାପ ହୋଇ କଳି ଲଗାଇଲ
ଦ୍ୱନ୍ଦ ଭିଆଁଇଲ ରେ
ଖିର ସଙ୍ଗେ ଖାର ମିଶାଇଲ, ଖାର ରେ । ୨ ।

ଗରବ କମାଇ କର,
ଗାଲ ଅଜ ଭଙ୍ଗି ଦେବ ତୁମ୍ଭର
ଗେଲ ଲାଗ ମୋ ସାଙ୍ଗର, ବୀର ରେ । ୩ ।

ଘଡ଼ିଏ ତୁ ଥାଅ ରହ
ଘଣ୍ଟିକା ଶିଘି ତୋ ପ୍ରାଣ ନେବଇଁ
ଘର ନ ଦେଖିବୁ ତୁହ କ, ବୀର ରେ । ୪ ।

ଉତପାତ ହେଉଅଛୁ
ଉତ୍ତର ତୁ ମୋତେ କେତେ ଦେଉଛୁ
ଊଣା ବୋଲିକ ମଣୁଛୁ, ବୀର ରେ । ୫ ।

ଚଇପଟିଆ ନାଲଠା
ନାଅଁଖୁଣ୍ଟା ଗାଲେ ଦେବ ସାତଠା
ଅଜ ଚେଉ ତୁ ଗୋଲାମ ଧୂଠା, ବୀର ରେ । ୬ ।

ଛତରମୁହାଁ ମଦୁଆ
ଛେଳ ବେକଅ ତୁ ହଂସ ପାଦୁଆ
ମୋହ ଅଗରୁ ତୁ ଯାଅ, ବୀର ରେ । ୭ ।

ଜଳଜଳା ତୁ ବଗଡ଼
ଯୋଗେ ଭେଟ ହେଲୁ ବୁଢ଼ା ମାଙ୍କଡ଼
ଯାହା ଜାଇଛୁ ନ ମର ମୂଢ଼, ବୀର ରେ । ୮ ।

ଝାଡ଼ଦେବ ତୋର ଦାନ୍ତ
ବୁକୁ ଚିର କାଢ଼ି ଅଣିବ ଅନ୍ତ
ଝିମିଟେ ସମ୍ଭାଳ ତୁ ତ, ବୀର ରେ । ୯ ।

ନାଅଁସିଆ ବାରବୁଲା
ନାଶ୍ଚୟ ମରଣ ତୋତେ ଘଟିଲା
ଯମ ତ ପାଞ୍ଜି ପୋଛୁଲା, ବୀର ରେ । ୧୦ ।

ଠାଣ କରିଅଛୁ ତୁହ
ଠେକ କରୁଡ଼ବ ଶିଳାରେ ନେଇ
ଠିକ ଠିକ କରବଇଁ, ବୀର ରେ । ୧୧ ।

ଠିକରେ କହୁଛୁ ଭଲେ
ପୋଢୁଅଁ ପୁଅ ତ ଶୂଳୀ ଚଢ଼ିଲେ
ଠିକେ ଗେଲ ଯିବ ଭଲେ, ବୀର ରେ । ୧୨ ।
(ନରସିଂହପୁର)

**କାଳି** (୨)

କେ କାହାକୁ ଗୁହି ଭଣେ
ଆମ୍ଭପର ଜଣେ ଥିଲେ ଗହଣେ ରେ
ତୁମ୍ଭ ପର କ ରହିବେ ପଣେ, ବୀର ରେ । ୧ ।

ଖଳକଥା ପରଗ୍ଟର
ଖଣ୍ଡା ମୂଠାରେ ବୁଦ୍ଧି ନାହିଁ ତୋହର ରେ
ତୁ ତ ଖେଚୁଆଙ୍କ ସରଦାର, ବୀର ରେ । ୨ ।

ଗରବ କରୁଚୁ ତୁହ
ଗାଲେ ଚୂନ କଳା ଦେବ ଲଗାଇ ରେ
କେହି ଗୁହାର ଶୁଣିବେ ନାହିଁ, ବୀର ରେ । ୩ ।

ଘନ ଘନ ସିଂହ ରଡ଼ି
ଘଡ଼ିଏ ଗଲେ ଚେତା ଯିବ ବୁଡ଼ି ରେ
ଘଡ଼ି ମଧ୍ୟ ପ୍ରାଣ ଯିବ ଛାଡ଼ି, ବୀର ରେ । ୪ ।

ଅଡ଼ଣି କାଡ଼ଣି ହେବ
ସରଳ ଯାଇ ପଛକୁ ଘୁଞ୍ଚିବ ରେ
ଏକା ମାଲ ବନ୍ଦର ସ୍ୱଭାବ, ବୀର ରେ । ୫ ।

ଚରଣେ ଗୁପିଲା ପର
ଚେତା ବସୁନାହିଁ ଧରୁଛୁ ଫାଡ଼ି ରେ
ଅଣ୍ଡୁ ଗର୍ଣ୍ଡ ତ ପଡ଼ିବ ଛାଡ଼ି ତୋ, ବୀର ରେ । ୬ ।

ଛାତରେ ବସିବ କାତି
ବାହାଶିବ ପିତ କରିବୁ ବାନ୍ତ ରେ
ଛିଣ୍ଡିଯିବ ତୋର ସବୁ ଅନ୍ତ ତୋ, ବୀର ରେ । ୭ ।

କୁମ୍ଭୀର ଶତ ତନୟେ
ବ୍ୟାଘ୍ର ଜାତକଲା ପାଞ୍ଚ ଯେ ପୁଏ ରେ
ଏକା ସିଂହକୁ ସମାନ ନୁହେଁ, ବୀର ରେ । ୮ ।

କପୋତ ଡିମ୍ବ ଫୁଟାଇ
ସଞ୍ଚାଣ ହେବାର ଦେଖିଚ କାହିଁ ରେ
ତୁମ୍ଭେ ବୋଲଅ ବଣା ବଲେଇ, ବୀର ରେ । ୯ ।

ପୂର୍ବ କଥାଙ୍କୁ ବିଚାର
ତୁମ୍ଭ ପର ହେଲେ କାହାଣେ ବୀର ରେ
କି କର ପାର ଆମ୍ଭର, ବୀର ରେ । ୧୦ ।

ପବନରେ ଉଡ଼ିଯାଅ
ସୋଲ ପର ଗରୁ କମା ଦେଖାଅ ରେ
ଅଜ ଭାଙ୍ଗି ଦେବ ତୁମ୍ଭ ମୁହଁ, ବୀର ହୋ । ୧୧ ।

( ନରସିଂହପୁର )

## ୧୬—କ୍ଷତ୍ରିବିଦ୍ୟା

(୧) ପେଟି ଆଡ଼ବନ୍ଧ, କଣ୍ଡାକୁମ୍ପା ତନ୍ତୁଆର ଧର
ମଥାରେ ଖୋଲର ପାଗ ବାନ୍ଧିଲୁ କପର ? ୧ ।
ଅବର ତ ଭାଇ ହୋ ବାନ୍ଧିଛ ଜାନୁ ଘଣ୍ଟି
କେଉଁ ଗୁରୁ ସେବଣା ଯେ ବହିଲ ଏଡ଼େ ଅଣ୍ଟି ? ୨ ।
ସଦଗୁରୁ ଗୁଣ ଭାଇ ଦେଉଅଛୁ ତୋତେ
ଉତ୍ତରକୁ ବିଚାର ହୋ ଭାଇ କହିଦେବୁ ମୋତେ ? ୩ ।

(୨) କ୍ଷତ୍ରିବିଦ୍ୟା ବୀର ଶାସ୍ତ୍ର ଦେବତା ମହେଶ
ଶୁଣିବାକ ସାଧୁଜନେ ଗୁପ୍ତ ବୀର ରସ । ୧ ।
ପାଏକ ମଥା ଉପରେ ଖୋଲର ପାଗ
ବାଇଶି ହାତ ଲମ୍ବ ଅନନ୍ତ ବାସୁକୀ ନାଗ । ୨ ।
ବାଣୁଆ ପାଗ ଠୋପର ଯତନେ ଥୋଇବ
ତଥିପରେ ଲମ୍ବ ପାଗ ଗୁଡ଼ାଇଣ ଦେବ । ୩ ।

କଣ୍ଠୁ ଥିବୁ ବାଣକାର ଖିଡ଼କ୍କି ଦାର ପାଗ
ଶତ୍ରୁ ଲୋକେ ଦେଖୁ ଦେଖୁ ପଳାଇବେ ଆଗ । ୪ ।
ସାଧନା କେମନ୍ତେ ହେବ ଶୁଣ ଷତ୍ରିବର
ଆଦ୍ୟେ ରଜତ ବସିବୁ ଗୁରୁ କଲ୍ପ ପରକାର । ୫ ।
ନଅଣ ବସିବୁ ତଥିପରେ ହୋଇ ସଜ
ସବୁ ନଅଣ ସାଧିବୁ ଅତି ମନୋଯୋଗ । ୬ ।
କମଣା, ସରୁକମଣା ସରିଗଲେ ଭାଇଁ
ପବନରୁ ଉଶ୍ୱାସ ହୋଇଯିବ ଦେହୀ । ୭ ।
ପାଆ ଗୁରଖଣ୍ଡି ସାଧି ନ ବୋହିବୁ ଗର୍ବ
ପାଆ ଷୋଳ ଖଣ୍ଡି ସାଧିଲେ ହେବ ରଙ୍ଗ ଠାବ । ୮ ।
ଏଥୁ ଅନ୍ତେ ଅଖଡ଼ାଶାଳେ ତୋ ସାଧନା
ଗୁରୁ ଟେକି ଦେବେ ଚକ୍ରି ସିଦ୍ଧିରସ୍ତୁ ବାନା । ୯ ।
ଏତେକେ ହୋଇବୁ ଶିଷ୍ୟ ଜାଣିଥାଅ ଚତ୍ରେ
ବହୁ କଷ୍ଟ ବରଷକେ ଖଣ୍ଡା ଦେବୁ ହାତେ । ୧୦ ।

(୩) ଉଠା କଣ୍ଠାଗ୍ରୀ ଖୋଂସେ ପେଣ୍ଠୀ
ଖଣ୍ଡା ତଲବାର ଭେଣ୍ଠାଭେଟି । ୧ ।
ଶାହାଣ ଖାମଣ ବାଙ୍କ କାଠି
ପରଞ୍ଜ ମୁହଁକୁ ଢାଗୁଡ଼ ଘଣ୍ଟେ । ୨ ।
ଢୋଢ଼ର ଶିକୁଳି ଲଗା ବାହୁଟି
ସୁନଚଗ କୁନ୍ତ ଟୁନୋ୍ୟ ଉଠି । ୩ ।
ମାନ ମୁନ ଧର ଖଣ୍ଡା ମୁଠି
ଯାଦବ ପୁତ୍ର ମାରେ କୁହାଟି
ସେବା କରଥିବୁ ତୁ କାଇମାଟି । ୪ ।

(୪) ଷତ୍ରିଙ୍କ ସାଧନ ବିଦ୍ୟା ଶୁଣିବାକ ବୀର
ଫଡ଼ି ଖେଳ, ଚକ୍ରକାର ପଠା, ଇଠାକାର । ୧ ।
ଚଙ୍କଣରେ ମୁନ ତେଜ ରଖିଥାଏ ଷତ୍ରି
ବଙ୍ଗଢୋଷ କିଛି ବୀର ବିଦ୍ୟା ନ ଜାଣନ୍ତି । ୨ ।

ଫଉଡ଼ରେ ଜଗିବୁ ଭାଇ ଅଣ୍ଟା ଜାନୁ ଜଙ୍ଘ
ବାଡ଼ି, ଖଣ୍ଡା ତରବାରୀ ମାରି ଦେବ ଜାଗ । ୩ ।
ଜାଗିଥିବୁ ବେଳ ଭାଇ ପଞ୍ଚା ହସ୍ତେ ଭରି
ଟିକିଏ ଦୁଲୁଡ଼ିଲେ ବେଳ ଯିବଟି ଉତୁରି । ୪ ।
ଡଙ୍କଣ ଛୁରେଣ୍ଡ଼ି ଫିଙ୍ଗି ଦେବ ଚୋପି ଆଗ
ଛଦନ୍ତେ ମଥାକୁ କରିଦେବ ଭାଗ ଭାଗ । ୫ ।
ଇଚ୍ଛାକାର ଶସ୍ତ୍ର ଭାଇ ଅତି ଯୋରଦାର
ମୁଣ୍ଡିକାରେ ଶୋଇ ରହି କରିବୁ ଉଦ୍ଧାର । ୬ ।
କ୍ଷୁରି ଧାର ଚନ୍ଦ୍ରକାର ଜଗିଥିବୁ ଢାଲ
ଆଖି ପିଛୁଳାକେ କରିଦେବ କଲବଲ । ୭ ।
ଗୁରୁ ଦୟା ହେଲେ ଜୟ ହେବ ନିଶ୍ଚେ ଭାଇ
ବିବେକ କେଶରୀ କ୍ଷିତିପତି ଗୀତେ କହି । ୮ ।

(କଟକ)

(୫) ଯୁଦ୍ଧର ଗଡ଼ର ଦୁଆରେ କିଏ କିଏ ଥାନ୍ତି ।

୧— ପୂର୍ବ ଦୁଆରେ ଧନୀ ଦଳବେହେରା ରହନ୍ତି । ୧ ।
(ଖଣ୍ଡାଏତ ପାଏକ)
୨— ପଶ୍ଚିମ ଦୁଆରେ ଥାଏ ସାଧୁ ଯେ ଜଣଙ୍କ (ଓଡ଼ ପାଏକ)
୩— ଉତ୍ତର ଦୁଆରେ ରହଇ ମଧୁ ବାହକ । ୨ । (ଶୁଦ୍ର ପାଏକ)
୪— ଦକ୍ଷିଣ ଦୁଆରେ ହରି ଯେନା ଜଗିଥାଏ (ବଣ୍ଟୁଆ ପାଏକ)
ଖଣ୍ଡାୟତ, ଓଡ଼, ଶୁଦ୍ର, ବଣ୍ଟୁଆ ବୋଲାଏ । ୩ ।

(ପାଞ୍ଚଗଡ଼, ପୁରୀ)

## ୧୩—କ୍ଷତ୍ରି ବଚନ

୧— ନାୟକ ନାରୀ ଛପେ ନାହିଁ
ସୂର୍ଯ୍ୟ ଛପେ ନାହିଁ ବାଦଲ ଘନ
ରଣେ କ୍ଷତ୍ରି ଛପେ ନାହିଁ
ଦାତା ଛପେ ନାହିଁ ମାଗିଲେ ଦେଇ ।

୨— ଡଙ୍କଣରେ ମୁନ ଡେଉଁ ରଖିଛୁ ।
୩— ଅଙ୍ଗେଇତ ଖଣ୍ଡାରେ ଗାଣ୍ଡି ଘଷି ହେଉଛୁ ।
୪— ଖଣ୍ଡାରେ ହାଣି ପରଞ୍ଜିରେ ଯଛ କରୁଛୁ ।
୫— ମାରକର ସୁଅ ଶୁଆଇ ଦେବ ।
୬— ପଗ ହାଡ଼ ଭଙ୍ଗିଦେବ ।
୭— ବାଲ ଉପରେ ଖୋଜ ଦେଇ ଗୁଲ୍‌ଯିବ ।
୮— ତୁମେ ମେଣ୍ଢିଦଲ ବାଘ ସାଥିରେ କଣ କରବ ?
୯— ପୋଡ଼ୁଅଁ ପୁଅକୁ ମେରଅ ଦେଲେ ସୁଦ୍ଧା ତା
ପାଇବୁ ନାହିଁ ।

( ବୋକୋଡ଼ା-ଗୋଡ଼ବନ୍ଧ, ନରସିଂହପୁର )

## ଅଷ୍ଟ ଯୁଦ୍ଧ

ଗଜପତି ପାଞ୍ଚ ଅଙ୍କ ମେଷରେ
ସାତଦିନ ଭୋଗ ଭୃଙ୍ଗ ବାସରେ
ଅକ୍ଷୟ ତୃତୀୟା ବାସୀ ଦିବସ
ରୋହିଣୀ ନକ୍ଷତ୍ର ଚନ୍ଦ୍ରମା ବୃଷ
ସେ ଦିନ ଷଣ୍ଢ ନୃପତି
ଋଷିପଡ଼ା ଗଡ଼େ ବିଜେ କରିଛନ୍ତି ଯେ
ସଙ୍ଗେ ଘେନି ମହାରଥୀ । ୧ ।

ଆବର ପଦର ସଙ୍ଗ ବଳର
କରପତ୍ର ଯୋଡ଼ିଛନ୍ତି ସକଳ
ଅଛନ୍ତି ପାତ୍ର ମନ୍ତ୍ରୀମାନେ ରହି
କହିବାକୁ ସକ୍ଷ କାହାର ନାହିଁ
ଅତି କୋପାନଳ ମୂର୍ତ୍ତି
ଲଙ୍କାକୁ ଗୃହିଣୀ ବିଜେ କରିଛନ୍ତି ଯେ
ସୁବଳୟା ରଘୁପତି । ୨ ।

ଏମନ୍ତ ସମୟେ କହିଲା ଚର
ମଣିମା ପ୍ରଭୁ ଅବଧାନ କର
ପାର ହେଲେ ଖଣ୍ଡପଡ଼ା ନସ୍କର
ବୋଲି ଶିରେ ନେଇ ଯୋଡ଼ିଲା କର
ଶୁଣି ଅରାତି ଈଶ୍ୱର
କେଉଁଠାରୁ କେତେ ଦୂରତେ ଦେଖିଲ ହେ
କେତେ ସୈନ୍ୟ ତାହାଙ୍କର । ୩ ।

କରଯୋଡ଼ି ଶିରେ କହଇ ଚର
ଦେଖି ଅଇଲି ପାର ହେଲେ ଧାର
କୁହୁଡ଼ି ପ୍ରାୟେ ଆସୁଛନ୍ତି ମାଡ଼ି
ଚର ରାଜ୍ୟରୁ ଆଣିଛନ୍ତି ଲୋଡ଼ି
ଚଉମାସେ ହେଲା ପଡ଼ି
ଝିଡ଼ପୋକ ପ୍ରାୟେ ଆସୁଛନ୍ତି ଚାଲି ଯେ
କବା ଧାଡ଼ିକ ଦିମ୍ଭଡ଼ି । ୪ ।

ମାୟାଯୁଦ୍ଧ ସେ ବହୁତ ଜାଣନ୍ତି
ମହାରାଜାଙ୍କୁ ଧୁରୁଇ ଅଛନ୍ତି
ବୁଝି ବିଚାର କରିବଟି ରଣ
ଏତେକାଳେ ହେଲେ ଆମ ଭାଗ୍ୟେଣି
ଶୁଝିବାଟି ପିତୃଋଣ
ଆଜ୍ଞାହେଲେ ପ୍ରଭୁ ସମର କରିବୁ ଯେ
ଦେଖିବ ରହି ଆପଣ । ୫ ।

ଚରର ମୁଖୁଁ ଯେ ଏମନ୍ତ ଶୁଣି
କଣରେ ହସ୍ତ ଦେଲେ ନୃପମଣି
ସୈନ୍ୟଙ୍କୁ ଚାହିଁ ଆଜ୍ଞା ଦେଲେ ପୁଝି
କେ କେତେ ମାରିବ ବୁଝିବା ଆଜ
ଶୁଣି ହେଲେ ଉଦବେଗ
ଯେସନେ କ୍ଷୁଧାଳ ପଲଙ୍କୁ ଦେଖିଣ ଯେ
ପଲସନ୍ତି ମତ୍ତ ବ୍ୟାଘ୍ର । ୬ ।

ହାଇଗୋଡ଼ା ଘୁଞ୍ଚି ବେଠିଆମାନେ
ବୋଇଲେ ପାଇଲୁ ଅମ୍ଭର ମନେ
ସିଂହ ଶାର୍ଦ୍ଦୁଳରେ ହେଲୁ ଲଢ଼େଇ
କୋକ ଗାଛେ ରହିଗଲୁ ସଢ଼େଇ
　　ଅମ୍ଭେ ତ ଲୋକ ସବୁରି
　　ଅଇଲେ ମାଇଲେ, ନଇଲେ ମାଇଲେ ଯେ
　　ଅମ୍ଭେ ନୋହିଲୁଁ କାହାର । ୭ ।

କେ ମାରଇ ଗୁଳି କେ ମାରେ କାଣ୍ଡ
କେହୁ ହାଣି ଗଦା କରଇ ମୁଣ୍ଡ
କେହୁ ଛେଚେଲ କେହୁ ଭାଲିରେ ମାର
କେହୁ ମେଣ୍ଢା ମେଣ୍ଢି ପଡ଼ିକ ଫଡ଼
　　କେହୁ ଲାଞ୍ଚାମୁନେ ଠାଣି
　　କେହୁ ସୁନଟାଙ୍ଗି ଅଡ଼େଣି ଦେଲଣି ଯେ
　　ସିପାଇ ଲଞ୍ଜାକୁ ହାଣି । ୮ ।

ଗୁଳିକାଣ୍ଡ ଘାଆ କହିବ କେତେ
ଚିକ୍କଣିଆଁ ଭୂଷି ଅଛନ୍ତି ଯେତେ
ଯେତେ ଫଡ଼ିକାର ହାଣିଲେ ବାଛି
ମଡ଼ା ଉପରେ ମଡ଼ା ପଡ଼ୁଛନ୍ତି
　　ସିପାଇ ହୋଇଲେ ଲୋଥ
　　ପୂର୍ବେ ଶୁଣିଥିଲୁ ଦେଖି ତ ନ ଥିଲୁ ଯେ
　　ଏ କଲେ କଲି ଭାରତ । ୯ ।

ଏମନ୍ତ ଶୁଣି ମନ୍ତ୍ରୀ ମତ୍ତ ଖଣ୍ଡ
ବୋଇଲେ ଆଉ କାହାକୁ ନ ଦଣ୍ଡ
ଘୁଞ୍ଚ କୁଶଳେ ଯାଆନ୍ତୁ ଘରକୁ
ଲେଉଠ ଅମ୍ଭର ବସାମାନଙ୍କୁ
　　ବୋଲି ବାହୁଡ଼ା ବିଜୟେ
　　କଣ୍ଢେଲୀ ଢୋଠାରେ ବିଜେ କରଛନ୍ତି ଯେ
　　ଖଣ୍ଡପଡ଼ା ଭ୍ରମରାୟେ । ୧୦ ।

ଦେଖିଲେ ଲେଉଟି ଅଇଲେ ଚୈତନ୍ୟ
ସବୁର ଶରୀର ରକତ ବର୍ଣ୍ଣ
ଟିଙ୍କ ପକ୍ଷୀ ପର କାନ୍ତ ଲାଗିଛୁ
କାହା ଜାନୁରେ ଗୁଳି ନ କାଳାଛୁ
କାହାର ନ ଚଳେ ଜାନୁ
କେ ବୋଲେ ମଣିମା ସଂପଦ ସରିଲା ଯେ
ହାଣି ନେଲେ ବୀର ଭାନୁ । ୧୧ ।

ସରଦାରସିଂହଙ୍କୁ ସେ ବଣଦେଲେ
ଲେଉଟ ଲେଉଟ ବୋଲି ବୋଇଲେ
ମର୍ଦ୍ଦରାଜ ମଦ ଚୁଟିବା ଆଜ
ଭୀଷ୍ମ ଦ୍ରୋଣ ପର କରିବା ଯୁଦ୍ଧ
କୋଉ କଣୁ ପ୍ରାପ୍ତେ ବୀର
ନିଶସ୍ତ୍ର ଲୋକଙ୍କୁ ଶସ୍ତ୍ର ନ ଛେକନ୍ତି ଯେ
କେଉଁ ଧର୍ମ ଯୁଧିଷ୍ଠିର । ୧୨ ।

ଶୁଣି ଆଶୀର୍ବାଦ କଲେ ନୃପତି
କଣ୍ଟିଲେ ଲୋକେ କୁଦା କୁଦା ହୋନ୍ତି
କେ ବୋଲେ ଗ୍ରାମ ଛାଡ଼ି ପଳାଇବା
ବାଦ ଭାଙ୍ଗିଲେଣି ପଛେ ଆସିବା
ବୋଲି ହେଲେ କୁହାକୁହି
କେହୁ ବୋଲେ ଭେଟ କେ ବୋଲେ ନାକଟ ଯେ
କେହୁ ବୋଲେ ଦେଖ ରହି । ୧୩ ।

କେ ବୋଲେ ଏଠେ ଦଣ୍ଡେ ନ ଥିବା
କେ ବୋଲେ ଥିଲେ ପ୍ରାଣ ହାରିବା
କେହୁ ବୋଲେ ଏହା ନ ଥିଲା କାହିଁ
କେହୁ ବୋଲେ କେତେ ସହନ୍ତା ସେହି
ଯେତେ କଲେ ବଳାବଳି
କେହୁ ବୋଲେ ଭେଟ କେ ବୋଲେ ନାକଟ ଯେ
କେହୁ ବୋଲି ପଳାପଳି । ୧୪ ।

କେ କରଇ ଠାଣି କେ ଧାଏ ରାଣି
କେ ବୋଲେ ଅଛନ୍ତି ଅମ୍ଭ ରାଜନ
କେ ବୋଲେ କରବେଟି ହାତ ହାଣି
କେ ବୋଲେ ଗୃଲ୍ ପଶିବା ଶରଣ
　　ହରିଚନ୍ଦନ ବୋଲିଣି
　　ବୋଲେ ରାମକୃଷ୍ଣ ନୃପତି କୁଳକୁ ହେ
　　ରାଜା ଶ୍ରୀ ହରିଚନ୍ଦନ । ୧୫ । *

( ଫୁଲପଡ଼ା, ନରସିଂହପୁର )



* ଯୁଦ୍ଧ ସମ୍ପର୍କରେ ଏପରି ଅନେକ ପ୍ରାଚୀନ କବିତା ଗ୍ରାମେ ଗ୍ରାମେ ଶୁଣାଯାଏ । ଗୋଟିଏ ମାତ୍ର ତନ୍ମଧ୍ୟରୁ ଆଦର୍ଶ ଦୃଷ୍ଟିରୁ ଦିଆଗଲା ।

# ସମର ବୋଲି



## ୨—ଗୋପାଳ ଓ ଯାଦବ ବୋଲି

## ( ଗୋପାଳ ବୋଲି )

### ୧—ବାଡ଼ଖେଳ ଗୀତ

ଦେଖ ସଖି ବିପରୀତ ଗୋ ଆସିଅଛି ଅକ୍ରୁର
ରାମକୃଷ୍ଣ ବେନି ଭାଇଙ୍କି ନେବ କଂସ ପୁରକୁ । ୧ ।
ନନ୍ଦ ଯଶୋବନ୍ତୀ ସହିତେ ଅଣି ପାଶେ ବସାଇ
ରାଧା ସହଚରୀ ଦୂତୀଙ୍କ ଶୋକଜଳେ ଭସାଇ । ୨ ।
ଅମ୍ଭେମାନେ କିସ କରିବା କୃଷ୍ଣ ଅମ୍ଭ ଜୀବନ
ନନ୍ଦ ଯଶୋବନ୍ତୀ ବାଳକ ଅମ୍ଭମାନଙ୍କ ଧନ । ୩ ।
ବକା ଅଘା ଷଣ୍ଢା ସହିତେ ତୃଣାସୁର ମାରିଲେ
ଇନ୍ଦ୍ର ଛଳେ ଗୋବର୍ଦ୍ଧନକୁ ବାମ କରେ ଧରିଲେ । ୪ ।
କାଳିନ୍ଦରେ ଫଣି କାଳୀକୁ କୃଷ୍ଣ ଦେଲେ ଘଉଡ଼ି
ଜଳି ଆସୁଥିଲା ଅନଳ ପୋଏ ମରନ୍ତୁ ପୋଡ଼ି । ୫ ।
ଗର୍ବ ସିଂହାରିଲେ ଗୋବିନ୍ଦ ଲଭିଗଲା ବହନ
ଗୋପପୁରଯାକ ଶୁଭିଲା ଜୟ କୃଷ୍ଣଙ୍କ ଧ୍ୱନି । ୬ ।
ପୁତନା ଅସୁରୀ ଅଇଲା ସ୍ତନେ ପୂରାଇ ବିଷ
କ୍ଷୀର ସଙ୍ଗତରେ ଶୋଷିଲେ ପ୍ରାଣ ହୋଇଲା ନାଶ । ୭ ।
କୃଷ୍ଣ ଥିବା ଯାଏ ଅମ୍ଭର ଭୟ ନାହିଁ କାହାକୁ
ଅଣ୍ଡେ କରିଛନ୍ତି ଗୋପାଳେ ରାମକୃଷ୍ଣ ବାହାକୁ । ୮ ।

ଯାହା କର୍ମେ ଥିବ ଅମ୍ଭର କାହିଁପାଇଁ ଡରିବା
ରାମ କୃଷ୍ଣ ବେନି ଭାଇଙ୍କି ନ ଦେଖିଣ ମରିବା । ୯ ।
ହେଲେ ପ୍ରାଣଧନ ଅଟନ୍ତି ମୋର ବେନି ବାଳକ
ଦୁଃଖ ଦେଇ ସୁଖ ଲଭୁଛୁ ବାହ୍ର ଏତେ କାଳକ । ୧୦ ।
ସାତଶ ଷାଠିଏ ବରଷ ହେଲା ନନ୍ଦ ଗୋପାଳ
ଏତେକାଳେ ଛାଡ଼ ନାହାନ୍ତି କଂସରାଜା ଜଞ୍ଜାଳ । ୧୧ ।
ଦହି ଦୁଧ ସବୁ ସହିତେ ଯେତେ ରାଜା ନିଯୋଗ
ଲେଖି ଯୋଖି କରି ପିଅଇ କଂସରାଜାର ଭୋଗ । ୧୨ ।

ଯାହା କରି ଯେତେ ହୁଅଇ ତାହା ସଜାଇ ନେଇ
ଶକଟ ଭରେ ତା ବୁହାଇ ରାଜା ଆମୁରେ ଦେଇ । ୧୩ ।
ଏତେ ପରକାରେ ଦେଇଣ ନନ୍ଦ ହୋଇଲେ ମନ୍ଦ
କି କରିବେ ବାଳ ଗୋପାଳ ଅମ୍ଭ ରାମ ଗୋବିନ୍ଦ । ୧୪ ।
ଶ୍ରୀକୃଷ୍ଣ ବୋଇଲେ ଅକ୍ରୂର କହ ମାତା ଆଗର
ମାତା ସନମତ ନ କଲେ ଯିବ ନାହିଁ ନଗର । ୧୫ ।
ପିତା ଆଗେ କର ପ୍ରମାଣ ଛାଡ଼ିଦିବା ପାଇଁକି
ପିତା ସନମତ ନ କଲେ ମୁଁ ତ ଯିବି କାହିଁକି ? ୧୬ ।

ଅକ୍ରୂର ବୋଇଲା ଶୁଣିମା ଠାକୁରଙ୍କ ଜନନୀ
ରାମକୃଷ୍ଣ ବେନି ଭାଇଙ୍କି ମୁଁ ଯେ ନେଉଛୁ ଘେନି । ୧୭ ।
କଂସରଜା ମୋତେ କହୁଛି ତୁ ଯେ ଗୋପକୁ ଯିବୁ
ରାମକୃଷ୍ଣ ବେନି ଭାଇଙ୍କି ତୁ ଯେ ଘେନି ଆସିବୁ । ୧୮ ।
ମରିବାକୁ ଯେବେ ଡରିବା ଛାଡ଼ିଗଲେ ଗୋ ବେନି
ତୁମ୍ଭ ଆଗେ ଫେଡ଼ି କହୁଛି ଅମ୍ଭେ ମରିବୁ ଧନି । ୧୯ ।
ତେଣୁକରି ମୁଁ ଯେ ନ ଯିବି ରାମକୃଷ୍ଣଙ୍କୁ ଛାଡ଼ି
ଗୋପୀମାନେ ତୁମ୍ଭେ ସମସ୍ତେ ମୋତେ ନ କହ ବଢ଼ି । ୨୦ ।

ମାୟାଧର ମାୟା ରଚିଲେ ସର୍ବେ ହୋଇଲେ ଭୁମି
ମଥୁରାକୁ ଗଲା ଅକ୍ରୂର ରାମକୃଷ୍ଣଙ୍କୁ ଘେନି । ୨୧ ।
ଖଣ୍ଡେଦୂର ହେଲେ ବାହାର ବାଟେ ଶୀତଳ ବାର
ବୋଇଲେ ଏଠାରେ ରହିବା ଦିବା ସ୍ନାହାନ ସାର । ୨୨ ।

ଶୁଚିବନ୍ତ ହୋଇ ନ ଗଲେ ତୁହ୍ନେ ରାଜଦର୍ଶନେ
ସମ୍ଭାବନା ଯଦି ନ ଥିବ ତେବେ ତୁହ୍ନେଁ ପ୍ରସନ୍ନ । ୨୩ ।
ଏତେ ବୋଲି କଂସ ଡଗର ଯାଇ ପଶିଲା ଜଳେ
ଦୋସଡ଼ା ବସନ ପାଲଟି ନେଇ ଥୋଇଲେ କୂଳେ । ୨୪ ।
ନାରାୟଣ ନାମ ସୁମରି ଜଳ ଭିତରେ ବୁଡ଼ି
ଦେଖିଲା ଶ୍ରୀକୃଷ୍ଣ ଗୋପକୁ ଯାଉଛନ୍ତି ବାହୁଡ଼ି । ୨୫ ।
ତରତରେ ଜଳୁ ବାହାର ଉଭା ହୋଇଲା କୂଳେ
ଶ୍ରୀକୃଷ୍ଣ ବୋଇଲେ ଅକ୍ରୂର କିସ ଦେଖିଲ ଜଳେ । ୨୬ ।
ଯାହା ମୁଁ ଦେଖିଲି ଜଳରେ ଜଳଭିତରେ ବୁଡ଼ି
ଅଭପ୍ର ପଙ୍କଜ ବାନାକୁ ମୁଁ କି କହିବ ବଢ଼ି । ୨୭ ।
ରଥେ ବସି ପଥେ ଚଳନ୍ତି ରାମ ଅକ୍ରୂର ହରି
ମଥୁରା ତୋଠାରେ ରହିଲେ ରଜକାରକୁ ମାରି । ୨୮ ।
ଆରଦିନ ହେଲେ ବାହାର ଧନୁ ଦେଖିବା ପାଇଁ
କୁବୁଜା କୁବୁଜ କରଣୀ ଗନ୍ଧ ନେଲେ ଛଡ଼ାଇ । ୨୯ ।
ପୂର୍ବ ଦୋଷ ତାର ହରିଲେ ପୂର୍ଣ୍ଣ ହେଲା ନିଯୃତ
କୁବୁଜା ବୋଲଇ ଶ୍ରୀକୃଷ୍ଣ ମୋର ପୁରେ ଆଗତ । ୩୦ ।
କୁବୁଜା ବଚନେ ଶ୍ରୀକୃଷ୍ଣ ମନେ ଆନନ୍ଦ ହୋଇ
ତୁମ୍ଭପୁରେ ଆମ୍ଭେ ଚଳିବୁ ରାଜା ଭେଟ କରାଇ । ୩୧ ।
ସେଠାରୁ ବାହାର ହୁଅନ୍ତେ ଧନୁ ଦେଖିବା ପାଇଁ
ଆଗ ପଛ ହୋଇ ସମସ୍ତେ ଯୋଏ ଛନ୍ତି ଗୋଡ଼ାଇ । ୩୨ ।
ଧନୁଘର ଦ୍ୱାରେ ମିଳିଲେ ଧନୁ ଉଚ୍ଛୁଡ଼ି ଆଣି
କର୍ଣ୍ଣ ପରଯନ୍ତେ ଧଇଲେ ଧନୁ ଘଡ଼ିଏ ଠାଣି । ୩୩ ।
ତିନିଖଣ୍ଡ ହୋଇ ଭାଙ୍ଗିଲା ରାମ ଧଇଲେ ଖଣ୍ଡେ
କୋପାନଳ ହୋଇ ପିଟିଲେ ଦ୍ୱାରୀମାନଙ୍କ ମୁଣ୍ଡେ । ୩୪ ।
କଂସ ଆଗେ ହେଲା ବାରତା ଯୋଏ ଧନୁ ଭାଙ୍ଗିଲେ
ଯେତେ ଲୋକ ଥିଲେ ସେଠାରେ ତାଙ୍କ ଗର୍ବ ଗଞ୍ଜିଲେ । ୩୫ ।
କଂସ ଶୁଣି ହେଲା ତାଠକା ବଜ୍ର ପଡ଼ିଲା ମାଡ଼ି
ରାମକୃଷ୍ଣ ବେନି ଭାଇଙ୍କୁ ଗୋପେ ଦିଅ ବାହୁଡ଼ି । ୩୬ ।

ଯେତେବେଳେ କ୍ରୀଡ଼ା କରିବା ତେତେବେଳେ ଅଣିମା
କାହା ବଳ କେତେ ହୋଇବ ବୁଝି ପରମଣିମା । ୩୭ ।
ସେଠାରୁ ବାହାର ହୁଅନ୍ତେ ଗଜ ହୋଇଛୁ ସଜ
ବାଟ ଛାଡ଼ିଦିଅ ବୋଲନ୍ତି ପ୍ରଭୁ ଦେବାଧିରାଜ । ୩୮ ।

କଂସକୁ ଦର୍ଶନ କରିବୁ ସେ ଯେ ଆମ୍ଭ ମଉଳା
ବାଟ ଛାଡ଼ିଦିଅ ମାହୁନ୍ତ ତୁ ଯେ ନ କର ହେଳା । ୩୯ ।
ମାହୁନ୍ତ ବୋଲଇ ମହତ ଥାଉ ଯାଅ ବାହୁଡ଼ି
ଭଙ୍ଗାଧନୁ ପ୍ରାଣେ ମଣୁଛ ଆସି ପଡ଼ୁଛ ମାଡ଼ି । ୪୦ ।
ଅପାର କାଳର ପୁରୁଣା ଲଗିଥିଲା କଳଙ୍କ
ନୁଆ ହେଲେ କରେ ଭାଙ୍ଗନ୍ତି ତୁମ୍ଭେ ବେନି ବାଳକ । ୪୧ ।
ଧୋବ ଦେଖି ଲୋଭ କରୁଛ ଅଗ୍ନି ତେଜ ନ ଜାଣି
ମରଣ ନିୟତ ହୋଇଲା ଏତେ କାଳକେ ପୁଣି । ୪୨ ।

ଶୁଣୁ ଶୁଣୁ କ୍ରୋଧ ହୋଇଲେ ଯେହ୍ନେ ମନ୍ଦରଗିରି
କୋପାନଳ ହୋଇ ଶ୍ରୀକୃଷ୍ଣ ହସ୍ତିଦନ୍ତ ଉପାଡ଼ି । ୪୩ ।
ଥୋର ଧରି ଢିଙ୍କି ଦିଅନ୍ତେ ଗଜ ପଡ଼ିଲା ତଳେ
ମାହୁନ୍ତକୁ ମାଡ଼ି ବସିଲେ ସେହୁ ଗଜ ଉପରେ । ୪୪ ।
କଂସ ଆଗେ ହେଲା ବାରତା ମଲେ ହସ୍ତୀ ମାହୁନ୍ତ
ତୁଷ୍ଟାୟୁ ଦ୍ୱାରକୁ ଚଳିଲେ କରେ ଉପାଡ଼ି ଦାନ୍ତ । ୪୫ ।
ଧୀର ଧୀର ହୋଇ ଚାଲନ୍ତେ ଶୋଭା ପାଏ ଧରଣୀ
କଂସକୁ ଶ୍ରୀକୃଷ୍ଣ ଦିଶନ୍ତି କାଳ ଦେବତା ଜାଣି । ୪୬ ।

ଯେତେ ଲୋକ ଥିଲେ ସେଠାରେ ତାଙ୍କୁ ବାଳୁତ ମତ
ମଞ୍ଚା ପରେ ଉଭା ହୋଇଲେ ରାମ ଗୋପାଳ ମୂର୍ତ୍ତି । ୪୭ ।
ପିଛାଡ଼ି ନ ପାରି ନୟନ ଚିତ୍ର ପ୍ରତିମା ହୋଇ
କଂସ ରାଜା ପ୍ରାଣ ଛାଡ଼ିଲା ବିଷ୍ଣୁ ରୂପକୁ ଚାହିଁ । ୪୮ ।
ପ୍ରାଣ ଛାଡ଼ି ପିଣ୍ଡ ପଡ଼ିଲା ଯାଇ ଜଗତ ତଳେ
ମାମୁଁ ମଲା ବୋଲି ଗୋବିନ୍ଦ ମାଡ଼ି ବସିଲେ ବଳେ । ୪୯ ।
ମନ୍ଦର ଉପରେ ମନ୍ଦର ହେଲେ ଯେମନ୍ତ ଦିଶେ
ସେହି ପରକାରେ ଗୋବିନ୍ଦ ବିଷ୍ଣୁ ରୂପ ପ୍ରକାଶେ । ୫୦ ।

ରାଣୀହଂସପୁରେ ବାରତା ରଏ ହୋଇଲେ ନାଶ
ରାଣୀମାନେ ଶୁଣି ଅଇଲେ କେଶ ଫିଟିଛି ବାସ । ୫୧ ।

ସ୍ତ୍ରୀ ବଳ ଦେଖି ଶ୍ରୀକୃଷ୍ଣ ବୋଲୁଛନ୍ତି ମାଇଁକି
ଅମ୍ଭେ ଦୁଇ ଭାଇ ଅଇଲୁ ଦେଖି ଯିବା ପାଇଁକି । ୫୨ ।

ଅମ୍ଭେମାନେ କର୍ମା ନ ମଲୁଁ ମାମୁଁ ହେଲେ ବିନାଶ
ମାଇଁମାନେ ଅମ୍ଭ ଆସନ୍ତେ ଯାହା ହେଲେ ଅନାଶ୍ର । ୫୩ ।

ଏତେ ବୋଲି ଆଜ୍ଞା ଦିଅନ୍ତେ ପ୍ରଭୁ ହେ ପୀତବାସ
ଅଗ୍ନି ତାହା କରି ଶବକୁ କରି ଦିଅ ହେ ଭସ୍ମ । ୫୪ ।

ଅହେ ସୁଜ୍ଞଜନେ ଭୁବନ ବେଗେ କଳୁଷ ନାଶ
ସୁଜ୍ଞଜନଙ୍କର ଚରଣେ ବନ୍ଦଇ କୃଷ୍ଣ ଦାଶ । ୫୫ ।

( ଅରଗବାଡ଼ି )

## ୨—ଆଗୁଲ

(୧) ପଚ୍ଛୁରୁଛି ଭାଇ ଶୁଣ
ବଡ଼ୁର କହିବ ପୁଣ
ନ ଥାଇ ମାତାକେ ପୁଅ, ମୋ ଆଗେ ସେ କଥା କହ । ୧ ।

ଅଣ ବାବୁଅ କେ ବର୍ଣ୍ଣେ ଶଙ୍କର
ବୁଝି ଠିକେ କହ କଏ ଅଧା ଗୋପାଳ
ଏହି କଥା ମନେ ଭାଳ, ବାର ଗେରସ୍ତରେ ପୁଅ ।
ସେ ଜଣକ କଏ କହ ନ କହିଲେ ମୋତେ
ଆଜ ସହଜେ କି ଛାଡ଼ି ଦେବି ତୋତେ । ୨ ।

କେତେ ଥର ଭାଗବତ ହୋଇଲା ଜନ୍ମ
କହ ନାରାୟଣ ଜନ୍ମ ହେବା ପ୍ରମାଣ
ଶ୍ରୀ ମହାଭାରତ,
କପର ଜନ୍ମ ହେଲା ବୁଝାଅ ତତ୍ତ୍ୱ । ୩ ।

ଅଷ୍ଟାଦଶ ଯେ ପୁରାଣ
ତାଙ୍କର ଜନ୍ମ ବିଧାନ
ପୁରାତନ ଇତିହାସ, ସାତଖଣ୍ଡ ହରିବଂଶ
କାହୁଁ ଜାତ କହ
ଗୁରୁ ସେବିଥିଲେ ଫେଡ଼ ମୋ ସନ୍ଦେହ । ୪ ।

## ଉତ୍ତର—

ବିଜ୍ଞାନ ହୋଇ କର ଶ୍ରବଣ
ଏ ବ୍ରହ୍ମାଣ୍ଡ ପୁରାଣ
ଯାହା ପଚାରିଲ ଭାଇ, ତୋତେ କହିବି ବୁଝାଇ । ୧ ।

ମାତା ନ ଥାଇଣୋ,
କୁମ୍ଭିରଅ ପୋକର ଭୃଙ୍ଗ ନନ୍ଦନ,
ଭଣ୍ଡା ନ କାଢ଼ି କଦଳୀ, ପୁତ୍ର ତାର ଭଳି
ମାତା ରଜୋବର୍ତ୍ତୀ ନୋହି, ଅଣବାକୁ ଅଛି ସେହି ।
ଅଛନ୍ତି ସଂସାରେ,
ମନେ ହେତୁ କର ଅହେ ସୁଜ୍ଞନରେ । ୨ ।

ରାମକୃଷ୍ଣ ଦୁଇ ଭାଇ
ଅଟେ ଗୋପାଳଟି ସେହି
ବସୁଦେବର କୁମର
ପୁତ୍ର ସ୍ନେହରେ ନନ୍ଦର ବଣଭୋଜି କାଳେ
ପୋଡ଼ା ଅନ୍ନ ଭୁଞ୍ଜିଲେ, ଗୋପାଳ ମେଳେ । ୩ ।

ଛତିଶ ପାଠକ ନୋହି
ବର୍ଣ୍ଣେ ଶଙ୍କର ଅଟଇ
ବଶିଷ୍ଠ ଯାହା କୁମର, ଅଟେ ସେ ସଂସାରେ ସାର
ଭାରଦା ଯେ ଥିଲା,
ବର୍ଣ୍ଣ ଶଙ୍କର ଯେ ବେଶ୍ୟାପୁତ୍ର ହୋଇଲା । ୪ ।

ଏଥୁ ଅନ୍ତେ ଜନେ ଶୁଣ
ଗୀର୍ବାଣ୍ତେ ଭଗବାନ
ନାଗ ଶଯ୍ୟନରେ ଥାଇ ମନେ ବର୍ତ୍ତିଲେ ସେହ୍ନ
ଭାଗବତ ଜନ୍ମ,
ମୁଖୁଁ ଏକାକ୍ଷର ଜାତ ନାମ ବ୍ରହ୍ମ । ୫ ।
ତାହାକୁ ଦେଇ ଅନନ୍ତ ଦ୍ୱିଅକ୍ଷର କରିଗଲେ ତ
ବ୍ରହ୍ମା କହେ ଗୂଢ ବେଦ, ନାରାୟଣ ଚତୁର୍ଭୁଜ
ନାରଦ ଯେ ଦାସ,
ତହୁଁ ଶତେ ଶ୍ଳୋକ କଲେ ବ୍ୟାସ । ୬ ।
ନାରଦ ଋଷିଙ୍କ ବାଣୀ
ଶୁଣି ଉଚ୍ଚାଟ ରୁଦ୍ରାଣୀ
ତାହା ଜାଣିଣ ମହେଶ, ମୃଗରେ କଲେ ପ୍ରକାଶ ।
ଶୁଣିଣ ସେ ଭେଦ,
ବୃକ୍ଷ କୋଟରେ ଚେତ ଜାଞ୍ଜିଅ ଓମ୍ବ ।
ଓମ୍ବରୁ ଶୁକ ଜନ୍ମିଲେ, ସତ୍ୟବାନ ଗର୍ଭେ ଥିଲେ
ସେ ଗର୍ଭ ଜନ୍ମିଲା ବେଳେ, ନୈମିଷା ଅରଣ୍ୟେ ମିଳେ
ପରୀକ୍ଷିତ ଆଗେ,
ଶୁକମୁନି କହିଥିଲେ ଅନୁରାଗେ । ୭ ।
ଏହାପରେ ଦଶଥର, ଭାଗବତ ଅବତାର
ଶାମ ବେଦରୁ ସମ୍ଭୂତ, ରାମାୟଣ ହେଲା ଜାତ
ଶ୍ରୀ ମହାନାଟକ ତେଣୁ, ରାମାୟଣ ଜାତ ଅଧ୍ୟାତ୍ମିକ । ୮ ।
ସେଥିରୁ ହେଲା ଭିଆଣ, ବାଲ୍ମିକ ରାମାୟଣ
ବିସ୍ତାର ମହାଭାରତ, ତିନିଟି ଶୈଳରୁ ଜାତ
ଯେହୁ ଇତିହାସ,
ବଇସମ୍ପାୟନ ମୁଖରୁ ସେ ପ୍ରକାଶ । ୯ ।
ଅଷ୍ଟ ଯେ ମାତୃଗଣ—ସେ ଅଷ୍ଟାଦଶ ପୁରାଣ
ପୁରାତନ ଇତିହାସ—ସାଠି ଖଣ୍ଡ ହରିବଂଶ
କରିଲେ ଭିଆଣ ସ୍ତ୍ରୀଲିଙ୍ଗ, ପୁଂଲିଙ୍ଗ ନପୁଂସକ ଲକ୍ଷଣେ । ୧୦ ।

ଆବର ଯେ କେତେ ପ୍ରଶ୍ନ କଲେ ନୂତନ କରିଣ
ସଂଖ୍ୟା କରି କହି ନୋହେ ସମୁଦ୍ର ଭେଦବ କିଏ
କହଇ ମୂଢ଼ ଦାସ, ସୁଜ୍ଞଜନେ ମୋର ନ ଧେନ ଦୋଷ ।

( ବାଲେଶ୍ୱର )

## ଆଗୁଲ (୨)

ଶୁଣ ହେ ଗୋପାଳ ଭାଇ ସ୍ଥିର କର ମନ
ପଚାରୁଛି କିଛି ପୁରାତନ କଥାମାନ । ୧ ।
ପ୍ରଶ୍ନର ଉତ୍ତର ଯେବେ ନ ପାରିବୁ କହି
ସାତଜନ୍ମ ଯାଏ କାଠବେଙ୍ଗ ହୋଇ ରହି । ୨ ।
କାର୍ତ୍ତିକେଶ୍ୱରଙ୍କ କଥା କହିବ ବୁଝାଇ
ମାତା ପିତା ନାହିଁ ପୁଣ କପରି ଜନ୍ମଇ । ୩ ।
ମୟୂରବାହନ ତାଙ୍କୁ କିଏ ସେ ହୋ ଦେଲା
କାମଦେବ କେଉଁଠାରୁ ଜାତ ସେ ହୋଇଲା । ୪ ।
କଂସ ଦେବକୀ ଯେ ବସୁଦେବ କାହିଁ ଜନ୍ମ
ମୂଷା କିମ୍ପା ଗଣେଶଙ୍କ ହୋଇଲେ ବାହନ । ୫ ।
ଜଉଶାଳ ଘରକୁ କେ ବାନ୍ଧ ପିଠାଇଲା
ହସ୍ତିନା ଦୁଆର ବନ୍ଦ କପରି ହୋଇଲା । ୬ ।
ମହାଭାରତ ରହିଲା କେଉଁଠାରେ ଯାଇ
ରାଧାକୃଷ୍ଣଙ୍କର ବଭା କହିବ ବୁଝାଇ । ୭ ।
ଲାଜକୁଳି ଗଛ କିମ୍ପା ଲଜ୍ୟାବତୀ ହେଲା
ଡାଉରଙ୍ଗ ଗଛ ଜାତ କେଉଁଠାରୁ ହେଲା । ୮ ।
ପଳାଶ ଗଛ ଅପୂଜା କପାଇଁ ରହିଲା
କେଉଁ ମହାତ୍ମା ତାହାକୁ ଶାପ ଦେଇଥିଲା । ୯ ।
ତୁଳସୀ ବୃକ୍ଷ, ମସ୍ତକେ ଚଢ଼େ କାହିଁ ପାଇଁ
ଏଥିର ଚରିତ ମୋତେ କହିବ ବୁଝାଇ । ୧୦ ।
ବର ଓଁଶସ୍ତ କପାଇଁ ବଭାଘର ହେଲା
ଛେଳି କିମ୍ପାଇ ଦୁର୍ଗାଙ୍କ ବଳିରେ ଲାଗିଲା । ୧୧

ପିତୃଶ୍ରାଦ୍ଧେ ଗଣ୍ଡାମାଂସ କମ୍ପା ହୁଏ ଲୋଡ଼ା
ମହାଭାରତରେ ମାଲ କେତେ ହେଲେ ପୋଡ଼ା ? ୧୨ ।
ଶାଳଗ୍ରାମ କେଉଁଠାରୁ ଜାତ ସେ ହୋଇଲା
ବଗ କମ୍ପା ଧଳା, କଳା କୋଇଲି ହୋଇଲା ? ୧୩ ।
ଏଥିର ମରମ ଭାଇ ମୋତେ କହିଦିଅ
ଗୋପାଳ ବୋଲିଣ ନାମ ସଂସାରେ ରଖାଅ । ୧୪ ।

**ଉତ୍ତର—**

ଶୁଣ ହେ ଗୋପାଳ ଭାଇ ପ୍ରଶ୍ନର ଉତ୍ତର
ଯାହା ଠିକେ ଠିକେ ଜାଣେ କରୁଛୁ ପ୍ରଚାର । ୧ ।
ହର ହେମବତୀ ପାଶେ କାନ୍ଦୁଅଛୁ ରତି
ଶୋକ ଶାନ୍ତ କରି ବର ଦେଲେ ପଶୁପତି । ୨ ।
ବର ପାଇଣ ସେ ସତୀ ତପ ନାଇ କଲା
ତେଣେ ହର ପାର୍ବତୀଙ୍କ ରସ କ୍ରୀଡ଼ା ହେଲା । ୩ ।
ଏସି ପଡ଼ନ୍ତେଣ ଶିବଙ୍କର ମହାରେତ
ପବନକୁ ଡାକି ଆଜ୍ଞା ଦେଲେକ ତୁରତ । ୪ ।
ତେଣେ ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ବରୁଣ ପବନ
କୁବେରତନୟା ଷଡ଼ କୃତିକା ସ୍ନାହାନ । ୫ ।
ଯାର ଉଲଗ୍ନରେ କୂଳେ ଅଗ୍ନି ସେବୁଥିଲେ
ସେ ରେତ ଆଣି ପବନ ପହଞ୍ଚାଇ ଦେଲେ । ୬ ।
ଶିବଙ୍କର ସେ ରେତ ତ ତାଙ୍କ ଗର୍ଭେ ମିଳା
ଛଭଗୋଟି ଗର୍ଭବତୀ ହୋଇଲେକ ବାଳୀ । ୭ ।
ଲଜ୍ୟା ପାଇ ଷଡ଼ପୁତ୍ର ତହିଁ ଉଦ୍‌ଗାରଲେ
ପଦ୍ମ ପୋଟଳରେ ଭରି ଜଳେ ମେଲି ଦେଲେ । ୮ ।
ସେ ଯାଇ ଲୁହା ଚୁମ୍ବକ ପର୍ବତେ ଲାଗିଲା
ଗୋମାତାଙ୍କ ଶାପେ ନିରଞ୍ଜନ ପ୍ରାଣ ଦେଲା । ୯ ।
ପୋଟଳ ଫାଟି କୁମର ଛଅ ମୁଣ୍ଡ ହେଲା
କୁମାର ପୂର୍ଣ୍ଣିମୀ ଦିନ ଜନମ ଲଭିଲା । ୧୦ ।

ଷଡ଼ ମୁଣ୍ଡ ଷଡ଼ାନନ କାର୍ତ୍ତିକେୟ ବୀର
ସରୋବରୁ ଜନ୍ମି ସରଜନ୍ମା ନାମ ତାର । ୧୧ ।
ଗଙ୍ଗାରେ ଦେହ ପଖାଳି ଉମା ତୋଳି ନେଲେ
କଇଲାସ ପୁରେ ରଖି ଯତନେ ପାଳିଲେ । ୧୨ ।

ମନରୁ ବିଜୟୀ ରଥ ମୟୂରବାହନ
ରତି ତପକଲା ତାଉରଙ୍ଗ ମୂଳେ ମୁନି । ୧୩ ।
କାଛୁ ଦନ ଅନ୍ତେ ଯେ ଶମ୍ବର ହରିନେଲା
ତେଣେ ରୁକ୍ମିଣୀଙ୍କ ଗର୍ଭେ କାମ ଜନ୍ମ ହେଲା । ୧୪ ।

କାଳେ ସମ୍ବରାସୁରଙ୍କୁ ସେହୁ ହତ କଲେ
ନାଶ କରି ସମ୍ବରାରି ନାମ ବୋଲାଇଲେ । ୧୫ ।
ଗଙ୍ଗାକୂଳେ ଗଣେଶ ଯେ ତପ କରୁଥିଲେ
ଯମ ଗଣେଶଙ୍କ ପ୍ରାଣ ହରିବାକୁ ଗଲେ । ୧୬ ।

ଜାଣିପାରି ଗଣେଶ ଯେ ଯୁଦ୍ଧ ଆରମ୍ଭିଲେ
ଯୁଦ୍ଧରେ ନ ଜିଣି ଯମ ବାହନ ହୋଇଲେ । ୧୭ ।
ଅଟନ୍ତ୍ରା କର ଦୁତକା ମ୍ନର ହୋଇଥିଲା
ଜଉଶାଳ ଘରୁ ସେହୁ ବାଟ ଫିଟାଇଲା । ୧୮ ।

ଲକ୍ଷଣାବତୀଙ୍କ ଶାମ୍ବ ବିଭା ହେଲାବେଳେ
ବଳରାମ ହସ୍ତିନା ଦୁଆର ବନ୍ଦ କଲେ । ୧୯ ।
ଭୂତକେଳି କାଳେ ରାଧାକୃଷ୍ଣ ବିଭା ହେଲେ
ସଂସାରକୁ ରାଧାରାଣୀ ଗୁପତ ରଖିଲେ । ୨୦ ।
ଲବଣ କୁମାରୀ ଶିଖରକୁ ବରିଥିଲା
ଲବଣ ଚଉଁରୀ ବେଳେ ପତି ତାର ମଲା । ୨୧ ।
ସେହୁ ପ୍ରୀତି କଲା ଦେଢ଼ଶୁର ସଙ୍ଗେ ଯାଇ
ସ୍ୱର୍ଗପୁରେ ଦେବତାଏ ନ ଦେଲେ ରଖାଇ । ୨୨ ।

ତହୁଁ ସ୍ୱର୍ଗପୁରୁ ଲଜ୍ଜା ପାଇଣ ଅଇଲା
ଲାଜକୁଳି ଲତା ହୋଇ ମର୍ତ୍ତ୍ୟରେ ରହିଲା । ୨୩ ।
ବଡ଼ବା ଅନଳୁ ଜନ୍ମ ତାଉରଙ୍ଗ ବୃକ୍ଷ
ବାଞ୍ଛାସିଦ୍ଧି ସେବାକଲେ ଅଟଇ ପ୍ରତ୍ୟକ୍ଷ । ୨୪ ।

ପଞ୍ଚାଶ ଗଛରେ ବ୍ରହ୍ମା ବସ୍ତ୍ରା ହରିନେଲା
ବିଷ୍ଣୁ ଶାପ୍ୟଦେଲେ ବ୍ରହ୍ମା ଅପୂଜା ରହିଲା । ୨୫ ।
ନିରାକାର ବିଷ୍ଣୁ ବୃନ୍ଦାବତୀଙ୍କୁ ହରିଲା
ତୁଳସୀ ହୋଇ ବିଷ୍ଣୁର ମସ୍ତକେ ଚଢ଼ିଲା । ୨୬ ।
ଇନ୍ଦ୍ର ବିବାଦେ ଶ୍ରୀହରି ମନ୍ଦର ଧରିଲେ
ଗୋବସ୍ରାଙ୍କ ପାଇଁ ମୁଟଥ ମାରି ନୁଆକଲେ । ୨୭ ।
ବର ଓଁଶସ୍ତ୍ର ଏ ଦୁଇ ବିଷ୍ଣୁ ଶିବ ରୂପ
ବଟ ଜଟା କ୍ଷୀର ସରସ୍ୱତୀଙ୍କ ସ୍ୱରୂପ । ୨୮ ।
ବିଭୂତି ଭୂଷଣ ଭସ୍ମ ଜହ୍ନା ଖଡ଼ି କନ୍ଦ୍ର
ବର ଅଶ୍ୱତ୍ଥଙ୍କ ବିଭ୍ର ଏହି ହେତୁ କହ । ୨୯ ।
ଚଣ୍ଡିଯୁଦ୍ଧେ ରକ୍ତବୀର୍ଯ୍ୟ ଅଙ୍ଗୁ ଛେଳି ଜାତ
ଦୁର୍ଗା ଭୋଗ ଛାଗଳ ଯେ ପୈଷାସୁର ପିତ । ୩୦ ।
ଦଶ ବିଶ୍ୱେଦେବା ଅର୍ଘମାଟି ଗଣ୍ଡାମାଂସ
ଭରତେ ପୋଡ଼ିଲେ ତେର ପୋଡ଼ା ହେଲେ ଭୀଷ୍ମ । ୩୧ ।
ଯୁଧିଷ୍ଠିରଙ୍କ କୋପେ ଶଙ୍ଖ ତହିଁ ଜଳିଗଲା
ଗଣ୍ଡାମାଂସେ ପିତୃଲୋକ ସନ୍ତୋଷ ହୋଇଲା । ୩୨ ।
ଗଣ୍ଡକ ନଦୀରେ ଯେତେ ଶିଳାମାନ ଥିଲେ
ବଜ୍ରକୀଟ ହୋଇ ବିଷ୍ଣୁ ତାହାଙ୍କୁ କାଟିଲେ । ୩୩ ।
ବୃନ୍ଦାବତୀ ଶାପ୍ୟେ ଶାଳଗ୍ରାମ ହେଲେ ହରି
ବଗଧଳା ହେଲେ ଚନ୍ଦ୍ରକୁଣ୍ଡେ ସ୍ନାନ କରି । ୩୪ ।
ସତ୍ୟଯୁଗେ ବଡ଼ବା ଅନଳର ତାପେ
କୋଇଲି ଯେ କାକ ଶାସ୍ତ୍ର କଳା ହେଲେ ପପେ । ୩୫ ।
ପ୍ରଶ୍ନର ଉତ୍ତର ଭଲ ହେଲା କି ନ ହେଲା
ଅହେ ସାଧୁଜନମାନେ ବିଚାରିବ ଭଲା । ୩୬ ।

(ନରସିଂହପୁର)

## ଆଗୁଲ (୩)

ଶୁଣ ହେ ଗୋପାଳ ଭାଇ ଥୟ କର ମନ
କହ କି ପାରିବ କିଛି ଜ୍ଞାନ ସନ୍ଧିମାନ । ୧ ।

କହନ୍ତୁ ଗଉଣୀ ଯେ ବେଙ୍କର ମୁଖ ଗୃହିଁ
ଠେକ ଭିତରେ ଲଉଡ଼ ଲୁଚାଅଛୁ କାହିଁ ? ୨ ।
ଅମୁହାଁ ଦେଉଳେ କାହିଁ ପଶିଅଛୁ ଦାଉଁ
ଏହି କଥା ବିସ୍ତରଣ ତତପର କହ । ୩ ।
କୋକର ମେ ହାଡ଼ ଘେନି ବାଦ୍ୟ ବଡ଼ ଠାଣି
ଗୀତର ଶବଦ ଦାସେ କେଉଁଠାରୁ ଅଣି । ୪ ।
ଗାୟକଙ୍କୁ ପଚ୍ଛୁରୁଛୁ ବ୍ରହ୍ମଜ୍ଞାନ ସନ୍ଧି
ଗୁଲୁଣୀ ଜଳରେ କାହିଁ ଚନ୍ଦ୍ରସୂର୍ଯ୍ୟ ବନ୍ଦୀ । ୫ ।
ଛେଳି କାହିଁ ଶାର୍ଦ୍ଦୁଳକୁ ବାନ୍ଧିଗଲା ଘଟେ
ନୃପତି ଗୁହାରି କରେ ପରଜାଙ୍କ ଆଗେ । ୬ ।
ମୂଷା ମଞ୍ଜାରିକୁ କେଉଁଠାରେ ବନ୍ଦିକଲା
ସଲିଳକୁ କେଉଁଠାରେ ପିଅାସ ଲାଗିଲା । ୭ ।
ପଥରକୁ କେଉଁଠାରେ କରିଅଛୁ ଜାଠ
ଏ କଥା ବିସ୍ତରି ମତେ କହ ତତପର । ୮ ।
ପାଣିରୁ ପାତଳ କେଉଁ କାଂଥାଳର ଦେହ
ଖରାରେ କେ ନ ଶୁଖଇ ଏହା ମତେ କହ । ୯ ।
ବାଞ୍ଝୀ ବୋଲି କରି ପ୍ରାଣ କାହାକୁ କେ କହି
ପୁଅ ଝିଅ ତାହାଠାରୁ ଜନମ ହୁଅଇ । ୧୦ ।
ଫେଡ଼ି କରି କହ ମୋତେ ଏହା ଦାଗମ୍ବର
ଶୁଣି କରି ମୋ ସନ୍ଦେହ ହୋଇଯିବ ଦୂର । ୧୧ ।

**ଉତ୍ତର—**

ଗଉଣୀ ବଚନେ ଯେ କହନ୍ତି ନିର୍ଚ୍ଚେତନ
ଅବଧାନ ହୋଇ ପ୍ରିୟେ ଏକ ମନେ ଶୁଣ । ୧ ।
ଠେକ ଭିତରେ ଲଉଡ଼ ଯେମନ୍ତ ରହିଲା
ଏହି କଥା ମାନ ତୋରେ ସନ୍ଦେହ ହୋଇଲା । ୨ ।
ଠେକ ବୋଲି କରି ପ୍ରାଣ ଏ ଦେହକୁ କହି
ଲଉଡ଼ ବୋଲଣ ଏଥି ବ୍ରହ୍ମ ଅଛୁ ରହି । ୩ ।

ଅମୁହାଁ ଦେଉଳ ବୋଲି ଯାହାକୁଟି କହି
ଅଣସରୋବରରେ ଧାଇଁ ରହିଅଛୁ ତହିଁ । ୪ ।
ଅନ୍ତୁମାନେ ହେତୁ ଦ୍ୱାରେ କର ତୁ ଦର୍ଶନ
ଠିକେ ଠିକେ କହିଦେଲି ହେତୁ କର ଶୁଣ । ୫ ।
ଜୋକ ବୋଲି କର ପୁଣ ଏ ଜୀବକୁ କହି
ଶତଶତ ପ୍ରକୃତ ଯେ ଶରୀରର ଚହି । ୬ ।
ଅମନରୁ ମନ ସିନା ହୋଇଲା ଜନମ
ଅଦେହରେ ଲୀଳା କରୁଛନ୍ତି ତିଲୋଚନ । ୭ ।

ଗୁଲୁଣୀ ବୋଲଣ ପୁଣ ଏ ଦେହକୁ କହି
ଗୁଲୁଣୀ ଭିତରେ ଜଳ ରଖିଅଛୁ ସେହି । ୮ ।
ଛୁଡ଼ା ଗୁଲୁଣୀରେ ଦେଖ ପୂର ଅଛୁ ଜଳ
ଅନନ୍ଦେ ବସିଣ ଚେଣ୍ଡା ଚେଣ୍ଡୁଛୁ ଚେଣ୍ଡାଳ । ୯ ।
ଛେଳି ବୋଲି କର ପୁଣି ଶବଦକୁ କହି
ନିଶବଦ ବୋଲି କର ବାନ୍ଧୁ ଯେ ଅଛଇ । ୧୦ ।
ଜିକାରକୁ ଜାଣିକର ରହିଅଛୁ ପୁଣି
ଦେହଠାରୁ ନିକଳ ନେ କରିଛୁ ଭିଆଣ । ୧୧ ।

ନୃପତି ବୋଲଣ ପ୍ରାଣ ମନକୁଟି କହି
ପଚିଶ ପ୍ରକୃତ ଯେ ପରଜା ଛନ୍ତି ହୋଇ । ୧୨ ।
ମୂଷା ମଞ୍ଜାରିଙ୍କ ନିଶବଦେ ବନ୍ଧକଲା
ଶବଦରେ ଏହି ଜୀବ ବନ୍ଧନ ହୋଇଲା । ୧୩ ।
ପଥର ବୋଲଣ ମନ ଏ ଦେହକୁ କହି
ଜର କରିଅଛୁ ଯେ ବିକୁଣ୍ଠ ସ୍ଥାନେ ଯାଇ । ୧୪ ।

ଏକ ପାଦ ଛନ୍ଦ ହୋଇ ଦୁଇ ପାଦ ଛନ୍ଦ
ଜଳରୁ ପବନ କରିଅଛୁ ତହିଁ ବନ୍ଧ । ୧୫ ।
ପାଣିରୁ ପାତକ ବୋଲି କହ୍ୱା ଯେ ଅଛଇ
ଜୀବ ବୋଲି ତାକୁ ଜାଣ ସୁବର୍ଣ୍ଣର ଦେହି । ୧୬ ।
ସମୁଦ୍ରର ହାଡ଼ ଯେ ଖଗରେ ନ ଶୁଖଇ
ବିକୁଣ୍ଠ ସନ୍ଧରେ ଝର ବହୁଅଛୁ ରହି । ୧୭ ।

ଶକତଙ୍କ ଯେନା ତହିଁ ରହିଛନ୍ତି ଶିବ
ତେଣୁ ନୀଳକଣ୍ଠରେ ରହିଅଛୁ ଜୀବ । ୧୮ ।
ଠିକେ ଟିକେ ପଦ କେତେ କରିଲି ଗାୟନ
ଅହେ ସୁଜ୍ଞଜନେ ମୋର ଦୋଷ ନ ଘେନିମ । ୧୯ ।
ବାଞ୍ଛା ବୋଲି କରି ମନ ପରମକୁ କହି
ପରମର ଜଗତ ଯେ ସଂସାର ଅଟଇ । ୨୦ ।
ଶୂନ୍ୟରୁ ପରମ ଗୋଟି ହୋଇଲା ଜନମ
ଟିକେ ଠିକେ କହିଲି ଶୁଣ ଦେଇ ମନ । ୨୧ ।

( ଅନୁକୂଳ )

## ଆଗୁଳ (୪)

ଶୁଣ ଶୁଣ ଭାଇ ଅରେ ଗୋପରେ ଗୋପାଳ
କାହିଁରୁ ପାଇଲି ଭାଇ ଶ୍ୱେତ ଗୁଞ୍ଜାମାଳ । ୧ ।
କାହୁଁ ଜାତ ହେଲା ଭାଇ କିଏ ଦେଲା ତୋତେ
କାହିଁରେ ଯେ ଗୁଞ୍ଜିମାଳ ପକାଇଛୁ ବେକେ । ୨ ।
ସଦଗୁରୁ ଶୁଣ ଭାଇ ଦେଉଅଛୁ ତୋତେ
ଶ୍ୱେତଗୁଞ୍ଜ ଆଦ୍ୟ ଜନ୍ମ କହିଦେବୁ ମୋତେ । ୩ ।
ଶ୍ୱେତଗୁଞ୍ଜ ଆଦ୍ୟ ଜନ୍ମ ନ ପାରିଲେ କହି
ତୋର ମାଳ ଗୋଟି ଭାଇ ନେବ ରେ ଛଡ଼ାଇ । ୪ ।

## ଉତ୍ତର—

ଶୁଣ ଶୁଣ ଭାଇ ଅରେ ପଚାରିଲ ମୋତେ
ଶ୍ୱେତଗୁଞ୍ଜ ଆଦ୍ୟ ଜନ୍ମ କହିଦେବା ତୋତେ । ୧ ।
କେହି ନ ଜାଣନ୍ତି ତାହା ଅତି ଗୂଢ଼ ରସ
ସଦଗୁରୁ ସେବିଥିଲେ ପାଇ ସେ ସନ୍ତୋଷ । ୨ ।
ଯେଉଁ ଦିନ କୃଷ୍ଣଚନ୍ଦ୍ର ଗୋପେ ଜାତ ହେଲେ
ରାଧିକାଙ୍କ ସଙ୍ଗେ ପ୍ରଭୁ ବହୁ କ୍ରୀଡ଼ା କଲେ । ୩ ।

ଏକ ଦିନେ କୁଞ୍ଜକ୍ରୀଡ଼ା କରନ୍ତେ ବନମାଳୀ
ଗଳାରେ ଲମ୍ବାଇ ଥିଲେ ରଙ୍ଗ ଗୁଞ୍ଜା ମାଳି । ୪ ।
ଛିଡ଼ିଲାକ ରଙ୍ଗଗୁଞ୍ଜ ପଡ଼ିଲାକ ତଳେ
ତହିଁରୁ ଏକ ଗୋଟି ରହିଲା କନ୍ଦର ଅଞ୍ଚଳେ । ୫ ।
ଦେଖିଣ ଶ୍ରୀମତୀ ମନେ ଆନନ୍ଦ ହୋଇଲେ
ନିଜ ମୁଣ୍ଡ ଫୁଲ୍ ତୋଟା ଦିନେ ଲଗାଇଲେ । ୬ ।
କର୍ପୂର ଚନ୍ଦନ ଦେଇ ଯତନେ ପାଳିଲେ
ମଙ୍ଗଳ ଅଳତ କରି ହୁଳହୁଳି ଦେଲେ । ୭ ।
ଅତ ଯତନେକ ହୋଇଲାକ ତହିଁ ଗଛ
ଡାଳ ମେଲି ଫଳ ଯେ ଫଳିଲା ପ୍ରତ୍ୟକ୍ଷ । ୮ ।
ଦେଖିଣ ରାଧିକା ଯେ ଆନନ୍ଦ ହୋଇଲେ
କୃଷ୍ଣ ପଦ ଅର୍ଥେ କଳା ପାଟରେ ଗୁନ୍ଥିଲେ । ୯ ।
ଶ୍ରୀକୃଷ୍ଣ ସୁନ୍ଦର ଅପଣା ଗଳାରେ ଲମ୍ବାଇ
ଶ୍ବେତଗୁଞ୍ଜ ଅଧ ଜନ୍ମ କହିଗଲି ଭାଇ । ୧୦ ।
ମୋର ମାଳ ଦେନି ମୁହିଁ ଯାଉଛି ଚଲାଇ । ୧୧ ।

( ଭଦ୍ରକ )

## ଆଗୁଲ (୫)

କାହୁଁ ଥିଲ କାହୁଁ ଅଇଲ କାହାର ତୁମ୍ଭେ ଗୃହ
ନୟନେ ପଡ଼ିଛ ଅଜ ନ ଛାଡ଼ିବ ବାଟ । ୧ ।
ଘଣ୍ଟି ନେବ ଧାଗୁଡ଼ି ନେବ ହସ୍ତର ଲଉଡ଼ି
ଶିଙ୍ଗା ନେବ ବଂଶୀ ନେବ କେବେ ନ ଦେବ ଛାଡ଼ି । ୨ ।
ତୁମ୍ଭେ କି ନ ଜାଣ ଆମ୍ଭର ହାଟେ
ଅଗରେ ଅଛନ୍ତି ନନ୍ଦର ଗୃହେ । ୩ ।
ତୁମ୍ଭଙ୍କୁ ଦେଖିଲେ ପଥେ ଓଗାଳିବେ ବାଟେ
ତୁମ୍ଭ ସଙ୍ଗ ପାଗ ଆମ୍ଭଙ୍କୁ ଦିଅ
ଲେଉଟି ଚଳାଇ ତୁମ୍ଭେ ଘରକୁ ଯାଅ । ୪ ।

**ଉତ୍ତର—**

କାହୁଁ ଥିଲ କାହୁଁ ଅଇଲ ବୋଲି ପଚାରିଲ ମୋତେ
ଅଗୁଲକୁ ଉତ୍ତର ଯେ କହି ଦେବା ତୋତେ । ୧ ।

ଆଦ୍ୟରେ ଶ୍ରୀକୃଷ୍ଣ ଅଙ୍ଗୁ ଜାତ କଲେ
ଗୋପାଳ ବୋଲିଣ ମୋହର ନାମ ଦେଲେ । ୨ ।

ଘଣ୍ଟି ଧାଗୁଡ଼ିକ ଯେ ଈଶ୍ବର ଭିଆଇଲେ
ଗଜଛଣି ଲଉଡ଼ିକ ଯାଙ୍ଗି ସମର୍ପିଲେ । ୩ ।

ଶିଙ୍ଗା ବାଦ୍ୟ ବୋଲି ପଚାରିଲ ଯାହା
ଅଷ୍ଟସଖୀ ଦେଲେ ଯେ ବେଣୁ ସିଙ୍ଗା ବାହା । ୪ ।

ବଇଁଶୀର ଆହାଲ୍ଲାଦ ତୁମ୍ଭେ ଯାହା ଜାଣ
ବ୍ରହ୍ମା ଯେ ବଇଁଶୀ ଦେଲେ ଶ୍ରୀକୃଷ୍ଣ ଭିଆଣ । ୫ ।

ମଦନ ଦୈତ୍ୟକୁ ଈଶ୍ବର ମାଇଲେ
ନିର୍ଧେନୁ ବେଣୁ ବଂଶୀ ତେଣୁ ଭିଆଇଲେ । ୬ ।

ନୟନେ ପଡ଼ଚ ଆଜ କହିଲ ବୁଝାଇ
ନୟନରେ ମୀନ ଯେ ଖେଳୁଅଛି ରହି । ୭ ।

ଅଗୁଲକୁ ଉତ୍ତର କହିଗଲି ଭାଇ
ମୋର ସଜ ପାଗ ଧେନୁ ଯାଉଛି ଚଳାଇ । ୮ ।

( ବରଗଡ଼ )



# ଉତ୍କଳ ଗାଉଁଲି ଗୀତ

## ଦଶମ ଖଣ୍ଡ



# ନୃତ୍ୟ ଗୀତିକା



# ନୃତ୍ୟ ଗୀତିକା

## ଦଣ୍ଡ ନାଚ

### ୧ । ବୈଷ୍ଣବ

ରାମ ଲକ୍ଷ୍ମଣ ବନକୁ ବାହାର ଧନୁରେ ଗୁଣ ଚଢ଼ାଇ
ଶୁଭ ଅନୁକୂଳେ ଯେ କାଣ୍ଡ ବନ୍ଧିଲେ
ବାବାରେ, ପଡ଼ିଗଲା କପିଳା ଗାଈ । ୧ ।
କପିଳା ଗାଈର ରକତ ନଈରୁ ଫୁଟି ମହାଦେବେ ଜାତ
ଯେଉଁଥାନେ ପୃଷ୍ଠା ଭୂଷ୍ଣ୍ଡ ପଡ଼ଇ
ବାବାରେ, ଉପୁଜିଲେ ଜଗନ୍ନାଥ । ୨ ।
ଜଗନ୍ନାଥ ପ୍ରଭୁ ଅଲଟ ବଦଉ ଖଣ୍ଡାନାମେ ଚକ୍ରଧର
ଯେଣେଠିବେ ପ୍ରଭୁ ଯଛ ଅରଜିବେ
ବାବାରେ, ପଢ଼ିଣ ମହାମନ୍ତ୍ରର । ୩ ।
ମହାମନ୍ତ୍ର ପଢ଼ି ଗୁରୁସେବା କର ହର ହେଲେ ପରସନ୍ନ
ଆପଣା ଧାଉଡ଼ ପାଦେ ଦରଶନ
ବାବାରେ, ଧନ୍ୟ ତୋ ଗୁରୁ ବଚନ । ୪ ।
ପିମୁଡ଼ି ବାପୁଡ଼ା ବାହାହୋଇ ଗଲେ ଗଗନେ ଉଡ଼ଇ ଧୂଳି
ବଳରେ କଙ୍କଡ଼ା ମର୍ଦ୍ଦିଲ ଚିପିଲେ
ବାବାରେ, ବେଙ୍ଗ ଦେଲେ ହୁଳହୁଳି । ୫ ।
ଡନ୍ତ୍ର ବାପୁଡ଼ାକୁ ତା ତନ୍ତ୍ର ଚିଲ୍ଲାଇ ଚଷାକୁ ଗିଳେ ଲଙ୍ଗଳ
ସାତ ସମୁଦ୍ରକୁ କମଠ ଗିଳଇ
ବାବାରେ, ବୃକ୍ଷକୁ ଗିଳେ ତା ଫଳ । ୬ ।

ବଳଦ ବାପୁଡ଼ା ଧରୁଛନ୍ତି ଗଲା ଦୂବ ଗଞ୍ଚି କଲା ବୂଡ଼ା
ଦଣ୍ଡିକେର ମାଛ ଗଣ୍ଡି ଭିଡୁଅଛୁ
ବାବାରେ, ବଗ ଧରିଥିଲା ଛତା । ୭ ।
କଇଁଛ ବାପୁଡ଼ା ବଡ଼ ଦୁଧିଆଳ ଗୁଳ୍ଚଣିରେ ମୁଠେଁ ଦହି
କାକର ଭିତରୁ ଘିଅ ବାହାରୁଛି
ବାବାରେ, ଅଳଙ୍କାର ରୂପ ହୋଇ । ୮ ।
(ନରସିଂହପୁର)

## ୨—ଯୋଗୀଗୀତ

ମୁଁ ଅଟେ ଯୋଗୀମଣି, ଦିଅରେ ବାବା ଭିକ୍ଷା ଆଣି ।
ଗ୍ରାମ ବାହାରେ ଥାଉଁ, ଭିକ୍ଷା ମାଗିଣ ଖାଉ
ସେଠାରୁ ଆସି ମିଳିଲୁ ତୁମ୍ଭର ଭକତ ଜାଣି । ୧ ।
ଦେଖ ହେ ମାଳାଜପ, ଆମ୍ଭର ନାହିଁ ପାପ,
ପିତାମାତା ତେଜ୍ୟା କରି ଆଣିଥିଲୁ ବଂଶୀପାଣି । ୨ ।
ଆମ୍ଭେ କପଟି ନୋହୁଁ, କୃଷ୍ଣକଥାରେ ଥାଉଁ
ଗୁରୁଧାମ ଛାପାକରି ଦେହରେ ହୋଇଛୁଁ ଗୁଣି । ୩ ।
ଯାଉଛୁଁ ବାବା ରହ, କଲ୍ୟାଣ ହୋଇଥାଅ
ତୀର୍ଥକରି ଲେଉଟିଲେ ଭେଟ ହବା ଆସି ପୁଣି । ୪ ।
ଆମ୍ଭର ଯେତେ ଭାବ, ମନେ ପକାଉ ଥିବ
ବିପ୍ର ଭଗୀରଥି ବୋଲେ ଭେଟ ହେବ ଯୋଗୀଆଣୀ । ୫ ।

### ଯୋଗୀଆଣୀ ଗୀତ

ଶୁଣ ଅହେ ସୁଜ୍ଜନାର,
ଯୋଗୀଆଣୀ ଯେ ବାହାର,
କହୁଛୁ ତୁମ୍ଭ ଅଗର
ଶୁଣ ସତ୍ୱର ହେ । ୧ ।

ଉଇ କୁଳେ ହେଲି ଜାତ,
କର୍ମ୍ମ ମୋର ବିପରୀତ
ହରାଇ ମାନ ମହତ୍ତ୍ୱ,
ଶୁଣ ସମସ୍ତ ହେ । ୨ ।

ବାଙ୍କି ରଗଡ଼ରେ ଘର,
ବାପ ଯେ ସାଧବ ମୋର,
କି ଦୁଃଖ କହିବ ମୁହିଁ,
ସଭାରେ ରହି ହେ । ୩ ।
ଗୋପାଳୁଣୀ ଜାତି ମୋର,
ମୋ ନାମ ଗେଲବସର,
କି ଜନ୍ମ ମୁଁ ପାଇଥିଲି,
ଗୃହ ଛାଡ଼ିଲି ହେ । ୪ ।
ବାରବର୍ଷ ସମୟରେ,
ବାପ ବିଭା କଲେ ମୋରେ,
ଷୋଳ ବରଷରେ ଯୁବା,
ପତି ସେବିକା ହେ । ୫ ।
ପତି ଯେ ଛାଡ଼ିଣ ଗଲେ,
ବାପ ଭାଇ ତେଜ୍ୟା କଲେ,
ଦୁଇ କୁଳରେ ନ ହେଲି
ମଝରେ ମଲି ହେ । ୬ ।
ଅଚ୍ଛୁଵ ଜାତଙ୍କ ଦ୍ୱାର,
କର୍ମ୍ମ ବୁଲାଇଲା ମୋର,
କି ବୁଦ୍ଧି ମୁହିଁ କରିବ,
କେଣିକି ଯିବ ହେ । ୭ ।
ଏହି କଥା ମନେ ଭାବି,
ଏ ସମୟେ ଏକ ଯୋଗୀ,
ଭିକ୍ଷାକରି ଅସିଥିଲା,
ମୋତେ ଦେଖିଲା ହେ । ୮ ।

ଦେଖିଲି ତାହାର ବେଶ,
ଆଖିଠାର କଲା ନାଶ,
କିଛି ନ ଜାଣେ ଯୁବତୀ,
ତା ସଙ୍ଗେ ମାତି । ୯ ।

ଆଖିଠାର କଲା ବାଇ,
ତା ସଙ୍ଗେ ଗଲି ଗୋଡ଼ାଇ,
ଘୋର ଅରଣ୍ୟରେ ଯାଇ,
ରହିଲୁ ତହିଁ ହେ । ୧୦ ।

ସଙ୍ଗ ହୋଇ ଦୁଇଜଣ,
ପ୍ରୀତି ଅରମ୍ଭିଲୁ ପୁଣ,
ପତି ପଣେ ସେବା କଲି,
ଦିନ କାଟିଲି ହେ । ୧୧ ।

ଗର୍ଭବାସ ମୋତେ କରି,
ପଳାଇଲା ଛାଡ଼ିକରି,
କାହାର ଧରିବି ମୁଣ୍ଡ,
କି କଲା ଭଣ୍ଡ ହେ । ୧୨ ।

ପଛେ ପଛେ ମୁଁ ତଡ଼ୁଛି,
ସନ୍ତକ ତାର ରଖିଛି,
ଜପାମାଳା ମୋର ପାଶ,
ଅଛି ପ୍ରତ୍ୟକ୍ଷ ହେ । ୧୩ ।

ଏପରି ଦୁଃଖ ଆସିଲା,
ମୋ କପାଳେ ଏହା ଥିଲା,
ଗ୍ରାମଜନଙ୍କ ମଧ୍ୟରେ,
ଅତି ଅତୁରେ ହେ । ୧୪ ।

ବିପ୍ର ଭଗୀରଥି କହି,
ଯୋଗୀଅଣି ଯେ ଖୋଜଇ,
ସେହିଠାରେ ଯୋଗୀ ଥିଲା,
ଜାଣି ପାରିଲା ହେ । ୧୫ ।

# ଯୋଗୀର ରୂପ ଲକ୍ଷଣ

ଶୁଣ ତା ରୂପ ଲକ୍ଷଣ କହୁଛି ମୁହିଁ,
ବୟସ ଷୋଳ ସତର ତାକୁ ଅଟଇ । ଘୋଷା ।

ଯନ୍ତ୍ର ମନ୍ତ୍ର ବିଦ୍ୟା ଶେଷେ,
ଗୁଣିବିଦ୍ୟା କିଛୁ ଅଛେ,
ଦ୍ୱାରେ ଦ୍ୱାରେ ବୁଲି ସେହୁ
ଭିକ୍ଷା ମାଗଇ । ୧ ।

ଜାଣଇ ପ୍ରୀତି ପାଠକୁ,
ନ ଛାଡ଼ଇ କପଟକୁ,
ଯୁବା ଜନଙ୍କର ମନ
ନିଏ ସେ ମୋହି । ୨ ।

ଝୁଲି ଭିର କାନ୍ଧ ପରେ,
ଲାଉ ତୁମ୍ବା ଧରି କରେ,
ଚନ୍ଦନ ଠୋପା ମସ୍ତକେ
ଫୁଟି ଦିଶଇ । ୩ ।

ଗଳାରେ ରୁଦ୍ରାକ୍ଷ ମାଳ,
କର୍ଣ୍ଣରେ ତମ୍ବା କୁଣ୍ଡଳ,
ରାମ ନାମ ଜପୁଛନ୍ତି
ନିରତେ ଝାଇ । ୪ ।

ବଦ୍ର ଭାଗୀରଥି ଝାଇ,
ଗ୍ରାମଜନ ଦେଲେ କହି,
ଯୋଗୀକୁ ଦେଖିଣ ମନ୍ଦେ,
ମନ୍ଦେ ହସଇ । ୫ ।

ପ୍ର— (ଢଗ) କୁକୁର ଶୋଇଲା କୁଣ୍ଡରେ,
ଧାନ ମାଣକୁ କାନଫୁଲଟେ ହଲାଇ ହଲାଇ ମଲା ରେ ?

ଗୀତ— କେଉଁ ଦେଶର ଏ ନାରୀ, ହେ ମଉସା—
ଏକା ହୋଇ ବୁଲୁ ଅଛୁ କାପରି,
କାହାକୁ ଭୟ ନ କରି । ୧ ।

ସ୍ତ୍ରୀ— (ଚଗ) ଅଲୋ ମଉସା, ଜଡ ପଇସା, ଏହି କଥା ଯିଏ କହିଲା—
ଯାହା ଖୋଜୁଥିଲି ଆଳ ଦେଶ ଧନ
ଦୁଆରେ ପଇଠ ହୋଇଲା ।

ଗୀତ— ଏ ଅଟେ କାନ୍ତ ମୋହର, ହେ ମଉସା—
ତୁଣ୍ଡ ବାର କର ଜାଣି ଦେଲିଣି,
ଗୃହଲକ୍ଷ୍ମୀ ତାଙ୍କର ଘର ଲୋ । ୨ ।

ପୁ— (ଚଗ) ଧୂମ୍ରରୁ ଧୂମା
ଚଳେ ପାହୁର୍‌ଣୀ ଉପରେ ସମା ।
କୁସୁମ ଫୁଲର ଜ୍ୟୋତ
ଖଣ୍ଡେ ଦୂର ଯାଇ ଓଢ଼ଣା ମକାଉ
କହ, ମୋହଠାରୁ ନାହିଁ ସତ ।

ଗୀତ— କେଉଁ ଦେଶରେ ତୋ ଘର ଲୋ, ନାଗରୀ—
କେଉଁଠାରେ ମତେ ଦେଖିଣ ଥିଲୁ
ବୋଲୁଛୁ ଗିରସ୍ତ ମୋର ଲୋ । ୩ ।

ସ୍ତ୍ରୀ— (ଚଗ) ଦହି ସର ପାଇଁ ମୋ ଘରକୁ ଯାଇ
ପୀରତ ଲାଳସା କଲ ରେ
ପୀରତ କରଣ ସ୍ନେହ ପଳାଇଲ
କେଉଁ ପ୍ରୀତଭାବ ହେଲା ରେ ।

ଗୀତ— ମୁଁ ତ ଗୋପାଳୁଣୀ ଜାତ ଲୋ ମଉସା—
ମୋହ ରୂପ ଦେଖି ଆମ୍ଭ ଘରକୁ
ଭିକ୍ଷା ମାଗିଯାଏ ନିତ ଲୋ ମଉସା । ୪ ।

ପୁ— (ଚଗ) କଲରା ପତର ତନ ତନଛା
ମରଚ ପତର ଦାଗେ,
ଯେଉଁ ପୁରୁଷଟି ମନ ବଳାଉଛି
ଗୋଡ଼ର ଝୁଣ୍ଟିଆ ମାଗେ ।

ଗୀତ— ଭିକ୍ଷା ମାଗି ଗଲି ମୁହିଁ ରେ ରସିକା—
କେମନ୍ତ ପ୍ରକାରେ କହୁଛୁ ତୁହି
ତୋର ମୋର ଭେଟ ନାହିଁ ରେ । ୫ ।

ସ୍ତ୍ରୀ— (ଠଗ) ପର୍ବତ ଉପରେ ଟଙ୍କା ପଥର
ରଗଡ଼ିଲି ମୁଗ ଡାଲି
କାଶୀରେ ଝାସି ମୁଁ ଏ ବର ପାଇଲି
ମୁରୁଛିଲି ବାପ ଭାଇ ।

ଗୀତ— ଭିକ୍ଷା ମାଗିଗଲୁ ଏଠି ଲୋ ମଉସା—
ହସ୍ତ ବ୍ରତୁଲରେ ଦେଲି ମୁଁ ଭିକ୍ଷା
ସେ କଥାଟି ମନେ ନାହିଁ ଲୋ । ୬ ।

ପୁ— (ଠଗ) ଅରୁଆ ଚୁଉଲ ଖିରି କି
ତୋହ ରାଜଜର ନୁହେ ମୁଁ ସୁନ୍ଦରୀ
କେତେ ଅନାଉଛୁ ନିରେଖି ।

ଗୀତ— ମୁହିଁ ତୋତେ ଅଣିନାହିଁ ଲୋ ବାନ୍ଧବୀ—
ମୋହ ରୂପ ଦେଖି ଘରୁ ତୋହର
ମୋ ପଛେ ଅସିଛୁ ଧାଇଁ ଲୋ । ୭ ।

ସ୍ତ୍ରୀ— (ଠଗ) ନୂଆ ଖଡ଼ୁବାହା ପିତଳ ଚନ୍ଦେଇ
କେତେ ଅନାଉଛୁ ଠୋକା ରେ,
ଦାନ ଷୋଳ ଘଡ଼ା ପାଇଛି ସାରକା
ତୋ ଘରେ ଟଣାଇଲି ଏକା ରେ ।

ଗୀତ— ମୁଁ ଗଲୁବେଳେ ଗାଧୋଇ ଲୋ ମଉସା—
ମୋହ ପଛେ କାଅଁ ଥାଏ ଗୋଡ଼ାଇ,
ମୁଁ ତ ନାହିଁ ନାହିଁ କରୁଥାଇ ଲୋ । ୮ ।

ପୁ— (ଠଗ) ବାରଅଡ଼େ ଯେଉଁ ନୃସି କଲସି
ଲୁଣ ମଡ଼େଇ ଖାଉଛୁ,
ଦୁଆରମୁହଁରେ ନାଗର ବସାଇ
ମିଛେ ଯୋଗୀ ଅଡ଼େ ଚାହୁଁଛୁ ।

ଗୀତ— କେତେ ଲଗାଉଛୁ ନାଳି ଲୋ ଛଇଳି—
ସାଉଁଳିଲେ କବା ମୋତେ ପାଇବୁ
ଅମ୍ଭେ ନୋହୁଁ ତୋହ ଭଳି ଲୋ । ୯ ।

ସ୍ତ୍ରୀ— (ଢଗ) କଖାରୁ କାଟିଲି ଟେକା ଟେକା କରି
ମଝିଗରେ କଲି ଘାଇତା
ଶୋଇଲା ଶେଜରେ କଥା ନ କହିଲ
ଏହି ଗୁଣବନ୍ତ ଘଇତା ।

ଗୀତ— ଏହି ତାଡ଼ ଲଞ୍ଚ ଦେଲା ଲୋ ମଉସା—
ଅଈ ବୁଢ଼ୀ ମୋର ଘରେ ନ ଥିଲା
ମୋତେ ଘେନ ପଳାଇଲା ଲୋ । ୧୦ ।

ପୁ— (ଢଗ) ଲେଉଟିଆ ଶାଗ ପଠାଳି ପଠାଳି
ଅଧା ମାଡ଼ିଗଲା କାକର
ଷୋଳ ବରଷର ଯୁବତୀ ଟୋକୀ
କେତେ କରୁଅଛୁ ଗୁମର ।

ଗୀତ— ଛାଡ଼ିଦଅ ମୋର କର ରେ ବାନ୍ଧବୀ—
ଛୁଇଁଲେ ମୋ ଜାତି ମାରି ହୋଇବ
ଗୁଚିଯାଅ ଧୀର ଧୀର ରେ । ୧୧ ।

ସ୍ତ୍ରୀ— (ଢଗ) କ୍ଷୀରରେ ଧୋଇଲେ ଖଣ୍ଡରେ ମୋହିଲେ
ନିମ କି ମଧୁର ହୋଇବ
ଯେତେ ପରକାରେ ବୁଝାଇ କହିଲେ
ପର କି ଆପଣା ହୋଇବ ।

ଗୀତ— ପୁଅଙ୍କୁ ତାହାର ନେଉ ଲୋ ମଉସା—
ଜାତରୁ କୁଳରୁ ଗଲିଣି ମୁହିଁ
ମୋତେ ସେ ନ ନେଲେ ନ ନେଉ ଲୋ । ୧୨ ।

ପୁ— (ଢଗ) ବାଘ ମହୁ ଗରଜନ
ନାକଟି ଅଧାରୁ ପଣତ ପକାଇ
ବଧୂଅରଙ୍କୁ ଅରଜନ ।

ଗୀତ— ତୁ ଅଚ୍ଛୁ ନାଗସ୍ୱରର ରେ ରସିକା—
ମୋତେ ଦେଖି କମା ମାଇଲୁ ଠାର
ଜ୍ଞାନ ହଜମାଏ ମୋର ରେ । ୧୩ ।

ସ୍ତ୍ରୀ— (ତଗ) ଚକ୍କଠା ମାଠି
ଢଳା କବାଠି
ବଳେ ହାତ ଧରି ନେବୁ ଭୁହଁଟି
କେମନ୍ତେ କରୁଚୁ ଗାଲୁ,
ଖଜା ମୁଆଁ ବୋଲି ମନେ କରିଥିଲୁ
ସେ କଥା ପାସୋରି ଦେଲୁ ।

ଗୀତ— ଜାତରେ କେ ଆଉ ନେବ ଲୋ ମଉସା—
ମୁହଁରେ କହିଲେ କଅଣ ହେବ
ଏଇ ଥର ଜଣାପିବ ଲୋ । ୧୪ ।

ପୁରୁଷ—(ତଗ) ନଈକୁ ମାଠିଆ ଗଡ଼ିଗଲା,
ଦିଅର ଭାଉଜ କଥା ହେଉଥିଲେ
ସାନ ବୋହୂ କଥା ସରିଗଲା ।

ଗୀତ— କେତେ ଲଗାଉଚୁ ଭାବ ଲୋ ଛଇଳା—
ପୁରୁଷ ହୋଇ କେ ଦମ୍ଭେ ରହିବ
ଯୋଗିପଣ ମୋର ନେବ ଲୋ । ୧୫ ।

ସ୍ତ୍ରୀ— (ତଗ) ଗୁଡ଼ୁଲ ଚକ୍‌କଣ ମେଘ ଗରଜନ
ଭଲ ସାଜ ଅଛୁ ତୋତେ ରେ,
କେଉଁ ନାଗ୍ନି ତୋର ମୁଖ ବାନ୍ଧିଦେଲା
କଥା ନ କହିଲୁ ମୋତେ ରେ ।

ଗୀତ— ମୋହ ପାଇଁ ପଦେ କହ ଲୋ ମଉସା—
ପଦେ କଥାରେ ତ ଛାଡ଼ି ଅଇଲା
ତାଙ୍କୁ ସମଝାଇ ଦିଅ ଲୋ । ୧୬ ।

ପୁ— (ତଗ) ଉଇଁ ଆସୁଥିଲା ଗୁନ୍ଦ ରେ
ଗଉଡୁଣୀ ଠୋକି ହରବର କରି
ପକାଇଲୁ ମୋତେ ଫାନ୍ଦରେ ।

ଗୀତ— ତୁମ୍ଭ ବୋଲ ନଷ୍ଟ କଲି, ସଭାଜନେ—
ତପ ଛାଡ଼ି କରି ସଂଯୋଗୀ ହେଲି
ହାତ ଧରି କରି ନେଲି, ସଭାଜନେ । ୧୭ ।

ସ୍ତ୍ରୀ— ଯାଉଛୁ ସୁଜନେ ମୋ ଦୋଷ ନ ଧର
ଅଦୋଷରେ ଯାହା ବୋଇଲି
ତୁମ୍ଭେମାନେ ମୋତେ ସାହାପକ୍ଷ ହେଲ
କାନ୍ତକୁ ମୋହର ପାଇଲି
ବିପ୍ର ଭଗୀରଥି କହ୍ନି, ଯୋଗୀଅଣୀ ଦୋଷ ଧରିବ ନାହିଁ,
ଯୋଗି ମନ ଥଣ୍ଡା ହୋଇ । ୧୮ ।
( ନରସିଂହପୁର )

## ୩—ପତର ସଉରା

ସଉରାବୋଲି

ବଜାରେ ବଜା
ଢୋଲିଆ ରତନ ବାଇଦ ବଜା
ଆହୁର ବଜା
ନବଖଣ୍ଡ କର ବାଇଦ ବଜା,
ମୁଁ ତ ପତର ସଉରା ରଜା ହେ,
ସଭାଜନେ । ୧ ।

ଝିଙ୍କ ଝିଙ୍କାର
ମାରଇ ଫେର,
କପୋତ ପାରୁଆ ହଂସ ମୟୂର
ମୋର କୁଟୁମ୍ବ ପୋଷା ଏପର ହେ,
ଜନ୍ତୁମାର । ୨ ।

ଭିରଜା କୁଟୁମ୍ବ ମୋହର ଯେତେ
ଝଡ଼ପୋକ ପର କହିବ କେତେ
ଶଶୁର-ଝିଅ, ଶଳା-ଭଉଣୀ
ପୁଅର ମାଅ, ଯେ ଭଣଜା ମାଇଁ
ମୋର ପିଣ୍ଡ ମରାଣି ଅଟଇ ହେ,
ସଭାଜନେ । ୩ ।

ହସ୍ତରେ ଧରଛୁ କାଣ୍ଡ ବାଉଁଶ
ତହିଁରେ ରାବଣ ଯାଇଛୁ ନାଶ
ଶଙ୍ଖାରେ ମୁରଲୀ କଲେ ଗୋବନ୍ଧ
ଗୋପୀମାନେ ନ ଦେଖି ହୋଇଲେ ଅନ୍ଧ
ଆମେ ନ ଜାଣୁଛି ଛନ୍ଦମନ୍ଦ ହେ,

ସଭାଜନେ । ୪ ।

ମୟୂର, ଚକୁଆ, ସାରସ, ଶଳ
ସବୁ ପକ୍ଷୀମାନ କରଛୁ ଠୁଳ
ବଗପକ୍ଷୀ ବାନା ବାନ୍ଧଛୁ ମୁହିଁ
ମୋ ସମାନେ କ୍ଷେତ୍ରି କଏସେ ନାହିଁ
ଭୁଷଣ୍ଡ ପ୍ରାୟେକ ଅସୟ ମୋହର
ଶ୍ରୀରାମଙ୍କୁ ସେବା କଲ ବନର
ମୋହ ସମାନେ କେ ଅଛଇ ବୀର ହେ,

ସୁଜ୍ଞାନର । ୫ ।

ବ୍ରହ୍ମା ଦେଇଛନ୍ତି କଣ୍ଠି ଘଣ୍ଟିକ
ଗରୁଡ଼ ଅଣ୍ଟାକୁ ଦେଲେ ପେଟିଟି
ବସ୍ତ୍ର ଦେଇଛନ୍ତି ଜପାମାଳକୁ
ଜପିଲେ ଜଣିବ ଯମପୁରକୁ
ବ୍ରହ୍ମା ଦେଇଛନ୍ତି କାନ୍ଧେ ପଇତା
ଅଙ୍କାଦେଲେ ଡାକିବ ମୋହ କାନ୍ତା ହେ

ସଭାଜନେ । ୬ ।

ଅରଣ୍ୟ ବନରେ ବୁଲୁଣ ଥାଉ
ନାନା ଜୀବଜନ୍ତୁ ମାରଣ ଖାଉ
ଭାରଜା କୁଟୁମ୍ବ ଘେନି ସଙ୍ଗର
ଜମି ବାଡ଼ି ନାହିଁ ନ ଦେଉଁ କର
ମୁଁ ତ ପରଜା ତୁମ୍ଭେ ରଜାର ହେ,

ସୁଜ୍ଞାନର । ୭ ।

ହସ୍ତେ ଶୋଭାପାଏ ଧନୁ ବାଉଁଶ
ଏଥି ଦଶକନ୍ଧ ହୋଇଛୁ ନାଶ

ଶରବନ୍ଧ ବାନ୍ଧି ଥିଲେ ଅର୍ଜୁନ
ଠିକ ଠିକ କରି କହୁଛୁ ଶୁଣ
ବନେ ନୃତ୍ୟ ଗୀତେ ବନରେ ଥାଉଁ
ବନିତା ସଂଗତେ ସଂଗୀତ ଗାଉଁ
ପୃଷ୍ଠେ ଶୋଭେ ମୟୂରର ଚନ୍ଦ୍ରିକା
ଅଙ୍କାଦେଲେ ତାକବି ମୋହ କାନ୍ତା ହେ,
ସଭାଜନେ । ୮ ।
(କୁଶାସିଙ୍ଗା, ଅନଗୁଳ)

୨ ଡାକ—(୧)
ଅସ ଲୋ ଗେଣ୍ଡି ଗେଣ୍ଡିମା,
ତାଳ ଗେଣ୍ଡିମା
ଚକ୍କୁଳି ପିଠାର ମଞ୍ଜି
ମୁଁ ତ ମରୁଅଛୁ ଖୋଜି ଖୋଜି ଲୋ, ଚମ୍ପାଫୁଲ । ୧ ।
ଉତ୍ତର— ଏତେ ରାତରେ
ସଭା ମଝିରେ
ଗେଡ଼େଇ ମାଆ
ଡାକୁଛୁ କିଆଁ
ମୋ କାନ୍ତ ପର ଶୁଭୁଛୁ ତୁଣ୍ଡ
ମୁଁ ତ ଧନକେ ନ'ଥିରେ ରାଣ୍ଡ ହେ, ପ୍ରାଣନାଥ । ୨ ।
ଡାକ— ମୁଁ ଥାଉ ଥାଉ କିମିତ ରାଣ୍ଡ
ହୋଇଲୁ ତୁହି କହୁଛୁ ଦାଣ୍ଡ
ମୋ ଚମ୍ପାଫୁଲ, କେ କଲା ମୂଲ
ତୋତେ କେହି ନ ବୋଲିବ ଭଲ, ମୋ ଚମ୍ପାଫୁଲ । ୩ ।
ଉତ୍ତର— ବହୁଦିନେ ଅଜି ହୋଇବ ଭେଟ
ବହୁତ କଥା ବାରତା ଚହଟ
ଯାଉଛୁ ନାଥ, ତୁହି ଅରତ
ଦେଖୁ ଦେଖୁ ନ ସାରିବ ମହତ
ସାଙ୍ଗରେ ଅଛନ୍ତି ପିଲା ବାଳୁତ
ମତେ କରୁଛନ୍ତି ହରକତ ହେ ଜୀବଧନ । ୪ । ( ନୂଆଗଡ଼ )

ଡାକ—(୨)

ଡାକେ ଶବରୀ ବନସ୍ତ୍ରୀ । ଅସ ମୋର ପ୍ରାଣସଙ୍ଗ
ଗୁମାନ ଛୋଡ଼, ରୁଷ କପାଳି, ଅସ ଲୋ ଧାଇଁ
ତୋତେ ନ ଦେଖି ଉଛୁଳେ ମୁହିଁ ଲୋ
ପ୍ରାଣସଙ୍ଗ ।

ଅସ ଆସ ବସ୍ମୃଓସ୍ତି
ଡାକ୍ୟାଏ ତୋଠି ଫାଠି
ଫଳ ମୂଳଟି
କେତେ ଗୋଳୁଟି
ଅସ ଲେଉଟି, ଘରେ ନିବାଟି
ତତେ ନ ଦେଖି ହୁଅଇ ଘାଣ୍ଟି ଲୋ
ହରିକଟି । ୧ ।

ବନେ ଶୁଭେ କାର ବାଣୀ, ମୁହିଁ ଅଟେ ଶବରଣୀ
ନବ ଯୌବନୀ, ଚନ୍ଦ୍ର ବଦନୀ, ମନ୍ଦ ହାସିନୀ,
ମୁଁ ଅଭାଗିନୀ, ଅକଲଙ୍କିନୀ, ଜାତ ପଦ୍ମିନୀ
ମୁଁ ତ ବନସ୍ତେ ପଞ୍ଚକଲ୍ୟାଣୀ ରେ ନାଗଫଣୀ । ୨ ।

ଜାତ ମୋ ଅଟେ କିରାତ
ଶବର ଜାତକୁ ଚେତ
ପିତାର ସତ୍ୟ, ବାଲ୍ୟ କାଳେ ତ
ଥାଇ ତୋ ମାତ କରିଥିଲେ ତ
ଏକାବେଳେ ହେଲା ଭୋଜଭାତ ଲୋ ପତିବ୍ରତ । ୩ ।

କେଉଁ ମାସ କେଉଁ ତିଥ
ସେ ଦିନ କେଉଁ ନକ୍ଷତ୍ର
କହ ତ ସତ, ନାମରାଶି ତ, ମେଳକ ସୂତ୍ର
କହ ତୁରିତ, କେଉଁ ବଂଶରେ ହେଲୁ ତୁ ଜାତ ରେ
ମନେ ଚେତ । ୪ ।

ଚଇତ୍ର ମାସ ଦଶମୀ, ନକ୍ଷତ୍ର ହେଲା ଅଶ୍ୱିନୀ
ଶୁକ୍ଲ ପାରେଣୀ, ନାମକ୍ଷ ରାଣୀ, ଜଟିଣ ମୁନି
ଖଡ଼ ଛାଣିଲା କୋଠିକୁ ରାଣି ଲୋ ଜାଗ୍ରମଣି । ୫ ।

ଯେ ଧନୁ ଧରିଚୁ ହସ୍ତେ, କେ ଦେଇଚି କହ ସତେ
କାଣ୍ଡ ଫଳାତ, ବାହୁଲି ହାତ, କିଏ ଦେଲା ତ
କାହୁଁ ସେ ଜାତ
କହ ଦେଲେ ମିଳିବ ତୋହ ସଙ୍ଗତ
କହ ତୁହ ଯେବେ ମୋ ପ୍ରାଣକାନ୍ତ ରେ କହ ସତ । ୬ ।

ଧନୁ ଦେଲେ ନିରାକାର, ଶିଆଳି ଲତାର ଉଲ
ଏ କାଣ୍ଡ ଶର, ଦେଲେ ଶଙ୍କର, ଭରଥ ବୀର, ବାହୁଲି ମୋର
ନେଇ ସମର୍ପିଲେ ମୋହର କର ଲୋ ଗ୍ରାମାବର । ୭ ।

ଶୁଣି ଶବରୀ ହରଷ, ମିଳିଲା ଶବର ପାଶ
ହୋଇ ହରଷ, ଚଳେ ବାଳୀଶ, କୁଞ୍ଚିତ କେଶ
ଭ୍ରୁରୁ ବିଳାସ. ଦେଖି ତପ ତେଜିଦେବେ ତାପସ
ଦନା ବୋଲେ ସହ ନୁହ ବରଷ ରେ ପଦେ ଭାଷ । ୮ ।

( ନରସିଂହପୁର )

ଡାକ—(୩) ଆସ ଲୋ ରମଣୀମଣି, ଏଣିନୟନୀ
କାମସଜନୀ, ହଂସଗମନୀ
ହେମାଙ୍ଗୀ କୁସୁମ ଧନୀ ମର୍ଦ୍ଦନୀ
ଆସ ଆସ ମୋ କୋଳେ ବରବରନୀ ଲୋ ସତରୁଣୀ ।

କିଏ ହେ ଏତେ ରାତିର, କହ ବୁଥାର
ମାଡ଼ ବୋବାଳି
ମୋ କାନ୍ତ ବୋଲି
କାନ୍ତ ମୋର ଗଲେ ବିଦେଶ ଚାଲି,
ଯେବେ ମୋ କାନ୍ତ
କହ ତୁରିତ
କେଉଁ ଦେଶେ ଘର
କି ବୃତ୍ତି କର
କେଉଁ ଦେବତା ସେବା ତୁମ୍ଭର, ମୁଁ ପଚାରୁଛି । ୧ ।

ଯାହା ପଗ୍ଚରିଲୁ ପତ୍ରାଣସନ୍ଧ
ଠିକ ଠିକ କରି ଦେଉଛୁ କହ୍ନ
ଜାତ୍ର ଶବର ମୋ ବଂଶରେ ସାର
ପଶୁ ପକ୍ଷୀ ମାରି କାନନେ ଘର
ଇଷ୍ଟଦେବତା ହରଶଙ୍କର, ମୁଁ ଦେଲି କହ୍ନ । ୩ ।

କାନ୍ତ ଯେବେ ମୋର ଶିରର ଟୋପି
କାଛଟା ଖଣ୍ଡି କାହୁଁ ପାଇଲଟି
ନାନାରଙ୍ଗେ ନୃତ୍ୟ କରୁଅଛଟି
ମୁଁ ପଗ୍ଚରୁଛୁ । ୪ ।

ଶୁଣ ଲୋ ପ୍ରେମିକାବର
ଶିରେ ଟୋପିଦେଲେ ସୁନାର ଶିର
ଶୁକଦେବ ଜନ୍ମିଲେ ଯେତେବେଳେ
କାଛଟା ଖଣ୍ଡି ପାଇଲି ସେ କାଳେ
ଧାଗୁଡ଼ ମାଳ
ନୃସିଂହ ବୀର
ଇନ୍ଦ୍ର ଦେଇଛନ୍ତି ମୁଣ୍ଡକୁ ପାଗ
ଛୁଇଁଦେଲେ ଯିବ ସକଳ ରୋଗ
ରୁଦ୍ରାକ୍ଷମାଳା ଦେଲେ ଶଙ୍କର
ବଗ ଝୁଲି ବାନା ଦେଲେକ ସୁର
ନାନା ରଙ୍ଗେ ନୃତ୍ୟ ମାଧବ ଧ୍ୟାୟେ
ତୋ ବେଶ ବାସ ତୋରେ ଦେଲା କିଏ
ମୁଁ ପଗ୍ଚରୁଛୁ ? ୫ ।

କାନ୍ତ ହେ,
ଶାଢ଼ୀ ଖଣ୍ଡି ଦେଲେ ମାଆଁ ମଙ୍ଗଳା
ଦୁର୍ଗା ମାଈ ଦେଲେ ପାହୁଡ଼ ବଳା
କଣ୍ଠେ କାପ ଶଙ୍ଖା ଦେଲେ ସାବିତ୍ରୀ
ରତ୍ନହାର କଣ୍ଠେ ଦେଲେ ସରସ୍ୱତୀ

ମଥା ସିନ୍ଦୂର ଦେଲେ ଭଗବତୀ
ପଦେ ଅଳତା ଖଞ୍ଜିଲେ ପାର୍ବତୀ
ମୁଁ କହିଦେଲି । ୭ ।
( ଘୁମୁସର )

## ୩—ବଚନିକା

ଛଇଲା ପ୍ରିୟା ରତନ
ଏତେ ଡାକ ଡାକ ଶୁଣିଲୁ ନାହିଁ,
ଛଇଲି ଲୋ
କାହା କୋଳେ ଥିଲୁ ଶୋଇ,
ବାନ୍ଧବୀ ଲୋ, କାହା କୋଳେ ଥିଲୁ ଶୋଇ । ୧ ।
ଶୁଣ ଅହେ ପ୍ରାଣେଶ୍ୱର
ତୁମ୍ଭ ଡାକ ମୋରେ ଶୁଭିଲା ନାହିଁ
ଛଇଲ ହେ
ନିଦ୍ରାରେ ପଡ଼ିଲି ଶୋଇ,
ବାନ୍ଧବ ହେ, ନିଦ୍ରାରେ ପଡ଼ିଲି ଶୋଇ । ୨ ।
ଅଛି ଗୋସ୍ୱା ତୁ କହିଲୁ
କଲୁ କାହା ସଙ୍ଗେ ମଉଜ ଅତ
ଛଇଲରେ, କମ୍ପା ହୋଇଚୁ ବହୁତ
ବାନ୍ଧବୀ ରେ, କମ୍ପା ହୋଇଚୁ ବହୁତ । ୩ ।
ଶୁଣ ଅହେ ପ୍ରାଣନାଥ
ତୁମ୍ଭେ ଗଲଦନୁଁ ଅନାଥ ହୋଇ
ଛଇଲ ହେ
ଡେଇଁଲ ବନେ ଇଲବଲ,
ବାନ୍ଧବ ହେ, ଡେଇଁଲ ବନେ ଇଲବଲ
ନାଗର ହେ ଡେଇଁଲ ବନେ ଇଲବଲ । ୪ ।
ଗୋସ୍ୱା ତୁ ଦେଲୁ ବତାଇ
ରୋହିଣୀ ତୋ ଲାଗି ହେଲାକେ ଜାହିର

ଛଇଲ ଲୋ, ଗାଲେ ଚୁମ୍ବ ଦାନ୍ତ ଚିହ୍ନ
ନାଗରୀ ଲୋ, ଗାଲେ ଚୁମ୍ବ ଦାନ୍ତ ଚିହ୍ନ । ୬ ।
ଶୁଣ ହେ ପ୍ରାଣ ଈଶ୍ୱର
ତୁମ୍ଭ ବିହୀନରେ ହେଲି କାତର
ହସ୍ତ ପରେ ମୁଖ ଦେଇ
ଉମର ସପନେ ପଡ଼ିଲି ଶୋଇ
ବାନ୍ଧବ ହେ ସେ ଚିହ୍ନ କଣ୍ଟୁର ବାହ୍ନ
ଛଇଲ ହେ, ସେ ଚିହ୍ନ କଣ୍ଟୁର ବାହ୍ନ । ୬ ।
ରମଣୀ ମଣି ଉତ୍ତର
ଶୁଣି କାମାତୁର ହେଲା ଶବର
ସୁଜନେ ହେ, ରଚନା ବନମାଳୀର
ବିବୁଧେ ହେ, ରଚନା ବନମାଳୀର
ପଣ୍ଡିତେ ହେ ରଚନା ବନମାଳୀର । ୭ ।

( ନରସିଂହପୁର )

---

## ୪ ଦହିଖେଳ

ଏ ପଟେ ତଟୁରି
ସେ ପଟେ ମଥୁରା ମଝିରେ ଗୁଞ୍ଜରୀ ନଈ
ଗୃହ ସହିଯାକ ଗୃହପଣ ଦେବା
ପାରି କରିବେ ମାଧୋଇ
କି ଅଗୋ ସହି,
ଆସ କେ ଘେନିମ ଦହି । ୧ ।

ଦହି ମୋର ସଜ
ପଡ଼ିଛୁ ପିଅଳ ଅମ୍ଳିଲ କିଛୁ ନୁହଇ
ଏ ଦହି ଖାଇଲେ ମନେ କରୁଥିବ
ମୁରୁଛିବ ବାପ ଭାଇ
କି ଅଗୋ ସହି
ଆସ କେ ଘେନିମ ଦହି । ୨ ।

ଦହି, ଦହି ଗୋ ଆସ
ଦହିରେ ପଡ଼ିଛି କର୍ପୂର ବାସ
ଏ ଦହି ଖାଇଲେ କରିବ ଖୋଷ
ଶାଶୁ ନଣନ୍ଦରେ ଘର
ମୁଁ କାହାକୁ କରିବି ପର । ୩ ।

ସୁନା ମୋ ଲହୁଣୀ ବେଗେ ନିଅ କିଣି
ନଈ ସେପାରିଆ ଘର
ଉତ୍ତର ହୋଇଲେ ଶାଶୁ ଗାଳିଦେବେ
ଗିରସ୍ତକୁ ନାହିଁ ଡର
ଆସ ଗୋ ସହି
କେ ଢେନାମ ଘୋଳ ଦହି ।
ଆସ ଗୋ ସହି
କେ ଢେନାମ ବାସ ଦହି । ୪ ।

ଦହି ବିକି ଗଲି ମୁହିଁ ଗୋ ରାଧିକେ
ଖୀର ବିକିଗଲି ମୁହିଁ
ବାଟରେ ଦେଖିଲା ବୁଢ଼ା ବଇଷମ
ଛଡ଼େଇ ଖାଇଲା ଦହି
ଆସ ଗୋ ସହି
କେ ଢେନାମ ଘୋଳ ଦହି । ୫ ।

ଦହିରେ ପଡ଼ିଛି କର୍ପୂର ଚନ୍ଦନ
ବାସୁଅଛି ମହ ମହ
ବୁଢ଼ୀଏ ଖାଇଲେ ଉଣ୍ଡ୍ରାପର ହେବେ
ନ କିଣିଲା ଲୋକ ନିଅ
ଆସ ଗୋ ସହି
କେ ଢେନାମ ଘୋଳ ଦହି
କେ ଢେନାମ ବାସ ଦହି । ୬ ।

( ଦୁଇ )

ଶ୍ରୀମତୀ ଚତୁରୀ ନାବ ମଙ୍ଗ ଧରି
ମସ୍ତକେ ପସରା ଧରି,
ମହଣି ପଛାରେ, ପସରା ଥୋଇଣ
ବସିଲେ ରାଧା ସୁନ୍ଦରୀ
କେଲୁଅରି ଧରି
ଧୀରେ ବାହୁନେଲେ ହରି । ୧ ।

ମାୟା କଲେ ହରି, ଘୋଟିଲା କୁହୁଡ଼ି
ଦଣ୍ଡଦିଗ ଅନ୍ଧ ପୁରି
ପାଦତଳ ଅଉ, କିଛି ନ ଦିଶିଲା
ବ୍ୟାକୁଳ ହେଲେ ଚତୁରୀ
ଚଉଦିଗ ଚାହିଁ
ନାବରେ ନାବିକ ନାହିଁ । ୨ ।

ସଙ୍କେ ସମ୍ପଦ ପଡ଼ିଲା ବିପଦ
ଘୋଟିଲା ଅସି ପ୍ରମାଦ
କଇବର୍ତ୍ତ ବୁଡ଼ା କିବା ବୁଡ଼ି ମଲା
ଜଣା ନ ଗଲା ସମ୍ବାଦ
ହୋଇ କାନ୍ଦ କାନ୍ଦ
କରିଲା ରାଧା ହୁଦ । ୩ ।

ସହଜେ ଅବଳା ଶିରୀଷ କୋମଳା
ନିଜକୁ ବହୁ ଭଙ୍ଗାସି
ଦୟାରେ ତରଳ ଶାନ୍ତ ବନମାଳୀ
ଜଳେ ଦେହ ଦେଇଁ ହସି
ଠେକି ଦେଲେ ଆସି
ବ୍ରଜ ଗୋପାଳବିଳାସୀ । ୪ ।

ମୁଁ ନନ୍ଦର ସୁତ ଖଡ଼ବାକୁ ଶତ
ହୋଇଛି ବୁଦ୍ଧି କୈଳାଶି

ଏହା ବୋଲି ବେଣୁ ଫିଙ୍ଗି ଉଭା ହେଲେ
ଚମକିଲୁ ରାଧା ଚିତ୍ତ
କହେ ଅନୁଚିତ
କଲୁ ତ ବରଜସୁତ । ୫ ।

ଛଳିଲ ମୁଁ ତୋର ତୁ ଥିଲା ମୋହର
କରୁଣାଜଳଧି ହୋଇ
କହୁ ଅନୁଚିତ, କି ଅବା ଉଚିତ
କହ ମୋ ପରାଣ ସହି
ଏତେ ଏତେ କହି
ବନ୍ଧେ ବାନ୍ଧିଲେ ମାଧୋଇ । ୬ ।

( ଖଣ୍ଡପଡ଼ା )

( ଓଳି )

ଗୋପାଳୁଣୀ— କରେ କରେ କୈବର୍ତ୍ତି
ତୁଣ୍ଡ ବଢ଼ିଗଲୁ ତ,
ଅଟୁ ତୁ ଡକାଇତ
ବଜାରୁଣି ନାସୁ ବୋଲି କହିଲୁ ମୂର୍ଖ । ୧ ।

କୈବର୍ତ୍ତି— କେ ଲୋ ପୋଇଲି ଠୋକ
ଡକୈତୁଣୀ ନୋହୁ କି
କୁଜ ଦେବ ସଲଖି
କେଲ୍ଲଅର ବାଡ଼ି ମୁଣ୍ଡେ ଦେବ ସଲଖି । ୨ ।

ଗୋ— କରେ ଅଠିକା ଚଟା
ତୁ ତ ପଲମ ପେଟା
ଧଣ୍ଡୁ ଖଇର ଖୁଣ୍ଟା
କଲି ଲଗାଉ କାହିଁକି ଗୋଡ଼ଘଷାଠା । ୩ ।

କୈ— ଶାଳ କରୁଚ ଗାଳି
ତୁମ୍ଭେ ଗୋଦଣ୍ଡି ନାସ୍ତି
ଦେବ ମହତ ସ୍ୱାର
କେଉଁ ବାପ ଅଗେ ଯାଇ କର ଗୁହାରି । ୦ ।

ଗୋ— କିରେ ଧୀବର ଜାତି
ବଜାଉଅ ଅଠନ୍ତି
ନିତି କଙ୍କଡ଼ା ଖାନ୍ତି
କଂସ ରଜାକୁ ଠିକଏ ନ କର ଭୀତି । ୫ ।

କୈ— କାଲେ ନାକ ରେପେଠି
ତୁମ୍ଭେ ନ କର ପାଠି
ଆଜ କାଟିବ ଚୁଟି
ଘାଟ କଉଡ଼ି ନ ଦେଇ ପାର ହୁଅଛି । ୬ ।

ଗୋ— ଅରେ ବୁଢ଼ା କେଉଟ
କେତେ ଲଗାଉ ଭଟ
ହୁଅନା ଛଟପଟ
ଆସିଲେ ପଇସା ଆମ୍ଭେ ଦେବୁଁ ନେଉଟ । ୭ ।

କୈ— ଅଗୋ ଗୋପ ବାଳକା
ତୁମ୍ଭେ ଭଦ୍ର ଜାଳକା
ଗାଳି ଦେଉଛ ଏକା
ରାଧିକାଙ୍କୁ ବନ୍ଧାଦେଇ ଯାଅ ଅବକା । ୮ ।

ଗୋ— ଅରେ ବୁଢ଼ା କୈବର୍ତ୍ତ
ତୋର ନାହିଁ ଇଜ୍ଜତ
ମାଅ ଭଉଣୀ ସେ ତ
ମୁଖେ ଲାଜ ନାହିଁ ବଡ଼ି କହୁଛୁ ତୁ ତ । ୯ ।

କୈ— ଅଗୋ ଗୋପର ପୋଇ
ଗାଳିଦଅ ନଠେଇ
ମୂଲ ଅବା ନ ନେଇ
ପାରି ଅବା କିଏ କହ କରୁଛୁ କାହିଁ । ୧୦ ।

ଗୋ— ନିତି ପାରେଉ ନାବ
ଆଜ ତୋର ଏ ଭାବ
ଦେଖି ସ୍ନାନଆଁ ସର୍ବ
ଧନ ଲାଗି ବଢ଼ା ଶୁଣି ଲାଗେ ଅପୂର୍ବ । ୧୧ ।

କୈ— ଫଟା ନାବ ମୋହର
ଜଣ ଜଣକେ ପାର
ଯେବେ ହୋଇବ ଗୋସାଇଁ
ଅସ ଜଣେ ଜଣେ ବସ ବେଗେ ଚତୁରୀ । ୧୨ ।

ଗୋ— ଏକାବେଳକେ ପାର
ହେବୁଁ ଗୋପନାଗରୀ
କର କହୁଚୁଁ ଧର
ଜଣ ଜଣ କର ତୁମ୍ଭେ ନ କର ପାର । ୧୩ ।

କୈ— ଫଟା ନାବଟି ଭବ
ଡଙ୍ଗା ଯେବେ ବୁଡ଼ିବ
ଶୁଣ କହୁଛୁ ସର୍ବ
ତେଣେ କଂସ ରଜା ମୋରେ ଦଣ୍ଡ ବହିବ । ୧୪ ।

ଗୋ— ଗୋପୀ ତହୁଁ କହିଲେ
ଅଉ ବିଲମ୍ବ ହେଲେ
ସବୁ ସରବ ବଳେ
ମଥୁରା କଟକେ ଦଧି ବିକା ନ ହେଲେ । ୧୫ ।

କୈ— ମୋର କ୍ଷିଆ ଆଇଛ
ଜଣେ ଛଡ଼ା ସବୁଛ
ପାର କର ନେବତ
ଦୋଅଡ଼ ପାଳିକି ନେବ ଥିଲେ ଜଣକ । ୧୬ ।

ଗୋ— ଗୋପୀ ବିଗ୍ଭର କଲେ
ରାଧିକାକୁ କହିଲେ
ରାଧା ଏକା ରହିଲେ
ବାକି ସମସ୍ତଙ୍କୁ ବୁହା ପାରେଇ ଦେଲେ । ୧୭ ।

କୈ— ନାବ ଅସଇ ଫେର
(ତହିଁ) ବାଙ୍କଚୂଳିଆ ହର
ବେଶ ବଦଲ କର
ରାଧା ରାଧା ଡାକେ କୃଷ୍ଣ ବାଇ ବାଂଶୁରୀ । ୧୮ ।

ସଭାଜନ—
ମାୟା କୁହୁଡ଼ି ହେଲା
ଜଳ ସ୍ଥଳ ବୁଡ଼ିଲା
ରାଧା କାମେ ଘାରିଲା
ଭାଷେ ବାଞ୍ଛା କୃଷ୍ଣ ରାଧା ମୁଖ ଚୁମ୍ବିଲା । ୧୯ ।

( ନରସିଂହପୁର )

## ୫ । ଚଢ଼େୟା

ଯାଉଥିଲି ବନ୍ଧେ ବନ୍ଧେ
ବନର ଦେବତା ନାଗି ଅଇଲା
ଚଢ଼େୟା ରେ, ଯାଚଦେଲି ଗଞ୍ଜା ମୁଣ୍ଡେ । ୧ ।

ସଜନା ମୂଳେ ପାଉଁଶ
ହାତରେ ଧରିଛୁ କାଣ୍ଡ ବାଉଁଶ
ଚଢ଼େୟା ରେ, ପୁଡ଼ି ପାଡ଼ି ଗଲା ନଣ ।

ହାଡ଼ ତଳେ ମୂଷାମାଟି
ଗାଧୋଇ ଯିବାକୁ ବ୍ରାହ୍ମଣୀ ସଜ
ଚଢ଼େୟା ରେ, ଖୁଆତଳେ ଦାନ୍ତକାଠି । ୩ ।

ଗୁଟିଅରେ ଦେଲି କାଳୀ
ଗୁଟି ଗୁଟି କରି ବନ୍ଦନା କରୁଛୁ
ଚଢ଼େୟା ରେ, ହୋଇଥିବୁ ମରଭଳ । ୪ ।

ଆଣିଅଛୁ ଶୁଆସାରି
ବଳବଟି ରାମହରି
ଗୋଟିକ ସୁଜକେ, କଣି ନଅ ତାକୁ
ସୁଙ୍କେଙ୍କନେ, ଆଣିଛୁ ବଣରୁ ଧରି । ୫ ।

ଆଣିଅଛୁ ଘରଚଟି
ଖୋଜୁଛନ୍ତି ଧାନ ପଟି
ଦଶବାର ଗୋଟି ଛୁହିଁରୁ ରଖିଲେ
ସଭାଜନେ, ପିବ ନାହିଁ ଧାନ କୁଟି । ୬ ।

ମୋ ନା ସୁନ୍ଦରୀ ହର
କୁଶ ଦୀପେ ମୋର ଘର
ବାସୁଦେବ ଗୀତ କରଇ ଭଣତ
ସଭାଜନେ, ଚଢ଼େଇ୍ଆ କାନ୍ତ ମୋହର । ୭ ।
( ଦଶପଲ୍ଲ )

## ଚଢ଼େଇଣୀ ବଚନ

ଶୁଣ ଲୋ ମଉସା ମୋର
କାଲିଠାରୁ କାହିଁ ମୋ ପ୍ରାଣେଶ୍ୱର ଲୋ
ଛାଡ଼ିଗଲେ ନ ପାଏ ଖବର, ମଉସା ଲୋ । ୧ ।
ପତି ବାହୁନେ ଜୀବନ
ତେଜିବଇଁ ଏହା ଧ୍ରୁବ ବଚନ ଲୋ
ଜାଣିଥିଲେ ଭଣି ରଖ ପ୍ରାଣ, ମଉସା ଲୋ । ୨ ।
ଚଢ଼େଇ୍ଆ କୁଳରେ ଜାତ
ନାରୀ ବୋଲି ଚଢ଼େଇଣୀ ବିଖ୍ୟାତ ଲୋ
ତୋର ସମୀପେ କହିଲି ସତ, ମଉସା ଲୋ । ୩ ।
ପକ୍ଷୀ ମାରି ଧରି ବୃତ୍ତି
ବଢ଼ କୁଟୁମ୍ବ ତ ପୋଷାଉଁ ନିତି ଲୋ
ଝୁରି ମରୁଛୁ ନ ଦେଖି ପତି, ମଉସା ଲୋ । ୪ ।
ଯାହା ଏବେ ପୁଚ୍ଛା କଲୁ
ଚଢ଼େଇଙ୍କ ନାମ ଶୁଣିମ୍ୁଁ ବୋଲୁ ଲୋ
କହେ ଯେଣୁ ଶ୍ରଦ୍ଧା କଲୁ, ମଉସା ଲୋ । ୫ ।
ହଂସ, ପିକ, ଶୁକ, ଶାରୀ
ବକ, କାବତ, ମୟୂର, ହଂସରାଳି ଲୋ
ଚକ୍ରବାକ, ଡାହୁକ, ମରାଳ, ମଉସା ଲୋ । ୬ ।
ଶଙ୍ଖଚିଲ, କୁମ୍ଭାଟୁଆ
ଗୋବରା, ଗୃଡକ, ପାରା, ଗେଣ୍ଡାଳିଆ ଲୋ
କେତେ କହିବି କହ ତ ନୂଆ, ମଉସା ଲୋ । ୭ ।
( ଦଶପଲ୍ଲ-ଯୋଡ଼ିମ )

## ଚଢ଼ଉଣୀ କାନ୍ଦ

ଶାରଙ୍ଗ ଗଡ଼ର ଉବା ବାଉଁଶରେ ମନ୍ଦୁରୀ ନପାଏ ସନ୍ଧି
ମାଇପୀ ହୋଇ ମୁଁ ଛମ'ସେ ଯୁଝିଲି ମୋ ସ୍ୱାମୀ ରହିଲେ ବନ୍ଧି ।
ମୋ ଧନରେ, କା ଆଗେ କହିବି ଯାଇ,
ଯା ଆଗେ କହନ୍ତି ହୃଦୟ ବେଦନା ମର ପଡ଼ୁଛନ୍ତି ସେହି । ୧ ।
ସରିଲା ମୋ କର୍ମ, ଦହି ହେଲା ବାପ, ନାମ ଲୋପ ହେଲା ମହ୍ମି
ରାଣୀ ସଙ୍ଗେ କାଣୀ ପର ହେଲି ଘଣି ନେଇ ମୀର ଯାଏ ବହି
ମୋ ଧନରେ, ମୁଁ କା ଆଗେ କହିବି ଯାଇ
ଯା ଆଗେ କହନ୍ତି ହୃଦୟ ବେଦନା ମର ପଡ଼ୁଛନ୍ତି ସେହି । ୨ ।
ବହୁତ ନ ଖାନ୍ତି, ଅଳପ ଖାଆନ୍ତି, ତାଠିଏ ଖାଆନ୍ତି ଘିଅ
ଛବତ ଅଗ୍ନିରେ ଝାସ ଦେଲା ଯାଇ, ସୁନା ପଚଭମା ଦେହ
ମୋ ଧନରେ, କା ଆଗେ କହିବି ଯାଇ
ଯା ଆଗେ କହନ୍ତି ହୃଦୟ ବେଦନା ମର ପଡ଼ୁଛନ୍ତି ସେହି । ୩ ।
କରୁ ସୁନା ଚୁଡ଼ ତଳେ ଗଲା ପଡ଼ି, ମୋ ଶାଢ଼ି ନେଲା ଛଡ଼ାଇ
ମସ୍ତକ ସିନ୍ଦୁର ଲିଭିଲା ମୋହର ଧରନ୍ତୁ ପରଡ଼ା କହି
ମୋ ଧନରେ, କା ଆଗେ କହିବି ଯାଇ
ଯା ଆଗେ କହନ୍ତି ହୃଦୟ ବେଦନା ମର ପଡ଼ୁଛନ୍ତି ସେହି । ୪ ।
( ଅନୁଗୁଳ )

## ୭ । ବାଇଧନ (୧)

ମନା କରୁଥିଲି ଗୋଡ଼ାଇ ଅଇଲୁ
ଆହାରେ ନବ ଅଙ୍ଗନା
ଏ ଘୋର ବନରେ ଛାଡ଼ି କେଣେ ଗଲୁ
ପ୍ରାଣ ଯିବ ତୋହ ବିନା, ମୋ ବାଇଧନ । ୧ ।
ଜଗତର ଲୋକେ କି ବୋଲି ବୋଲିବେ
କୁଳେ ଲାଗିଲା କଳଙ୍କ
କାହା ମୁଖ ଚାହିଁ ରଜନୀ ବଞ୍ଚିବ
ବିଧାତାର ଏହି ପାଞ୍ଚ, ମୋ ବାଇଧନ । ୨ ।

(ବୋଇଲେ) ଶୁଣରେ ଲକ୍ଷ୍ମଣ ହାଥେ ଧନୁବାଣ
ଥିବ ଯେବେଁକି ମୋହର
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯେତେ ବୀର
ଭସ୍ମ କରିବ ସତ୍ୱର, ମୋ ବାଇଧନ । ୩ ।
କହନ୍ତି ଈଶ୍ୱର ଶୁଣ ଗୋ ଗଉରୀ
ଶ୍ରୀରାମଚନ୍ଦ୍ର ଚରିତ
ସୀତାଙ୍କୁ ହରାଇ ପଞ୍ଚବଟୀ ବନେ
ଖୋଜନ୍ତି ବନ ପର୍ବତ, ମୋ ବାଇଧନ । ୪ ।

ଅହା ବଇଦେହୀ ଛାଡ଼ିଗଲୁ କାହିଁ
ତୁ ମୋର ପ୍ରାଣମିତଣୀ
ତୋତେ ନ ଦେଖିଣ ଅକୁଳ ଶରୀର ଗୋ
କଲୁ ମୋତେ ଅନାଥୁଣୀ, ମୋ ବାଇଧନ । ୫ ।
ମଧୁଯୋଧ୍ୟା କାଳେ ସତ୍ୟ କରିଥିଲୁ
ଛୁଇଁଣ କୁଳଦୀପକୁ
ତୋହ ବିନେ ଆନ ନାହିଁ ନାରୀମଣି ରେ
ଏ ମୋର ସତ୍ୟ ବାକ୍ୟକୁ, ମୋ ବାଇଧନ । ୬ ।

ଲକ୍ଷ ରାଜା ମୁଖେ ଲଗାଇଲି କାଳି
ଭାଙ୍ଗିଲି ଶିବଧନୁକୁ
ପର୍ଶୁରାମ ଗର୍ବ ହେଲେ ଚୂନାକଲି
ଭୟ ନ ଥିଲା କାହାକୁ, ମୋ ବାଇଧନ । ୭ ।
ରହି ପାରିଲେ ଅଯୋଧ୍ୟାରେ ରାଜନ
ହୋଇଥାନ୍ତି ଗୃହମୁହାଁ
କକେୟୀ ଜନମୀ ଲାଗି ଏ ଦଣ୍ଡକୁ
ପାଇଲି ବନରେ ମୁହିଁ, ମୋ ବାଇଧନ । ୮ ।

ବୋଇଲେ ଲକ୍ଷ୍ମଣ ହାତେ ଧନୁବାଣ
ଥିବ ଯେବେଠି ମୋହର
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯେତେ ବୀର
ଭସ୍ମ କରିବ ସତ୍ୱର, ମୋ ବାଇଧନ । ୯ ।

ଶୁଣିଣ ଲକ୍ଷ୍ମଣ-ସାନ୍ତ୍ୱନା-ବଚନ
ଶ୍ରୀରାମ ବୋଇଲେ ଭାଇ !
ତୋର ଗୁଣ ମୁହିଁ ନ ପାରିବି ଶୁଝି
ଜନମେ ଜନମେ ମୁହିଁ, ମୋ ବାଇଧନ । ୧୦ ।

( ବଡ଼ାମ୍ବା )

( ୨ ) ଏଥୁ ଅନ୍ତେ ରସ ଶୁଣ ଶୃଙ୍ଗାର
ହରି ପେଷି ଦୂତୀ ଶ୍ରୀମତୀ ପୁର
ବିଳମ୍ବ ଗମନ ଦେଖି ଦୂତୀର
ରାଧା ଗୁଣ ଗୁଣି ମୁରଲୀଧର
ବଂଶୀ ଯାବଟ କୁଞ୍ଜର
ରାଇ ରୂପଚନ୍ଦ୍ର ଭାବି ପୂର୍ବରୀତ ବାଚହ୍ନରେ ବଂଶୀଧର,
ମୋ ବାଇଧନ । ୧ ।

ବାରଣ ଗଡ଼ ତ ନୁହେ ପାସୋର
କେଉକୀବରନା ରେ ରାମାବର
ମୁଁ ଚାତକ ତୁ ବାରିଦ ପ୍ରକାର
ମୀନନେତ୍ରୀ ଭ୍ରୂ ବିଶିଖ ଶର
ଦହୁଛି ଶରୀର ମୋର
କର ଅଙ୍ଗୀକାର ମୁଁ ତୋ ପରଶୁର ମଦନ ତାପୁ ଉଦ୍ଧର,
ମୋ ବାଇଧନ । ୨ ।

କୁରଙ୍ଗିଯୋଷା ଠାଣି ଚାହିଁବାର
କ୍ରୁଦ୍ଧ ରଦନା ହୋଇ ଥର ଥର
କେଶ କୁରଳୀ ଶିଖୀ ଅକ୍ଷୁଡ଼ର
ମାରୁ ରଣ୍ଡକା ହେଉ ଅଗୁସାର
କ୍ଷମା ମନ୍ଦେ ମାନଭର
ତୋତେ କର ଅଣ ଲଭିଲି ମୁଁ କ୍ଲେଶ
କେଉଁ ଅପରାଧ ମୋର, ମୋ ବାଇଧନ । ୩ ।

ହରକଣ୍ଠୀ କିଙ୍କିଣି ନାଦ ସ୍ୱର
କୁଞ୍ଜ ଲତାରେ କରନ୍ତେ ଝଙ୍କାର
ସାରସ ଗମନ କେଡ଼େ ମଧୁର
ଜାଅ ସଖି ମୋତେ ଦେଇ ଶୃଙ୍ଗାର
ଛଇଲି ନ କର ପର
ପରବତ ସ୍ତନା ଯେନ ମୋ ବେଦନା
ମନ୍ମ ତାପ ଦୂର କର, ମୋ ବାଇ ଧନ । ୪ ।
କାମ ଶାର୍ଦ୍ଦୋଳ ଅଙ୍ଗେ ପୀଡ଼େ ମୋର
କମଳମୁଖୀ ପ୍ରତୀକାର କର
ହଳଦବସନ୍ତ ବାସକୁ ଚୋର
ଉରୁ ରମ୍ଭା ଜାନୁ ସ୍ତମ୍ଭ ଆକାର
କାମ ଯୁଦ୍ଧେ ଫଡ଼କାର
ବାହୁ ମୃଣାଳରେ ବାନ୍ଧ ମୋ ଗଳାରେ
କାମ ବ୍ୟାଘ୍ରକୁ ସଂହାର, ମୋ ବାଇଧନ । ୫ ।
ଘୋଡ଼ାଇ ରଖ ତୋ ବାସ ଅଞ୍ଚଳ
ଚମ୍ପକଅଙ୍ଗି ତୁ ମୋ ହୃଦମାଳ
ବେଳୁଁ ବେଳ ପିକ ଶବ୍ଦ କଠାଳ
ବାଳି ଆସି ବାରେ ବସାଅ କୋଳ
ଝିଙ୍କାର ନାଦ ପ୍ରବଳ
କପୋତ ମଣ୍ଡୁକ ତତର ଡାହୁକ
ପିକ ନାଦ କୋଳାହଳ, ମୋ ବାଇଧନ । ୬ ।
ତୁ ଗୋ ରୂପବନ୍ତ ମୋ ମନହାରୀ
ଅଶୋକ ଭାବ ଶୋକ ଦୂର କର
ସଂସାର ନୁହେଁ କେ ସେ ଅସଂସାରୀ
ରସାଳସା ମନେ ସଂକୋଚ ବାର
ରାଧାକୃଷ୍ଣ ପାଦ ଚନ୍ଦ୍ର
ପଶୁପକ୍ଷୀ ପୁଷ୍ପ ମୀନ ମାଳିକା ସୂନେ
ଦ୍ୱିଜ କପିଳ ବଦତ, ମୋ ବାଇଧନ । ୭ ।
( ସୋଳବନ୍ଧ, ନରସିଂହପୁର )

( ୩ )

ବନ୍ଦଇ ଗଣେଶ
ପାର୍ବତୀର ଶିଷ
ଯେଣ ବିନତ ମୋହର ।
ତୁମ୍ଭ ଶ୍ରୀ ଚରଣେ
ଶରଣ ପଶୁଛି
ଦୟାକର ବିଘ୍ନେଶ୍ୱର, ମୋ ବାଇଧନ । ୧ ।

ଦକ୍ଷିଣ ଦୁଆରେ
ଦ୍ୱାରପାଳ ହୋଇ
କପିଳାସ ରକ୍ଷା କର
ପିତାଙ୍କୁ ନ ଚହ୍ନି
କନ୍ଦଳ କରନ୍ତେ
ଖଡ଼ଗେ ଛେଦିଲେ ଶିର, ମୋ ବାଇଧନ । ୨ ।

ପିତାମାତା ଜାଣି
ଛିଞ୍ଚି ପୁଷ୍ପପାଣି
ଜୀବଦାନ ଦେଇଲେ ।
ମୁଣ୍ଡ ଗୋଟିକ
ରାକ୍ଷସ ଭକ୍ଷିଯାନ୍ତେ
ଗଜମୁଣ୍ଡ ଲଗାଇଲେ, ମୋ ବାଇଧନ । ୩ ।

ବିଘ୍ନବିନାଶନ
ଯେଣ ନିବେଦନ
ଛାମୁରେ ଯୋଡ଼ୁଛି କର
ଗୁମର ଧରି ମୁଁ
ସଭାକୁ ଅଇଲି
କହେ ବିଶ୍ୱ ଗଙ୍ଗାଧର, ମୋ ବାଇଧନ । ୪ ।

# ୨। ବୀଣାକାର

**ଦଣ୍ଡକନ୍ଧ** (ପ୍ରଶ୍ନ)

ଶୁଣ ସୁଜନେ ଦେଇ ମନ କର୍ଣ୍ଣ
ମୋ ଦୋଷ କ୍ଷମା କରିବ ବହନ
ବରାଳୟା ବାଣୀ ଶୁଣି ଈଶାନ
ପଞ୍ଚବଦନ ତ୍ରିପଞ୍ଚ ନୟନ
ଚରଣେ ଚରଣାଧୀନ
କାଳିକାପୁରାଣ ସତର ଶ୍ଳୋକେଣ କାଳୀ ଜନମ **ଅଖ୍ୟାନ** । ୧ ।

ପାର୍ବତୀ ପୁଚ୍ଛା କଲେ ତୋଷଚିତ୍ତେ
କହିବ ଭୈରବ ଦେବ କଥାଏ ମୋତେ
ସଂଶୟ ବିଚ୍ଛେଦ ହେବ ଯେମନ୍ତେ
କାହୁଁ ଦଣ୍ଡ ଜାତ ହେଲା କେମନ୍ତେ
ବିସ୍ତର କହ ଅଦ୍ୟନ୍ତେ
ନ କରିବ ମାୟା ସତେ ଯେବେ ଜାୟା ଦୟାଥିବ ସଂସକ୍ତତେ । ୨।

କାମନା ବୋଲି ଯେ କେଉଁ ଦେବତା
କେତେ ଜଣ ତହିଁ କେତେ ଭଗତା
ଦଣ୍ଡ କେତେ ଗୋଷ୍ଠୀ କି ଜାତ ମାଟି
ଦୀର୍ଘ ପ୍ରତ କେତେ ପଲରେ ଘଟି
ଘଟ ରମ୍ଭା ଫୁଲଜଳ
ଘୃତ ପତ୍ର କଳା ସିନ୍ଦୁର କେ ଅଟେ କାହୁଁ ଜାତ ନାରିକେଳ । ୩ ।
ପାଟ ବେତ କେତେ ଅଙ୍ଗୁଳ ହୁଏ
କେଉଁ ଭଗତ କି କାର୍ଯ୍ୟରେ ଥାଏ
କେ ମଲ ଶୁଦ୍ଧି ହୁଅନ୍ତି କାହାକୁ
ଅଲ୍ଲ ଗୁଡ଼ାଏ ପକାନ୍ତି ଜଳକୁ
କେ କରେ ତାହାକୁ ଗ୍ରାସ
ଶୈବ, ଲିଙ୍ଗ, ଅଗ୍ନି ତିନି ପୁରାଣରୁ କହ ମନ ଭର ତୋଷ । ୪ ।

'ଦେଉଳରୁ ଦୀର୍ଘ ପ୍ରସ୍ଥ ତା କେତେ
ନାଟ୍ୟସ୍ଥଳ ସଂଖ୍ୟା କହ ତ୍ୱରତେ
ସଭାଜନେ କେତେ ଭୂମିରେ ଥାନ୍ତ
କେତେ ଭୂମିରେ ଭଗତା ରହନ୍ତ
ଦଣ୍ଡପାଠ ବେଢ ସ୍ଥିତ
ସ୍ମୃତି ଶାସ୍ତ୍ର କଳ୍ପି ଜଳ୍ପିଲେ ଅଳ୍ପକେ ଯେ
ତୁଟିଯିବ ମନ୍ଦ ଭ୍ରାନ୍ତ । ୫ ।
ନାନ୍ଦୁଅ କେତେ ସେ ଜନ୍ମିଲେ କାହୁଁ
ବେଶବାସ ବୀଣା ବହିଲେ କାହୁଁ
ବୀଣା କପର ରେ ଜନ୍ମ ତା କହ
ପଗ୍ଡ଼ରିବାରୁ ଦୋଷକୁ ନ ବହ
କହେ ପଠାଣି ସାମନ୍ତ
କାଳ୍ପି ଖଣ୍ଡପଡ଼ା କବି କୁଳଚନ୍ଦ୍ର ଯେ
ଶେଷରେ ଏ ପଦ ଖ୍ୟାତ । ୬ ।

**ଉତ୍ତର—**

କର ଶ୍ରବଣ ମନ ଥୟ କର
ନ ଧର ପର ଅପର ମନର
ପଦ ପଦକ ପଦକ ପ୍ରକାର
ହରଷ ହାସ୍ୟକ କର ଦମ୍ଭର
ଦର ସର ହରବର
ଦରହସ ବଶ ମଦନ ସଦନ ଯେ ମଦନ ମନମଥର । ୧ ।
ଠିକେ ଠିକେ ଯେତେ ପୁଚ୍ଛିବା ବାଣୀ
ଧୀରେ ତାହା ଶୁଣ ପ୍ରାଣମିତଣୀ
ଶୈବକଳ୍ପରୁ ଏ ଯାହା କାହାଣୀ
ଲିଙ୍ଗ ପୁରାଣରୁ ଏ ଯାହା ବାଣୀ
ଲକ୍ଷ୍ମୀ ପୁରାଣୁ ଭଗତା
କାଳିକା ପୁରାଣୁ ରାମଚନ୍ଦ୍ର ଭଣି ଯେ
ଶିଳ୍ପୀ ଶାସ୍ତ୍ର ଭୂମି ଜ୍ଞାତା । ୨ ।

(ଅଙ୍କ) ସତ୍ୟଯୁଗରେ ନୃସିଂହ ଜନ୍ମିଲେ
ଚୌଷଠି ସସ୍ର ଧେନୁ ଗ୍ରାସ କଲେ
ତେତାରେ ବତିଶ ସହସ୍ର ମୁନି
ଦଣ୍ଡକାରଣ୍ୟେ ଗ୍ରାସ କଲେ ଧେନୁ
ଦ୍ୱାପରେ ଷୋଳ ସହସ୍ର
କଳିରେ ନୀଳକନ୍ଦରେ ଅଠସହସ୍ର ଯେ ରଜନୀ ଷୋଳ ସହସ୍ର ।୩।

ନୃସିଂହ ପୁରାଣ ପଞ୍ଚ ସାଗରେ
ଦେଖି ମନ ନ ମାନିଲେ ବେଗରେ
ଅମ୍ଭେ ଯେବେ ଗ୍ରାସ ଉଦ୍ଦେଶ୍ୟ କରି
ସଂସାର ମଧ୍ୟେ ରହନ୍ତି କପରି
ପୁଣି ବୋଇଲେ ଈଶ୍ୱର
ନାହାନ୍ତି ଅସ୍ଥିର ନାସ୍ତିକା ତୁ ଏକା ଗୋ
କେମନ୍ତେ ହେବ ଏ ବେଭାର । ୪ ।

ପାର୍ବତୀ ବୋଇଲେ ଶୁଣ ହେ ଦେବ
ନାସ୍ତିକା ଯେତେ ମୋ ତହୁଁ ହୋଇବ
ଶୁଣିଣ ହରଷ ହେଲେ ମହେଶ
ମନେ ସୁମରିଲେ ସେ ବେଦବ୍ୟାସ
ଦଣ୍ଡକେ ହେଲେ ପ୍ରବେଶ
କାଳିଞ୍ଜନ କଣ୍ଡୁ ଭୃଗୁ ସ୍ୱରୋଚିଷ ମାରିଚ ପୁଙ୍ଗୁ ଲୋମେଶ । ୫ ।

ଗୌତମ ଅଗ୍ନିଧ୍ୱଜ ପରାଶର
ମୃକଣ୍ଡୁ ମଣିଭଦ୍ର ମିଶି ତେର
ଏମାନଙ୍କୁ ଦେଖି ଭାଷେ ଈଶ୍ୱର
ପାର୍ବତୀ କଲେ କାମନା ଯାହାର
ହେବାକୁ ଏକା କୁମାର
ମୋହ ଶରୀରରୁ ହତ୍ୟା ଭାର ଦୂର ହେ
ହେବାର କର ବିଚାର । ୬ ।

ପ୍ରଥମେ ପୂଜା କଲେ ବେଦ ବ୍ୟାସ
ମାୟା ଦୈତ୍ୟରେ ଦେଉଳ ପ୍ରକାଶ
ଦୀର୍ଘ ପନ୍ଦର ପ୍ରସ୍ଥ ସାତ ହାତ
ତହିଁ କାମନା ଦେବତା ପ୍ରକାଶ
ଭୃଗୁ ମରିଚ ଲୋମେଶ
ପୁଙ୍ଗ ଗୃହ ଅଙ୍ଗ ସଙ୍ଗରେ ଉତ୍ସଙ୍ଗ ଯେ
ଗୃହ ଦ୍ୱାସ୍ଥଏ ବିଶେଷ । ୭ ।

ଧ୍ୱଜବନ୍ଧରେ ଦେବତା ମନ୍ଦର
ଶିଳ୍ପୀ ଶାସ୍ତ୍ର ଏହା ଦେଖି ସତ୍ୱର
ଗୌତମ ଶିଳ୍ପିକୁ ବ୍ୟାସ ବହଇ
ଅଗ୍ନିଙ୍କ ପରାଶର ମେଳ ହୋଇ
ସମସ୍ତେ ରୁଣ୍ଡ କାରଣେ
ଧରିବେ ଛ ଭ୍ରମି ଭ୍ରମି ଅନୁକ୍ରମେ ଯେ
ବୃହଂ. କାଳିକାପୁରାଣେ । ୮ ।

ବ୍ରହ୍ମ କ୍ଷତ୍ରି ବୈଶ୍ୟ ଶୂଦ୍ର ଏ ଗୃହ
ଭୂମିରୁ ମୃତ୍ତିକା ସ୍ୱଯତ୍ନ କର
ବାରବାର ଦଶ ଦଶ ପଲରେ
ରହିବ କେବଳ ନବାଙ୍ଗୁଳରେ
ମୃତ ସପ୍ତାଙ୍ଗୁଳ ଦୃଶ୍ୟ
ନେଜ ପ୍ରତିବମ୍ଭେ ଆରମ୍ଭେ ସଦମ୍ଭେ ଯେ
ପ୍ରୋଥିବ କର ଅଦୃଶ୍ୟ । ୯ ।

କଣା ଏକ ସଭା ରଥିଏ ଦୁଇ
ସବୁଠି ବିଶୁଦ୍ଧ ଏ ଗୃହ ହୋଇ
ସର୍ବେ ଏକାମେଳେ ଚଳେ ପ୍ରଚଳେ
ପ୍ରବେଶ ମଣି କର୍ଣ୍ଣିକାର କୂଳେ
ଢେଜହଛ ହଳାହଳେ
ମଣିଭଦ୍ରା ମିଶି ସର୍ବେ ଜଳେ ପଶି ହେ
ଉଲ୍ଲସିତ କୋଳାହଳେ । ୧୦ ।

ବାହାରଲେ ମଣି ଶବଦ ଦେଇ
ଦେଖିଲେ ମଣିଭଦ୍ର ଭାଇ ନାହିଁ
ସର୍ବେ ବସି ତହୁଁ ବିଚାର କଲେ
ପୁନଃ ପୁନଃ ଜଳ ମଧ୍ୟେ ଖୋଜିଲେ
ଶୁନ୍ୟରୁ ହେଲା ଶବଦ
ଅହେ ଋଷିମାନେ ଚଳ ପୂଜା ସ୍ଥାନେ
କଲେଣି ଜଳେ ଆସ୍ୱାଦ । ୧୧ ।

ସୋଢ଼ ସତରେ ପୂର୍ବରେ ପଞ୍ଚମ
ଅମୃତ ରହେ ଷଷ୍ଠେ ସ୍ୱର୍ଗ୍ରାମ
ସପ୍ତକୁମ୍ଭେ ସୁରା ପିଅଲ ନେଲା
ଏପରି ସପତ କୁମ୍ଭ ସରିଲା
ବୀଣା ଗୁରଜଣ ନେଲେ
ନାରଦ ତମ୍ବୁରୁ ସାରଦାଙ୍କ ସ୍ୱର ସପ୍ତସ୍ୱରେ,ଖ୍ୟାତ କଲେ ।୧୨।

ଏହି ଗୁରୁଜଣେ ବୀଣା ପ୍ରସ୍ତୁତ
ଏ ନୁହେଁ ବୀଣା ବୁଝ ନାନା ଶାସ୍ତ୍ର
ପିନାକ ଧନୁ ଏ ଧରି ଈଶ୍ୱର
ସଙ୍ଗେ ରଙ୍ଗେ ଉମା ନାଚେ ଅମ୍ବର
ଦେଖ ତୁ ମହାଭାରତ
ଶାରଳା ଦାସଙ୍କ ପରାକୃତ ଗୀତ ସ୍ରୋତା ଦୈବ ନୃପସୁତ । ୧୩ ।

ବ୍ରହ୍ମଯାଗେ ବାଣାସୁର ଯେ ହତ
ବେଣୁ ବୃକ୍ଷ ତହୁଁ ହେଲା ଜନ୍ମିତ
ପିନାକ ସାରଙ୍ଗ ଅଜଗବ ହେଲା
ଗାଣ୍ଡିବ ବଂଶରୁ ବେଣୁ ସରିଲା
ନାହିଁ ବେଣୁ ବୀଣା କାହିଁ
ସ୍ୱରୋଚିଷ ବ୍ରହ୍ମା ନିରଞ୍ଜନ ସ୍ତୁତ ନାଦାବନ୍ତୁ ପରେ ଥାଇ ।୧୪।

କରିଥିଲେ ମଠେ ଭୃଗୁ ତପସ୍ୟା
ତିନି ଗୋଠା ତହିଁ ଥିଲା ବାଏଂସା

ଖଣ୍ଡଦ୍ଵୂର କଣ୍ବ ଋଷି ଆଶ୍ରମ
ତହିଁ ବର୍ଷ କଲେ ବୀଣାଶ୍ରମ
ପୂର୍ଣ୍ଣ ହେଲାଏ କର
ନିରଞ୍ଜନ ପାସେ ଦେଲେ ତା ହରଷେ ତନି ମନ ଏହି ପର ।୧୫।
ବନ୍ଧୁ ସାବର୍ଣ୍ଣି ଦୈବ ସାବର୍ଣ୍ଣିରେ
ମାଗି ନେଲେ ମନ୍ତ୍ର ଦୈତ୍ୟ ସ୍ନେହରେ
ସେ ଦେଲେ ପବନେ ସ୍ନେହକୁ ବହି
ସେ ଦେଲେ ହଂସ ହଂସ ପଙ୍କ ଦେଇ
ଗଲା ମନ୍ତ୍ର ତରତର
ପ୍ରଳୟ ଜଳ କାରୁଣ୍ୟ ଜଳ ମେଳ ନୀଳଜଳ ପୂର୍ଣ୍ଣତର ।୧୬।
ପୂର୍ଣ୍ଣ ସର୍ଜନା ହେଲା ଏ ସଂସାର
ଅଧ ଅନାଦରୁ ଧାତା ଈଶ୍ଵର
ସେକାଳୁ ଧନୁ ବୀଣା ଯେ ଜଳରେ
ପଡ଼ିଥିଲା ସେ ମନ୍ଥନ ବେଳରେ
ବାହାରନ୍ତେ ଯେହ୍ନା ନେଲେ
ଶୈବକଳ୍ପେ ଏହା ବୈବର୍ତ୍ତିରେ ଅଛି ଯେ
ଦେଖି ମନ ନ ମାନିଲେ ।୧୭।
ବୈବର୍ତ୍ତି ପୁରାଣ ଦେଖ ଏ ବିଧି
ଏଗାର ଶ୍ଳୋକେ ଚୌବନ ଶ୍ଳୋକାଦି
ନିରଞ୍ଜନ ସୁତ ହେଉପ ବ୍ରହ୍ମା
ନଦୀ ବନ୍ଧୁ ଗୃହ ପାଶେ ଉପମା
ଭୃଗୁ କଣ୍ବ ବେନି ଋଷି
ତାଙ୍କ ବେଣୁ ତାଙ୍କ ସନ୍ନିଧିରେ ଯେ ଧନୁ ବୀଣାରେ ସରସୀ ।୧୮।
ନାରକେଳ ଜନ୍ମ ଶୁଣ ଏ ଅନ୍ତେ
ଗଣେଶ ଶିର ଈଶ୍ବର ଛେଦନ୍ତେ
ଗଜମୁଣ୍ଡ ରୁଣ୍ଡ କଲେ ତହିଁରେ
ଦେଖ ଅସ୍କନ୍ଦ ପୁରାଣ ସନ୍ଧରେ
ମହାଦେବ ଦାସ ଜାଣ
କଲେଟି ପ୍ରକାଶ ନିଃସଂଶୟ ହେଲା ଯେ ଭଣ୍ଡାଟି ଗୁଳ ପ୍ରମାଣ ।୧୯।

ବୃହସ୍ପତି ଯାଗ କରନ୍ତେ ଭଲେ
ବେତ ଜନ୍ମ ତେଜବନ ଅଙ୍ଗୁଳେ
ଦକ୍ଷ ଯାଗୁ ବେତ ଏକ ଜନ୍ମିଲା
ଗୌରୀ ବେତ ତେର ପଗ ହୋଇଲା
 ପାଚବେତ ଦ୍ୱାରୀ ବେତ
ଏପରରେ ବେତ ବେନ ଜଣେ ଧୃତ ବୃଷ୍ଟ ଗୀତା ସାରସ୍ୱତ । ୨୦।

ମଣିଭଦ୍ର ଜଳେ ଯେ ପଡ଼ିଥିଲା
ଭଗତା ଜଣେ ତାହା ଜାଣିଥିଲା
ତାକୁ ନେଇ ଅଷ୍ଟ୍ର ଜଟେଳ ପକାଇ
ତା ଲାଗି ଶୌଚ ସର୍ବ ମେଳ ହୋଇ
 ଦେଖ କାଳିକାପୁରାଣ
ଚଉଦ ପରିଚ୍ଛେଦରେ ତିନି ଶ୍ଲୋକେ ଯେ
 ବିଶ୍ୱକେଶନ ଶ୍ରବଣ । ୨୧ ।

ଚ୍ୟୁତ ପନ୍ର ବସ୍ତ୍ର ପାଣ୍ଡବେ ବସି
ନିଗମ ବନରେ ଥିଲେ ଉଦ୍ୟୋଗି
ଏପନ୍ ଯାତ୍ରାକୁ କଲେ ଭିଆଣ
ପୂର୍ବରୁ ନେହ୍ରୁ ରଷି ଘଟେଣ
 ମକର ଧ୍ୱଜ ନରେଶ
ସୁନନ୍ଦ ନାମରେ ତାହାର ନନ୍ଦନ ପୂଜା କରଇ ମହେଶ । ୨୨ ।

ତା ପୂର୍ବେ ଉଗ୍ର ଭବର ନନ୍ଦନ
ପିତା ତାହାର ସୁହୃଦଚନ୍ଦନ
ମନେ ଭାବି ପୂର୍ବ ବଷୟମାନ
କହିଥିଲେ ତାଙ୍କୁ ଦେବ ଈଶାନ
 ସନ୍ତ୍ରକ ଥିବ ଅମ୍ବର
ମଞ୍ଚରେ ସଞ୍ଚରେ ଯାନାକୁ ରଖିବ ହେ, ହେବ ନାନା ଦୁଃଖ ପାର ।
ପିନାକ ଅମ୍ବର ଗୌରୀଙ୍କ ବେଢ
ଭୂପଭୂତି ତହିଁ ହେବ ସୁଗତ

କାଛଟା ତହିଁ ନିର୍ମାଣ ହୋଇବ
କଲାରୁଦ୍ର ମଣି ସଙ୍ଗେ ମିଶିବ
କଲନା ମୋର ଏ ଯେଣୁ
କଲାରୁଦ୍ର ମଣି ବୋଲି ତେଣୁ ଉଣୀ ଅବା ଏ ଜାଣୁ ନ ଜାଣୁ ।୨୪।
ବୀଣା ବୋଲିବାର ଯେ ଅଟେ ଜନ
ଜାଣନ୍ତ ତାହାର ସପତ ସ୍ୱନ
ଯେ ଯନ୍ତ୍ର ଠାରୁ ଯେ ହୋଇଛୁ ଖ୍ୟାତ
ଶୁଣ ପାର୍ବତୀ ଦେଇ ଏକଚିତ୍ତ
ଏ ଅଟେ ମହାଗୁପତ
କୌଶିକ ଦ୍ୱପିକା ସତର ସର୍ଗରେ ଅଣସ୍ତୁଷ୍ଟି ଶ୍ଳୋକେ ଖ୍ୟାତ ।୨୫।
ମୟୂରରେ ଷଡ୍‌ଜ ଗାବେ ଋଷଭ
ଅଜଠାରୁ ଯେ ଗାନ୍ଧାର ସୁଲଭ
କଣ୍ଠସ୍ୱର ବକଠାରୁ ଯେ ଖ୍ୟାତ
ପଞ୍ଚମ ପିକରୁ ହେଲା ବସନ୍ତ
ଭେକରୁ ଧୈବତ ସ୍ୱର
ନିଷାଦ ସ୍ୱରରୁ ବଗୃର କରୁଛୁ ଯେ ଏ ପଦ ମତ୍ତ କୁଞ୍ଜର । ୨୬ ।
ଏପରି ସପତ ସ୍ୱରକୁ ଜାଣ
ଅମରସିଂହେ ହୋଇଛୁ ପ୍ରମାଣ
ନିଶାଦରର ଯେ ଗାନ୍ଧାର ସଜ
ପ୍ରଥମ ମଧ୍ୟମ ଧୈବତକୁ ହେଜ
ବାଛୁ ନାନା ଶାସ୍ତ୍ରମାନ
କରନ୍ତୁ ଘଟଣ ହୋଇଛୁ ପ୍ରବୀଣ ବୁଝିବ ମମ ବିଧାନ । ୨୭ ।
ଭୁଲଭୁଲ କଥା ନୁହେଁ ହେ ଜନ
ଭରସା କରନ୍ତୁ ପଞ୍ଚବଦନ
ଭଗତା ଆଦି ନୃତ୍ୟକାର୍ଯ୍ୟ ଯେତେ
ଭଲ ଭଲ ଶାସ୍ତ୍ର ବାଛୁ ଘଷ୍ଟୁତେ
କପଟ ହଟକୁ କାଟ
କହନ୍ତି ସାମନ୍ତ ଅଷ୍ଟାବିଂଶ ପଦ ଯେ ରଘାକର ଜଟାଜୁଟ । ୨୮ ।
(ଖଣ୍ଡପଡ଼ା)

# ବୀଣାକାର

ଅଷ୍ଟୁପଥର ହାତେ
ଯାହା ହୋଇଥିବେ ମୁକ୍ତାନାଥେ
ପଦ କହିଦେବେ ମୋତେ । ୧ ।

ବୀଣା ନାଁ ହରଗଉରୀ
କାନକୁ ଦେବ ଢାଲପଥର,
ମୁଣ୍ଡକୁ ଦେବା ଚଉଁରୀ । ୨ ।

ବୀଣା ନାଁ ଜଗୁଲ ଦାସ
ଆଗକୁ ନ ଗଲେ ପଛକୁ ଆସ
କରେ ଦେଖ ମୋର ବେଶ । ୩ ।

ବୀଣା ନାଁ ରଣଝଣ
ପଡ଼ଅ ଭୂଇଁରେ ମୃଗ ବେଗି ଶୁଣ ଲୋ
ସଭାକୁ ମୋ ନିବେଦନ । ୪ ।

ବୀଣା ବୀଣା ବୀଣା ବୀଣା
ଏହି ବୀଣା ଗୋଟି ଜଗତ ଜଣା କି ଲୋ
ବଜେଇ ଜାଣିଲେ ସିନା । ୫ ।

ଦେଉଳ ଉପରେ ବତ
ଅଗୁଲ ପଛୁଲ
ତନ ମୁରତ
ଯାହା ହେବେ ଥାନପତ । ୬ ।

ଗନ୍ଧର ବଳରେ କରି
ମୁକ୍ତାନାଥଙ୍କ ଚରଣ ତଳରେ ଯେ
ଶରଣ ପଶୁଛୁ ମୁହିଁ । ୭ ।

ହାଣିଲ ମହୁଲ ଗଜା
କେଉଁ ପରବତେ ରହିଲେ ରଜା
ଖାଇଲେ କାଙ୍କଡ଼ ଭଜା । ୮ ।

ହାଣିଲ ମହୁଲ ଶେଣୀ
କୋଉ ପରବତେ ରହିଲେ ରାଣୀ
ପିଇଲେ ଝରଣା ପାଣି । ୯ ।
ଏ ବୀଣା ଅଠଇ ଭାର
ବୀଣାର ଶବଦ ଶୁଣି କାରୁଆଣୀ—
ମରୁଅଛୁ ଝୁର ଝୁର । ୧୦ ।
( ନରସିଂହପୁର )

**କାରୁଆଣୀ—**

ଗହର ବାଲରେ କହି
ତରବର ହୋଇ ଅଇଲ ଧାଇଁ
କାନ୍ତ, ମୁଣ୍ଡରେ ଓଢ଼ଣା ନାହିଁ । ୧ ।
ଗହର ବାଲରେ ବର
ପୁଅ ଝିଅ ଛାଡ଼ ସଭାକୁ ଅଇଲ
ଶୁଣିଣ ଡାକ ତୁମ୍ଭର । ୨ ।
ଶୁଣ ରେ ଜୀବ ଜୀବନ
ସଭାରେ ବସି ଅଛନ୍ତି ସଭାଜନ ଗୋ
ଦେଖା ତୋ ବେନି ନୟନ । ୩ ।
ବଜେ କରଛନ୍ତି ହର
ମନ କାମନା ତୋ ସମ୍ପୂର୍ଣ୍ଣ ହୋଇବ ଗୋ
ଦୁର୍ଗାଙ୍କୁ ଜୁହାର କର । ୪ ।
କାନ୍ତ-ବାଣୀ ଶୁଣି ଗୃହୁ ପୀନସ୍ତନ
ସଭାରେ ହେଲା ପ୍ରବେଶ
କହଇ ଅଞ୍ଜିତ ଯୋଡ଼ ବେନିହାତ ଯେ
ନଧର ମୋହର ଦୋଷ । ୫ ।

**ଯୁଗଳ—**

କୁରଙ୍ଗିନୟନୀ କାନ୍ତା ହେମଗୌରୀ ତୁ ମୋହର ଗୁଣନିଧି
କାଲ ତ ମୁଖ ହରଷ ନ ଦେଖିଲ ଗୋ
କଏ କଲା ବାଇ ବୁଦ୍ଧି । ୧ ।

ଖବର ଦେଇଚି ଭାଉଜ ମୋହର ସେକଥା ମନେ ପଡ଼ିଲା
ଯିବ ଅଯିବ ବୋଲି କରି ନାଥ ହେ
ତୁମକୁ ମୂର୍ଚ୍ଛି ନୋହିଲା । ୨ ।

ଗଲୁ ଯେଉଁ ଦିନ ତୋ ଭାଇ ସଙ୍ଗରେ ଗୁଣି ନ ସହିଲି ଦିନ
କେଳିସଦନ ଦ୍ୱାରି ଦାନ୍ତ ଖିଟରେ
ନିଦ୍ରା ନାହିଁ ମୋ ନୟନ । ୩ ।

ଘନକାଳ ଶୀତ ଦେଖି ମୋର ଛତ ତନୁ କମ୍ପମାନ ହେଲା
ଘଡ଼ିଏ ନିଶି ଉଜାଗରେ ରହିଲି
ତୁମକୁ ମୂର୍ଚ୍ଛି ନୋହିଲା । ୪ ।

ଉଜଳ ଅବନୀ ଅଳେ ପୀନସ୍ତନୀ ଏହି ନିଶିରେ ଉଇଁଲେ
ହେମାଙ୍ଗୀ ତୋ ଭାବ ମନରେ ପଡ଼ିଲା ମୋ
ଅରୁଣ ଉଦୟ ହେଲେ । ୫ ।

ଚମକି ପଡ଼ିଲି ସପନେ ମୁଁ ନାଥ ନିବ ବକ୍ଷେ ଦେଲି କର
ଚଞ୍ଚଳ ନୟନୁ କଜଳ ଲିଭିଲା
ବହିଣ ଲୋତକ ଧାର । ୬ ।

ଛତ କରତଳୁ ତୋ କୁନ୍ଦ ଫରୁଆ ମୁଦ ଭାଙ୍ଗି ମୁଁ ଦେଖିଲି
ଚନ୍ଦ୍ରକାନ୍ତ ହରି କାଠି ଛୁଡ଼ଗଲା
ନ ନେଲୁ ନବ ଛଇଳ । ୭ ।

ଯିବ ଅଯିବ ବୋଲି କରି ନାଥ ହେ ତୁମ୍ଭଙ୍କୁ ନ କହି ଗଲ
ବେଶ ଭୂଷଣ କାହା ପାଇଁ ହୁଅନ୍ତ
ଭେଣୁ କରି ମୁଁ ଛାଡ଼ିଲି । ୮ ।

ହିମିଠେ ମୋତେ ଅନ୍ତର ନ କରିବୁ ଆଜ୍ଞେ ହସ ବାକ୍ୟେଚନା
ହୀନବାସେ ହାଲ ପୋଛୁ ଦେଉଥିବ
ଆହା ମୋ ନବ ଅଙ୍ଗନା । ୯ ।

ନବ ଉରଜ ନାରିକେଳ କୁଚରେ ନାଗର ତୁମ୍ଭ ଶ୍ରୀକର
ନିମିଷେ ମୋ ପାଶୁଁ ଅନ୍ତର ହୋଇଲେ
ଚମକଇ ଛତ ମୋର । ୧୦ ।

ଝୋପି ସୁନ୍ଦର ମଝିରେ କଲାଝୋପି—ଭଲ୍ଲ ରଙ୍ଗେ ଅଛୁ ଖଞ୍ଜି
ଅଧର ଦନ୍ତପନ୍ତି ଶୋଭନ ଗୋ
ଯେସନ୍ତ ଡାଳିମ୍ବ ମଞ୍ଜି । ୧୧ ।
ଠିଆ ହୋଇ ଥାଏ ଭ୍ରମୁକ୍ଷ ନ ଦେଖି ସଦନେ ନ ରହେ ମନ
ଠିକେ ଅରକ୍ଷିତ ଭାବରେ ଭଗିନୀ
ଶୁଣିମା ସାଧୁ ସୁଜନ । ୧୨ ।

**ପ୍ରଶ୍ନ—**

ରମ୍ୟ ରମବତୀ ପତିବ୍ରତା ସତୀ କାଏ ସେ କେତେବେଳରେ
ଶଶୁରର ଅଙ୍ଗ ସଙ୍ଗ ଭୋଗକଲ୍ଲ ଗୋ
ଭେଟିଗଲ କୁତୁହଳରେ । ୧ ।

**ଉତ୍ତର—**

ପ୍ରଭଞ୍ଜନ ବଳା ସଙ୍ଗେ ରତି ଖେଳା ସାର ଦ୍ରୌପଦୀ ହରଷେ
ଧୀର ପବନରେ ଜଳା ନିକଟରେ
ବସି ବାତାୟନ ପାଶେ । ୨ ।

**ପ୍ରଶ୍ନ—**

କେଉଁଠାରେ ଦେଖି ହାତୀ କପାଳକୁ
କେଶବ୍ଧି ମାନ୍ୟ କରଇ ।

**ଉତ୍ତର—**

ପାର୍ବତୀ ନନ୍ଦନ ସେ ଗଜ ବଦନ ହେ
କୈଳାସ ଶିଖରେ ଥାଇ । ୩ ।

# ରସ

କଞ୍ଜନୟନା, ଖଞ୍ଜଣୀ ତୋର ସିନା, ଗଳାର ହାର ମୋହର
ଘନକେଶୀ, ରୁଷି କପାଇଁ ବସିଛୁ ଲୋ,
ଚାହିଁଲେ ନ କହୁ ହସି । ୧ ।

ଘଡ଼ିକ ଅନାଇଁ ଚମକି ତୁ ପଡ଼ୁ, ଯାଉଛୁ ଜୀବନ ମୋର,
ଝର ଝର ନେତ୍ରୁ ନୀର ବହୁଅଛୁ ଗୋ,
ନ ପାଇ ପ୍ରୀତି ତୋହର । ୨ ।

ନୟନ ଛଟକେ ଠେକ କହୁ କଥା, ଠାଣି ନ କରେ ତୋ ଅଗ
ଏକା ଠକ କର ଭଣ୍ଡାଉ ନାଗିରେ ଗୋ,
କଲେ ମୁଁ ନେତେ ସୁଆଗ । ୩ ।

ଡଣାଡଣା ମାଟ୍ଟୁ ପର ତୁ ରସିକ, ଡର ନାହିଁ ତୋର ମନେ
ଡର ନାହିଁ ପର ଭୁଅଷୁଣୀ ଦେଖି ରେ,
ଓଗର ଅଣିଲୁ ଜଣେ । ୪ ।

ଚୋକିବା ଗରଳ ନିଷ୍ଟେ ରେ ସୁନ୍ଦରୀ, କଲେ ତୁ ମୋତେ ନିରାଶ
ଛାଉରଙ୍ଗ ବାଟି ଲେପିଲେ ଅଙ୍ଗରେ ଯେ,
ଯିମିତ ଦୂଅଇ ବିଷ । ୫ ।

ଅଣି ଅଇତରେ କେତେ କହୁ କଥା, ତୁ ତ କପଟ ଦେହୁଅ
ଅନାଇଁ ନୟନ ଦେଖି ତ୍ରିଭୁବନ ରେ
ପର ନାରୀ ହରୁ କାହିଁ ? ୬ ।

ଥରୁଅଛୁ ଦନ୍ତ ଥୟକର କନ୍ଥ, ଥରେ ବସା ତୋ କୋଳରେ
ଥିବ ତୋତେ ସେବ ପରାଣ ବଲ୍ଲଭୀ ଗୋ
ଏହା ଆନ ନ କରିବ ରେ । ୭ ।

ଦେଖିଛୁ ତ ସତ ମୁଁ ସବୁ ଦନେ ତ, ଏହ୍ନପର ତୋର କଥା
ପ୍ରୀତି ଲାଗି ଏତେ କପଟ ଲଗାଉ ଯେ
କହି କହି ହେଲି ଅଥା । ୮ ।

ଧନ୍ୟ ନାରୀ ମଣି ଧରୁଛୁ ତୋ ପାଣି, ଧରମ ଥିଲେ ବୁଝିବ
ଧୁଳି ପକାଇ ଆଖିରେ ଦେଇ ମୋର ଗୋ
କେତେ ରଙ୍ଗେ କଥା କହ । ୯ ।

ନ କହ ଏପରି ଯା ଯା ରେ ବାହାରି ଯୋଡ଼ଯାଉ ତୋ ଜବାବ
ଲଙ୍କାମରଚ ପରି ଦାହ ଜଳୁଚ ରେ
ତୋହର ଯେପରି ହାବ । ୧୦ ।

ପଡ଼ିଲି ତୋ ପାଦ ତଳରେ ରେ ସହି ଯାହା କରିବୁ ତୁ କର
ପତିତ ଲୋକକୁ ନିରାଶ କରିଲେ କି
ଲୋକେ ବୋଲିବେଟି ଭଲ ? ୧୧ ।

ଫାନ୍ଦରେ ପକେଇ ଫନ୍ଦାଫନ୍ଦ କରି ସାରିଲୁ କୁଳ ମହତ
ଫଟା କପାଳରେ ବିଧାତା ଲେଖିଲା
ତୁ ହେଲୁ ମୋହର କାନ୍ତ । ୧୨ ।

ବସାଇ ଜାନୁରେ ସେ ନାଗରୀ ରାଜା ଦେଲା ପ୍ରେମ ଆଲିଙ୍ଗନ
ବରବରଣୀ ସେ ଚମ୍ପକ କୁସୁମେ
ଭ୍ରମର କଲା କି ପାନ । ୧୩ ।

ଭାବେ ବେନି ଜଣ ହୋଇଲେ ସନ୍ତୋଷ ଭାଷଇ ଅର୍ପିତ ଗୀତେ
ଭଲ ମନ୍ଦ କିଛି ମୁହିଁ ନ ଜାଣିଛି
ସୁଜନ ଶୁଣ ସୁଚିତେ । ୧୪ ।

## ବଦାକୀ –

ପୂର୍ବ ଦିଗରେ ଅରୁଣ ଉଇଁଲା ଦିଶିଲା ରକତ ବର୍ଣ୍ଣ
ପନ୍ଦର ବୟସୀ ଗୁରୁ ଘନକେଶୀ ଗୋ
ଗୁହିଁ ଦେଖେ ତ ନୟନ । ୧ ।

ବସିଛନ୍ତି ଯେତେ ଏ ସଭା ମଧ୍ୟରେ ପଣ୍ଡିତଜନଙ୍କ ସହ
ମାଗୁ ତୁ ବଦାକୀ ଯିବା ନିଜ ପୁରେ ଗୋ
ହୃଦରେ ଲଜ୍ୟା ନ ବହ ଗୋ । ୨ ।

ଈଶ୍ୱରଙ୍କ ଦଣ୍ଡ ବରଷକେ ଥରେ ବିଜୟେ ସଭା ମଧ୍ୟର
ଅଲିଟ ଚଅଁର ପଙ୍ଖା ପଡୁଅଛି ଯେ
ଗୃରଦଣ୍ଡ ସଙ୍ଗତର । ୩ ।

ତେର ଭୋଗତାଏ ମଣିଷଙ୍କ ଦାନ୍ତ ଉଜ୍ଜ୍ୱଳ ପଡ଼େ ଗଗନ
କ୍ରମେ କ୍ରମେ ଗିରି ଚମକ ଆସୁଛି ଯେ
ବିଦାକୀ କର ବନ୍ଦନ । ୪ ।

ତେରଦିନ ଯାଏ ପାଣି ପଣା ଖାଇ କରନ୍ତି ହରଙ୍କ ସେବା
ମାହ୍ରା କରେ ଯାହା ଅଛି ଦିଅ ଆଣି ହେ
ମନ୍ଦରେ ବନ୍ଦନ ଦିବା । ୫ ।

ଜୀଇଁ ଥିଲେ ସ୍ଥିନା ବରଷକେ ଥରେ ଦେଖିବ ଏ ଝାମ୍ପୁଁ ଯାତ
ତେର ଭୋଗଡାଏ ମଣିଷେ ଦିଅ ହେ
ଯୋଡ଼ୁଅଛୁ କରପଦ୍ମ । ୬ ।
ପତିତପାବନ ଜଗତ ଜୀବନ ମିଶି କଲେ ଏହୁ ଦଣ୍ଡ
ବରୁଣ ନୈଋତ ଅଷ୍ଟଦିଗପାଳେ
ସମସ୍ତେ ହୋଇବେ ରୁଣ୍ଡ । ୭ ।
କାରୁ ଦିନଠାରୁ ଏ ଯାତ୍ରା ସଂପୂର୍ଣ୍ଣ ହୋଇଲା ଶୁଣ ସୁଜନ
ସତ୍ୟ ତ୍ରେତୟା ଦ୍ୱାପର କଳିଯୁଗେ
ଏ ଦଣ୍ଡ ଅଛୁ ବହନ । ୮ ।
ଦଣ୍ଡକୁ ସହିଲେ ଦଣ୍ଡର ଫଳଟି ହୋଇବଟି ପରାପତ
ଏହି ଦଣ୍ଡ ସହି ଷୋଳସସ୍ର ଗୋପୀ
ପାଇଛନ୍ତି ଗୋପୀନାଥ । ୯ ।
ପୂର୍ବେ ଋଷିପୁତ୍ର ହୋଇଥିଲେ ସେହି ବସ୍ତୁ ପୁରାଣେ ଲେଖିଛନ୍ତି
ଏହି ଅନୁସାରେ ଦଣ୍ଡଯାତ୍ରା ବୋଲି
ତାଣ୍ଡବ ନୃତ୍ୟରେ ଅଛୁ । ୧୦ ।
କାଳିକା ପରଭୁ ଚଇତ୍ର ମାସରେ ଜଭୁ ହୁଏ କଲେ ସେବା
ଯେ ଯାହା ମନର କାମନା ପୂରଣ ଯେ
ହୁଅଇ ଶୁଣ ଭକ୍ତ । ୧୧ ।
ତେରଦିନ ଠାରୁ ଏକୋଇଶ ଦିନ ଯାଏ ଏ ଦଣ୍ଡ ହୁଅଇ
ଯେ ଯାହାର ଫଳ ପ୍ରାପତ ତୁରତ ହେ
ଈଶ୍ୱର ଯେହୁ ସେବଇ । ୧୨ ।
କର୍ମି ଜନକୁ କର୍ମ ଦେଉଛନ୍ତି ଦେଖ ସକଳ ନୟନ
କ୍ଷୁଧା ତୃଷା ବାଧା ନ ଥାଇ ଦେହରେ
ଯେ କରେ ତାହାଙ୍କୁ ଧ୍ୟାନ । ୧୩ ।
କହ୍ନ ଗଣପତି ଘେନ ମୋ ବିନତି ଜଣାଉଛୁ ଯୋଡ଼କର
କହଇ ଅର୍ଜିତ ମୁଁ ପିଲା ବାଳୁତ ହେ
ସୁଜନେ ଦୋଷ ନ ଧର । ୧୪ ।

( ନରସିଂହପୁର )

# ଟୀଣାକାର ବନ୍ଦନା

ବନ୍ଦେ ପାର୍ବତୀ ବନ୍ଦଇ ଶଙ୍କରେ
ବନ୍ଦନା କରୁଛୁ କାମନା ଧରେ
ଦଣ୍ଡପାଠ ବେତକୁ ମୋ ଜୁହାର
ତେର ଭୋଗ ତାଙ୍କୁ ଯୋଡ଼ିଛୁ କର
ଗୁରୁ ପାଦରେ ଜୁହାର
ଗଣନାଥ ବାକ୍ୟଦେବୀଙ୍କୁ ସୁମରି ଯେ
ତଦନ୍ତେ ପଦ ପ୍ରଚୁର । ୧ ।

ବନ୍ଦଇ ମାତ ଦେବୀ ସରସ୍ୱତୀ
ବିଷ୍ଣୁ ବଲ୍ଲଭୀ ମା' ଯେତେ ବିନତି
ବିଦ୍ୟାଦାୟିନୀ ମା' ହୁଅ ସଦୟ
ତରଳ ଚିତ୍ତ ମୋର ହେଉ ଥୟ
ତୋ ଚରଣେ ରହୁ ଲୟ
ବିଘ୍ନକୁ ତେଜଣ ଅବିଘ୍ନେ ପଦ
କଣ୍ଠେ ବସି କର ଦଅ । ୨ ।

ପୂର୍ବ ପଶ୍ଚିମ ଦକ୍ଷିଣ ଉତ୍ତର
ଏ ଚତୁର୍ଦ୍ଦିଗକୁ ବନ୍ଦନା ମୋର
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁର
ସାତ ସମୁଦ୍ର ସପତ ଦ୍ୱିପର
ତାରା ଚନ୍ଦ୍ର ପ୍ରଭାକର
ଏହାଙ୍କ ଚରଣ ତଳରେ ବନ୍ଦନା
କୋଟି କୋଟି ନମସ୍କାର । ୩ ।

ତୋ କୋଠ ଭଣ୍ଡାରୁ ଗୃବ ପିନ୍ଧାଇ
ଜିହ୍ୱା ଅଗ୍ରେ ବସ ଗୋ ମହାମାୟୀ
କରୁଅଛୁ ମୁହିଁ ମନେ ଭାବନା
କରବଇଁ କାଲୁ ସଭା ବନ୍ଦନା
ଦୋଷ ମୋ ନ କର ଯେନା
ଅଜନ୍ମୁ ଅଧମ ବୁଦ୍ଧି ଅଟେ ହୀନ ଯେ
ପାଠ ଶାସ୍ତ୍ର ନାହିଁ ଜଣା । ୪ ।

ବିବେକ ସାମନ୍ତ ପଣ୍ଡିତ ଜନ
ସଭା କରି ବସିଅଛନ୍ତି ଆପଣ
ସମୁଦ୍ର ପରାୟେ ରହିଛନ୍ତି ପୂରି
ବଚନ ତୁମ୍ଭର ହେବ ଲହରି
ଏହି ମୋ ମନେ ଭାବନା
କୁହ୍ନସଭା ପରି ରହିଅଛନ୍ତି ପୂରି
ଦିଶୁଛନ୍ତି କେଡେ ଘଟଣା । ୫ ।

ଗୁରୁ ବୈଷ୍ଣବ ଯେ ବିପ୍ରଜନଙ୍କୁ
ମାତା ଗୁରୁ ଶିକ୍ଷା ଦୀକ୍ଷା ଗୁରୁଙ୍କୁ
ସମସ୍ତଙ୍କୁ ହେଉଅଛି ବିନୟୀ
ମନରେ ହାସ୍ୟ ନ କରିବ କେହି
ପ୍ରାର୍ଥନା କରୁଛି ମୁହିଁ
ସର୍ବେ ଏକମେଳ ହୋଇଣ ସକାଳେ ହେ
ହରିବୋଲ ଘୋଷ ବହି । ୬ ।

ମାଆ ମାଉସିଙ୍କୁ କରୁଛି ଅଳି
ସଭାରେ ଦିଅନ୍ତୁ ଯେ ହୁଳହୁଳି
ଉଚ୍ଚସ୍ୱରେ ହୁଳହୁଳି ସେ ଦେବ
ଏଥିରେ କେହି ହେଳା ନ କରିବ
ମୋ ମନ ହୋଇବ ଥଣ୍ଡା
ତୁମ୍ଭ ନାମେ ଦକ୍ଷିଣ କାଳୀ ଶ୍ରୀଅଙ୍ଗେ
ନିତ ଚଢ଼ାଇବ ଧଣ୍ଟା । ୭ ।

ଯେହୁ ଏଥି ହୁଳହୁଳି ନ ଦେବ
କାଠ ବେଙ୍ଗ ହୋଇ ଜନ୍ମ ଲଭିବ
ହୋଇବ ବିଧବା ସେ ଅଣ୍ଟୁକୁଡ଼ି
ତାହାର ପାଟି ଜିଭ ଯିବ ଛିଡ଼ି
(ଯେବେ) ଅହ୍ୟ ସୁଲକ୍ଷଣି ହେବ
ତୁମ୍ଭମାନଙ୍କର ଝିଅ ଜ୍ୱାଇଁ ଗଣ ଯେ
ଉଚ୍ଚେ ହୁଳହୁଳି ଦେବ । ୮ ।

'ମାଅ ମାଉସୀଏ ନ ହୁଅ ଚଳ
ଘଣ ଦେଲ୍ ବୋଲ୍ ନ ଦଅ ଗାଳି
ହରିବୋଲ୍ ହୁଳହୁଳି ପଡ଼ିବ
ଜୟ୍, ମଣିଶଙ୍ଖ ସଙ୍ଗତେ ଥିବ
ଶୁଣି ବାକ ସନ୍ଥେ ଧୀରେ
କହେ ବାଞ୍ଛାନିଧି ହେବ ବାଞ୍ଛା ସିଦ୍ଧି ଯେ
ମଣି ଶବଦ ସଭିରେ । ୯ ।

( ନରସିଂହପୁର )

**ଡାକ—**

ଗିରିରାଜ ସୁତା ସଙ୍ଗତେ ହର
ବିଜେ କରିଛନ୍ତି ଅସି ସଭାର
ଆସ ମୋ ସଙ୍ଗତେ ରମଣୀବର
ଦର୍ଶନେ ପ୍ରାର୍ଥନା କରେ ପୟର
ଭବ ବାଧା ହେବ ଦୂର
ଦର ତେଜିକରି, ଆସ ପ୍ରାଣେଶ୍ୱରୀଗୋ
ଡାକୁଛି କାନ୍ତ ମୁଁ ତୋର । ୧ ।

ଭଉଣି ବନ୍ଧୁନେ କାମାନଳେ ଦଗ୍‌ଧ
ହେଉଅଛି ନିରନ୍ତରେ ମୋ ହୃଦ
ଧ୍ୟାନ କରେ ସ୍ମରି ଭବାନୀ ପାଦ
ସ୍ମରୁଛି ସ୍ୱାମୀ ନାମ ହୃଦ ପଦ୍ମ
ମୋ ସ୍ୱାମୀ ନାହାନ୍ତି ସଦ୍ମ
ଜାଣି ନ ପାରଇ କେ ମୋତେ ଡାକୁଛ
ହୃଦୟରେ ଚଳି ଛନ୍ଦ । ୨ ।

ସଖି ରେ ମୋ ହୃଦେ ନାହିଁ କପଟ
ମୁଁ ତୋ ସ୍ୱାମୀ ତୁ ଆସ ମୋ ନିକଟ

ମନରେ ଅବା ଭାବୁଥିବୁ ହୁଣ୍ଟ
ପର୍‌ଚପୁ ଅସି ଦାଅ ନାକୋଠ
ମୁଁ ହୃଦଇ ରୈର ଗଣ୍ଠି
ଦରଶନ କର ଅସି ଏ ସଭାରେ
ହର ଗଉରୀ ପ୍ରକାଠ । ୩ ।

ଏ ବାକ୍ୟ ଶ୍ରବଣେ ଭାଷେ ବନିତା
ସୁଚତୁର ଗୁଣବନ୍ତ ମୋ ଭର୍ତ୍ତା
ନୃତ୍ୟଗୀତ ଶୃଙ୍ଗାର ଶାସ୍ତ୍ରେ ଜତା
ଶିବ ଉପାସନାରେ ସଦାରତା
ସ୍ୱର ଶାସ୍ତ୍ରୁ ସ୍ୱରକଥା
ପସ୍ୱରଲେ କହି ପାରଲେ ସଭାକୁ ଯେ
ଯିବ ଘୁଞ୍ଚି ଭୟ ଚିନ୍ତା । ୪ ।

ଯାହା ଭାଷିଲୁ ରେ ପରାଣମିତ
ବୃତ୍ତି ଅଟଇ ମୋର ନୃତ୍ୟ ଗୀତ
ଶୃଙ୍ଗାର ଶାସ୍ତ୍ରେ ମୁଁ ସଦା ପଣ୍ଡିତ
ଆରାଧନା କରେ କୁମାର ପିତଃ
ସ୍ୱର ଶାସ୍ତ୍ରରୁ ବଚନ,
ଯାହା ପସ୍ୱରବୁ ପସ୍ୱର ସଜନୀ ରେ
ବଖାଣି ଦେବ କାଞ୍ଚିତ । ୫ ।

କେଉଁ ବେଦରୁ ସଙ୍ଗୀତ ଉତପତ୍ତି
ତା ଉପବେଦ କାହାକୁ କହନ୍ତି
ସଙ୍ଗୀତ ବିଦ୍ୟା କାହାଠାରୁ ଜାତ
କାହାଠାରୁ କଏ ହୋଇଲା ପ୍ରାପ୍ତ
ଗୀତ ବାଦ୍ୟ ସ୍ୱର ଉକ୍ତ
ଅକ୍ଷରର ଭେଦ ବୁଝାଇ ଦଅନ୍ତୁ ଯେ
ବୁଝିବେ କବି ପଣ୍ଡିତ । ୬ ।

ଫଟୀନ୍ଦ୍ର ଶୁଣ ତୁ ଏଥର ଭେଦ
ବ୍ରହ୍ମା ପୂର୍ବ ମୁଖରୁ ସାମବେଦ
ସାମ ବେଦ ଅଙ୍ଗ ଅଟଇ ଛନ୍ଦ
ଛନ୍ଦରୁ ଉତ୍ପତ୍ତି ଗାନ୍ଧାର ବେଦ
ପ୍ରଥମେ ପ୍ରଣୟନ କଲେ ରୁଦ୍ର
ତାଙ୍କ ଉତ୍ତାରୁ ଶିଖିଲେ ନାରଦ
ସୋମେଶ୍ୱର ଭରତ ହନୁମାନ
କଲି ନାଥ ଗୃହ ଭାଗେ ବର୍ତ୍ତନ
ସ୍ୱର ରାଗ ତାଳ କୋକାଦ ହସ୍ତ
ସପ୍ତ ଅଧ୍ୟା ଭାବ ନୃତ୍ୟ ବର୍ଣ୍ଣିତ
ଗୀତ ବାଦ୍ୟ ସ୍ୱର ଉକ୍ତ
ସାରି, ଗା, ମା, ପା, ଧା, ନି, ସା ରେ ଗୃହାନା
ତା ତ ଥୋ ଧେ ବାଦ୍ୟ ଭୁକ୍ତ । ୭ ।

ରତଶାସ୍ତ୍ର ତତ୍ତ୍ୱ କଲି ଶ୍ରବଣ
ଏବେ ପଚାରୁଛ ଶିବପୁରାଣ
ଶିବ ପାର୍ବତୀ ଅର୍ଦ୍ଧାଙ୍ଗେ ଧାରଣ
କରିଛନ୍ତି ନେଇ ଯେଉଁ କାରଣ
ତେଜ କର୍ପୂର ରଜ ରତ୍ନ ହାର
ଅଙ୍ଗେ ବିଭୂତ ଗଳେ ନର ଶିର
ସିନ୍ଧୁ ମନ୍ଥନେ କଲେ ସୁରାପାନ
କମ୍ପା ହୋଇ ଅଛନ୍ତି ପଞ୍ଚାନନ
ହସ୍ତୀ ଘୋଡ଼ା ତେଜ ଉମାରମଣ
କମ୍ପା ବୃଷଭ କଲେ ଆରୋହଣ
ଗୋବଧ, ମାତୃ ହରଣ
କଲେ ଯେଉଁ ଶିବ ତାଙ୍କୁ କାହିଁ ଧ୍ୟାନ
କରୁଛନ୍ତି ଯୋଗୀଗଣ । ୮ ।

ଫଟୀନ୍ଦ୍ର ଶୁଣ ଏ ଶିବପୁରାଣ
ଶିବଶକ୍ତି ଯୁକ୍ତ ନ ହେଲେ ପୁଣ

ଦେବା ଦେବୀ ନାମ ହେବ ଅନ୍ତର
ସଂସାରପାକ ହେବ ନାର ଖାର
ଜଳେଶ୍ୱର ଯହୁଁ ହେଲେ ପାର୍ବତୀ
ତାରକା ହେଲେ ବ୍ରହ୍ମାଣ୍ଡ ବସତି
ଯୋଗୀଙ୍କ ସଙ୍ଗରେ ଅଙ୍ଗେ ପାର୍ବତୀ
ସଂସାର ସର୍ବ ନାଥେ ବହୁଛନ୍ତି
ସିନ୍ଧୁ ମନ୍ଥନେ ସୁରା ଜାତ ହେଲା
ନବ ଖଣ୍ଡ ବ୍ରହ୍ମାଣ୍ଡକୁ ଦହିଲା
ତାକୁ ଭକ୍ଷଣ କଲେ ପଶୁପତି
ତେଣୁ ଏ ସଂସାର ହୋଇଲା ଶାନ୍ତ
ଯୁଗକେ ଦୁର୍ଗା ନାମ ସପ୍ତ ବଂଶ
ତାଙ୍କ ମୁଣ୍ଡ ମଣ୍ଡି ଗଲେ ମହେଶ
ଚାର ଯୁଗେ ଶହେ ଅଷ୍ଟ ଉତ୍ତର
ଏଣୁ ସପ୍ତବଂଶ ନାମ ଦୁର୍ଗାର
ଶଙ୍କର ଗୋବଧୂ ଜନ୍ମି ଗାୟତ୍ରି
କଲେ ବ୍ରହ୍ମାଣ୍ଡ ପାପ ତାପ ଶାନ୍ତ
ମହାଜ୍ଞାନୀ ଯୋଗୀ ବ୍ରହ୍ମାଣ୍ଡ ଶକ୍ତ
ଅଦ୍ୱୈତ ଭାବେ ଜାଣେ ମାତ୍ର ମୂର୍ତ୍ତି
ଗୋରୁ ଲୋମକେ ଦେବତା ଗୋଟିଏ
ତାର ପରେ ହର କର ବାଜପେୟ
ଅସାଧ୍ୟ କାର୍ଯ୍ୟ କରନ୍ତି ସାଧନ
ମହାଦେବ ବୋଲନ୍ତି ପଞ୍ଚାନନ
ଯେତେ କାର୍ଯ୍ୟ କରେ ସେ ଭୋଳାନାଥ
ନୁହେଁ କଛୁ ସ୍ୱାର୍ଥ ସବୁ ପରାର୍ଥ

ନିସ୍ୱାର୍ଥୀ ଯେଣୁ ଶଙ୍କର
ମହାଦେବ ଦେବ ଦେବ ବୋଲି କର ଯେ
ପୂଜନ୍ତି ସୁଜ୍ଞାନୀ ନର । ୯ ।

ଯେବେ ଅଛ ତୁମ୍ଭେ ଶିବଙ୍କ ଭକ୍ତ
କହ କାହିଁପାଇଁ କରୁଛ ନୃତ୍ୟ
ଯେଉଁ ବୀଣା ବଜାଇ ନୃତ୍ୟ କର
ସେ ବୀଣା ଅଛେ କେତେ ପ୍ରକାର
କେତେ ଖଣ୍ଡି ତାର ଗୁଣାରେ ସାଜେ
କେତେ ଘଣ୍ଟି କେତେ ଘର୍ଘର ବାଜେ
କେଉଁ ତାଳରେ ହୋଇଛୁ ଉକତ
କହ ସେ ବୀଣା କାହୁଁ ହେଲା ଜାତ
ତୁମ୍ଭଙ୍କୁ ସେ ବୀଣା କଏସେ ଦେଲା
ଯେ ଦେଲା ସେ ଅବା କାହୁଁ ପାଇଲା
ତୁମ୍ଭେ ବୀଣା ବାଇ କରୁଛ ନୃତ୍ୟ
ମୁଁ କପାଇଁ ଯିବ ତୁମ୍ଭ ସଙ୍ଗତ
    ନୃତ୍ୟକାସ୍ତି ବେଶ ଦତ୍ତ
    କେ କଲା ତୁମ୍ଭଙ୍କୁ ବୁଝାଇ ମୋ ଅଗେ
    କହ ଯେଉଁ ନୃତ୍ୟଶାସ୍ତ୍ର । ୧୦ ।

ସଙ୍ଗୀନା ରେ ମହାଯୋଗୀ ଶଙ୍କର
ତାଣ୍ଡବ ନୃତ୍ୟେ ତାଙ୍କ କାରବାର
ତାଙ୍କୁ ସେବା କରେ ମୁଁ ଦଣ୍ଡ ଯାତ
ଶ୍ୱେତ ରାଜା ଯଜ୍ଞେ ଚତୁରମାଥ
କଲେ ବେଦ ଖଣ୍ଡେ ବୀଣା ନିର୍ମିତ
ବେଦରୁ ଜନ୍ମି ବୀଣା ନାମ ଖ୍ୟାତ
ପ୍ରେମ ବୀଣା ସରସ୍ୱତୀଙ୍କୁ ଦେଲେ
ବ୍ରହ୍ମ ବୀଣା ନାରଦେ ସମର୍ପିଲେ
ବୀଣା ଖଣ୍ଡିକରେ ତାର ତନୋଟି
ମଧ୍ୟ ତାରେ ଶୁଭେ ସପତ ଘଣ୍ଟି
ପଚଣ ଧାଗୁଡ଼ ପାର୍ଶ୍ୱ ତାରରେ
ବଜାଇଲେ ବାଜେ ବ୍ରହ୍ମ ତାଳରେ

ଇଅଁଳା ପିଅଁଳା ଶିଶୁମ୍ନା ନାଡ଼ି
ସୁଷୁମ୍ନାରେ ଘଣ୍ଟି ଅନ୍ୟ ଘାଗୁଡ଼ି
ସପ୍ତ ଘଣ୍ଟି ସପ୍ତ ଛିଦ୍ର ଅଛଇ
ଘାଗୁଡ଼ି ପରଶ ପ୍ରକୃତ ହୋଇ
ବ୍ରହ୍ମ ବଳରେ କରେ ସପ୍ତ ସ୍ୱର
ବୀଣା ତୁଲ୍ୟ ଅଟେ ନର ଶରୀର
ଶଙ୍କର କହିଲେ ଏ ଜ୍ଞାନ ଭେଦ
ବୀଣା ଖଣ୍ଡି ମୋତେ ଦେଲେ ନାରଦ
ବୀଣାକାର୍ ବେଶ ଦେଲେ କାର୍ତ୍ତିକ
ତୋ ହସ୍ତରେ ପ୍ରେମ ବୀଣା ଖଣ୍ଡିକ
ଅସ୍ତ୍ର ଦେଇଛନ୍ତି ସାରଦା ସ୍ୱରରେ
ବନ୍ଧୁ ଦେଇଛନ୍ତି ତୋତେ ମୋ ସଙ୍ଗତେ
ପ୍ରେମ ବ୍ରହ୍ମବୀଣା ବାଇ
ନୃତ୍ୟକାରୀ ତତ୍ତ୍ୱ ଖୋଜିଲେ ପାଇବୁ ଯେ
ଲଳିତ ବସ୍ତ୍ରର ପେଇ । ୧୧ ।

ଅଦ୍ଭୁତ୍ କଥାଏ ମନରେ ମୋର
ପଚାରୁଛନ୍ତି କହ ନାଗରବର
ଜ୍ୟୋତିଷ ମତେ ତୁମ୍ଭର କି ଜାତି
ମୁଁ ଅଛଇ କେଉଁ ଜାତି ଯୁବତୀ
ରତିଶାସ୍ତ୍ର ମତେ ତୁମ୍ଭ ଅମ୍ଭର
କି ନାରୀ ଜାତି ପୁରୁଷ ପ୍ରଚାର
ଗଣ ମେଳକ ପୁଛିଲି କାହାର
ମୋର କି ନାମ କି ନାମ ତୁମ୍ଭର
କହିଲେ ଏ କଥା ବାର
ନିଷ୍ଟେ କାନ୍ତ ବୋଲି ଘରଚ୍ୟୁ ପାଇ
ପାଶକୁ ଯିବି ତୁମ୍ଭର । ୧୨ ।
ସଖିରେ ଆର୍ଦ୍ରା ମିଥୁନ ରାଶିର
କୃତ୍ତିବାସ ନାମ ଅଟେ ମୋହର

ରୋହିଣୀ ବୃଷ ଢୋ ନାମ ବୈଦେହୀ
ଦୁହେଁଯାକ ନର ଜାତ ରେ ସହି
ମୁଁ ଅଟଇ ମୃଗ ଜାତ ପୁରୁଷ
ଚତ୍ରିଣୀ ଜାତ ତୁହି ନାରୀଇଣ
ମନେ ନ ବହି ବଦ୍ୱେଷ
ଏ ସଭା ମଧ୍ୟରେ ଡାକୁଅଛୁ ମୁହିଁ ଯେ
ଚଞ୍ଚଳ ମୋ ପାଶ ଆସ । ୧୩ ।

ସଭାଜନଙ୍କୁ ନିବେଦନ ମୋର
ଯେତେ ପ୍ରଶ୍ନ କଲ୍ ସଭା ମଧ୍ୟର
ସବୁ ପ୍ରଶ୍ନକୁ ପାଇଲି ଉତ୍ତର
ଏଣୁ ଜାଣୁଛୁ ମୋର ପ୍ରାଣେଶ୍ୱର
ଏବେ ଯଦି ତାଙ୍କ ପାଶେ ନ ଯିବି
ସ୍ୱାମୀ ଦୋରେହୀ ହୋଇ ନାଶ ଯିବି
ସ୍ୱାମୀ ସଙ୍ଗତେ ନାରୀ ମାନ ବଢ଼େ
ଯେଉଁ ପୁରୁଷ ନାରୀ ହୁଏ ତେତେ
ବଶିଷ୍ଠ ସଙ୍ଗେ ଖ୍ୟାତ ଅରୁନ୍ଧତୀ
ପରାଶର ଯୋଗୁଁ ଖ୍ୟାତ କୈବର୍ତ୍ତୀ
ଏତେ ଭାଷିଣ ପଣ୍ଡିତା ଯୁବତୀ
ସ୍ୱାମୀ ପାଦରେ ସେ କଲ ପ୍ରଣତି
କ୍ଷେତ୍ରବାସୀର ବଦତି
ଶୁଣନ୍ତୁ ସିଦ୍ଧିରସ୍ତୁ ଠାରୁ ଯେ
ପାଠମାଳିକା ଭାରତ । ୧୪ ।

( ନରସିଂହପୁର )

# ୨ । ଚୈତ ଘୋଡ଼ା ନାଟ

ନମସ୍ତେ ନମସ୍ତେ ନମୋ ଗ୍ରାମଚଣ୍ଡୀ
ଆଦ୍ୟଶକ୍ତି ମହାମାୟୀ
ଅରକ୍ଷ ରକ୍ଷଣୀ ଶୈଳନନ୍ଦିନୀ ମା
ତବ ପାଦପଦ୍ମ ଧ୍ୟାୟି । ୧ ।
କି ବର୍ଣ୍ଣିବି ମାତ ରୂପକୁ ତୋହର
ମାରତଣ୍ଡ ପ୍ରାୟେ ଜ୍ୟୋତି
କୁଞ୍ଚିତ କେଶ ଅଳକା ଶୋହାବନ
ବିଦ୍ୟୁତ୍‌ପ୍ରାୟେ ଝଟକନ୍ତି । ୨ ।
କର୍ଣ୍ଣରେ ତାଟଙ୍କ ଦଶଇ ଝଟକ
ମଥାରେ ଯେ ଶଢା ତୋର
କଟୀରେ ରତନ ଓଡ଼ଆଣି ସାଜେ
କଣ୍ଠେ ଶୋହେ ରତ୍ନହାର । ୩ ।
ବାହୁଟି କଙ୍କଣ ଭୁଜେ ଗୁପସର
ହସ୍ତେ ଶୋହେ ରତ୍ନଚୁଡ଼ି
ଅଙ୍ଗୁଳିମାନଙ୍କେ ହୀରକ ମୁଦ୍ରିକା
ଗାତ୍ରରେ ଯାଇଛୁ ଜଡ଼ି । ୪ ।
ମନ୍ଦାର ମାଳକ ଗଳାରେ ତୋହର
କଟୀ ଯେ ସୁଛିନ ଶାଢ଼ୀ
ପୟରେ ନୂପୁର ବାଜେଣିର ବଳା
ବଜେ ସିଂହପୃଷ୍ଟେ ଚଳି । ୫ ।
ନ ସହି ଅରତ କ୍ଷୀରସିନ୍ଧୁ ଜାତ-
ଅସୁର ବିନାଶ କଲୁ
ବେଦ ଆଣି ପିତାମହ କରେ ଦେଇ
କ୍ଷିତିରେ କୀର୍ତ୍ତି ରଖିଲୁ । ୬ ।
ମୁଁ ଅତି ଅଯିତି ହୋଇଣ ଆରତ
ଡାକୁଅଛୁ ନିତ୍ୟ ପ୍ରତି
ଅନ୍ତର୍ଗତ କଥା ତୁହି କି ମାତ ଗୋ ନ ଜାଣୁ
ଦିଅ ମୋତେ ଗତମୁକ୍ତି । ୭ ।

ପୂର୍ବ ଦାଗ ପୃଥ୍ୱୀ ଗାଦକୁ ବଳଛୁ
ଚରଣାମ୍ବୁଜେ ତୋହର
ଶିକ୍ଷା ଗୁରୁ ରୂପେ ଦୀକ୍ଷା ଦେଇଅଛୁ
ଭବାବ୍ଧିରୁ କର ପାର । ୮ ।

ଭଗବତ ତତ୍ତ୍ୱ ତୋ ହୃଦୁ ସମ୍ଭୂତ
ଏଣୁ ଭଗବତୀ ନାମ
ତ୍ରେତୟା ଯୁଗରେ ଶ୍ରୀରାମ ପୂଜିଲେ
ରାମତାରେକ ମନ୍ତ୍ରେଣ । ୯ ।

ତୋ ଅମ୍ବୁଜ ଦୃଷ୍ଟି ମୋ ଶିରରେ ବୃଷ୍ଟି
କର କର ପରିତ୍ରାଣ
ଦେଇ ସୁଧାରସ କର୍ମ୍ମ ଇନ୍ଦ୍ର ନାଶ
ପିଣ୍ଡକୁ କର କାରଣ । ୧୦ ।

ବିମଳା କମଳା ସ୍ୱର୍ଗରେ ସାରଳା
ମର୍ତ୍ତ୍ୟେ ବୋଲଉ ମଙ୍ଗଳା
ନମୋ ନାରାୟଣୀ ଅପର୍ଣ୍ଣା ପାର୍ବ୍ବତୀ
ରକ୍ଷ ମୋ ବୁଡ଼ିଲା ଭେଳା । ୧୧ ।

ଦକ୍ଷିଣ ରୁ କାଳୀ ଅଟୁ ମୁଣ୍ଡମାଳୀ
ଅଟୁ ବିକଟ ମର୍ଦ୍ଦିନୀ
ଘୂର୍ଣ୍ଣିତଲୋଚନୀ ପ୍ରଗଳେ ଶ୍ରୀଫୁଲ
ନିଜ ପାଦ ଲେ ଗମନୀ । ୧୨ ।

ବନ୍ଦେ ସୁଦର୍ଶନ ରାମଚଣ୍ଡୀ ପାଦେ
କରୁଅଛୁ ନିବେଦନ
ଏହି ପଦ ମୁହିଁ କହୁଅଛୁ ଭାବ
ଏ ପଦ କଲି ରଞ୍ଜନ । ୧୩ ।

( ପଦ୍ମମାଳ—ନରସିଂହପୁର )

# ଛମାଳ

ଜୟ ଜୟ ମାତ ତବ ପାଦରେ ବନ୍ଦନ
କଣ୍ଠରେ ମାତ ସୁଦୟା କରବୁ ପଦ କରବ ଗାୟନ । ୧ ।

ତୋତେ ମୁଁ ବୋଲଇ ସିଦ୍ଧ କାମିନୀ ଗୋ
ଦୂବ କରପାରୁ ଦାରୁ
ସିନ୍ଦୁର କଜଳ ଲଗାଇ ବାହାରୁ ଯାତ୍ରା ମଧ୍ୟେ ବଳେ କରୁ । ୨ ।

କାହୁଁ ତୁ ଅଇଲୁ ସିପାହୀ ଭାଇରେ କେବଣ ଦେଶରେ ଘର
କାହାର ଉପରେ ସବାର ହୋଇଛୁ, ସିପାହି ରେ
କେବଣ ନାମ ତୁମ୍ଭର । ୩ ।

ଘଡ଼ିକି ମାଇଲି ଟିପା
ସିଦ୍ଧ ଠାକୁରାଣୀ ଘୋଡ଼ା ଅସିଅଛୁ, ସିପାହି ରେ
ଦେହଯାକ ସୁନା ଟିପା । ୪ ।

ମୋ ଘୋଡା ତ ବାଇଆ
ମୋ ଘୋଡ଼ା ଯାଉଛୁ କଣ୍ଟିଲଠି ବଣେ, ସିପାହି ରେ
ମାରଛୁ ସୁନା ଚାହୁଆ । ୫ ।

ଗହିର ବିଲରେ ଚୁଲି
ଘୋଡ଼ା ନାଁ ଦେଲି ଅଣ ବକୁଳି, ସିପାହି ରେ
ଘୋଡ଼ା ମୁଣ୍ଡେ ପାଟଫୁଲି । ୬ ।

ବାଟରେ ଖାରୁଆ ନଈ
ବାଟଘର କଲି ତୋହର ପାଇଁ, ସିପାହି ରେ
ଦନେ ପଶୁରଲୁ ନାହିଁ । ୭ ।

ନଈରେ ନୂଆ ଜାଆଁଳ
ଶୁଭ ଅନୁକୂଳେ ଘରୁ ବାହାର, ସିପାହି ରେ
ବନ୍ଦାଣ ଦୂବ ଚାଉଳ । ୮ ।

ବାଟରେ ଖୁଣ୍ଟି ପଲାସ
ଖୁଣ୍ଟି ଦେଲେ ଖିର ବୋହି ପଡ଼ବ, ସିପାହି ରେ
ତୋ ଠାରେ ବଡ଼ ଭରସା । ୯ ।

ପଦ୍ମମାଳା ଗଣ୍ଡ ଧାର
ଯେଣେ ଗଲେ ତେଣେ ଯଶ ଅରଜିବୁ, ସିପାହି ରେ
ସିନ୍ଦୁର ମହାମନ୍ତ୍ର । ୧୦ ।

କହନ୍ତି ଶ୍ରୀରାମ ହେ ଧୀବର
ନାବ ଲଗାଅ ଅଣି କୂଳର
ହେବ ଗଙ୍ଗାପାର ଯିବୁଁ ମିଥିଳା ନବର, ସିପାହି ରେ
କଇବର୍ତ୍ତ ନାମ ତୋର । ୧୧ ।

ଅଟେ ପଠାକାଠ, ଅଠଇ ସେ ଶ୍ରେଷ୍ଠ
କେଲୁଅର ବୁହାଇଲା
କହୁ କହୁ ନାବ ଚଲାଇଣି ଦେଲା, ସିପାହି ରେ
ଉଭଯଣେ କୂଳେ ଲାଗିଲା । ୧୨ ।

ବଟ ବୃକ୍ଷ ମୂଳେ ଜନମ ହୋଇଲି
ସିଂହଳ ଦ୍ୱୀପରେ ଘର
ସିଧ ବାଟେସଳକୁ କନ୍ଧରେ ବୋହୁଛୁ, ସିପାହି ରେ
କୈବର୍ତ୍ତି ନାମ ମୋର । ୧୩ ।

ଅର୍ଣ୍ଣପୂର୍ଣ୍ଣା ଅଦ୍ୟଶକ୍ତି ମହାମାୟି—
ଚଣ୍ଡୀ ପ୍ରଚଣ୍ଡି କାଳିକା,
ରୁଦ୍ର ତାରା କାଳ ଭୈରବୀ ମାନସୀ, ସିପାହି ରେ
ମହିଷାସୁରମର୍ଦ୍ଦିନୀ । ୧୪ ।

ସମ୍ବଲପୁରରେ ବିଶ୍ରାମ କରୁଛୁ
ନାମ ତୋର ସମ୍ବଲାଇ
ବାଜଦରେ ମାଛ ବଜେ କରୁଅଛୁ, ସିପାହି ରେ
ନାମ ତୋର ଗିରଜାଇ । ୧୫ ।

ଏକ ହାଇଜରେ ଜଳ ପ୍ରଳୟରେ ପଥର ଯାଉଛୁ ଭାସି
ବାପ ପୁଅ ଦୁହେଁ ଧର ନ ପାରଲେ
ରାଉତ ରେ, କାନ୍ଦୁଛନ୍ତି କୂଳେ ବସି । ୧୬ ।

ବାଙ୍ଝ ଗାଈ ସିନା ବାଟେ ଚରୁଥାଇ
ଗାଈ ତ ଫଗମ ନାହିଁ
ବାଛୁରୀ ତ ତାର ପେଟରେ ଯେ ଥାଇ, ରାଜତ ରେ
ସେ ତ ଅଧାର ମାଗଇ । ୧୭ ।

ଦଣ୍ଡିକେର ମାଛ ଘର ଛାଉଁଅଛୁ
କେରାଣ୍ଡି ଭିଡ଼ଇ ବତା
ବଗପକ୍ଷୀ ନେଇ ଛଣ ପଦସଇ, ରାଜତ ରେ
ଚଲ ହିଁ ଧରଛୁ ଛତା । ୧୮ ।

ପର୍ବତକୁ ଦେନା ମଶା ଉଡ଼ୁଥାଇ
ପୋତକ ତାମ୍ପଇ ନେବ
ସାତ ସମୁଦ୍ରକୁ ପିମ୍ପୁଡ଼ି ଶୋଷିଲେ, ରାଜତ ରେ
ଏତ ବଡ଼ ଅସମ୍ଭବ । ୧୯ ।

ଅମାପ ଭୂଇଁରେ ସୋରଷ ବୁଣିଲ
ଅନ୍ଧୁଣୀ ନେଉଛୁ ଖୁଣ୍ଟି
ହାତ ଗୋଡ଼ ନାହିଁ ଲୁଗା ବୁଣେ ତନ୍ତି, ରାଜତ ରେ
ସୂତାରେ ପକାଏ ଗଣ୍ଠି । ୨୦ ।

କଣ୍ଟା ଲଣ୍ଡିଅରେ ସିଂହ ପୋଷିଥିଲ
ପାଗ ତ ଉଡ଼ାଇ ନେଲ
କର୍ମ୍ମ ବପାକକୁ ଲଜ କରଡ଼ାରେ, ରାଜତ ରେ
ଝିଙ୍କକୁ ଜୋକ ଗିଳିଲ । ୨୧ ।

ସାଗର ଜଳରେ ମାଛ ମାରୁଥିଲ
ଜୋକ ବେଢ଼ିଗଲେ ଆସି
ପର୍ବତ ଶିଖରେ ରୋହିମାଛ ହସେ, ରାଜତ ରେ
ପୁଷିକୁ ଗିଳୁଛୁ ମୂଷି । ୨୨ ।

ଚଲକା ପାଣିରେ ଦେଉଳ ଭାସୁଛୁ
ଶୁଙ୍ଗୁଆ ଗାଉଛୁ ଗୀତ
କଅ ଭେଣ୍ଡି ତଳେ ଅମ୍ବ ଓହଳଛୁ, ରାଜତ ରେ
ଚଳ ହୋଇଛୁ ବଚନ । ୨୩ ।

( ନରସିଂହପୁର )

## ୩—ଛଣକୋଇଲି ନୃତ୍ୟ

ଜୟ ତୁ ମଙ୍ଗଳା, ଜୟ ତୁ ମଙ୍ଗଳା,
ସିଦ୍ଧ ତୁ ଶାରଳା, ସିଦ୍ଧ ତୁ ଶାରଳା ଲୋ
ମା ତୁ ମଙ୍ଗଳା । ୦ ।

ସଂସାର ଜନମାନ, ସଂସାର ଜନମାନ, ପଦ୍ମପାଦେ ଭେଳା ମା ମଙ୍ଗଳା
ପଦ୍ମପାଦେ ଭେଳା । ୦ ।

ଜୟ ମା ମଙ୍ଗଳା, ଜୟ ମା ମଙ୍ଗଳା, କଣ୍ଠୀ ବାହୁଦଣ୍ଡ ମା ମଙ୍ଗଳା
କଣ୍ଠୀ ବାହୁଦଣ୍ଡ,
ସବୁ ଯେତେ ଦେବାଦେବୀ ପଦ୍ମପାଦେ ଲୁଣ୍ଠେ
ମା ମଙ୍ଗଳା ପଦ୍ମପାଦେ ଲୁଣ୍ଠେ । ୧ ।

ଜୟ ମା ମଙ୍ଗଳା ମା, ତୁମର ମୟୂର ମା ମଙ୍ଗଳା
ତୁମର ପୟୂର
ଦର୍ଶନ ମାତ୍ରକେ, ସର୍ବ ପାପ ଦୂର ମା ମଙ୍ଗଳା
ସର୍ବ ପାପ ଦୂର । ୨ ।

ଜୟ ମା ମଙ୍ଗଳା, ଅନେକ ମହିମା ମା ମଙ୍ଗଳା
ଅନେକ ମହିମା,
ଅନ୍ତ କରି ନ ପାରିଲେ, ହରିହର ବ୍ରହ୍ମା ମା ମଙ୍ଗଳା
ହରିହର ବ୍ରହ୍ମା । ୩ ।

ଜୟ ମା ମଙ୍ଗଳା, ସଙ୍କଟ ତାରିଣୀ ମା ମଙ୍ଗଳା
ସଙ୍କଟ ତାରିଣୀ,
ଦୁଃଖିଜନମାନଙ୍କର ଦୁଃଖ ନିବାରିଣୀ ମା ମଙ୍ଗଳା
ଦୁଃଖ ନିବାରିଣୀ । ୪ ।

ଏକ ଦିନେ ନୀଳାଦେଇ ରାଣୀ ଲୋ ସେ ସ୍ୱପନ ଦେଖିଲା ଲୋ
ମଙ୍ଗଳା, ସ୍ୱପନ ଦେଖିଲା,
ଅଶିଣ ମାସର ମଙ୍ଗଳବାର ଲୋ, ସେ କରିବ ବୋଲିଲା ଲୋ
ନୀଳାଦେଇ, କରିବ ବୋଲିଲା । ୫ ।

ନିଜର ସ୍ୱାମୀ ପାଶେ ଚଳିଗଲି ଲୋ, ପଲଙ୍କ ଉପରେ ବସାଇଲି
ସେ ବୁଝାଇ କହିଲି ଲୋ,
ନୀଳାଦେଇ ବୁଝାଇ କହିଲା । ୬ ।

ଶୁଣ ଶୁଣ ପ୍ରାଣ ଈଶ୍ୱର ହେ, ମୁଁ ଓଷା କରି ଯିବି ହେ
ପ୍ରାଣେଶ୍ୱର ଓଷା କରି ଯିବି,
ପୂଜା ବିଧି ମୋତେ ଅଣିଦିଅ ହେ, ମୁଁ ଓଷା କରି ଯିବି ହେ
ପ୍ରାଣେଶ୍ୱର ଓଷା କରି ଯିବି । ୭ ।

ଅଣ୍ଟୁକୁଡ଼ି ବାଧାରୁ ସ୍ୱାମୀ ହେ, ମୁଁ ଉଧାର ପାଇବି ହେ,
ସ୍ୱାମୀ ମୋର ଉଧାର ପାଇବି,
ତାହା ଶୁଣି ରାଜା ଚଳିଗଲି ହେ, ବଜାର ଭିତରେଣ ପହଞ୍ଚିଲି
ସେ ପୂଜା ବିଧି ପାଇଁ ରେ ମହାରାଜା ପୂଜା ବିଧି । ୮ ।

ଫଳମୂଳ କେତେ କିଣୁଅଛି ରେ ଗନ୍ଧ ଧୂପ କିଣି ଆଣୁଅଛି
ତା ରାଣୀକି ଡାକୁଛି ରେ, ନୀଳାଦେଇ ରାଣୀକି ଡାକୁଛି । ୯

ନିଅ ନିଅ ନୀଳାଦେଇ ରାଣୀ ଲୋ, ତୋ ପୂଜାବିଧି ନିଅ
ତୋ ପୂଜାବିଧି ନିଅ ଲୋ ନୀଳାଦେଇ ପୂଜାବିଧି ନିଅ । ୧୦ ।

ଦାସୀମାନ ସଙ୍ଗେ ଚଳିଗଲି ଲୋ ରତ୍ନ ଗୁଙ୍ଗୁଡ଼ିକୁ ବାଛି ନେଲି
ସେ ଘରକୁ ଚଳିଲି ଲୋ ନୀଳାଦେଇ ମନ୍ଦିରକୁ ଗଲି
ନିଶି ଯେବେ ଶେଷ ହୋଇଲି ଲୋ
ରତ୍ନ ଗୁଙ୍ଗୁଡ଼ାକୁ ସଜାଇଲି । ୧୧ ।

କୁବେର ହାଣ୍ଡି ବାଜା ବଜାଇଲି ଲୋ ସେ ନଦୀକୂଳ ଗଲି ଲୋ
ନୀଳାଦେଇ ନଦୀକୂଳ ଗଲି,
ଯେବେ ନଦୀକୂଳେ ଗଲି ଲୋ ସେ କୂଳକୁ ଗଲି
ସ୍ନାହାନ ସାରିଲି ଲୋ ନୀଳାଦେଇ ବାଲୁଙ୍କା ଥାପିଲି । ୧୨ ।

ସୁନା କଳସକୁ ବସାଇ ଦେଲି ଲୋ, ସେ ଫୁଲମାନ କେତେ ଗଞ୍ଜିଦେଲି
ସେ ହୁଳହୁଳି ଦେଲି ଲୋ ନୀଳାଦେଇ ମଙ୍ଗଳା ପୂଜିଲି ।୧୩।

ଚୁଆ ଚନ୍ଦନକୁ ବୋଳାଦେଲ୍ଲ ଲେ, ରୂପା ଅଖି ସୁନା ଶିତା ଦେଲ୍ଲ
ସେ ମଙ୍ଗଳା ଡାକଲ୍ଲ ଲେ ହୁଳହୁଳ ଦେଲ୍ଲ
ଫଳମାନ କେତେ ବାଢ଼ିଦେଲ୍ଲ ଲେ, ଭୋଗରାଗ ନଇବେଦ୍ୟ କଲ୍ଲ
ସେ ମଙ୍ଗଳା ପୂଜିଲ୍ଲ ଲେ, ନୀଳାଦେଇ ମଙ୍ଗଳା ପୂଜିଲ୍ଲ ।୧୪।

ଚୁଆ ଚନ୍ଦନକୁ ବୋଳା ଦେଲ୍ଲ, ରୂପା ଅଖି ସୁନା ଶିତା ଦେଲ୍ଲ
ମଙ୍ଗଳା ପୂଜିଲ୍ଲ ଲେ ନୀଳାଦେଇ ମଙ୍ଗଳା ପୂଜିଲ୍ଲ
ଫୁଲର ଗଭା କେତେ ଖଞ୍ଜିଦେଲ୍ଲ, ଫଳମୂଳ କେତେ ବାଢ଼ିଦେଲ୍ଲ
ଭୋଗରାଗ ନଇବେଦ୍ୟ କଲ୍ଲ, ମଙ୍ଗଳା ପୂଜିଲ୍ଲ ଲେ ନୀଳାଦେଇ
ମଙ୍ଗଳା ପୂଜିଲ୍ଲ । ୧୫ ।

ନିଶା ମଙ୍ଗଳା ଶୂନ୍ୟରେ ଥିଲେ, ପଦ୍ମଫୁଲ ପରେ ଠିଆ ହେଲେ
ବଚନ ବୋଇଲେ; ନୀଳାଦେଇ କମ୍ପା ଡାକଲୁ ବୋଇଲେ । ୧୬ ।

ତାହା ଶୁଣି ନୀଳାଦେଇ ରାଣୀ, ମଙ୍ଗଳାଙ୍କୁ ଡାକ କହେ ବାଣୀ
ସାତ ପୁଅ ମୋତେ ଦେବୁ ପୁଣି, ମୁଁ ନିରେଖ ତରୁଣୀ
ମାଆ ମଙ୍ଗଳା ଲେ ମୁଁ ନିରେଖ ତରୁଣୀ । ୧୭ ।

ଅସ୍ତୁ ହେଉ ବୋଲି ଆଜ୍ଞା ଦେଲେ, ନୀଳାଦେଇ ରାଣୀ ଉଠ ଭଲେ
ଯାଚି ବର ଦେଲେ ମାଆ ମଙ୍ଗଳା ଲେ ଯାଚିବର ଦେଲେ । ୧୮ ।

ନୀଳାଦେଇ ରାଣୀ ଚଳିଗଲ୍ଲ, ନିଜ ମନ୍ଦିରେ ପ୍ରବେଶ ହେଲ୍ଲ
ସ୍ୱାମୀ ସେବା ଦଣ୍ଡାରେ ଲଗିଲ୍ଲ, ଅନନ୍ଦ ହୋଇଲ୍ଲ ଲେ
ନୀଳାଦେଇ ଅନନ୍ଦ ହୋଇଲ୍ଲ । ୧୯ ।

ମାସ ଦୁଇ ପାଞ୍ଚ ହୋଇଗଲ୍ଲ, ସେଦିନୁଁ ନୀଳାଦେଇ ଗର୍ଭ ହେଲ୍ଲ
ସପ୍ତ ବର୍ଷରେ ସାତ ବଳା ଦେଲେକ ମଙ୍ଗଳା ଲେ ଦେଲେକ ମଙ୍ଗଳା
ସେ ଦିନୁ ନିଶା ମଙ୍ଗଳବାର ଏ ରାଜ୍ୟରେ ଚଳିଲ୍ଲ । ୨୦ ।
( ନରସିଂହପୁର )

ନୀଳାଦେଇ ରାଣୀ ଚଳିଗଲ୍ଲ, କମାର ବଢ଼ାଇ ଡକାଇ ଦେଲ୍ଲ
ବୁଝାଇ କହିଲ୍ଲ କମାର ବଢ଼େଇଙ୍କୁ ବୁଝାଇ କହିଲ୍ଲ । ୧ ।
ଶୁଣ ଶୁଣ ରାଜ୍ୟ ବଢ଼େଇ କମାର ରେ ବୋଇତ ଗଢ଼ିଦେବ
ବୋଇତ ଗଢ଼ି ଦେବ ରେ ବଢ଼େଇ କମାର ବୋଇତ ଗଢ଼ିଦେବ ।୨।

ଆଜ୍ଞା ପ୍ରମାଣେ ଗଢ଼ା ହେଲ
ସାତ ବୋଇତ ଖଣି ଗଢ଼ାଇଲ
ଏ ଅନ୍ତେ ଘରକୁ ଚଳିଲ ଲୋ
ମାଳାଦେଇ ଘରକୁ ଚଳିଲା । ୩ ।

ଧନରତ୍ନ କେତେ ବୋଝେଇନେଲ
କେଉଟ ମାଝିଙ୍କି ଆଜ୍ଞାଦେଲ
ନଦୀରେ ବୋଇତ ମେଲ୍ ଦେଲ ରେ
ବୋଇତକୁ ନଦୀରେ ମେଲ୍‌ଦେଲ । ୪ ।

ଭସି ଭସି ବୋଇତ ଚଳିଗଲ
ଅବନ୍ତୀ ନଗରେ ପହଞ୍ଚିଲ
ରଜାପୁଅ ମନେ ଗର୍ବ କଲ
ମଙ୍ଗଳା ଦେବୀଙ୍କୁ ନ ମାନିଲ
ମଝି ନଦୀରେ ତ ପଦ୍ମଗଛ, ନୟନ ଦେଖିଲ
ନୟନେ ଦେଖିଲ ରେ ରାଜନ
ନୟନେ ଦେଖିଲ । ୫ ।

ମଙ୍ଗଳାଦେବୀ ତ ମାୟାକଲ
ଅତସୁନ୍ଦର ମୂର୍ତ୍ତି ହେଲ
ପଦ୍ମଫୁଲ ପରେ ଠିଆ ହେଲ
ରାଜନ ତା ନୟନେ ଦେଖିଲ । ୬ ।

ଦେଖିକର ରାଜା ସନାତନ
କନ୍ୟା ନେବ ବୋଲି କଲ ମନ
କେଉଟ ମାଝିଙ୍କି ଆଜ୍ଞା ଦେଲ
ଧରଆଣ କନ୍ୟାକୁ ବୋଇଲ
ଧର ନ ପାରିଲ ସେ କନ୍ୟାରେ
ଧର ନ ପାରିଲ । ୭ ।

କନ୍ୟାକୁ ଦେଖିଣ ଗର୍ବ କଲ
ସେ ରାଜ୍ୟର ରାଜା ପାଶେ ଗଲ
ଶୁଣ ଶୁଣ ମାଧବ ରାଜା,
ଯାହା ମୁଁ ଦେଖିଛୁ
ନଦୀରେ ଯାହା ମୁଁ ଦେଖିଛୁ । ୮ ।

ମଝିନଈରେ କନ୍ୟାଗୋଟି
ଠିଆ ତ ହୋଇଛୁ ହେ ରାଜନ
ମଝି ନଦୀରେ କନ୍ୟା ଗୋଟି
ଠିଆ ତ ହୋଇଛୁ । ୯ ।

ଦୁଇ ରାଜନ ଚଳିଗଲେ, ନଦୀ କୂଳକୁ ତ ଗଲେ ସେହୁ
ନଦୀ କୂଳେ ପ୍ରବେଶ ହୋଇଲେ
ସେ ମଝି ନଦୀକୁ ଦୃଷ୍ଟି ଦେଲେ, କିଛୁ ନ ଦେଖିଲେ ସେ
ରାଜନ କିଛୁ ନ ଦେଖିଲେ । ୧୦ ।

ପୂର୍ବ୍ବ ବାଜ ଲେଖାପଢ଼ା ହୋଇଥିଲ
ଯହୁଁ ନାସ୍ତି ରାଜା ନ ଦେଖିଲ
ରାଜା ମନ୍ତ୍ରୀକି ଗୃହିଁଣ ଅଜ୍ଞା ଦେଲ
ହେ ରାଜନ ମନ୍ତ୍ରୀକି ଗୃହିଁଣ ଅଜ୍ଞା ଦେଲ । ୧୧ ।

ସାତ ବୋଇତ ବୋହିକାଅ ଭଲ
ରାଜାକୁ ସନାତନ ଧରି ଚଳିଗଲ
ହାତ ଗୋଡ଼େ ବେଢ଼ି ଦେଇ ଦେଲ
ବନ୍ଧ ତାକୁ କରାଇଲ
ହେ ରାଜନ ବନ୍ଧ କରାଇଲ । ୧୨ ।

ସନାତନ ରାଣୀ ଖୋଳଣା ଦେଇ ଲେ
ଘରେ ଥାଇ ଖୋଳଣା ଦେଇ
ସ୍ୱପନେ ଦେଖିଲ ଲେ ଜେମାଦେଇ
ମଙ୍ଗଳା ଦେବୀ ସ୍ୱପନେ କହଇ । ୧୩ ।

ଡାକ ପକେଇଲୁ ଲୋ ଖୋଲଣା
ଅବନ୍ତୀ ନଗରେ ରାଜା ନେଇ
ତୋ ସ୍ୱାମୀକୁ ବନ୍ଦୀ କରେଇଲୁ ଲୋ
ମାୟା କଲେ ତ ମଙ୍ଗଳା ଦେଇ । ୧୦ ।
ନବୀନ ସୁନ୍ଦର ମୂର୍ତ୍ତି ହେଲେ ଲୋ ମାଅ ମଙ୍ଗଳା
ଜଉ ଘୋଡ଼ାରେ ସବାର ହେଲେ
ରାଣୀକୁ ଡାକ କହି ଦେଇ ଲୋ
ମଙ୍ଗଳା ଶୂନେ ଉଡ଼ିଗଲେ । ୧୫ ।
ଖୋଲଣା ଦେଇ ମଙ୍ଗଳା ପୂଜିଲୁ ଲୋ
କେତେ ନାକୁଣି ହୋଇଲୁ
ମୋ ସ୍ୱାମୀକି ରଖ ବୋଲି
ଶରଣ ପଶିଲୁ ତ ଶରଣ ପଶିଲୁ । ୧୬ ।
ମଙ୍ଗଳା ତା ଗୁହାରି ଶୁଣିଲେ ଲୋ
ଅବନ୍ତୀ ରାଜ୍ୟରେ ମିଳିଲେ
ଅବନ୍ତୀ ନଗର ସିଂହଦ୍ୱାରେ ଯାଇ ପ୍ରବେଶ ହୋଇଲେ ଲୋ
ମଙ୍ଗଳା ପ୍ରବେଶ ହୋଇଲେ । ୧୭ ।
ଋଗ୍‌ବେଦ ଗାୟନ କଲେ ଲୋ
ଦୀର୍ଘ ଉଚ୍ଚସ୍ୱରେ ଗାୟନ କଲେ
ବେଦ ଧ୍ୱନି ଶୁଣି ଅକ୍ଷରନ୍ତି ରାଣୀ
ବ୍ରାହ୍ମଣ ସମର୍ପିଲେ
ବେଦ ଶୁଣି ମେଙ୍କ ପଡ଼ିଲେ । ୧୮ ।
ଅକ୍ଷରନ୍ତି ନେଇ ଲୋ ରାଣୀ
ବ୍ରାହ୍ମଣେ ସମର୍ପିଲେ ଲୋ
ବୃଥା ହେବ ଅକ୍ଷରନ୍ତି ମୋର ଲୋ
ଲୋ ମଙ୍ଗଳା ବୋଲିଣ ବୋଇଲୁ । ୧୯ ।
ଡକାଇ ଅଣ ହେ ରାଣୀ ଯାଇ ରାଜାଙ୍କୁ ତୁମ୍ଭର ହେ
ରାଜାଙ୍କୁ ତୁମ୍ଭର
ତାହା ଶୁଣି ତ ଚିନ୍ତା ଦେଇ ରାଣୀ
ଚଳୁ ଲୋ ଧୀର ଧୀର । ୨୦ ।

ଧୀର ଚଳିଗଲେ ଲୋ ରଜାରାଣୀ
ମାଧବ ରଜା ପାଶେ ପ୍ରବେଶିଲ
ସେ ବୁଝାଇ କହିଲ ଲୋ
ରାଜାଙ୍କୁ ବୁଝାଇ କହିଲେ । ୨୧ ।

ସିଂହଦ୍ୱାରେ ବସିଛି ବ୍ରାହ୍ମଣ ଲୋ
ଋଗ୍ୱେଦ କରୁଛି ଗାୟନ
ବେଦ ଧ୍ୱନି ମୁହିଁ ଶୁଣି କରତ
ତାର ପାଶେ ଯାନ୍ତେ ହେ ରାଜନ । ୨୨ ।

ଅଷ୍ଟରତ୍ନ ତ ନେଇ କର ହେ
ସେ ବ୍ରାହ୍ମଣେ ଦଅନ୍ତେ ରାଜନ
ଧନ ଲୋଭେ ଡକେଇତେ ମାରବେ ବୋଲିତ
ନ ନେଲେ ସେ ଧନ । ୨୩ ।

କହେ ବ୍ରାହ୍ମଣ ରାଣୀ ଗୋ
ଡକାଇ ଆଣ ରାଜନ
ତା ଶୁଣି ମାଧବ ରାଜା ଧୀରେ ଚଳଇ ସେ
ସିଂହ ଦ୍ୱାରେଣ । ୨୪ ।

ସିଂହଦ୍ୱାରେ ସେ ମହାରାଜା
ପ୍ରବେଶ ହୋଇଲ ତ ପ୍ରବେଶ ହୋଇଲ
ବ୍ରାହ୍ମଣ ଦେଖି ତ ମହାରାଜା ଓଳଗି ହୋଇଲ ସେ
ରାଜନ ଓଳଗି ହୋଇଲ । ୨୫ ।

ସନାତନ ରାଜପୁତ୍ର ତ ଗର୍ବ କଲେ ହେ
ମଙ୍ଗଳା ଦେବୀଙ୍କି ନ ମାନିଲେ
ସେଇଥି ପାଇଁକି ବନ୍ଦ ହେଲେ ହେ
ବନ୍ଦ ହେଲେ । ୨୬ ।

ମାଧବ ରାଜାକୁ ମଙ୍ଗଳା ବ୍ରାହ୍ମଣ ବେଶରେ
ବୁଝାଇଲେ ଯେଣୁ ବୁଝାଇଲେ
ରାଜପୁତ୍ର ଛାଡ଼ିଲେ ତ ବନ୍ଦରୁ
ଫେରାଇ ଦେଲେ । ୨୭ ।

ସାତ ବୋଇତ ଦେଇ ସନାତନଙ୍କୁ ତ
ବିଦା କରିଦେଲ
ଏଣେ ଧ ରାଜ୍ୟରେ ତ ହରିବୋଲ
ହୁଳହୁଳରେ ଗଗନ କମ୍ପିଲ । ୨୮ ।

ବରଜା ସୁନାର କଳସ ଗଢ଼ାଇଲେ ତ
ବ୍ରାହ୍ମଣ ବୈଷ୍ଣବ ଡକାଇଲେ
ମଙ୍ଗଳା ମାଏଙ୍କ ପୂଜା କଲେ ସର୍ବେ
ମଙ୍ଗଳା ମାଏଙ୍କ ପୂଜା କଲେ । ୨୯ ।

( କମଳାଦେଇପୁର-ନରସିଂହପୁର )

## ୩—ଗଣ୍ଡାବଧ

ଏକଇ ବୋଲେ କ ରାଜରାଣୀ ଗୋ
ଏକଇ ବୋଲେ କ ରାଜରାଣୀ
ତାର ଶାଶୁକୁ କହୁଛି
ମା ମୁଁ ତ ନଦୀକୁ ଯାଉଛି । ୧ ।

ତାର ସେହି କ ଶାଶୁ ବୁଢ଼ୀ ଗୋ
ତାର ସେହି କ ଶାଶୁ ବୁଢ଼ୀ
ନାହିଁ ନିଷ୍ଠା କଲା ବୋହୂକୁ ରେ
ନାହିଁ ନିଷ୍ଠା କଲା । ୨ ।

ବୋହୂ ତାର କେଡେ ନ ମାନିଲା
ବୋହୂ ତାର କେଡେ ନ ମାନିଲା
ନଦୀକୁ ସେ ଗଲା ବୋହୂ ତାର
ସ୍ନାନ କରୁଥିଲା । ୩ ।

ଏକଇ ମହାବଳୀ ଗଣ୍ଡାରାଜା ସେ
ଏକଇ ମହାବଳୀ ଗଣ୍ଡାରାଜା
ନାବ ଖେଳୁଥିଲା ନଦୀରେ ସେ
ନାବ ଖେଳୁଥିଲା । ୪ ।

କାଦ ବାଡ଼ି ପକାଇ ଦେଲ୍ ରେ
କାଦ ବାଡ଼ି ପକାଇ ଦେଲ୍
ତାର ପାଶ ଗଲ୍, ଗଣ୍ଡାରଜା
ଅଗରେ ଜଗିଲ୍ । ୫ ।

ସେ ତ ବୋଲଇ ରାଜରାଣୀ ରେ
ସେ ତ ବୋଲଇ ରାଜରାଣୀ
ଜବାବ କହୁଛୁ ରାଣୀ ତାକୁ
ଜବାବ କହୁଛୁ । ୬ ।

ତୁମ୍ଭେ ତ ହେବ ମଉଲା ଶଶୁର
ମୁଁ ହେବ ଭଣଜା ବୋହୂ
ମୋତେ ଛାଡ଼ିଦଅ ବୋଇଲ୍ ରେ
ମୋତେ ଛାଡ଼ି ଦଅ । ୭ ।

କେବେ ନ ମାନିଲ୍ ଗଣ୍ଡା ରାଜା
କେବେ ନ ମାନିଲ୍
ତାକୁ ଧରଗଲ୍ ରାଣୀକୁ ତ
ନାବେ ବସାଇଲ୍ । ୮ ।

ଏ କୂଳରେ ନାବ ସେତ ରେ
ଏ କୂଳର ନାବ ସେତ
ସେ କୂଳେ ଲଗାଇଲ୍ ଗଣ୍ଡା ରାଜା
ସେ କୂଳେ ଲଗାଇଲ୍ । ୯ ।

ସେତ ମହାବଳୀ ରାଜା ରେ
ସେତ ମହାବଳୀ ରାଜା
କନ୍ଧେ ବସାଇଲ୍ ରାଣୀକୁ ତ
ଧର ଚାଲିଗଲ୍ । ୧୦ ।

ସେତେବେଳରେ ରାଜରାଣୀ ରେ
ଧନ ବୋଲେ ରାଜରାଣୀ
ସୁମରଣା କଲେ ମଙ୍ଗଳା ଦେଇଙ୍କୁ ରେ
ମଙ୍ଗଳା ଦେଇଙ୍କୁ । ୧୧ ।

ମୋର ଗର୍ଭରେ ଯିଏ ଅଛୁ ରେ
ମୋର ଗର୍ଭରେ ଯିଏ ଅଛୁ
ମୋର ରାଜ୍ୟରେ ଜନ୍ମ ହେଲେ ଶତ୍ରୁ ସଂହାରବ ଲେ
ଶତ୍ରୁ ସଂହାରବ । ୧୨ ।

ଗଣ୍ଡା ରାଜ୍ୟରେ ଜନ୍ମ ହେଲେ ରେ
ଗଣ୍ଡା ରାଜ୍ୟରେ ଜନ୍ମ ହେଲେ
ଯଦୁବଂଶ ହେବ ଲେ ମାଆ ଠାକୁରାଣୀ
ଯଦୁବଂଶ ହେବ । ୧୩ ।

ଧର୍ମକୁ ଯେ ସାକ୍ଷୀ ଦେଲା ରେ
ସୂର୍ଯ୍ୟ ଦେବଙ୍କୁ ଯେ ସାକ୍ଷୀ ଦେଲା
ଗଣ୍ଡା ସଙ୍ଗେ ଗଲା ରାଜ ରାଣୀ
ଗଣ୍ଡା ସଙ୍ଗେ ଗଲା । ୧୪ ।

ବନସ୍ତ ଭିତରେ ରାଜରାଣୀ ରେ
ବଟବୃକ୍ଷ ମୂଳେ ରାଜରାଣୀ
ବଳା ଜନ୍ମକଲା-ରାଜରାଣୀ-
ବଳା ଜନ୍ମ କଲା । ୧୫ ।

ନାହି ନାଡ଼ ତ କାଟିଦେଲା ରେ
ନାହି ନାଡ଼ ତ କାଟିଦେଲା
ପଣତ କାନକୁ ରାଣୀ ତ
କାଟି ପକାଇଲା । ୧୬ ।

ପଣତ କାନକୁ ରାଜରାଣୀ
ପଣତ କାନକୁ
ଶେଜ ସଜାଇଲା ରାଣୀଙ୍କ ରେ
ବଳା ଶୁଆଇଲା । ୧୭ ।

ସିଆର ପତର ରେ
ସିଆର ପତର ରେ
ଠୋଲାଏ ମାଇଲା ରାଜରାଣୀ
କ୍ଷୀର ତ ଦୁହିଁଲା । ୧୮ ।

ବଳା ମୁଣ୍ଡଶାଳେ ରାଜରାଣୀ ରେ
ବଳା ମୁଣ୍ଡଶାଳେ ରାଜରାଣୀ
ଲଥକାଇ ଦେଲା ଝୀରକୁ ତ
ଲଥକାଇ ଦେଲା । ୧୯ ।

ସେତେବେଳ ତ ରାଜରାଣୀ ରେ
ସେତେବେଳ ତ ରାଜରାଣୀ
ଧର୍ମେ ସୁମରଲା ରାଣୀକି ରେ
ମଙ୍ଗଳା ଦେବୀକି ସୁମରଲା । ୨୦ ।
ଦଶ ମାସ ତ ପରିଯନ୍ତେ ରେ
ଦଶ ମାସ ତ ପରିଯନ୍ତେ
ଗର୍ଭେ ଧରି ଥିଲି ବଳାରେ
କଷ୍ଟ ପାଇଥିଲି । ୨୧ ।

ଅକାମତ ବନସ୍ତରେ ରେ
ଅକାମତ ବନସ୍ତରେ
ଛାଡ଼ିକରି ଯିବ ମୋ ଧନରେ
ଛାଡ଼ି କରି ଯିବ । ୨୨ ।
ତୋର ଯେବେ ତ ଦାଦ ବାପ ରେ
ତୋର ଯେବେ ତ ଦାଦ ବାପ
ଝାଡ଼େ ବୁଲୁଛନ୍ତି ମଙ୍ଗଳା ତ
ଝାଡ଼େ ବୁଲୁଛନ୍ତି । ୨୩ ।
ଏଇ ଦାଣ୍ଡେ ଆସିବେ ମୋ ପ୍ରଭୁ ତ
ଏଇ ଦାଣ୍ଡେ ଆସିବେ ମୋ ପ୍ରଭୁ
ମଥାର ତ ମଥାମଣି କଣ୍ଠିରୁ ତ କଙ୍କିଣି
ବଳାମୁଣ୍ଡ ଶାଳେ ଦେଲା ରାଣୀ, ବଳାମୁଣ୍ଡ ଶାଳେ ।୨୪।

କ୍ରୋଧେ ଜର ଜର ରାଣୀ ତ
ଲୁହେ ଜର ଜର
ସୁମରଣା କଲା ରେ ନାଗୁଣୀକୁ
ସୁମରଣା କଲା । ୨୫ ।

•କାହିଁ ଥିଲା ଦୁଧ ନାଗୁଣି ରେ
କାହିଁ ଥିଲା ଦୁଧ ନାଗୁଣି
ବଲାମୁଣ୍ଡ ଶାଳେ ନାଗୁଣି ତ
ବଲାମୁଣ୍ଡ ଶାଳେ । ୨୬ ।

କୁଲଥିକର ଫେଣ କରି ରେ
କୁଲଥିକର ଫେଣ କରି
ଭାଙ୍ଗିଣ ରହିଲା ନାଗୁଣି ରେ
ଭାଙ୍ଗିଣ ରହିଲା । ୨୭ ।

ଉପରେ ତ ଶଙ୍ଖଚିଲରେ
ଉପରେ ତ ଶଙ୍ଖଚିଲ
ଚେକ ତ କାଟିଲା ଶଙ୍ଖଚିଲ
ଉପରେ ଉଡ଼ିଲା । ୨୮ ।

ନିର୍ଦ୍ଦୟ ଗଣ୍ଡା ନ ଛାଡ଼ିଲା ତ
ନିର୍ଦ୍ଦୟ ଗଣ୍ଡା ନ ଛାଡ଼ିଲା
ସବୁ ଦେଖି କେବେ ନ ଛାଡ଼ିଲା
ଲୋଭ ନ ଛାଡ଼ିଲା । ୨୯ ।

ଧନ ବୋଲେ ତ ରାଜରାଣୀ ରେ
ଧନ ବୋଲେ ତ ରାଜରାଣୀ
ଗଣ୍ଡା ସଙ୍ଗେ ଗଲା ରାଣୀ ତ
ଗଣ୍ଡା ସଙ୍ଗେ ଗଲା । ୩୦ ।

ସାତଦନ ତ ସାତ ରାତରେ
ସାତଦନ ତ ସାତ ରାତ
ବନେ ବୁଲୁଛନ୍ତି ଦୁଇଭାଇ
ବନେ ବୁଲୁଛନ୍ତି । ୩୧ ।

ମାର ମାର ତ ଚଢ଼ାଇ ରେ
ମାର ମାର ତ ଚଢ଼ାଇ
ଗଦା କରି ଦେଲେ ଦୁଇ ଭାଇ
ଗଦା କରି ଦେଲେ । ୩୨ ।

ସବୁ ଦୂର ଗୋଡ଼ ଚଡ଼ାଇ ରେ
ସବୁ ଦୂର ଗୋଡ଼ ଚଡ଼ାଇ
ଏକ ଗୋଟି କାହିଁ ନନାଭାଇ
ଏକ ଗୋଟି କାହିଁ ନନାଭାଇ । ୩୩ ।

ମାରି ମାର ତ ଚଡ଼ାଇ ରେ
ମାର ମାର ତ ଚଡ଼ାଇ
ନିସ୍ତର ରହିଲେ ଦୁଇ ଭାଇ
ନିସ୍ତର ରହିଲେ । ୩୪ ।

ସେ ତ ବୋଲେ ତ ବାଣବାର ରେ
ଧନ ବୋଲେ ତ ବାଣବାର
ମଙ୍ଗଳା ପ୍ରସାଦେ ତାର ଭାଇକୁ
କହୁଛି ରେ ଭାଇକୁ କହୁଛି । ୩୫ ।

ତୃଷା ହେଲା ମୋତେ ନନା ଭାଇ ରେ
ତୃଷା ହେଲା ମୋତେ ନନା ଭାଇ
ଜଳ ମୁଁ ଖାଇବ ନନା ଭାଇ ରେ
ଜଳ ମୁଁ ଖାଇବ । ୩୬ ।

ଅଙ୍କମ ବନସ୍ତରେ ଏ
ଅଙ୍କମ ବନସ୍ତରେ
ଜଳ ନ ମିଳିବ ବାଣବାର
ଜଳ ନ ମିଳିବ । ୩୭ ।

ଜଳ ନ ଖାଇଲେ ନନା ଭାଇ ରେ
ଜଳ ନ ଖାଇଲେ
ମୋର ଜୀବ ଯିବ ନନା ଭାଇ ରେ
ମୋର ଜୀବ ଯିବ । ୩୮ ।

ଶୁଣି ଶୁଣି ଚଣକ୍ୟ ଭାଇ ରେ
ଶୁଣି ଶୁଣି ଚଣକ୍ୟ ଭାଇ
ଏ ଜଇ ଶାଳ ବୃକ୍ଷରେ ଚଢ଼ ବୋଲି କର
ଭାଇ ମୋର ଚଢ଼ ବୋଲି କର । ୩୯ ।

ତାହା ଶୁଣି ଚଣକ୍ୟ ଭାଇ ରେ
ତାହା ଶୁଣି ଚଣକ୍ୟ ଭାଇ
ବଦନ ଚଢ଼ିଲା, ଭାଇ ଗଛ
ଅଗ୍ରକୁ ସେ ଗଲା । ୪୦ ।

ଗୃର ଦଗକୁ ଦୃଷ୍ଟି ଦେଲା ତ
ଗୃର ଦଗକୁ ଦୃଷ୍ଟି ଦେଲା
ଜଳ ନ ଦେଖିଲା ଚଣକ୍ୟ ରେ
ଜଳ ନ ଦେଖିଲା । ୪୧ ।

ଲକ୍ଷେ ଯୋଜନରେ ନନା ଭାଇରେ
ଲକ୍ଷ ଯୋଜନରେ ନନାଭାଇ
ଶଙ୍ଖ ଚିଲ ବୋଲି ଉଡୁଅଛୁ
ଶଙ୍ଖଚିଲ ବୋଲି । ୪୨ ।

ସେହୁ ଦଗେ ଜଳ ମିଳାବ ହେ
ସେହୁ ଦଗେ ଜଳ ମିଳାବ
ଏଇ ପଦ କହିଲା ନନାକୁ ରେ
ଓହ୍ଲାଇ ଅଇଲା । ୪୩ ।

ସେହୁ ଠାବରୁ ବାଣ ବୀର ରେ
ସେହୁ ଠାବରେ ଚଣକ୍ୟ
ସେହୁ ଦଗେ ଗଲେ ଦୁଇ ଭାଇ
ସେହୁ ଦଗେ ଗଲେ । ୪୪ ।

ଖଣ୍ଡେ ଦୂରେ ଗୃଲଯିବା ପରେ
ଖଣ୍ଡେ ଦୂରେ ଗୃଲଯିବା ପରେ
ଭାଇକୁ କହୁଛୁ ବାଣବୀର
ଯାହା ଶୁଭୁଅଛୁ । ୪୫ ।

ଜଙ୍ଗଲ ଭିତରେ ନନା କ ରେ
ଜଙ୍ଗଲ ଭିତରେ ନନା କ ରେ
କଏ ସେ ଗୋଟାଏ କାନୁଅଛୁ
କଏ ସେ ଗୋଟାଏ । ୪୬ ।

କୁଅଁ କୁଅଁ ରାବ ଶୁଭୁଅଛୁ
କୁଅଁ କୁଅଁ ରାବ ଶୁଭୁଅଛୁ
ଦୁଇ ଭାଇ ଯାକ ଶୁଣିଲେ ତ
ଦୁଇ ଭାଇ ଯାକ । ୪୭ ।

ତାର ପାଖେ ଗଲେ ଦୁଇ ଭାଇ
ତାର ପାଖେ ଗଲେ
ପ୍ରବେଶ ହୋଇଲେ ଦୁଇ ଭାଇ
ପ୍ରବେଶ ହୋଇଲେ । ୪୮ ।

ମଥାମଣି କଙ୍କିଣି ତ
ଝଗ୍ରାକାଠି ଚଉଁରମୁଣ୍ଡି
ନୟନରେ ଦେଖିଲେ ଦୁଇ ଭାଇ
ମନେ ବିଚାରିଲେ । ୪୯ ।

ସୁନ୍ଦରୀ ମଥାର ମଥାମଣି ତା
କ୍ଷୀଣକଣ୍ଠୀର ଏହୁ କ କଙ୍କିଣି
ଚିହ୍ନି ପକେଇଲେ ଦୁଇଭାଇ
ଚିହ୍ନି ପକେଇଲେ । ୫୦ ।

ଗୋପପୁରର ନଅରରେ
ଗୋପପୁରର ନଅରରେ
ଏ ସବୁ ଜିନିଷ ଭାଇକ ରେ
କାହାଁକୁ ମିଳିବ । ୫୧ ।

ଆମ୍ଭର ବୋହୂର ଭାଇ କରେ
ଆମ୍ଭର ବୋହୂର ଭାଇକ ରେ
ଗଣ୍ଡା ନେଇଗଲା ଭାଇକ ରେ
ବିପଦ ପଡ଼ିଲା ଭାଇକ ରେ । ୫୨ ।

ସତେ ବୋଲେ କ ବାଣବୀର ରେ
ସତେ ବୋଲେ କ ବାଣବୀର
ବଳାକୁ ଧଇଲେ ଦୁଇଭାଇ
ଲୌ କାନ୍ଦ କାନ୍ଦିଲେ । ୫୩ ।

ଘର ଚଳିଗଲେ ଦୁଇଭାଇ
ଉଆସ ଚଳିଗଲେ
ଧାଇ ମୃଦୁସୂଲି ଲଗାଇଲେ
ବଳାକୁ ସାଇତିଲେ । ୫୪ ।

ବଳାକୁ ସାଇତିଲେ ଚଣ୍ଡିକ୍ୟ ଭାଇ
ବଳା ହେଲା ବାର ବରଷର
ମଙ୍ଗଳା କୃପାକଲେ ତାଙ୍କୁ
ଶିଖିଲା ଧନୁର୍ବିଦ୍ୟା । ୫୫ ।

ଗୁରଶସ୍ତ୍ର ଶାସ୍ତ୍ରରେ ପାରଙ୍ଗମ
ମାତାକୁ ଖୋଜିଲେ
ମାତାକୁ ନ ପାଇ ବଳା
ଭାସିଲେ ରାଜ୍ୟ ରାଜ୍ୟ । ୫୬ ।

କହିବୁଟି ଚଣ୍ଡିକ୍ୟ ଭାଇରେ
ସିଂହ ପଞ୍ଜରାରେ ରାଣୀ ବନ୍ଧ ଥିଲେ
ଗଣ୍ଡା ରଜାକୁ ମାରି ବଳା
ମାତାକୁ ଉଦ୍ଧାରିଲେ । ୫୭ ।

ମଙ୍ଗଳା ମାଅଙ୍କୁ ସୁମରଣା କଲେ ରାଜରାଣୀ
ସୁମରଣା କଲେ ରାଜରାଣୀ
ବାମଉରୁ ତାଙ୍କୁ ଉଦ୍ଧାରିଲେ,
ଦେଖିଲେ ବଳାକୁ । ୫୮ ।

ଗଣ୍ଡା ରାଜ୍ୟରେ ହେଲା ମଙ୍ଗଳା ଓଷା,
ମଙ୍ଗଳା ଓଷା
ହୁଳହୁଳି ହରିବୋଲ
ଗୁରୁଅଡ଼େ ପଡ଼ିଲା । ୫୯ । *

( କମଳାଦେଇପୁର—ନରସିଂହପୁର )



* ମୁଣ୍ଡରେ ମଙ୍ଗଳା ଘଟ ଧରି ବାଜା ବଜାଇ ନାଚିବା ବେଳେ ହରିଜନ ଡାଲସୀ ଏପରି ପଦ ରଚନା କରି ଗାଇ ଗଲେ ।

# ଯାତ୍ରା ଉତ୍ସବ ଗୀତିକା

## ୧—ଚନ୍ଦନ ଯାତ୍ରା ଗୀତ

ମଦନମୋହନ
କର୍ଣ୍ଣାନ୍ଦ୍ର ଦନ୍ତ ପଲଙ୍କ ତେଜି ପ୍ରଭୁ ନରେନ୍ଦ୍ର ଗୃହେ ଗମନ । ୦ ।
ବୈଶାଖ ଶୁକଳ ତୃତୀୟାରେ ପ୍ରଭୁ ଚଢ଼ି ଅପୂର୍ବ ବିମାନ
ଶ୍ରୀବଡ଼ଦେଉଳୁଁ ବଡ଼ ଦାଣ୍ଡେ ବିଜେ
ସଙ୍ଗେ ଘେନି ତ୍ରିଲୋଚନ । ୧ ।

ଛତ୍ର ଚାମର ପଙ୍ଖା ଆଲଟ ଚାମର ମେଘାଡମ୍ବର ଶୋଭନ
ଘଣ୍ଟ କାହାଳ ମର୍ଦ୍ଦଳ ବୀଣା ନାଦେ
ଚମକେ ଇନ୍ଦ୍ରଦ୍ୟୁମ୍ନମନ । ୨ ।

ବିମାନୁ ଉତୁରି ପ୍ରଭୁ ବଂଶୀଧାରୀ ନୃପେ କଲେ ବେହରଣ
କାଦ କେଳୁଆର ଧରି କଇବ୍ରତ
ନୃପ ବାହେ ଘନ ଘନ । ୩ ।

ପରିକ୍ରମା ସାରି ପ୍ରଭୁ ଦେବ ହରି ଚନ୍ଦନ ଜଳରେ ସ୍ନାନ
ଭେଟୀରେ ଦୋସଡ଼ା ହୋଇ ମୋଡ଼ା ମୋଡ଼ା
ମୋହୁଅଛୁ ତ୍ରିଭୁବନ । ୪ ।

ଦମୃଣା ତୁଳସୀ ପଦ୍ମମାଳ ମିଶି ଗୁନ୍ଥିଅଛୁ ମାଳ ମାନ
ପୟରେ ନୂପୁର ହୃଦୟରେ ହାର
କର୍ଣ୍ଣେ କୁଣ୍ଡଳ ଶୋଭନ । ୫ ।

ଶିରରେ ମୁକୁଟ ରତନ ଜଡ଼ିତ କଣ୍ଠ କେତେ ଘଟନ
ଖଇ ଦହି ପଣା ପରଡ଼ ସ୍ତମ୍ଭରେ ସେବକେ ବାଡ଼ି ବହନ
ମନ୍ତ୍ର ଉଚ୍ଚାରଣ ପୂଜାବିଧି ସାର
ବାସ ଜଳେ ଆଚମନ । ୬ ।

ଶ୍ରୀଅଙ୍ଗକୁ ପୋଛି ପ୍ରଭୁ ଜଗୁବସ୍ତି ଭୁଞ୍ଜନ୍ତି ବଡ଼ଆ ପାନ
ନିଶି ଅର୍ଦ୍ଧଭାଗ ହେଉ ଉଦବେଗ ପୁନଃ ଗୃହକୁ ଗମନ । ୭ ।

ଅନେକ ଦହୁଡ଼ି ଅନ୍ଧାରେ ଘେଉଡ଼ି ଦଶଇ କେଡ଼େ ଘଟନ
ଚନ୍ଦନ କୁଣ୍ଡରୁ ଗୃହକୁ ବିଜୟେ
ସଙ୍ଗେ ଘେନି ନୀଳଲୋଚନ । ୮ ।

ଆଗେ ବେଶ୍ୟା ନାରୀ ନୃତ୍ୟ କରି ଗାଏ
ଗନ୍ଧର୍ବ ସ୍ୱରେ ଗାୟନ
ଚୌପାଶୁଣେ ସେବକ ଯେ ବେଢ଼ିଛନ୍ତି
ଚନ୍ଦ୍ରକୁ ତାରା ଯେସନ । ୯ ।

କରେ ଛଡ଼ି ବାଡ଼ି ଧରଣା ଖୁଣ୍ଟିଆ
ଆଡ଼ବାଡ଼େ ସାବଧାନ ।
ଭୋ ଦେବ ମଣିମା ବୋଲି ଡାକୁଥାଏ
ଛାମୁଁ ଛଡ଼ି ଘନ ଘନ । ୧୦ ।

ନରେନ୍ଦ୍ର କୋଣରୁ ସିଂହଦ୍ୱାର ଯାଏ
ଜନ୍ତାଜନ୍ତ ସର୍ବଜନ
ନାନା ବାଦ୍ୟ ବାଜେ ଡମ୍ବରୁରେ ବଜେ
ମେଲଣି ଯେ ଦେବଗଣ । ୧୧ ।

ଶ୍ରୀଛାମୁରେ ରତ୍ନ ପଲଙ୍କ ପଡ଼ିଲା
ପ୍ରଭୁ କରିବେ ଶୟନ
ପାଦପଦ୍ମ ତଳେ ସେବାରେ ଖଟଇ
ଦୀନ ହୀନ ବଳରାମ । ୧୨ ।

( ନରସିଂହପୁର)

## ୨—ରଥଯାତ୍ରା ଭେଟ ଗୀତ

ଏଥିଅନନ୍ତରେ ଶୁଣ ହେ ନରେ
ଘର ବାପ ଯାଇ ପଶିଲେ ଘରେ
ତୁମ୍ଭେ ଯେ ବୋଲଅ ଘରର ବାପ
ତୁମ୍ଭ ଆଅନ୍ତେ ମୋ ଏଡ଼େ ତାପ
ମୁଁ ସହିବ କେତେ
ପ୍ରଭୋ, ତୁମ୍ଭ ଦେଉଳେ ଘୁଡ଼ିଗଲ ମୋତେ । ୧ ।

ଆସି ବଳଦେବ ପଶିଲେ ହାସି
ପଛେ ସୁଭଦ୍ରା ଡରେ ଲୁଚି ପଶି
ଦୁହେଁ ରତ୍ନ ସିଂହାସନେ ବିଜେ କଲେ
ଦାସୀ ଦୁଆରେ ଯନ୍ତ୍ର କିଳଣି ମୁଦିଲେ
ଶୁଭିଲା ଅଟ୍ଟ ଗୋଳ
ସମସ୍ତ ଦାସୀ ହୋଇଛନ୍ତି ମେଳ । ୨ ।

ଅଶେଷ ବ୍ରହ୍ମାଣ୍ଡ ନାଥ ଗୋସାଇଁ
ପଶି ନ ପାରଣ ଦୁଆରେ ରହି
ପ୍ରଭୁ—ଦାସୀ, ତୀର୍ଥ ଯାତ୍ରା କରି ଯାଇଥିଲୁ ଆମ୍ଭେ
ଏଥକୁ ବିଗୁର କର ଗୋ ତୁମ୍ଭେ
ଏଥେ କି କରିବୁଁ
ଫେଡ କବାଟ ଭିତରକୁ ଯିବୁଁ । ୩ ।

ଲଳିତା—

ଅଶେଷ ବ୍ରହ୍ମାଣ୍ଡ ନାଥ ଗୋସାଇଁ
ପଶି ନ ପାରଣ ଦୁଆରେ ରହି
ପ୍ରଭୋ ତୀର୍ଥ ଯାତ୍ରା କରି ଯାଇଥିଲ
ତୁମ୍ଭ ଘରଣୀକି ସଙ୍ଗେ ନ ନେଲ
ସେହୁ ସୁଲକ୍ଷଣୀ
ସଙ୍ଗେ ଘେନି ନ ଗଲ ଘର ଘରଣୀ । ୪ ।

ଡିଙ୍କି ପଣାକ୍କ ଅଦକର ନେଲ
ଠ କୁରାଣୀଙ୍କୁ ଦୁଃଖୀ କରାଇଲ
ଠାକୁରାଣୀ ଅମ୍ଭ ବରହେ ଖିନ୍ନ
ନଷ୍ଠୁର ନର୍ଦ୍ଦୟ ଜଗୁଜୀବନ
ନ ଫେଡୁ ଦୁଆର
ପ୍ରଭୋ, ବାହୁଡ଼ ଯାଅ ଯା ଗୁଣ୍ଡିଚ୍ଚୁଘର । ୫ ।

ପ୍ରଭୁ— ଗୁଣ୍ଡିଚ୍ଚୁ ରହଣି ଯାତ୍ରା ଯେ କଲୁ
ରହିବା ଦେଖି ଏମାନହିଁ ନେଲୁ
ସଙ୍ଗରେ ଥିଲେ ଭାଇ ବଳେବର
ଅମ୍ଭେ ଲକ୍ଷ୍ମୀଙ୍କ କେମନ୍ତେ ନ୍ୟନ୍ତୁ ସଙ୍ଗର
ଏ ନୋହେ ବେଭାର
ବାହାରେ ଛନ୍ତିଲେ ସେବକେ ମୋର । ୬ ।

ଦାସୀ— ବରୁଣି ରାଜାଙ୍କ ବବାହ କାଳେ
ସତ୍ୟ କଲ ହସ୍ତ ଯୋଡ଼ନ ବେଳେ
ଲକ୍ଷ୍ମୀଙ୍କୁ ଅମ୍ଭେ ଦଣ୍ଡେ ନ ଛାଡ଼ବୁଁ
ଦଶ ଦୋଷ ହେ କ୍ଷମା କରବୁଁ
କରୁ ଅଛୁ ସତ୍ୟ
ସତ୍ୟ ଭଗ୍ନ ହେଲ୍ ଶ୍ରୀ ଜଗନ୍ନାଥ । ୭ ।

ଅଗଭର ହୋଇ ଲଳିତା ଦାସୀ
କେତେ ଡାକ ଦାଅ ଜଗୁନବାସୀ
ନିଦ୍ରା ଯାଇଛନ୍ତି ମାଏ ଅମ୍ଭର
ଜଣାଇଁ ପାରିବ ଶକ୍ତ କାହାର
ସେ ରାଜାଙ୍କ ଜେମା
କେ ସହ ପାରବ ତାଙ୍କ ଗାରମା । ୮ ।

ପ୍ରଭୁ— ସତ୍ୟହୁଁ ମିଥ୍ୟା ଲେ ଅମ୍ଭେ ନ କହୁଁ
ଅସତ୍ୟ ଲୋକର ସଙ୍ଗେ ନ ଥାଉଁ

ଏମନ୍ତ କହନ୍ତି ଅମ୍ଭଙ୍କୁ ପାଇ
ଅମ୍ଭେ ସୁବର୍ଣ୍ଣ ଲକ୍ଷ୍ମୀ ଅଛୁଁ କଳେ ବହି
ସେ ପ୍ରାଣର ପ୍ରିୟା
ନିଷ୍ଠୁର ନିର୍ଦ୍ଦୟ ତୁମର ହିୟା । ୯ ।

ଲଳିତା— ଯେବେ ଯାଇଥିଲ ତୀର୍ଥ ଯାତ୍ରାକୁ
ନ କହି ଗଲ ଯେ ଅମ୍ଭ ମହାଲକ୍ଷ୍ମୀଙ୍କୁ
ତୁମ୍ଭ କୋପକୁ ଅମ୍ଭ ନାହିଁ ଡର
ମାଏ କେଶ ମୁଣ୍ଡାଇ କରବେ ବାହାର
ସେ ରାଜାଙ୍କ ଜେମା
କେ ସହି ପାରିବ ତାଙ୍କ ଗାରିମା । ୧୦ ।

ହାତେ ହାତେ ଲଞ୍ଚ ପାଇଣ ଦାସୀ
ମହାଲକ୍ଷ୍ମୀଙ୍କ ପାଦତଳେ ବସି
ଅମ୍ଭଙ୍କୁ ଦେଲେ ଗୋ ଲକ୍ଷେକ ଧନ
ତୁମ୍ଭଙ୍କୁ ଶୁଣୁ ବିନୟ ବଚନ
ମୋହାପ୍ରଭୁ ହୋଇ
ତାଙ୍କ ଦୋଷ ଅଦର କହିଲେ ବୁଝାଇ । ୧୧ ।

ପ୍ରଭୁ— ହସି କହନ୍ତି ଦେବ ଜନାର୍ଦ୍ଦନ
ତୁମ୍ଭଙ୍କୁ ଦେବୁ ଗୋ ଲକ୍ଷେକ ଧନ
ଗ୍ରାମରେ ଜଣାଇ ଫେଡ଼ କବାଟ
ଦେବୁଁ ଅର୍ଣ୍ଣିଙ୍କୁଁ ଚଉମେଢି ପାଟ
ଦାସୀ ଜଣାଇଁ କହ
ତୁମ୍ଭ ଠାରେ ତାଙ୍କ ବଡ଼ ସେନେହ । ୧୨ ।

ଲଳିତା— ଅଶେଷ ବ୍ରହ୍ମାଣ୍ଡ ନାଥ ଗୋସାଇଁ
ଲଜ୍ଜା ପାଇଲେଣି ଦୁଆରେ ରହି
ପରିବାର ମେଳ ହୋଇ କହିଲେ
ଅପାର ବେଳଙ୍କୁ ଠାକୁର ରହିଲେ
ଶୁଣି କମଳିନୀ
ଚହ ଚହ ହାସ ମଧୁର ବାଣୀ । ୧୩ ।

ଠାକୁରାଣୀ— ବୋଲନ୍ତି କମଳା ଶୁଣ ଲେ ଦାସୀ
ତୁମ୍ଭ ବଗୁରକୁ ଯେମନ୍ତ ଅସି
ଅମ୍ଭ ନ ଜାଣିବା ପ୍ରାପ୍ତେକ ହେଉ
ଫେଡ଼ କବାଟ ଅସୁ ମହାବାହୁ
ଫେଡ଼ ବହନ
ତାଙ୍କ ଶ୍ରୀମୁଖ କରିବା ଦର୍ଶନ । ୧୪ ।

ପ୍ରଭୁ— ବୋଲନ୍ତି ଠାକୁର ଶୁଣ ଲେ ଦାସୀ
ଅପାର ବେଳ ହୋଇଲଣି ଅସି
ତୁମ୍ଭଙ୍କୁ ଦେବୁଁ ଗୋ ଲକ୍ଷେକ ଧନ
ଅମ୍ଭୁରେ ଜଣାଇଁ ଫେଡ଼ ବହନ
ପ୍ରଭୁ ହସିଲ ହୋଇ
ଅଲଟ ଲଗି ହୋନ୍ତି ଭାବଗ୍ରାହୀ । ୧୫ ।

ଆଜ୍ଞା ପାଇ ଦାସୀ ଚଳିଣ ଗଲେ
ପଛେ ପଛେ ମା ଏ ବିଜୟେ କଲେ
ଅଳପ ହୋଇ ଅଡ଼ଅଣି ଗୃହଁ
ତିନି ଭୁବନ ଲୋକ ଛନ୍ତି ରହି
ବିଜେ ଜଗଦୀଶ
ଦେଖି ଅନନ୍ଦ ହୋଇଲେ ନିଦଶ । ୧୬ ।

( ପାଏକପଡ଼ାଗଡ଼—ନରସିଂହପୁର )

## ୩ । ରାହ ଦାମୋଦର ଉତ୍ସବ ଗୀତ

( ୧ )

ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ମଧ୍ୟେ ଚନ୍ଦନ କୋଠି
ରାହ ଦାମୋଦର ଖେଳନ୍ତି ହସ୍ତେ କଉଡ଼ି ମୁଠି
ଏକ ମୁଠି ଜୁଆ ଖେଳନ୍ତେ ପ୍ରଭୁ ହୋଇଲେ ଧନ୍ଦା
ହସି କମଳିନୀ କହନ୍ତି ଦିଅ ମୁକୁଟ ବନ୍ଧା ।

( ୨ )

ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ତହିଁ ଚନ୍ଦନ କୋଠି
ବାହୁ ଦାମୋଦର ଖେଳନ୍ତି ହସ୍ତେ କଉଡ଼ି ମୁଠି
ଦୁଇମୁଠି ଜୁଅ ପଡ଼ନ୍ତେ ପ୍ରଭୁ ହୋଇଲେ ଧନ୍ଦା
ହସି କମଳିନୀ କହନ୍ତି ଦିଅ କୁଣ୍ଡଳ ବନ୍ଧା ।

( ୩ )

ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ମଧ୍ୟେ ଚନ୍ଦନ କୋଠି
ବାହୁ ଦାମୋଦର ଖେଳନ୍ତି ହସ୍ତେ କଉଡ଼ି ମୁଠି
ତିନି ମୁଠି ଜୁଅ ଖେଳନ୍ତେ ପ୍ରଭୁ ହୋଇଲେ ଧନ୍ଦା
ହସି ମହାପ୍ରଭୁ କହନ୍ତି ହାର ନିଅ ଗୋ ବନ୍ଧା ।

( ୪ )

ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ତହିଁ ଚନ୍ଦନ କୋଠି
ବାହୁ ଦାମୋଦର ଖେଳନ୍ତି ହସ୍ତେ କଉଡ଼ି ମୁଠି
ଚାରି ମୁଠି ଜୁଅ ପଡ଼ନ୍ତେ ପ୍ରଭୁ ହୋଇଲେ ଧନ୍ଦା
ହସି ମହାପ୍ରଭୁ କହନ୍ତି ଫେଟା ନିଅ ଗୋ ବନ୍ଧା ।

( ୫ )

ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ମଧ୍ୟେ ଚନ୍ଦନ କୋଠି
ବାହୁ ଦାମୋଦର ଖେଳନ୍ତି ହସ୍ତେ କଉଡ଼ି ମୁଠି
ପାଞ୍ଚ ମୁଠି ଜୁଅ ପଡ଼ନ୍ତେ ପ୍ରଭୁ ହୋଇଲେ ଧନ୍ଦା
ହସି କମଳିନୀ କହନ୍ତି ଦିଅ ମୁଦ୍ରିକା ବନ୍ଧା ।

( ୬ )

ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ତହିଁ ଚନ୍ଦନ କୋଠି
ବାହୁ ଦାମୋଦର ଖେଳନ୍ତି ହସ୍ତେ କଉଡ଼ି ମୁଠି
ଛଅମୁଠି ଜୁଅ ଖେଳନ୍ତେ ପ୍ରଭୁ ହୋଇଲେ ଧନ୍ଦା
ହସି କମଳିନୀ କହନ୍ତି ଦିଅ ପାଦୁକା ବନ୍ଧା ।

( ୭ )

ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ତହିଁ ଚନ୍ଦନ କୋଠି
ରାହ୍ମ ଦାମୋଦର ଖେଳନ୍ତି ହସ୍ତେ କଉଡ଼ି ମୁଠି
ସାତ ମୁଠି ଜୁଆ ପଡ଼ନ୍ତେ ପ୍ରଭୁ ହୋଇଲେ ଧନ୍ଦା
ହସି କମଳାମା କହନ୍ତି ତୁମେ ରହିଲ୍ ବନ୍ଧା ।

## ରାହ୍ମ ଦାମୋଦର ଓଷା ଗୀତ (୨)

ମୁକୁଳାଇ ଦଅ ବୋଲି କହୁଛନ୍ତି ଆଳି
ହାରିଲ୍ ହାରିଲ ବୋଲି ରାଇ ମାରେ ତାଳି
ପ୍ରଭୁ ହାରିଲ ହେ—ମାଧବ ହାରିଲ୍
ତୁମ୍ଭର ମୁକୁଟ ଗୋଟି ତୁମ୍ଭେ ଯେ ପାଇଲ ।
( ୧ )

ମୁକୁଳାଇ ଦଅ ବୋଲି କହୁଛନ୍ତି ଆଳି
ହାରିଲ୍ ହାରିଲ ବୋଲି ରାଇ ମାରେ ତାଳି
ପ୍ରଭୁ ହାରିଲ ହେ—ମାଧବ ହାରିଲ
ତୁମ୍ଭର କୁଣ୍ଡଳ ଦୁଇ ତୁମ୍ଭେ ଯେ ପାଇଲ୍ ।
( ୨ )

ମୁକୁଳାଇ ଦଅ ବୋଲି କହୁଛନ୍ତି ଆଳି
ହାରିଲ୍ ହାରିଲ ବୋଲି ରାଇ ମାରେ ତାଳି
କୃଷ୍ଣ ହାରିଲ ହେ—ମୋହନ ହାରିଲ
ମୁକୁଳାଇ ଦେଲି ତୁମ୍ଭ ହାର ଯେ ପାଇଲ ।
( ୩ )

ମୁକୁଳାଇ ଦଅ ବୋଲି କହୁଛନ୍ତି ଆଳି
ହାରିଲ ହାରିଲ ବୋଲି ରାଇ ମାରେ ତାଳି
କୃଷ୍ଣ ହାରିଲ ହେ—ମୋହନ ହାରିଲ
ମୁକୁଳାଇ ଦେଲି ତୁମ୍ଭ ଫେଟା ଯେ ପାଇଲ ।
( ୪ )

ମୁକୁଳାଇ ଦଅ ବୋଲି କହୁଛନ୍ତି ଅଳି
ହାରିଲ ହାରିଲ ବୋଲି ଗାଇ ମାରେ ତାଳି
ପ୍ରଭୁ ହାରିଲ ହେ—ମାଧବ ହାରିଲ
ତୁମ୍ଭର ମୁଦ୍ରିକା ଗୋଟି ତୁମ୍ଭେ ଯେ ପାଇଲ ।

( ୬ )

ମୁକୁଳାଇ ଦଅ ବୋଲି କହୁଛନ୍ତି ଅଳି
ହାରିଲ ହାରିଲ ବୋଲି ଗାଇ ମାରେ ତାଳି
ପ୍ରଭୁ ହାରିଲ ହେ—ମାଧବ ହାରିଲ
ତୁମ୍ଭର ପାଦୁକା ଦୁଇ ତୁମ୍ଭେ ଯେ ପାଇଲ ।

( ୭ )

ମୁକୁଳାଇ ଦଅ ବୋଲି କହୁଛନ୍ତି ଅଳି
ହାରିଲ ହାରିଲ ବୋଲି ଗାଇ ମାରେ ତାଳି
ପ୍ରଭୁ ହାରିଲ ହେ—ମାଧବ ହାରିଲ
ତୁମ୍ଭେ ତ ମୋହ ପାଶରେ ବନ୍ଧା ଯେ ରହିଲ ।

( ୨ )

( ନରସିଂହପୁର )

## ୪—ଡୁମାଲୁଣୀ 'ଯୋ' ଖେଳ ଗୀତ

**ବୁଢ଼ୀଦେଇ—**

ଅଲେ ଥାନପତି ନାମେ ଖେଳବ, ଯୋ
ଅଲେ ଗ୍ରାମ ଦେବତୀ ନାମେ ଖେଳବ, ଯୋ । ୧ ।
ଅଲେ ବୁଢ଼ୀଦେଇ ନାମେ ଖେଳବ, ଯୋ
ଅଲେ ବୁଢ଼ା ନାମ ଧରି ଖେଳବ, ଯୋ । ୨ ।
ଯଦ୍ ମଙ୍ଗଲାଙ୍କ ନାମେ ଖେଳବ, ଯୋ
ଅଲେ ପାଟ ମଙ୍ଗଲା ନାମେ ଖେଳବ, ଯୋ । ୩ ।
ଅଲେ ଘଟ ମଙ୍ଗଲା ନାମେ ଖେଳବ, ଯୋ
ଅଲେ ଜାଣା ମଙ୍ଗଲା ନାମେ ଖେଳବ, ଯୋ । ୪ ।

ଅଲେ ଦୁର୍ଗା ଦେବୀ ନାମେ ଖେଳିବ, ଯୋ
ଅଲେ ବଣ ଦୁର୍ଗା ନାମେ ଖେଳିବ, ଯୋ । ୫ ।
ଅଲେ ପରଗଲା ନାମେ ଖେଳିବ, ଯୋ
ଅଲେ ସିମାଳିଶୁଣି ନାମେ ଖେଳିବ, ଯୋ । ୬ ।
ଅଲେ ମଗରମୁହିଁ ଲେ ଖେଳିବ, ଯୋ
ଖେଳ ଖେଳିଲେ ମୁକ୍ତି ତ ପାଇବ, ଯୋ । ୭ ।
ଅଲେ କଳା ପାଟ ନାମେ ଖେଳିବ, ଯୋ
ଅଲେ ସମଲଇ ନାମେ ଖେଳିବ, ଯୋ । ୮ ।
ଅଲେ ଉମାଦେଇ ନାମେ ଖେଳିବ, ଯୋ
ଅଲେ ଗିରିଜାଇ ନାମେ ଖେଳିବ, ଯୋ । ୯ ।
ଯେଣେ ଗଲେ ଆଗପଛ ହୋଇବ, ଯୋ
ଯଦ ଭଣ୍ଡାରିକା ନାମେ ଖେଳିବ, ଯୋ । ୧୦ ।
ଅଲେ ଖେଳ କୌତୁକରେ ଗାଇବ, ଯୋ
ଯଦ ଦକ୍ଷିଣ କାଳିକା ନାମେ ଖେଳିବ, ଯୋ । ୧୧ ।
ଯଦ ପାଟ କାଳିକା ଲେ ଖେଳିବ, ଯୋ
ଯଦ ଖଣ୍ଡା କାଳିକା ଲେ ଖେଳିବ, ଯୋ । ୧୨ ।
ଯଦ କାଳୀମୁଖି ନାମେ ଖେଳିବ, ଯୋ
କାଳୀ ପକାଇ ଶତ୍ରୁକୁ ନାଶିବ, ଯୋ । ୧୩ ।
ଯେଣେ ଗଲେ ଆଗପଛ ହୋଇବ, ଯୋ
ଯେତେ ସୁବର୍ଣ୍ଣ ବାହକ ଗୃହିଁବ, ଯୋ । ୧୪ ।
ଯେତେ ବସ୍ତ୍ରା ସୂନାମାନ ଜଗିବ, ଯୋ
ଯେତେ ପୁତ୍ର ସମ୍ପତ୍ତି ଲେ ଜଗିବ, ଯୋ । ୧୫ ।
ବାଡ଼ ବସନ୍ତରୁ ରକ୍ଷା କରିବ, ଯୋ
ନଷ୍ଟେ ଷଠୀଦେବୀ କଲେ ହୋଇବ, ଯୋ । ୧୬ ।
ବଶାଶଏ ବର୍ଷ ଆୟୁଷ ଲେଖିବ, ଯୋ
ଆଗ ପଛ କରି କାଳ କାଟିବ, ଯୋ । ୧୭ ।
ଏହି ମହିମା ପ୍ରକାଶ କରିବ, ଯୋ
ଯଦ ବାସ୍ତ୍ରା ଭୀମ ନାମେ ଖେଳିବ, ଯୋ । ୧୮ ।

ଯଦ୍ଧ ଗଜ ଭ୍ରମ ନାମେ ଖେଳବ, ଯୋ
ଅଗ୍ନି କୁମରଙ୍କ ନାମେ ଖେଳବ, ଯୋ । ୧୯ ।
ବଛୁଅଡ଼ କୁମର ନାମେ ଖେଳବ, ଯୋ
ବୀର ହନୁମାନ ନାମେ ଖେଳବ, ଯୋ । ୨୦ ।
ଶାଳବଣି ଗଜା ନାମେ ଖେଳବ, ଯୋ
ଯଦ୍ଧ କରଡ଼ କୁମର ଖେଳବ, ଯୋ । ୨୧ ।
ଯାଇଁ ବାଉଁଶ ମୂଳରେ ବସିବ, ଯୋ
ବୁଢ଼ୀ ସଙ୍ଗେ ସାଙ୍ଗ ହୋଇ ଚଳବ, ଯୋ । ୨୨ ।
ଲାଉ ତୁମ୍ବା ଖଣନ୍ତି ଲୋ ଧରବ, ଯୋ
ବୁଢ଼ୀ ନେଞ୍ଜର ପିଞ୍ଜର ହୋଇବ, ଯୋ । ୨୩ ।
ସଙ୍ଗେ ଖସୁ କୁଣ୍ଡିଆଣି ଧରବ, ଯୋ
ବୁଢ଼ୀଠାରେ ଯଦ୍ଧ ଗର୍ବ କରବ, ଯୋ । ୨୪ ।
ଧନେ ଗର୍ବ ଭାଙ୍ଗି ଚୂନା କରବ, ଯୋ
ଧନେ ପଥରକୁ ପାଣି କରବ, ଯୋ । ୨୫ ।
କଷ୍ଟେ ବାଡ଼ ବସନ୍ତ ଲୋ ଛାଡ଼ବ, ଯୋ
ନୀଳଗିର ମଣ୍ଡନକୁ ଭଜବ, ଯୋ । ୨୬ ।
ଛିଅ ଦୁଲଣା ଦେଇ କି ଘେନଣ, ଯୋ
ଗ୍ରାମ ବାହାରେ ବଜୟ କରଣ, ଯୋ । ୨୭ ।
ଯେଉଁଠାରେ ଯେଉଁ କଥା ଦେଖିଣ, ଯୋ
ଅତି ହରଷେ କରବେ କଲ୍ୟାଣ, ଯୋ । ୨୮ ।
ଦୁଃଖୀ ଦୁଃଖମାନ କଷ୍ଟେ ଶୁଣିଣ, ଯୋ
ଯେତେ ଗଲେ ଆଗପଛ କରଣ, ଯୋ । ୨୯ ।
ଅତି ଦୁଲ ଦେଇ ନାମେ ଖେଳବ, ଯୋ
ଅତି ଦୁଲ ମାଳକା ଯେ ଖେଳବ, ଯୋ । ୩୦ ।
ଅତି ବୋହୂ ସୁନ୍ଦରୀ ଲୋ ଖେଳବ, ଯୋ
କଷ୍ଟେ ତୁଳସୀ ଦେବୀ ଲୋ ଖେଳବ, ଯୋ । ୩୧ ।
ଏଣେ ବାଲ ସୁନ୍ଦରୀ ଲୋ ଖେଳବ, ଯୋ
କଷ୍ଟେ ଫୁଲ ସୁନ୍ଦରୀ ଲୋ ଖେଳବ, ଯୋ । ୩୨ ।

ଫୁଲ୍ ପ୍ରକାରେ ଗ୍ରାମକୁ କରବ, ଯୋ
ଯେତେ ପୃସ ସମ୍ପଦ ଲୋ ଜଗିବ, ଯୋ । ୩୩ ।
ତାଙ୍କ ଅବୃନ୍ତ ଲୋଚନେ ଗୃହିଁବୁ, ଯୋ
ବାଢ଼ି ବସନ୍ତହିଁ ଛାଡ଼ି ନ ଦେବୁ, ଯୋ । ୩୪ ।
ଆଗ ପଛ କରି କାଳ କାଟିବ, ଯୋ
ଯେତେ ସୁବର୍ଣ୍ଣ ବାହ୍ନକ ଜଗିବ, ଯୋ । ୩୫ ।

ଅଗୋଚର ମାୟା ଯେବେ କରବ, ଯୋ
ଯାକୁ ବୁଢ଼ୀଦେଇ ଦୟା କରବ, ଯୋ । ୩୬ ।
ନିମିଷକେ ଉଣା କିଛୁ ନୋହିବ, ଯୋ
ବଂଶ ଉଜ୍ଜ୍ୱଳ କରି ଲୋ ରଖିବ, ଯୋ । ୩୭ ।
ଯଦ ସୁବର୍ଣ୍ଣ ପତକା ଉଡ଼ିବ, ଯୋ
ଯାର ଯେମନ୍ତ ଭାବ ଲୋ ଜାଣିବ, ଯୋ । ୩୮ ।

ବୁଢ଼ୀ ଖେସୁ କୁଣ୍ଡିଆଣି ଛାଡ଼ିବ, ଯୋ
ବୁଢ଼ୀ ମଦଅଣ୍ଡା କଲେ ଖାଇବ, ଯୋ । ୩୯ ।
ବାଞ୍ଛି ମଡ଼ନ୍ତୁ ଦୋଷ ଲୋ ଫେଡ଼ିବ, ଯୋ
ଯାକୁ କାଞ୍ଛିତେ ଦୟା ସେ କରବ, ଯୋ । ୪୦ ।

ତାଙ୍କ ଅନ୍ଧ ଯଦ ଚିନ୍ତା କରଇ, ଯୋ
ନଷ୍ଟେ ଚକ୍ଷୁଦାନ ପ୍ରାପ୍ତ ହୁଅଇ, ଯୋ । ୪୧ ।
ଏହିପରି ତାଙ୍କର ଗୁଣସୀମା, ଯୋ
ମୁଖେ କହି ନ ପାରଇ ବେଦବ୍ରହ୍ମା, ଯୋ । ୪୨ ।

( ନରସିଂହପୁର )

## ବୁଢ଼ୀଦେଇ (୨)

ଅମ୍ବ ଅସିବ, ଯୋ
ପଣସ ଅସିବ, ଯୋ । ୧ ।
ମହୁଲ ଅସିବ, ଯୋ
ଜଙ୍ଗଲ୍ ଭୟ ହେବ ନାହିଁ, ଯୋ । ୨ ।

ବାଘ ବାଘୁଣୀ ଅସିବେ ନାହିଁ, ଯୋ
ବାଡ଼ ବସନ୍ତ ପଡ଼ିବ ନାହିଁ, ଯୋ । ୩ ।
ମୋ ବୁଢ଼ୀ ଠାକୁରାଣୀ ଦୟା ବହୁଥିବୁ, ଯୋ
ମୋ ଡୁମାଳୁଣୀ ଅମୃତ ବରଷିବୁ, ଯୋ । ୪ ।
ମାଲେ ହାତକୁ ସୁବର୍ଣ୍ଣ ବାହୁ ଦେବୁ, ଯୋ
ମାଲେ କୋଳକୁ ସାତନନ୍ଦନ ଦେବୁ, ଯୋ । ୫ ।
ମାଲେ ଯୁଗେ ଯୁଗେ ରାଜୁତି କରାଇବୁ, ଯୋ
ମାଲେ ସୁଦୟା କରଥିବୁ, ଯୋ । ୬ ।
ମାଲେ ରାଜଦଣ୍ଡ ପଡ଼ିବ ନାହିଁ, ଯୋ
ମାଲେ ଯମଦଣ୍ଡ ପଡ଼ିବ ନାହିଁ, ଯୋ । ୭ ।
ମାଲେ ଘଣ୍ଟ ଢୋଡ଼େଇ ରଖିଥିବୁ, ଯୋ
ମାଲେ ଛତା ଅଡୁଆଳ କରି ରଖିଥିବୁ, ଯୋ । ୮ ।
ମାଲେ ଅଗୁଲ ପଛୁଲ ଜଗିଥିବୁ, ଯୋ
ମାଲେ ଧନ ସମ୍ପତ ଭରଦେବୁ, ଯୋ । ୯ ।
ମାଲେ ଖମାର ଅମାର ଭରଦେବୁ, ଯୋ
ମାଲେ ତୋଳି ଖରଡ଼ିଅ ପୂରେଇ ଦବୁ, ଯୋ । ୧୦ ।
ମାଲେ ଅମୃତ ଦୃଷ୍ଟିରେ ଚାହିଁଥିବୁ, ଯୋ
ମାଲେ ସର୍ବ ମଙ୍ଗଳ କରିବୁ, ଯୋ । ୧୧ ।

( ନରସିଂହପୁର )

## ୫ —ଗୃହେରୀ ଘଣ୍ଟ ଗୀତ

୧— କହଇ ନାଗରବର ରେ ସଖି ! କେଉଁ ସଜନୀ ଅଗର
( ଅରେ ସଖି )
କାଢ଼ିଲି ଓଢ଼ଣା, ହେଲି ପଥବଣା ଶ୍ୟାମବନ୍ଧୁ କଲେ ପର ରେ ।

୨— ଖଲକୁ ନାହିଁ ମୋ ଡର ରେ ସଖି ! ଖଟିବ ଚରଣେ ତାର
ଅରେ ସଖି ! ଖଟିବ ଚରଣେ ତାର ରେ
ଖସିଲା କଷଣି ଶରକ ଅମଇ ମୋ ମନ ହେଲାଣି ତାର ରେ ।

୩— ଜ୍ଞାନ ଧ୍ୟାନ ସବୁ ମୋର ରେ, ଗୋବିନ୍ଦ ନନ୍ଦ କୁମର
ଗୁପତ କରି କଥାଏ ପଚାରୁଛୁ ପାପକୁ ନାହିଁ ମୋ ଡର ।

୪— ଘେନିଥା ମନରେ ଏତେ ରେ ସଖି ଘୋର ଅରଣ୍ୟ ବନସ୍ତେ
ଘନଶ୍ୟାମ ଚନ୍ଦ୍ରମୁଖ ଗୃହୁଁ ଥିଲେ ବଇକୁଣ୍ଠ ସ୍ଥିର କେତେ ରେ ।

୫— ଚୂର୍ଣ୍ଣ କୁନ୍ତଳ ଆବୃତରେ ସଖି ଚନ୍ଦ୍ରବଦନା ମୋ କାନ୍ତ
ଚଉଦ ଭୁବନ ଲୋକ ଛଡ଼ାଇଲେ ଛାଡ଼ି ନ ପାରଇ ଚିତ୍ତ ରେ ।

୬— ଛଇଲ ଛବି ଛଟକ ରେ ସଖି ଛଡ଼ାଇଲା ମୋ ବିବେକ
ଛନ ଛନ ମନ ହୁଏ ଅବିଛନ୍ନ ଛାଡ଼ି ହୁଏ ଦକଦକ ରେ ।

୭— ଜଗମୋହନ ମନ୍ତ୍ର ରେ ସଖି ଜାଣନ୍ତି ମୁରଲୀଧର
ଜଗତରେ ଦ୍ରବି ପାଷାଣ ତରଳେ
ପାଣି ହୁଅଇ ପଥର ରେ ।

୮— ଝଟତ ପଲ୍ଲବେ ଦାରୁରେ ସଖି ଝଡ଼ି ପଡ଼ିବ କି ମେରୁ
ଝାମ୍ପୁଁ ଯାଇ ପକ୍ଷି ଉଡ଼ିଯାଇ ପଡ଼େ
କି ସ୍ଥିର ଅବଳା ଭୀରୁ ରେ ।

୯— ଟଳଇ ମେରୁ ମନ୍ଦରରେ ସଖି
ଟଳିବକି ବାଣୀ ମୋର
ଟମକ ନିଶାଣ ବାଜେ ତନି ପୁର
ରାଧା ହେଲେଣି କୃଷ୍ଣର ।

୧୦— ଠୁଳ ପୁରୁଷ ଉତ୍ତମରେ ସଖି
ଠିକେ ରସିକରେ ନାମ
ଠିକେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା
ବୋଲେ ହେବ ପୂର୍ଣ୍ଣ କାମ ।

୧୧— ଡୋଳା ଲଲାଟରୁ ଖସି ରେ ସଖି
ଡାକେ ମୁଖେ ଦେଇ ବଂଶୀ
ଡରିବା ପରିଯେ ମିଛେ ହେଉ ଥାଇ
'ମଲି' ଇସି ଇସି ବୋଲି ଭାଷି ରେ ।

୧୨— ଚଳ ଚଳ ଅସୂଥାଇ ରେ ସଖି
ତାଳ ନେଇ ଦଏ ଗୃହିଁ
ଅରେ ସଖି ତାଳ ନେଇ ଦଏ ଗୃହିଁ
ତମ ପଣ ଛାଡ଼ି କେହ୍ନେ ଧେନୁ ସିନା
ହେଲ ତାହା ସଙ୍ଗେ ବାଇ ରେ ।

୧୩— ଅଳପ ନୁହେଁ ତା ବେଣୀରେ ସଖି
ଅଖି ପକ୍ଷୀ ଅଠା ରସ
ଅନୁଭବ ଲୋକ ଛାଡ଼ି ନ ପାରନ୍ତି
ଯାଉ ପଛେ କୁଳ ନାଶ ରେ ।

୧୪— ତମାଳ ନୀଳ କୁନ୍ତଳ ରେ ସଖି
ତହିଁ ପରେ ଜାମୁଡାଳ
ତା ପରେ ମୟୂର ଚନ୍ଦ୍ରିକା ଖଞ୍ଜିଛି
ଲୋଟଣି କୁସୁମ ହାର ରେ ।

୧୫— ଥୋଇଛି ଗଣ୍ଠି ବସନରେ ସଖି
ଥିଲେ ଦେଖିବେ ମଦନ
ଥିବେ ଆଉ କେହ୍ନ ବ୍ରଜବାସିକୁଳେ
ଦେଖିବେ ଅଳପ ଦିନ ରେ ।

୧୬— ଦିବ୍ୟ ଅଳକା ମଣ୍ଡଳରେ ସଖି
ଦିବ୍ୟ ଗୁନ୍ଥା ମୋତିମାଳୀ
ଦୁଇ ଦିଗେ ଦିଶେ ଧାଡ଼ି ଧାଡ଼ି କଅ-
ପଳି ଧୈର୍ଯ୍ୟ ଦିଏ ଟାଳି ରେ ।

୧୭— ଧନ୍ୟ ତା ଚନ୍ଦନପାଟି ରେ ସଖି
ଧୈର୍ଯ୍ୟ ତରୁ ଦିଏ କାଟି
ଧୃତିରେ ଧରିବ ନ ଦେଖିଲେ ତାକୁ
ତ୍ରୁଟି ହୁଏ ଯୁଗ ଗୋଟି ରେ ।

୧୮— ନୟନେ ସରୁ ଅଞ୍ଜନରେ ସଖି
ନାଗର ଗର୍ବ ଗଞ୍ଜନ

ନୂଆ ନୂଆ ବାଙ୍କ ଗୁହାଁଣିକି ତାର
କି ଏ ନାହୁଁଆ ଗଞ୍ଜନ ରେ ।

୧୯— ପରଲଗି ଦେବ ପ୍ରାଣରେ ସଖି
ପତକା ବାନ୍ଧିବ ଜାଣ
ପୁରୁଣା ପ୍ରୀତିଆ ଥିଲେ କେ ପଗୁର
ପ୍ରୀତିର କେତେ ଲକ୍ଷଣ ରେ ।

୨୦— ଫନ୍ଦା ମୁଁ କରୁଛୁ ତାକୁ ରେ ସଖି
ଫେଡ଼ କହୁଛୁ ମନକୁ
ଫିଟିଲା ନାହିଁ ନାଦ ବ୍ୟାଜ ମନରୁ
କାମ ଶରେ ପୋଡ଼େ ବୁକୁ ରେ ।

୨୧— ମନା କରିଥିଲି ତୋତେ ରେ ସଖି
ମୁଁ ଏବେ, କହୁଛୁ ତତେ
ନିଜ ମନକୁ ତୁ ତୋହର ପଗୁର
କି ଶୁଭଇ ବଂଶୀ ଗୀତେ ରେ ।

**ଘଣ୍ଟଘୋଷା—** କଲର ପତର ତନ ତନଟା
ଗୋଟେ ମଧୁର ଯୋଡ଼େ ପିତା
ଯା ଯା ଘଣ୍ଟ ଯା ଯା । ୧ ।

ଯା ଯା ଘଣ୍ଟ ଯା ଯା
ନେଳିଆ ପୋଖରୀ ଗୋଲିଆ କର
ଯା ଯା ଘଣ୍ଟ ଯା ଯା । ୨ ।

ବାଙ୍କି ଉମପଡ଼ା ତପତ ଖେରେଡ଼
ବାଙ୍କି ଉମପଡ଼ା ତପତ ଖେରେଡ଼ । ୩ ।

( ନରସିଂହପୁର )

## ୭—ଚଇତ ପରବ ଗୀତ

ପୁରୁଷ—ଗାଅ, ଗାଅ, ମୋର ଗାଅକ ରତନ
ଗାଅ ତେବେ ଶୁଣି ଦେଖୁ ।
ତମର ଅମର ଏକାନ୍ତ ହେଲା
ପଦେ ପଦେ ଗାଇବାକୁ ।
ଚୁକ୍ତ ଯା' ରେ ଧାନ ! ଚୁକଲା ବେଳେ
ନ ମିଳବ ସବୁକାଳେ । ୧ ।

ପୁ— ଗୁଣମଣି ବୋଲ୍ ଡାକଲ୍ ତୋତେ
ଅଛ ବୃନ୍ଦାବଣା କଲ୍ ।
ବାଳୁତ କାଳର ଅମୂଲ୍ୟ ଡାକ
ପାଣିରେ ଭସାଇ ଦେଲ୍ ।
ଗମ୍ଭାର ଗଛରେ ଘୁଞ୍ଚିଲ୍ ପିଢ଼ା
ଝପ କର ଘଡ଼ ଭଡ଼ା । ୨ ।

ପୁ— ଅମେ ଦୁଇଜଣ ବଗୁର କଲ୍
ଗୀତ ଗାଇବାକୁ ଯିବୁ ବୋଇଲ୍
ଏଠି ଠିଅ ସେଠି ଠିଅ ।
ତମ ହାତେ ଅଛୁ ହୀରା ରତ୍ନ ମୁଦ
ଅମ ହାତେ ବେଠି ଦଅ ।
ଗାଇବାର ହେଲେ ଛଣକେ ଥିବୁ
ନଇଲେ ବାହୁଡ଼ ଯିବୁ । ୩ ।

ପୁ— କୁଡ଼ ତ କୁଡ଼କ ଚଠାଉ କୁଡ଼
ଖୋଦଲେ ନପାଏ ଉଡ଼ ।
ହଇବାର କୁଅ ନଇବାର କୁଅ;
ନଇଲେ ଯିବୁ ବାହୁଡ଼ ।
ହେବାର ହେଲେ ତ ହେବାର କର ।
ଝୁଲଇ ଆଉ ନ ମାର । ୪ ।

ପୁ— ବନ୍ଧୁ ବନ୍ଧୁ ବୋଲି ଡାକିଲି କେତେ
ବନ୍ଧୁ ତ ନ ଶୁଣେ କାନେ ।
କାହିଁକି ରେ ବନ୍ଧୁ ନ ଶୁଣୁ କାନେ
ଡାକୁଛି କେଡ଼େ ଧିଆନେ ।
ସରୁ ବାଲି ଫୁଲ ! ବାଦର ମୁହାଁ
ମର ବାଟେ ଥରେ ଗୁହାଁ । ୫ ।

ପୁ— ଗୃର ବ୍ରାଟେ ଧନ ମୁରୁଗା ବଣ
ଝପଟି ଅପିଲି ମୁଇଁ
କେତେ ଅକୁଲରେ ଡାକୁଛି ସଇ ।
ଦୟା କରବ କି ? ନାଇଁ ।
କଅଁଳ କାକୁଡ଼ି ଦୁଧର ସର ।
ମୁଆଁସ ନ ଭାଙ୍ଗ ମୋର । ୬ ।

ସ୍ତ୍ରୀ— କୋବାଟେ ଡାକିଲ କୋବାଟେ ଶୁଭିଲ
କୋବାଟେ ମେଲଣି ହେଲ ।
ମାନ୍ୟା ମୁରୁଗିକି କାଣ୍ଡ ବାଜିଲ
ମୋ ବନ୍ଧୁ ପର ଲାଗିଲ ।
ଏବେ ମୁଁ ଶୁଣିଲି ବନ୍ଧୁର ଡାକ ।
ଛୁଡ଼ିଗଲା ଶୋଷ ଭୋକ । ୭ ।

ପୁ— ଜୟ ତୁ କମଲା ଜୟ ତୁ ବିମଲା
ଜୟ ଜୟ ମା ସାରୁଳା ।
ଦେବୀ ନାମ ଧରି ଗୀତ ଗାଇବ
ସୁସରେ ଫିଟୁ ମୋ ଗଳା ।
ସବୁ ଠାରେ ଅଛୁ ମା ଠାକୁରାଣୀ ।
ପଦ ଦିଅ ଗଣି ଗଣି । ୮ ।

ସ୍ତ୍ରୀ— କଞ୍ଚା ଦୁଧ ଝାଇ ଦୁଲାର ଦେଇ
ଅଲପ ଦିନର କଥା ।

ଶିଳ ଫାଟିକର ଜାତ ହୋଇଛୁ
ବୁଢ଼ୀ ଠାକୁରାଣୀ ମାତା ।
ବୁଢ଼ୀ ଠାକୁରାଣୀ ବଗସେ ନେତା
ବାଗସିଲେ ବର ଦେତା । ୯ ।

ପୁ— ସକାଳୁ ଉଠିଲ ମର୍ଦ୍ଦନ ଚଢ଼ିଲ
ମାଇଲ ଧଅଁଡ଼ା ଭେଲ ।
କାଳିଆ କୁକୁଡ଼ା ମୁଗୁନ ଛେଳି
ଧାରଣୀ ମାଅକୁ ଦେଲ ।
ଧାରଣୀ ମାଅକୁ ଶରଣ ଗଲ ।
ବଦେଶେ ବୁଲବ ବୋଲ । ୧୦ ।

ସ୍ତ୍ରୀ— ତମେ ସ୍ମରଲ ଦେବୀ ଦେବତା
ଅମେ ସୁମରବୁ କା'କୁ ।
ଜୟପୁରେ ଅଛୁ ନନ୍ଦଅ ବଳଦ
ଅମେ ସୁମରବୁ ତାକୁ ।
ଦେବତା ଅସନେ ଚକନେ ଘିଅ ।
କୋଇଲର କଣ୍ଠ ଦିଅ । ୧୧ ।

ପୁ— ବାଅଁଠା ବାଅଁଠା ବଦ ବାଅଁଠା
ବାଅଁଠା ଉପରେ ଶଶୀ ।
ଗାଅଁର ଦେବତା ବଜେ ହୋଇଲୁ
କାଠ କୁରୁଶରେ ବସି ।
ଯେତେ ଦୁଃଖୀ ସୁଖୀ ଶରଣ ଗଲେ
କାଠ କୁରୁଶର ଉଲେ । ୧୨ ।

ସ୍ତ୍ରୀ— ଅମର ଗାଅଁର ମାଳ ଖମାଣି
ମାଇଲୁ ବାସ ଚନ୍ଦନ ।
ଛନ୍ଦନୀ ଗାଇଲୁ ବନ୍ଦନୀ ଗାଇଲୁ
ଛୁଉଁଲୁ ଦେବୀ ବଦନ ।
ଉଚ୍ଛୁଣାର ଫିର କ ରଙ୍ଗେ ଝୁଲେ ।
ତମ ବାଟେ ମନ ଭୁଲେ । ୧୩ ।

ସ୍ତ୍ରୀ— ଜେଠ ଗୃରମାସ ଦୁଧୁଲି ମାଲି
ଓଗାଁଳ୍ଟି ରାଇଜେ ଥିଲା ।
ଆମ ବାବୁ ଲୋକ ଛୁଡ଼ି ପଡ଼ିଲା
ଆମେ ଭାରବାର ବେଳା ।
ଭଲରେ ଦଇବ ଭେଟାଇ ଦେଲା ।
ଲେଖନ କପାଳେ ଥିଲା । ୧୪ ।

ପୁ— ଚକମା କରକଟି ବୋଦାପୁର ଘାଟି
ଗୁଡ଼ା ବାଲସାରେ ଥିଲି ।
ତମର ବଚନ ଶୁଣିବାକୁ ସଇ
ବେସର୍ ଛୁଡ଼ା ଛୁଡ଼ଲି ।
ଆମ ଫଳଗଲା ଏକଠା ଜମେ ।
ଭାଗ୍ୟରୁ ମିଳିଲୁ ଆମେ । ୧୫ ।

ସ୍ତ୍ରୀ— ପାଚଲା ଆମ୍ବ କି ଗଛ ଉପରେ
ବାଆ କଲେ ଝଁଡ଼ିପଡ଼େ ।
ଆମ ବାବୁ ଲୋକ ଛୁଡ଼ି ପଡ଼ିବାରୁ
ଖାଁଡରେ ନିଦ ନ ମାଡ଼େ ।
ଝିପା ସିନ୍ଧ କୋଳି ଢେନା କେ ପାଚେ ।
ତମବାଟେ ଅକି ଆଚେ । ୧୬ ।

ପୁ— ପାଚଲା ଆମ୍ବ କି— ରାଜ ମୋହନୀ
ତଳରୁ ମାଇଲୁ ଠେକା ।
ଆମ ବାବୁ ଧନ ଛୁଡ଼ି ପଡ଼ିଲୁ
ଅଲପ ଅନାଇ ଦେଖା ।
କେବେ ନ ଛୁଡ଼ିଲା ଆମର ଭୁକ
ମନଠା ନୋହିଲା ସୁଖ । ୧୭ ।

ସ୍ତ୍ରୀ— ଚାକମା କୁରୁଟି ବୋଦାପୁର ଘାଟି
ମାଣ୍ଡିଲି ଚକଠା ମାଟି ।

ତମେ ବାବୁ ଧନ                    ଛୁଡ଼ ପଡ଼ିଲ
ଖଲସେ ଧରିବ ଅଣ୍ଟି ।
କ ପଡ଼ା ପଡ଼ିଲ ମୁଣ୍ଡା ଫୁଟାଣେ ।
ଅସୁଥିଲ ଆମର ଘିନେ । ୧୮ ।

ସ୍ତ୍ରୀ— ଝିଲ୍ ଝାଲ କଲ                    ମିଲ୍‌ମାଲ କଲ
ପିଆଲ ପଡ଼ିଲା କଲ
ତୁମର ବଚନ                    ଶୁଣିବାରୁ ସ୍ୱର
ସାଙ୍ଗେ ମନ ଗୋଡ଼ାଇଲ ।
ଢୁକ ଯା'ରେ ବାବୁ ଢୁକିଲ ବେଳେ
ନ ମିଳବ୍ ହବୁ କାଳେ । ୧୯ ।

ପୁ— କଣ୍ଠା ବାଉଁଶକୁ                    କାଟିଲୁ ସଲ
ସେନ୍ଦୁର ପଡର ତେଲ ।
ତମର ତୁଣ୍ଡରୁ                    ବଚନ ଶୁଣି
ସଙ୍ଗେ ମନ ଗୋଡ଼ାଇଲ ।
ଗୋଟାକେ ମଷାକେ ବାରଟା ତେଲ୍,
ହାତ ଧରାଧର ବୁଲ୍ । ୨୦ ।

ସ୍ତ୍ରୀ— ଗାତ ପୋଲ ଘଡ଼                    ସପନ ସୁନ୍ଦରୀ
ଦବସେ ମାରଇ ପାଣି
ଆମ ଗାଆଁଠାରୁ                    ଛୁଡ଼ ପଡ଼ିଲ
ତମର ବଚନ ଶୁଣି
ନ ଥାଇ ଛାଡ଼ିଲ ଦନାର ଭାତ,
ତମର ଉପରେ ହେ ତ । ୨୧ ।

ପୁ— ଶିଖ ପରବତେ                    ଲଗିଲା ଜୁଇ
ଲଭାଇଲେ ଲଭେ ନାହିଁ ।
ଆମ ବାବୁଧନ                    ଆସିବ ବୋଲି
ଜଗି ବସିଥିଲ ମୁହିଁ ।
ମର ପ୍ରାଣବନ୍ଧୁ କୋବାଟେ ଥିଲ,
ଜଲଦ ଛୁଡ଼ା ଛୁଡ଼ିଲ । ୨୨ ।

ସ୍ତ୍ରୀ— ଚିତର କାବେରୀ ମୁଣ୍ଡର ଗାଈ
ପାହାରେ ପଶିଲା ସାଇଁ ।
ତମର ବଚନ ଶୁଣିବାକୁ ସଇ
ଛୁଡ଼ି ପଡ଼ୁଥିଲି ମୁଇଁ ।
ଡୋଲମାଇ ଘରେ ଚନ୍ଦର ବଥା ।
ଜୁହାର ଦେବୀ ଦେବତା । ୨୩ ।

ପୁ— ଉବା ଡାବ କଲା ଧୂମଧାମ କଲା
ଭଜେ କଲେ ସରସତୀ,
ଦେବୀ ନାମ ଧରି ଗାଆନ କରିବ
ସାହା ହୁଅ ପାରବତୀ ।
ଦେବୀ ଜୁହାରୁଣୀ ଏତକ ଥାଉ
ରସବଷ ଗୀତ ଗାଉ । ୨୪ ।

ସ୍ତ୍ରୀ— କାର୍ତ୍ତିକ ମାସରେ ମୂଷା ଚୁଟିଆ
ଦଶରା ମାସର କାଉ ।
ଦେବୀ ଜୁହାରୁଣୀ ଏତକ ଥାଉ
ରସବଷ ଗୀତ ଗାଉ ।
ରସବଷ ଗୀଛ ତୁଣ୍ଡରେ ଯୋଡୁ ।
ବସିଲା ଲୋକକୁ ଜଡୁ । ୨୫ ।

ପୁ— ଗାଇବା କନ୍ଦସୀ ଶୁଣି କାନ ଡେରି
ମୋହନ ମୁରଲୀ ନାଦେ
ଶୁଣିବୁ ବୋଇଲେ କହିବୁ ଆମେ
ରସ ବଷ ପଦେ ପଦେ ।
ଏବେ ସେ ଦେଖିଲି ବନ୍ଧୁର ମୁଖ
ଛାଡ଼ି ପଳାଇଲା ଦୁଃଖ । ୨୬ ।

ସ୍ତ୍ରୀ— ଆମ ଗାଆଁର ଯେ ଗଡ଼ଆ ଜଡ଼ି
ପାଣି ଯାଏ ଗଡ଼ି ଗଡ଼ି ।

ଭମର ଭୁଣ୍ଡର ବଚନ ଶୁଣି
ଅଇଲ୍ ଆଦର ପଡ଼ି ।
କୋ'ପଡ଼ା ପଡ଼ିଲ୍ ବାଘର ତଳେ ।
ମରିଗଲ୍ କଲବଲେ । ୨୭ ।

ପୁ— ଆମ ଗାଁଅର ଯେ ତଇଲ୍ କଡ଼ି
ପାଣି ଯାଏ ଛୁଡ଼ି ଛୁଡ଼ି ।
ଆମର ଭୁଣ୍ଡରୁ ବଚନ ଶୁଣି
ଅଇଲ୍ ଆଦର ପଡ଼ି ।
କୋ ପଡ଼ା ପଡ଼ିଲ ମୁଣ୍ଡା ପୁଟାଣେ
ଅସୁଥିଲ ଆମର ଘିନେ । ୨୮ ।

ସ୍ତ୍ରୀ— ଝିନ୍ ଝାଲ କଲ୍ ମିଲ୍‌ମାଲ୍ କଲ୍
ପିଅଲ ପଡ଼ିଲ୍ କଲ୍
ଭୁମର ବଚନ ଶୁଣିବାରୁ ସର
ସାଙ୍ଗେ ମନ ଗୋଡ଼ାଇଲ୍
ତୁକୁଯା'ରେ ବାବୁ ତୁକୁଲ୍ ବେଳେ
ନ ମିଳବ ସବୁକାଳେ । ୨୯ ।

ପୁ— କଣ୍ଠା ବାଉଁଶକୁ କାଟିଲୁ ସଲ୍
ସେନ୍ଦୁର ପତର ତେଲ୍
ଭମର ଭୁଣ୍ଡରୁ ବଚନ ଶୁଣି
ସଙ୍ଗେ ମନ ଗୋଡ଼ାଇଲ୍
ଗୋଟାକେ ମୁଷାକେ ବାରଟା ଟେଲୁ
ହାତ ଧର୍‌ଧର୍ ବୁଲୁ । ୩୦ ।

ସ୍ତ୍ରୀ— ଗାଭ ଷୋଳଘଡ଼ି ସପନ ସୁଦେଶୀ
ଦବସେ ମାରଇ ପାଣି
ଆମ ଗାଁ ଠାରୁ ଛୁଡ଼ି ପଡ଼ିଲ୍
ଭମର ବଚନ ଶୁଣି
ନ ଖାଇ ଛାଡ଼ିଲ୍ ଦନାର ଭାତ
ଭମର ଉପରେ ହେ ତ । ୩୧ ।

ପୁ— ସାତ ଷୋଳଘଡ଼ି ବରଷିଲା ପାଣି
ଝିଙ୍କିର କାନ୍ଦିଲା ପରି
ତମର ତୁଣ୍ଡରୁ ବଚନ ଶୁଣିଲେ
ଅମୃତ ଭୁଞ୍ଜିଲା ପରି
ନ ଖାଇ ରହିଲି ଦନାର ଶାଗ
ଆଜ ମିଳିଗଲା ପାଗ । ୩୨ ।

ସ୍ତ୍ରୀ— ଶିଖି ପରବତେ ଲାଗିଲା ଜୁଇ
ଲିଭେଇଲେ ଲିଭେ ନାହିଁ
ଅମ ବାବୁଧନ ଆସିବ ବୋଲି
ଜଗି ବସି ଥିଲି ମୁହିଁ
ମର ପ୍ରାଣବନ୍ଧୁ କୋବାଟେ ଥିଲା
ଜଳଦ ଛୁଡ଼ା ଛୁଡ଼ିଲା । ୩୩ ।

ପୁ— ଚଇର କାବେରୀ ମୁଣ୍ଡୁର ଗାଈ
ପାହାରେ ପଶିଲା ସାଇଁ
ତମର ବଚନ ଶୁଣିବାକୁ ସଇ
ଛୁଡ଼ି ପଡ଼ୁଥିଲି ମୁହିଁ
ଉଲୁଣାର ପିଠ କରଙ୍ଗେ ଝୁଲେ
ତମ ବାଟେ ମନ ଭୁଲେ । ୩୪ ।

ସ୍ତ୍ରୀ— ଜେଠ ଗୁରମାସ ଦୁଧୁଲି ମାଲ
ଓଗାର୍ଣ୍ଣୀ ହଇଜେ ଥିଲା
ଅମ ବାବୁ ଲୋକ ଛୁଡ଼ି ପଡ଼ିଲା
ଅମେ ଭାବବାର ବେଳା
ଭଲରେ ଦଇବ ଭେଠାଇ ଦେଲା
ଲେଖନ କପାଲେ ଥିଲା । ୩୫ ।

ପୁ— ଚକମା କିରକିଟି ବୋଦାପୁର ଘାଟି
ଗୁଡ଼ା ବାଲସାରେ ଥିଲି

ତମର ବଚନେ    ଶୁଣିବାକୁ ସଇ
ବେସର ଛୁଡ଼ା ଛୁଡ଼ିଲି
ଆମ ଫଳିଗଲା ଏକଠା କମେ
ଭାଗ୍ୟରୁ ମିଳିଲୁ ଆମେ । ୩୬ ।

ସ୍ତ୍ରୀ— ପାଚଲା ଅମ୍ବ କି    ଗଛ ଉପରେ
ବାଆ କଲେ ଝଡ଼ି ପଡ଼େ
ଆମ ବାବୁ ଲୋକ    ଛୁଡ଼ି ପଡ଼ିବାରୁ
ରାତିରେ ନିଦ ନ ମାଡ଼େ
ଝିଁପା ସିନ୍ଦକୋଳି ଘେନାକେ ପାରେ
ତମ ବାଟେ ଅକ୍ଳ ଅଚେ । ୩୭ ।

ପୁ— ପାଚିଲା ଅମ୍ବ କି    ରାଜ ମୋହ୍ନୀ
ଛଳରୁ ମାଇଲୁ ଠେକା
ଆମେ ବାବୁଧନ    ଛୁଡ଼ି ପଡ଼ିଲୁ
ଅଲପ ଅନାଇଁ ଦେଖା
କେବେ ନ ଛାଡ଼ିଲା ଆମର ଭୁକ
ମନଟା ନୋହିଲା ସୁଖ । ୩୮ ।

ସ୍ତ୍ରୀ— ଚକମା କୁରୁଟି    ବୋଦାପୁରୁ ଘାଟି
ମାଣ୍ଡିଲି ଚକଠା ମାଟି
ତମେ ବାବୁଧନ    ଛୁଡ଼ି ପଡ଼ିଲ
ଖେଲିସେ ଧରବ ଅଣ୍ଟି
ଆସ ବାବୁଧନ ଧରିବି କୋଳେ
ଚୁମା ଦେବି ଦୁଇ ଗାଲେ । ୩୯ ।

ପୁ— ଦରା ବୁଣି ଦେଲା    ଛିଲା ଗୁଙ୍ଗଡ଼ା
ପରଜା ବୁଣିଲା ଧୁଣ୍ଡି
ତମର ବଚନ    ଶୁଣିବାକୁ ଗର
ଜୀବନ ହେଉଛୁ ଘାଣ୍ଟି
ଅଣ୍ଡ୍ରାଳି ପୋଠାଳି ଧରିବେ କୋଳେ
ତମର ସୁନ୍ଦମ୍ବା ଥିଲେ । ୪୦ ।

ସ୍ତ୍ରୀ— ସୁନ୍ଦର ବାଉଁଶ ଫୁଟିଲା ଠୋଅ
କାଇଁ ବାଉଁଶର ସର
ସୁନାର ବଚନ ମୁହିଁ ଦେଉଛୁ
ଜୀବନ କରିବେ ଥିର
ତମଙ୍କୁ ଦେଖିଲି ମୋ ପ୍ରାଣଧନ
ମନ ହୁଏ ଛନ ଛନ । ୪୧ ।

ପୁ— ପର୍ବତ ଉପରେ ପଥର ଘର
କଣ୍ଟାବତା ଜର ଜର
ପାଖେ ରଇ କରି ବନେ ନାଇଲେ
ଜୀବନ ନ ହୁଏ ଥିର
ଉବର ପାଣିକ ଝେଣକ ସୁଖେ
ତମ ବାଟେ ମନ ଭୁକେ ।୪୨।

ସ୍ତ୍ରୀ— ଗୁରିଆଡ଼େ ଘାଇ ମୁରୁଗା ଲଗାଇ
ଶୁଣି ଶୁଣି ପ୍ରାଣ ସଇ
ବିକଳ ମନକୁ ଥିବିର କରି
କହୁଅଛୁ କାନ୍ତ ! ମୁହିଁ
କ କରି ମରିବ କପାଳ ଘଟି
ସୁନାକୁ ଧଇଲେ ମାଟି ।୪୩।

ପୁ— ଅସ ଅସ ମୋର କଏ ସୁନ୍ଦରି
କହ କାନ୍ତା ମନ ଫେରି
ବିକଳ ଜୀବନ ଥିବିର କଲେ
କଏ ନ ପାରିବ ଧରି
ଶୁଣିଲେ କଇବ ମୋ ଜନଧନ
ଥିବିର କରି ଜୀବନ । ୪୪ ।

ସ୍ତ୍ରୀ— ଶୁଣ ଶୁଣ ମୋର ଏ ଚମ୍ପା ଗୋରି
ଗଳାର ରତନ ହାରି

ଉହ୍ଲ ବିକଳ　　　　ଲାଗିଲା ସରି କି
ଜୀବନ ଅଥିର କରି ।
ଗରି ଧନ ମୋର କହୁଛି ମୁହିଁ
ଥୟ ହୋଇ ରହ ତୁହି । ୪୫ ।

ପୁ— ମନର ଭିତରେ　　　　ହୃଦୟ ପୋଡୁଛି
କି ବଲି କହିବି ମୁହିଁ
ପଞ୍ଚ ପ୍ରାଣପାଖି　　　　କାନ୍ଦି ଯାଉଛି
ବଞ୍ଚାଇ ରଖିବୁ ସଖି
ଦେଖି ପ୍ରାଣସଖି ଭାସିଲୁ ଜଳେ
କି ବୁଦ୍ଧି କରିବୁ ଆଲେ । ୪୬ ।

ସ୍ତ୍ରୀ— ହରିକଥା ଛାଡ଼ି　　　　ବିଷୟାରେ ପଡ଼ି
ହୃଦୟ ହେଉଛି ଧନ୍ଦ
ପଞ୍ଚ ପରାଣକୁ　　　　ବଞ୍ଚାଇ ରଖିବ
ଦୟାକର ଗୁଣନିଧି
କି କରି ମରିବ କପାଳ ହୀନ
କାନ୍ଦୁଛି ପଞ୍ଚପରାଣ । ୪୭ ।

ପୁ— କେତେ ତପସ୍ୟାରୁ　　　　ମନୁଷ୍ୟ ଜନମ
ମଞ୍ଚରେ ହେଉଛି ଜାତ
ଏଇ ମଞ୍ଚପୁରେ　　　　କି ପାପ କଲି
ସପନେ ନୋହିଲା ଭେଟ
ଛତା ଅମ୍ବଗଛେ ମୟୂର କେକେ
ତମ ବାଟେ ମନ ଡୁଙ୍କେ । ୪୮ ।

ସ୍ତ୍ରୀ— କେତେ ତପସ୍ୟାରୁ　　　　ମନୁଷ୍ୟ ଜାତି
ଏ ଜନ୍ମରୁ ଜନ୍ମ ନାହିଁ
ତମର ଆମର　　　　ଏକାନ୍ତ ହେଲେ
ବଞ୍ଚାଇ ରଖିବି ମୁହିଁ
ନାହିଁ ନ କର ରେ ମୋ ଗରିଧନ
ଉଚ୍ଚାଟ କର ଜୀବନ । ୪୯ ।

ପୁ— କା ଯମ ଗଢ଼ିଲା ଯତନ କରି
ନୟନ ଦେଉଚ ଠାର
ଜୀବନ ପରାଣ ଉଡ଼ି ଯାଉଛି
କାଏ ନ ପାରିବେ ଧରି
ତୃଣ ଲଗି ନାଲି କକଡ଼ ଶାଗେ
ଘମଣ୍ଡ ଚମନ ଲଗେ । ୫୦ ।

ସ୍ତ୍ରୀ— ରତନକୁ ପିନା ଯତନ କରିବ
ମ ପାଖେ ରହିଲେ ପିନା
ପଞ୍ଚ ପରାଣକୁ ବଞ୍ଚାଇ ରଖିବ
ମନେ ନ କର ଭାବନା
ତୁ ତ କୋଳକୁଠା ବାସନୀ ଘର
ବଞ୍ଚାଇ ରଖିବ ମୁଇଁ । ୫୧ ।

ପୁ— ଆଉଛି ଖୋଲପ ଯାଉଛି ବହି
ତନା ଗୁର ଧାର ହୋଇ
ଏଇ ଯୁବା କାଳେ ଯତନେ ଧରିଲେ
ଭଲର ଭୁଲନ୍ତ ମୁଇଁ
ଏଇ ଆମ ସମ ଭେଣ୍ଡିଆ ବେଳେ
କେ ଆଉ ଧରବ କୋଳେ । ୫୨ ।

ସ୍ତ୍ରୀ— ବେଣାସ ଉଡ଼ିଲା ଫର ଫର ହୋଇ
ଲଟି ଉଡ଼ଗଲା ଚୁଟି
ତ' ପରି ଧନଟି ମ' ପାଖେ ଥିଲେ
କେଣେ ପଠାଇବି ନାଇଁ
ପତର ପେଣ୍ଡାକୁ ବାନ୍ଧିଲୁ ରଙ୍ଗେ
ତୋତେ ଧରିଥିବ ସାଙ୍ଗେ । ୫୩ ।

ପୁ— କାଣ୍ଡ ଗଲା ସୁଇଁ ପକ୍ଷୀ ଗଲା ସାଇଁ
ଗଛେ ବସେ କୋଳଖାଇ

ଆମ ପର ଲୋକ　　ତମ ପାଖେ ଥିଲେ
କେଣେ ପଠାଇବ ନାଇଁ
ଆମ ବନ୍ଧୁଲୋକେ ବେସ୍ ଜାଣେ
ହେତୁ ମଡ଼ଗଲା ମନେ । ୫୪ ।

ସ୍ତ୍ରୀ— ଗୁଣିକ ରତନ　　ମୋ ଗର୍ ଧନ
ଶୁଣ ଶୁଣ କଥା ଦୁଇ
ତ ପର୍ ଗର୍ଖି　　ମ ଘରେ ଥିଲେ
ବୁଲାଇ ବୁଲନ୍ତ ମୁଇଁ
ସିଅଲ ପତର ସିଇଁଲୁ ଦନା
ମ ପାଖେ ରଇଲେ ସିନା । ୫୫ ।

ପୁ— କୁକୁଡ଼ା ମାଇଲୁ　　ବେତ କର ମାଇ
ମାଉଁସ କାଟିଲୁ ଲଇ
ତମପର ଲୋକ　　ଆମ ପାଖେ ଥିଲେ
ଆହୁର ଖୋଜନ୍ତ ନାଇଁ ।
ପାଣି ମର ଗଲା ଝକର ଝାଇଁ ।
ତୋ ବିନା ଖୋଜବ ନାଇଁ । ୫୬ ।

ସ୍ତ୍ରୀ— ଆମ ମୁଣ୍ଡି ଗୁଡ଼ା　　ରତନ ଗୁଇ
ତ ପର୍ ଗର୍ଖି ନାଇଁ ।
ତ ପର୍ ଗର୍ଖି　　ମ ପାଖେ ଥିଲେ
କୁଲିକ ପଠାନ୍ତ ନାଇଁ
ଆସ ଗର୍ଧନ ମ ପାଖେ ବସ
ଶିଖାଇବ ରସ ବଷ । ୫୭ ।

ପୁ— ଅଟାଲେ ଚଢ଼ିଲା　　ଟଡଲ ମାଛ
ପାହାରେ ପଶିଲା ଗୋଇ
ତମ ପର୍ ବନ୍ଧୁ　　ମ ପାଖେ ଥିଲେ
କୁଲିକ ପଠାନ୍ତ ନାଇଁ
ଡେଣ୍ଡ୍କା ଚଢିଲା ଏକଟା ଗଛେ
ଯାହା ହେଲେ ହେଉ ପଛେ । ୫୮ ।

ସ୍ତ୍ରୀ— ଇନ୍ଦ୍ରାବତୀ ନଈ ଯାଉଅଛୁ ବହି
ତନ୍ତ୍ର ଗୃହ ଧାର ହୋଇ
କୁଳକୁ ନ ଗଲେ ମୋ' ସୁନା ଧନ
ଶରଧା ହୁଅନ୍ତ ମୁହିଁ
ଖାଣ୍ଡି ବୋଡ଼ା ତଳେ ଚୁନର କୁଇଁ
ଶରଧା ହୁଅନ୍ତ ମୁହିଁ । ୫୯ ।

ପୁ— ମଇଷୀର ନାମ ରତନ ଗାଇ
ମ'ଘରେ ଘରୁଣୀ ନାହିଁ
ତ'ପରି ଗରଖି ମ'ଘରେ ଥିଲେ
ରହିଥାନ୍ତ ସୁଖି ହୋଇ
ସତେ କି ଦଇବ ଏହା କହିବ
କରମରେ ଲେଖାଥିବ । ୬୦ ।

ସ୍ତ୍ରୀ— ଆମ ଜୟପୁର ଅତି ସୁନ୍ଦର
ଲାଗୁଛୁ ଯୋଡ଼ା ଲନ୍ତର
ତ'ପରି ଗହଣି ମ'ଘରେ ଥିଲେ
ଅଧିକ ଶରଧା ମୋର
ଆସ ଆସ ଧନ । ପ୍ରୀତି କରିବା
ଶରଧାରେ ମାତି ଥିବା । ୬୧ ।

ପୁ— ଜୟପୁର ଲଗେ ଜୟ ନଗର
ସିଂହପୁରେ ଲଲ ଘର
ମ'ର ସଙ୍ଗେ ଧନ ପୀରତି କଲେ
ତତେ ନ କରିବି ଦୂର
କାହିଁକି ରେ ଧନ ବିରସ ମନ
ମୁଁ ଅଛୁ ତୋ ଗୋବିଧନ । ୬୨ ।

ସ୍ତ୍ରୀ— ଶିରି ପରବତେ ମାଲ ଚକର
ବାଉମାରେ ପୀର ପୀର

ଉମର ଅମର ଏକାନ୍ତ ହେଲେ
ଦଶନ୍ତା ବଡ଼ ସୁନ୍ଦର
ଛୁଁରେ ଜୀବନ ନ ରହେ, ମନ
ଉଡ଼ୁଛି ପଞ୍ଚ ପରାଣ । ୬୩ ।

ପୁ— ତୋତେ କି ଅଜଣା ? ସଂସାର ଭାବନା
ଅନ୍ତର କହୁଛି ମତେ
ଏହି ଯୁବା କାଳେ ସଂସାର ଲାଗୁଛି
ଜୀବ ଯିବା ପରଯନ୍ତେ
ଲାଗିଲା ପୀରତି ନ ଛାଡ଼େ ବେଗି
ସଂସାରେ ରହୁଛି ଲାଗି । ୬୪ ।

ସ୍ତ୍ରୀ— ଝାଲୁଅ ମୟୂର ଝାଲୁଠା ସୁନ୍ଦର
ଅଡ଼କ ଚହଲ ଖତେ
ତମେ ଅମେ ଆସ ପ୍ରୀତି କରିବା
ଜୀବ ଥିବା ପରଯନ୍ତେ
ଆସ ବାବୁଧନ ! କେଳି କରିବା
ହସି ମାତି ଧନ ନେବା । ୬୫ ।

ପୁ— କୁମ୍ଭଣ୍ଡା ଚେରିଲା ଗୋବର ଖତେ
ମାଳଗଲା ପରବତେ
ଉମର ଅମର ଲାଗୁ ପୀରତି
ଜୀବ ଥିବା ପରଯନ୍ତେ
ମରିଯିବା ଧନ ଉମର କୋଳେ
ଝୁମ ଝୁମ ନାଦ ବେଳେ । ୬୬ ।

ସ୍ତ୍ରୀ— ଶୁଣ ଶୁଣ ମୋର କୁନ୍ଦନ ଗୋରୀ
ଆକାଶେ ଘୋଟିଲା ମେଘ
ଉମର ଅମର ଲେଖା ରହିଲେ
ପୀରତରେ ଥାଉ ଭୋଗ
ଜାଣିଥିଲେ ଧନ ! ମନର ଭାବ
କପାଳ ବହିଲେ ହେବ । ୬୭ ।

ପୁ—   ରାତି ଖୋଲ ଘଡ଼ି   ସପନ ସୁନ୍ଦରୀ
ଦରବେ ମାରଛ ପାଣି
ଏହି ଯୁବା କାଳେ   ପୀରତି ଲଗିଲେ
ସେ ଏକା ଗୁଣର ମଣି
ଖରା ଛେକ ଛେକ ମାରିଲା ପାଣି
ଜାଣି ଢେବେ ଗୁଣମଣି । ୬୮ ।

ସ୍ତ୍ରୀ—   ଛାୟା ଦରପଣ   ମୋ' ଗୋରା ଧନ
ମନ ହୁଏ ଛନ ଛନ
ତମର ଆମର   ପୀରତି କଲେ
କାଳଯାକ ଯାଉ ଦିନ
କି କରି ମରିବା   କରମ ହୀନ
ମନ ହୁଏ ଛନ ଛନ । ୬୯ ।

ପୁ—ଉଦଲ ରେ ଧନ   ଦଶରା ଜନ
ଘରେ ଖାଇ ପରେ ମନ
ତମେ ଲଗାଉଛ   ମାୟା ପୀରତି
ହେତଲେ ନ ଯିବ ଦିନ
ଗୋଟାକେ କୁନ୍ଦକେ ଗୋଟିଏ ଯିବ
କାଇ ମତେ ମୁରୁଛିବ । ୭୦ ।

ସ୍ତ୍ରୀ—   ଉଦଲରେ ମୋର   ଦଆଳି ଜହ୍ନ
ଘରେ ଖାଇ ପରେ ମନ
ତମର ଆମର   ପୀରତି କଲେ
ହଁଶୟ ଲଗୁଛି ମନ
ବାଟରେ ଦେଖିଲି   ଏକଟା ଉମ
ତମର ଗୁରୁ ଧରମ । ୭୧ ।

ପୁ—   ପାଣି ମରଗଲା   ଝୁକାର ଝାଇଁ
ମୁନ୍ଦିଙ୍ଗା ଧଇଲା ଚୁଇଁ

ତମର ଆମର                    ପୀରତ ଲଗିଲେ
ଛାଡ଼ିବାକୁ ମନ ନାହିଁ
ବାଉଳି କୁମ୍ଭୁଣ୍ଡା ବକଲ ଉତା
ତମେ ବସୁରବା କଥା । ୭୨ ।

ସ୍ତ୍ରୀ— କୁସୁମ କୁସୁମ                    କେଳି କୁସୁମ
ପୀରତ ଲଗିଲେ                    ବଡ଼ ବଷମ
ବାହୁ ଭଡ଼ାଭଡ଼ ସନ୍ଧ
ତୁମର ଆମର                    ଏକାନ୍ତ ହେଲେ
ପୀରତରେ ହେବା ବାନ୍ଧ
ମାଣେକ ଧାନକୁ ଅଡ଼େକ ତର
ଲଗି ଯାଉ ଝପ କର । ୭୩ ।

ପୁ— ଆମ ଜୟପୁର                    ଯୋଡ଼ାଏ ନଦୀ
ମାଙ୍କଡ଼ ଡେଇଁଲା ଖେଦ
ତମର ଆମର                    ପୀରତ ନାହିଁ
ମାୟାରେ ହୋଇଲୁ ଧନ୍ଦ
ବାଉ ପାଣି ମାରି ଛେକଲା ଖରି
ହାତେ ଧରିଲା ପରି । ୭୪ ।

ସ୍ତ୍ରୀ— ଇଟାର ଘରକେ                    ଝିକର ଘର
ଲଗିଛୁ ଚୁନ କରାଲ
ତମର ଆମର                    ବଅତ ଥିଲେ
ଝୁରି ଝୁରି ମରବାର
ଛତା ଆମ୍ବ ପରେ ମୟୂର ଜକେ
ମ' ଦୟା ରହିବ ତକେ । ୭୫ ।

ପୁ— ଆମ ଜୟପୁର                    କଟେର ଘର
ଚମ୍ପା ଫୁଲ ଭାର ଭାର
ତମର ଆମର                    ପୀରତ ଲଗିଲେ
କେଉଁପର ବଞ୍ଚିବାର
ଶୁଖିଲା ବାଉଁଶ ଫୁଟିଲା ଠୋଅ
କପର ବଞ୍ଚିବା କହ । ୭୬ ।

ସ୍ତ୍ରୀ— ନବଘନ ଧନ ନବ କାଳିଆ
ଦୂରକୁ ଦଶଇ ତୋର
ଉମର ଅମର ପୀରତ କଲେ
ମୁକୁତା ଗୁନ୍ଥିଲ ପର
ରମଣୀ ଦୁମୁଦା କୁଳର ଦେବୀ
ନତ ରସେ ବସିଥିବ । ୭୭ ।

ପୁ— ଗଭରେ ବୁଣିଲ ବାସୁ ଭଣ୍ଡା ଧାନ
ତହିଁରେ ଭରିଲ ଝର
ହାତରେ ଧରଲ ପର କହୁଛୁ
ଘରର ଘରଣୀ ପର
ମଧ୍ୟେଯିବ ଧନ ତୁମର କୋଳେ
ପୀରତ ଲଗିଲ ବେଳେ । ୭୮ ।

ସ୍ତ୍ରୀ— ସରଗେ ଉଦଲ ଲେଞ୍ଜନୀ ତାର
ଦୂରକୁ ବଜୁଳ ପର
ହାତେ ଧର କର କାନେ କହବ
ଘରର ଘରଣୀ ପର
ଅମ ବାଡ଼ଅଡ଼େ ଏକଟା କୁଇଁ
ଶୁଣିଲେ କହବ ମୁଇଁ । ୭୯ ।

ପୁ— ଥୂଟା ଜଗନ୍ନାଥ ବଳୀଭଦର
ବଜେ କଲେ ଫୁଲ ରଥେ
ଯେଉଁଟା କହଲେ ସେଇଟା ଶୁଣିବ
କିସ ଚିନ୍ତୁଅଛୁ ମୋତେ ?
ଶୁଣିଲ ବାଉଁଶ ଫୁଟିଲ ଠୋଅ
କ କଥା କହୁଛୁ କହ । ୮୦ ।

ସ୍ତ୍ରୀ— ଚନ୍ଦ୍ରମା ବଦନ କଳା ଭୁଲତା
ନୟନେ କଜଳ ରେଖା

ଜୀବ ଥିବାଯାଏ ତମର ଏକା
ହୋଇଥିବ ଗୋଟି ସାଖୀ
କାହିଁ ମିସ ମିସା ପାଇକ ବେଢ
ତମର ଉପରେ ହେ ତ । ୮୧ ।

ପୁ— ଘର ବାନ୍ଧଦେଲ ପାଞ୍ଚ ବର୍ଷରୁ
ଦାଣ୍ଡକୁ ମାନୁଛୁ ପିଣ୍ଡା
ତମେ ଗୁଣମଣି ସାଙ୍ଗ ହୋଇବ
ଘର ଦୁଆରକ ଦାଣ୍ଡା ?
ଟିପିର ପାଣିକ ଠେକାଲ ଛତା
ପଛକୁ ଆସିବ କଥା । ୮୨ ।

ସ୍ତ୍ରୀ— ହଳଦ ବାନ୍ଧିଲ ପୁଡୁଗ ଭିତରେ
ଯେମଣି ହାତରେ ପଥୀ
ନବଖଣ୍ଡ ପୃଥ୍ୱୀ ବୁଲି ଆସିଲ
ନ ମିଳେ ତମ ମୂରତ
ଧାନ କାଟିଗଲ ଏକଠାଇଲ
ମୁଇଁ ତ ଠେଙ୍ଗୁଆ ପିଲ । ୮୩ ।

ପୁ— ଆଜ ମୁଁ ଦେଖିଲ ତମ ବଦନ
ତମ କଥା ଶୁଣି କରି
ଠେଙ୍ଗୁଆ ବୋଇଲେ ମୋ ନିଜ ଧନ
ରହିଯିବା ମିଶି କରି
ଆମେ ମନ କଲେ କେବେ କି କେବେ
ତମେ ମନ କଲ ଏବେ । ୮୪ ।

ସ୍ତ୍ରୀ— ଗାଇଗଲ ରାଣୀ ବେଲ ଗଲ ବସି
କାଲୁଡ଼ି ଧରିଲ କସି
ତମର ଆମର ମୁହାଁସ ଥିଲେ
ଯୁବାକାଳେ ଯିବା ମିଶି
ଆସ ଆସ ଧନ ବନ୍ଧୁ ବାନ୍ଧବା
ହସି ରସି ଦିନ ନେବା । ୮୫ ।

ପୁ— ଅସ ଅସ ମୋର ସରଗ ଦୂତି
ରସରେ ରହିବା ମାତ
କେମନ୍ତ ମୋ ମନ ପେଜ ରାନ୍ଧିବ
ତମେ ଅମେ ଭିନ୍ନ ଜାତ
ସୁନାକୁ ଠାଙ୍ଗଣା ରୂପାକୁ ଜଉ
ତୁଣ୍ଡର ସୁଅଦ ଥାଉ । ୮୬ ।

ସ୍ତ୍ରୀ— ଯାର ଘରେ ଥିବ ମଇଁଷି ମୁଣ୍ଡେ
ଝିଅ ପରଜଣା ତୁଣ୍ଡେ
ଗୀତ କୁଡ଼ିଅଣୀ ଏଥାନେ ବସା
ପଡ଼ିଲା ତୁମର ମୁଣ୍ଡେ
କୁକୁଡ଼ା ଛଅାଣ କାନ୍ଦଲା ଠିଵ
ତୁଣ୍ଡର ସୁଅଦେ ଥିବ । ୮୭ ।

ପୁ— ଗାଈ ଗୁଣିରେ ଯେ ରହିଲେ ଷଣ୍ଢ
ଗୋଜ ବୁଲୁଥାଏ ନିତ
କହିଲା ପଦରେ ତମେ ଶୁଣିଲେ
ତୋ ସଙ୍ଗରେ ହେବ ପ୍ରୀତ
ଦରୁ ପିତା ବୋଦା ଫଲଲା ଗଛେ
ମର ମନ ମିଶା ଅଛେ । ୮୮ ।

ସ୍ତ୍ରୀ— ନଦୀ ଖଣ୍ଡି ଖଣ୍ଡି ମୋ ସବୁ ଧନ ।
ବୁଣି ଗଲୁ ବାଲି ସୁଅଁ
ନାହିଁ ମିଳ କର ମିଳଲା ଅଟେ
ପଞ୍ଜୁରୀରେ ଥିବା ଶୁଆ
ଅସିଲ କ ? ବାବୁ ! ପଞ୍ଜୁରି ଶୁଆ
ଧର ଶୁଆ କଥା କୁଆ । ୮୯ ।

ପୁ— ତମ ବାଡ଼ିଅଟେ ତାଳ ନଡ଼ିଆ
ଅମ ବାଡ଼ିଅଟେ ଗୁଆ

ଡମର ଡୁଣ୍ଡିର　　　　ବଚନ ଶୁଣି
ଅଟିଲ୍ଲ ନାଇକା ଶୁଆ
ବାଡ଼ ପାଲ୍ ପାଲ୍ ରୋପିଲ୍ଲ ଥୁଆ
ହାତେ ଧର ଭାତ ଖୁଆ । ୯୦ ।

ସ୍ତ୍ରୀ— ସବୁଙ୍କର ମୁଣ୍ଡେ　　　　ଫୁଲ୍ ଗେଣ୍ଡେ ଗେଣ୍ଡେ
କୃଷ୍ଣ ମୁଣ୍ଡେ ଜାମଡାଳ
କେଡ଼େ ଦୁଃଖୀ ମୋର　　　　କଷ୍ଟ ଯିବାରୁ
ମିଳାଇଲ ମୋର ମାଲ୍
ତାହାକ ଜାଳିମ୍ବ ନଡ଼ିଆ ଗୁଆ
ହାତେ ବସି ଭାତ ଖାଆ । ୯୧ ।

ପୁ— ଧନ ରେକାଇଲ୍ଲୁ　　　　ଗାଦିଆ ଥାନେ
ପୋଲ ରେକାଇଲ୍ଲୁ କୋଣେ
କୋଲେ ଧରକର　　　　ଭାତ ଖୁଆଇଲେ
ଲାଗିବ ପିଣ୍ଡ ପରାଣେ
ଶୁଆ ପର କଥା ମୋ' ଧନ କହେ
ମୂର୍ଚ୍ଛିବା ପଦାର୍ଥ ନୁହେ । ୯୨ ।

ସ୍ତ୍ରୀ— ଆମ ଗାଆଁରେ ଯେ　　　　ସୁନାର ସାଇ
ସୁନା ରୂପା ଦୁଇ ଭାଇ
କୋଲେ ଧର କର　　　　ଭାତ ଖୁଆଇବ
ମୋର ସାଙ୍ଗେ କାଏ ନାହିଁ
ଅସ ବାଳିଫୁଲ । ଶେଯରେ ଗଡ଼ୁ
ଶହେ ଚମ୍ପାଫୁଲ ଝଡ଼ୁ । ୯୩ ।

ପୁ— ଖେଦାରେ ବୋଲାଲୁ　　　　ହଲଦୀରଙ୍ଗ
ପରଦେଶୀ ସଙ୍ଗେ ସଙ୍ଗ
ଆଜି ଗୋଟେ ଦିନ　　　　ଏଠାରେ ରହୁ
ଦୂର ଦେଶ ଭାରଯିବ
ଘରରେ ବାନ୍ଧିଲୁ ବାଉଁଶ ବଢା
କହୁ ଦେଲୁ ସଢ଼କଥା । ୯୪ ।

ସ୍ତ୍ରୀ— ଉଠିଲା ଚନ୍ଦର ଦିଶେ ଉଜଳ

ଉଜଳ ଅନ୍ଧାର ଘର

ଯେତେ ଦୂରେ ଥିଲେ ଏ ପ୍ରାଣ ତୋର

କର ନାହିଁ କାନ୍ତ ! ଦୂର

କାହିଁ ମିସ ମିଶା ଏ ବେତ ବାଡ଼ି

ପ୍ରାଣ ଗଲେ ନୁହେ ଛାଡ଼ । ୯୫ ।

ପୁ— ନାଡ ଫୁଲ ଖୋସା ଆଖି କଜଳ

ଦୁଆରେ ଜନ ତରାସ

ଦୂରେ ଥିଲେ ବନ୍ଧୁ କି ଲଭ ଅଚେ

ଆମ ଗାଁଏ ଭିର ଆସ

ବାତର ପଥର ଭିରଲା ଗଭା

ଏକାଠାରେ ଥିଲେ ଶୋଭା । ୯୬ ।

ସ୍ତ୍ରୀ— ଯୁବା ହନୁମନ୍ତ ପବନର ସୁତ

ହୁଁ କଲା ହନୁମନ୍ତ

ଆସ ବୋଇଲେ ମୁଁ କେମନ୍ତେ ଆସିବି

ଚୁରଆଡ଼େ ପରବତ

ବାଲି ଫୁଲ ମୋର ତୋପର ଗୋଇ

ତମଘର ଦେଖି ନାହିଁ । ୯୭ ।

ପୁ— ଗଉଡ଼ ଘରର ଗାଈ ଗୋରସ

ଆମଠାରେ ଦୟା ଥିଲେ

ଭମର ଯେମିତ ଦୟା ରଇଲେ

ଆସିବ ଉପାୟ ବଳେ

ଆସିଲେ ଗୋଲାପି କରବ ଲାଡ଼

ଏଇକଥା ତମେ ଛାଡ଼ । ୯୮ ।

ସ୍ତ୍ରୀ— ଲାଗ ବୀରଚଣ୍ଡି ଛୁଡ଼ ପଡ଼ୁ ଗଣ୍ଡି

ତୋ ପାଦେ ରୁଧିର ଦେବ

ଲଗରେ ମୋହିନୀ ତା ଦେହଯାକ
ଘରକୁ ରଙ୍ଗାଇ ନେବ
ଖିରର ଗୁଞ୍ଜଲ ବାଡ଼ରେ ରଙ୍ଗେ
ଉଠିପିବୁ ଗୋଖା ସଙ୍ଗେ । ୯୯ ।

ପୁ— ତମେ ଜାଣିଅଛ କେତେ ମନ୍ତ୍ରର
ଲଗାଇବ ଅସ ବଷ
ଭେଣ୍ଡିଆ ପିଲାର ଗଜଗ୍ ମଣ
ଆଖି ଠାରଦେଲେ ଅସ
ଆସିଲେ ଗୁଲପି ରହିବା ମିଶି
ତମ ଗାଏଁ ମୁଁ ନ ଆସି । ୧୦୦ ।

ସ୍ତ୍ରୀ— ହାଟ ହାଟ ବୁଲ ବେପାର କଲ
ତାକୁ ନାହିଁ କରାଠରେ
ଭାଗ୍ୟ ଥିଲେ ବନ୍ଧୁ ଭୋଗ କରନ୍ତ
ଲେଖା ନାହିଁ କରମରେ
କି କର ମରଣ ? କରମ ହୀନ
କେମନ୍ତେ କାଟିବ ଦନ । ୧୦୧ ।

ପୁ— ଗଛ ଗୋଟେ ଅଛୁ ନାଇଁ ପତର
ଗଙ୍ଗାବାଲି ପର ମଞ୍ଜି
ପାଗରୁ କେମନ୍ତ ଅନ୍ତର ହେବ
ଦଇବ ଦେଇଛୁ ଖଞ୍ଜି
ତମଠାରେ ମୋର ବଳିଲା ମତ
ଭମର ମନ କେମନ୍ତ । ୧୦୨ ।

ସ୍ତ୍ରୀ— ଇନ୍ଦ୍ରାବତୀ ନଈ ଯାଉଅଛୁ ବହି
ନାବରେ ଘାଟୁଆ ନାହିଁ
ବୈକୁଣ୍ଠେ ଭେଟିଲ ମଞ୍ଚରେ ଦେଖିଲ
ତୋ ପରି ଗୁଣିକ ନାଇଁ
ଲଦକା ଖୋନ୍ଦାରେ କାପଡା ପୋଡ଼େ
ଘଡ଼ ଘଡ଼ ହେବୁ ପଡ଼େ । ୧୦୩ ।

ପୁ— ତୁ ତ ଗୁଣବତୀ ବିବେକ ଯୁବତୀ
ଜାଣିବା ଘରର ଝିଅ
ନାଯୃମ କରଣି ଛୁଡ଼ାଇ କଇଲେ
ମ ସଙ୍ଗେ ଘଡ଼ି ହୁଅ
ଚେଣ୍ଡ୍ରିକା ଚଢିଲା ଲଦକା ଗଛେ
ନାହିଁ କର ଦେବ ପଛେ । ୧୦୪ ।

ସ୍ତ୍ରୀ— ପାଣି ମରିଗଲା ଝୁକର ଝାଇଁ
ପାଣି ଗଲା ନାଳେ ନାଳେ
ତମର ଆମର ଭାଷା ଛୁଡ଼ିଗଲା
ସବୁ ଲୋକ ଥିଲା ବେଳେ
ଅଲେ ଗୋରି ଧନ ବଗୁର କର
ହୃଦେ ପାଞ୍ଚି କୋଳେ ଧର । ୧୦୫ ।

ପୁ— ପର୍ବତ ଶିଖରେ ବାଉଁଶ ମଲା
ତ'ର ମନ ହେଲେ ମ' ମନ ହେଲା
ଆଉ କି କହିବ ତୋତେ
ମୋର କଥାବୋଲେ ତୁମେ ରହିଲେ
ରହିବି ଆନନ୍ଦ ଚିତେ
ବାଲିଫୁଲ ମୋର ଗଳାର ହାର
ପ୍ରୀତି ଲାଗୁ ତ'ର ମ'ର । ୧୦୬ ।

ସ୍ତ୍ରୀ— ଜୟପୁର ପାଖେ ଜୟନ୍ତ ଗିରି
ଟୋତ ଗଲା ଦନ ବରି
ତମ ଶିରମୁଖ ଛଣେ ନ ଦେଖିଲେ
ସପନେ ମରବୁ ଝୁରି
ଅସରେ ଲଡ଼ବି ଲଡ଼ଣି କାଳେ
ଖଜା ଘେନି ଦେବୁ ଗୋଳେ । ୧୦୭ ।

ପୁ— ପରବାସେ ଗଲେ ପାରି ମାଉଁସ
ଘରେଥିଲେ ସାରୁ କନ୍ଦା

ତମର ଅମର     ପୀରତ ଲଗିଲେ
ଲଗିବ ଘରର ଧନ୍ଦା
ଅଠାଳେ ବୁଣିଲୁ ଦମାଣ ଖର
ତମ ଗାଁ ନ ଯା ଛାଡ଼ି । ୧୦୮ ।

ସ୍ତ୍ରୀ— ଶିରଷ କାଠର     ଦୁଆର ବନ୍ଧ
କବାଟରେ ଫୁଲ ଗନ୍ଧା
ତ' ପରି ଗରଖି     ମ' ଘରେ ଥିଲେ
ଦେଖିବା ଲୋକକୁ ଶୋଭା
ଅକାଶେ ଉଦିଲା ଲେଞ୍ଜେମା ତାରା
ମୁକୁତା ଗୁନ୍ଥିଲା ପରା । ୧୦୯ ।

ପୁ— ଆସ ଆସ ମୋର     ସୁନା ବରନା
ଆସ ଆସ ପ୍ରାଣଧନ
ଏତେ ପରକାରେ     କହୁଚ ସିନା
ପରତେ ନାହିଁ ମ' ମନ
ଗଭାର ବେଢ଼ାରେ ଲଙ୍ଗଳ କାସ
ସ୍ତିରିକ ନାହିଁ ବିଶ୍ୱାସ । ୧୧୦ ।

ସ୍ତ୍ରୀ— ଏ ବାଟେ ଖମଣ     ସେ ବାଟେ ଖମଣ
ମଝିରେ ଯାଉଛୁ ଜଡ଼
ଜଡ଼ର ମାଛକୁ     ଏ ଫୁଲବଡ଼
ନ' ପାରେ ତୋତେ ଛାଡ଼
ବାଲିଫୁଲ ମ'ର ବଦଳ କୋଳି
ନଷ୍ଟେ ତୋତେ ରସିଗଲି । ୧୧୧ ।

ପୁ— ଖପରେ ଲଗିଲା     ପିଠା କେରାଣ୍ଡି
ଗଡ଼ସ ମାଛକୁ ଭଜା
ନିପୃର୍ଣ କଥା ତୁ     ମ' ଆଗେ କୁହା
ପ୍ରୀତି ଛାଡ଼ କେଣେ ନ ଯା
ଗଭାରେ ବେଢ଼ାରେ କୁନ୍ଦିଲା କାଦ
ହାତେ ହାତେ ମାରୁ ବାଦ । ୧୧୨ ।

ସ୍ତ୍ରୀ— ରାତିରେ ଦେଖିଲି  ନାତ ସପନ
ସତେ କି କରମ ତାଇ
କେତେ ପରକାରେ  କହୁଚି ମୁଇଁ
ସତ ମିସା କର ନାଇଁ
କି କର ମରବା ଅଦୃଷ୍ଟ ଘଟି
ସୁନାକୁ ଧଇଲେ ମାଟି । ୧୧୩ ।

ପୁ— ସ୍ତିରିମାନଙ୍କର  ବହୁତ ଛଟା
ଡେବର ଗାଲରେ ହସା
ଏହି ସବୁ କଥା  ଦୂର କରିଲେ
ମୋର ସଙ୍ଗେ ତମେ ମିଶା
ବାଲ୍‌ଫୁଲ୍ ମ'ର କୁଲର ଜୀବ
ଛଣେ ତକେ ନ ଛାଡ଼ିବି । ୧୧୪ ।

ସ୍ତ୍ରୀ— ଡୋକରା ଲୋକକୁ  ବୋଲିବି ଅଜା
ଡୋକରି ଲୋକକୁ ଆଈ
ଏପର୍ ଗୋରିକୁ  ମିଶିଲେ ସର
ମରିଗଲେ ଛାଡ଼େ ନାହିଁ
ବାଲ୍‌ଫୁଲ୍ ମ'ର ଗୋପର ଗୋଇ
ଦାଣ୍ଡକୁ ନ ଯିବ ମୁଇଁ । ୧୧୫ ।

ପୁ— ଜହ୍ନିଫୁଲ୍ ଫୁଟି  ଦଶେ ଗୋଟି ଗୋଟି
ଦୂରକୁ ଦଶଇ ସୁନା
ମୋହର ଘରଣୀ  ଯେବେ ତୁ ହେବୁ
ଦାଣ୍ଡକୁ କରୁଛି ମନା
ବାନ୍ଧି ଶୁଖୁଆକୁ ଲଙ୍ଗଳ କନ୍ଧା
ହେଲେ ହେବ ସାଲ ବନ୍ଧା । ୧୧୬ ।

ସ୍ତ୍ରୀ— ଯାର ଘରେ ଥିବ  ବାଲ ଯୁବତୀ
ଅନ୍ନ ରଖିଥିବ ସଞ୍ଜି
ବୁଲ୍ ଗୁଲ୍‌କର  ଆସିଲେ ସର
ଦେଉଥିବ ବାଛୁ ବାଛୁ
ବାଲ୍‌ଫୁଲ୍ ମୋର ବାସିନା ଛାଇ
ବନ୍ଦୀ ପଡ଼ିଗଲି ମୁଇଁ । ୧୧୭ ।

ପୁ— ଆସ ଆସ ମୋର ଦେବତା ସୋଷ୍
ଆସ ମୋ କନକ ଗୋର
ଦାଣ୍ଡ ବାଟେ ବୁଲି ମୁଁ ଆସିଲେ
ଦେଉଥିବୁ ଜାଣି କରି
ଗଛ ଟିପେ ବଗ ଦଶାଇ ଧୋବ୍
ମନ ମୋ' ସନ୍ତୋଷ ହେବ । ୧୧୮ ।

ସ୍ତ୍ରୀ— ସରୁଧାନ ପରି ନବୀନା ଗୋରି
ସରୁ ଖେଦ ପିନ୍ଧି କରି
ହସି ହସି କରି କଥା କହିବ
ଅମୃତ ଭୁଞ୍ଜିଲା ପରି
ଭୁରୁ କୋଳି ବୁଟା ବାସିନୀ ଗ୍ଲଇ
ତମ ନିଜ ଧନ ମୁହିଁ । ୧୧୯ ।

ପୁ— ଆସ ଆସ ମୋର କିଆ କେତକୀ
ପୀରତି ଲଗିଲା ଧନ
ତମେ ନିଜ ଧନ ମୋର ହୋଇଲେ
ଦେବି ମୁଁ ଲାଉଡ଼ ଚୁମ୍ବନ
ବାହା ବଜା ଗଛ ଉଦୁକା ତେର
ନିଷ୍ଟେ ହୋଇଗଲ ମୋର । ୧୨୦ ।

ସ୍ତ୍ରୀ— କେତେ ହସାହସି କେତେ ବସା ବସି
ଚୁମ୍ବନ ଦଅନ୍ତି ଗାଲେ
ବସିଲା ଠାଇଁରେ ଅମୃତ ପାଉଛୁ
ତମର ମୁହାଁସ ଥିଲେ
ଆସ ଗୋରୀ ଧନ କାଖ କରିବି
କାଖରୁ କୋଳେ ଧରିବି । ୧୨୧ ।

ପୁ— ବାଲିଗୁଡ଼ା ପାଖେ ଜୟନ୍ତ ଗିରି
ତାହା ପାଖେ ବର ଗୁମ୍ଫା

ନାଷ୍ଟେ ଗୋବରଧନ    ମୋହର ହେଲେ
ଦେଉଥିବ ଲଡ଼ୁ ଚୁମା
ଅସ ଅସ ଧନ ମୋ'ପାଖେ ବସ
ଶିଖାଇବ ରସ ବଚ । ୧୨୨ ।

ସ୍ତ୍ରୀ— ଗମ୍ଭୀର ଭିତରେ    ବେଲ୍ଲର ଖଟ
ଭଲ୍ଲ ଭଲ୍ଲ ରଙ୍ଗବତୀ
ହାତେ ଫୁଲ ସୋସ    ବଢ଼ାଇ ଦେଲେ
ହସି ହସି ବସିଥାନ୍ତି
ବାଲ୍ୟଫୁଲ ମୋର ବଦଳ କୋଳ
ଏଥର ମୁଁ ରହିଗଲି । ୧୨୩ ।

ପୁ— ପୁନ୍ନିଅଁ ବନରେ    ଉଦ୍ଦଲ ଜନ
ଅସ ଅସ ରସବତୀ
ତମେ ନାଳ ଧନ    ମ'ପାଖେ ବସିଲେ
ଫୁଲ ମାଳ ଦେବ ନିତ
ଅସ ଅସ ପାଖେ ମ' ବାଲ୍ୟଫୁଲ
ଖିଆଇବ ପାନ ଖିଲ । ୧୨୪ ।

ସ୍ତ୍ରୀ— ତୋ ପରି ପୁରୁଷ    ଯେବେ ପାଆନ୍ତି
କରନ୍ତି ନିତ ପଇତ
ତୋ ପରି ଗରଖି    ମ'ଘରେ ଥିଲେ
ତୁଳା ଶେଯେ ଗଡ଼ାଇତ
ବାଲ୍ୟଫୁଲ ମୋର ଗୁଦୁରୁଗୁମା
ଗାଲରେ ଦିଅନ୍ତି ଚୁମା । ୧୨୫ ।

ପୁ— ଅସ ଅସ ମ'ର    ଲାଲ ହଜାରି
ଅସ ମ' କନକ ଗୋସ୍ତି
ଅସ ଅସ ବୋଲି    କେତେ କହୁଚୁ
ଅସ ତୁ ଗୁଣ ସୁନ୍ଦର
ଅସ ବାଲ୍ୟଫୁଲ । ଘରକୁ ଯିବା
ଦାଣ୍ଡରେ ଅଉ ନ ଥିବା । ୧୨୬ ।

ସ୍ତ୍ରୀ— ଇନ୍ଦ୍ରାବତୀ ନଈ ଯାଉଅଛୁ ବହି
ଜଳ ଘଟେ କୁମ୍ଭି ଦାବି
ଗୀତ କୁଢ଼ଅଣୀ ପ୍ରବେଶ ହେଲ
ତଳ୍ ମାଲ୍ ଡଙ୍ଗା ପଥି
ଶିର ପରବତେ କାନ୍ଦଲ କୁଆ
ହାତଧର ମୋତେ ନିଆ । ୧୨୭ ।

ପୁ— ପିଣ୍ଡାରେ ରଖିଲୁ ଚନ୍ଦନ ଡାଠିଆ
ଗମ୍ଭୀରିକ ଗନ୍ଧ ବାୟ
ଯେତେବେଳେ ଧନ ମ' ପାଖେ ଆସିବ
ମ' ମନ ହେବ ସନ୍ତୋଷ
ଶିରପରବତେ ଚରେ କଅଦ
ଖାଇଲେ ମିନା ସୁଅଦ । ୧୨୮ ।

ସ୍ତ୍ରୀ— ସରୁ ଅମ୍ବ କସି ଶୀତଳାରେ ବସି
ଦନ୍ତ ଯାକ ହେଲ ଲସି
ବସିଲ ଥାନରେ ଅମୃତ ଦେବ
ତ'ର ମନ ହେବ ତୋଷି
ବାଲିଫୁଲ ମ'ର ଘାଗୁଡ଼ ମାଳ
ଅଉ ତୁ ନୁହ ବକଳ । ୧୨୯ ।

ପୁ— ଯାଉଛୁ ନଅଳି ଯାଉଛୁ କେତକୀ
ଯାଉଛୁ ଜୀବର ଧନ
ଜୀବର ଧନକୁ ଛାଡ଼ିଗଲା ବେଳେ
ଅକୁଳ ହେଉଛୁ ମନ
ଆମଯିବା ବାଟେ ବର କାସେର
ଆମକୁ ଦଅ ପାସୋର । ୧୩୦ ।

ସ୍ତ୍ରୀ— ତମେତ ଅମର ଅମେତ ତମର
ଘରକୁ ନ ଯିବ ଛାଡ଼ି
ତମର ଅମର ମାୟା ପୀରତ
ବାରମାସୀ ଫୁଲ କଢ଼ି
ଲଗାଇ ଦେଉଛ ତୁମେ ମୁହାଁସ
ଛାଡ଼ନାହିଁ ରସ ବଷ । ୧୩୧ ।

ପୁ— କେଉଁବାଟେ ଯିବ କା ବୁଦ୍ଧି କରବ
ଏ ଘୋର ବନସ୍ତ ଦେଇ
ତତେ ଛାଡ଼ିଗଲେ ମୋ ପ୍ରାଣସହ୍ମୀ
କା' ସଙ୍ଗେ ରହିବ ମୁହିଁ ।
ରସ ଫଲ ଖିଆ ଭମର ଆମେ
ଫଲ ଫୁଲଗଛ ତମେ । ୧୩୨ ।

ସ୍ତ୍ରୀ— ତମେ ଛାଡ଼ିଯିବ ଗୀତ କୁଡ଼ଆ
ଆମକୁ କାହାକୁ ଦେଇ
ତମ ପଛେ ପଛେ ଆସିବୁ ଆମେ
ଗୃହିଁ ମାଲ୍ଲୁ ପର୍ଣ୍ଣା ହୋଇ
ତମେ ଛାଡ଼ଗଲେ ମରିବୁ ଝୁର
ନଷ୍ଟେ ହେବୁ ଧାଂଗୀ ସାଗ୍ରି । ୧୩୩ ।

ପୁ— ଯାଉଛୁ ରେ ଧନ କହୁଛୁ ତୋତେ
ପାସୋରିବୁ ନାହିଁ ମୋତେ
ଆଉ ଥରେ ଥରେ ଆସିବ ବୋଇଲେ
ଦର୍ପଣ ଦେବ ତୋତେ
ତମେ ଯିବା ବାଟେ ପଡରେ ଝଡ଼ୁ
ଆମବାଟେ ହେଉ ପଡ଼ୁ । ୧୩୪ ।

ସ୍ତ୍ରୀ— ଯାଅ, ବାବୁ ଯାଅ
ଯାଅ ବାବୁ ଯାଅ
ଯାଅ ବାବୁ ଯାଅ ଜୀଅ,
ସୁଖେ ଘର କର
ଆନନ୍ଦେ ରୁଅ
ଆମକୁ ପାସୋର ଦିଅ
ବାଲ୍‌ଫୁଲ ମୋର ଦଣ୍ଡି ମକା
ଆମକୁ ପାସୋର୍ ପକା । ୧୩୫ । *

(ନବରଙ୍ଗପୁର—କୋରାପୁଟ)

* ସ୍ୱର୍ଗତ ଲେଖକ ମଣ୍ଟୁ ଘୋଷ ତ୍ରିପାଠୀଙ୍କଠାରୁ ଏହା ୧୯୬୮ରେ ସଂଗୃହୀତ ହୋଇଥିଲା ।

# ପରିଶିଷ୍ଟ ଗୀତିକା

## ୧ । ବାରମାସୀ କୋଇଲି

୧—କୋଇଲି ଲୋ
ମଗୁଶିରେ ଆଦ୍ୟ ଗୁରୁବାର
ପଡ଼ ଯେ ବାଣ୍ଟୁନ୍ତି ଲକ୍ଷ୍ମୀ ଦୁଆର ଦୁଆର ଲୋ ।

୨—କୋଇଲି ଲୋ
ପଉଷେ ଲୋ ପଡ଼ଇ ଶୀଶିର
ମୋ କାନ୍ତ ରହିଲେ ଯାଇ ଦୂର ବିଦେଶର ଲୋ ।

୩—କୋଇଲି ଲୋ
ମାଘମାସେ ମକର ମାଧୋଇ
ପର୍ଣ୍ଣଶାଳେ ଦିନ ହରେ ରାମ ବଇଦେହୀ ଲୋ ।

୪—କୋଇଲି ଲୋ
ଫଗୁଣେ ଲୋ ଫଗୁଗୁଣ୍ଡା ମାର
ଫଗୁଆ ଦୋଳ ଗୋବିନ୍ଦ ଖେଳନ୍ତି ଗୃହେରେ ଲୋ ।

୫—କୋଇଲି ଲୋ
ଚଇତେ ଲୋ ବସନ୍ତ ପବନ
ସୁଗ୍ରୀବକୁ ହକାରନ୍ତି ବୀର ଲକ୍ଷ୍ମଣ ଲୋ ।

୬—କୋଇଲି ଲୋ
ବଇଶାଖେ ଗିରିଷମ ଖରା
ଭିଆଇ ଯେ ଛନ୍ତି ପ୍ରଭୁ ଚନ୍ଦନ ଯାତରା ଲୋ ।

୭—କୋଇଲି ଲୋ
ଜ୍ୟେଷ୍ଠେ ଯେ ଫାଟି ପଡ଼େ ଧରା
ଚନ୍ଦନ କସ୍ତୁରୀ ପ୍ରଭୁ ବଉଳର ମାଳା ଲୋ ।

୮—କୋଇଲି ଲୋ
ଆଷାଢ଼େ ଯେ ମେଘ ଘଡ଼ଘଡ଼ି
ଗୁଣ୍ଡିଚା ବିଜୟେ ପ୍ରଭୁ ନନ୍ଦିଘୋଷେ ଚଢ଼ି ଲୋ ।

୯—କୋଇଲି ଲୋ
ଶ୍ରାବଣେ ଯେ ପାଣିପଡ଼େ ଢାଳି
କାହିଁ ଯାଇ ରହିଲେ ଗୋ ଦଶରଥ ବାଳ ଲୋ ।

୧୦—କୋଇଲି ଲୋ
ଭାଦ୍ରବେ ଲୋ ଫୁଟିପଡେ କଅ
ରାମଙ୍କୁ ନ ଦେଖି ଫାଟେ ଦଶରଥ ହିଆ ଲୋ ।

୧୧—କୋଇଲି ଲୋ
ଅଶ୍ୱିନେ ଯେ କୁଆଁରଅ ଜହ୍ନ
ଜୁଆ ଖେଳୁଥାନ୍ତି ପ୍ରଭୁ ଲକ୍ଷ୍ମୀ ନାରାୟଣ ଲୋ ।

୧୨—କୋଇଲି ଲୋ
କାର୍ତ୍ତିକେ ଯେ ରାଧା ଦାମୋଦର
ଅର୍ଘ୍ୟ ଯେ ବନ୍ଧାଉଁ ଥାନ୍ତି ସମୁଦ୍ର ପନ୍ତାର ଲୋ ।

( ନରସିଂହପୁର )

## ୨—ସୀତାଙ୍କ ମଧୁଶଯ୍ୟା

( ୧ )

ଏକା ଦେଖି ଜାନକୀଙ୍କୁ ରଘୁକୁଳ ବୀର
ପଲଙ୍କୁ ଉଠିଣ ତୋଳି ଧଇଲେ କୋଳର
ଶଯ୍ୟା ପରେ ଗୋ
ନେଇ ବସାଇଲେ ଜାନୁ ପରେ ଗୋ ।

( ୨ )

ନ ଠେକନ୍ତ ଦେବୀ ମଥା ନ ଠେକନ୍ତ ଶିର
ଗୃହି କର କହୁଛନ୍ତ ମଦନ ସୁନ୍ଦର
ଦରହାସି ଗୋ
ମଉନେ କିପାଇଁ ଅଛୁ ବସି ଗୋ ।

( ୩ )

ଶ୍ରୀରାମ ବଚନ ଯହୁଁ ଶୁଣିଲେ ଜାନକୀ
ସରୁ ସରୁ ସୂକ୍ଷ୍ମ ମଧ୍ୟୁ କାଢ଼ିଲେ କେତକୀ
ମୃଗମଦେ ଗୋ
ବନପତ୍ରରେ ଲେଖିଅଛନ୍ତି ପଦେ ଗୋ ।

( ୪ )

ପଢ଼ି ସାରି ରଘୁନାଥ ଆନନ୍ଦ ଯେ ମନ
କୋମଳ କରୁଣ ଧୀରେ କହନ୍ତି ବଚନ
ଚନ୍ଦ୍ରମୁହାଁ ରେ
ତୋର ବିନୁ ମୋର ଆନ ନାହିଁ ରେ ।

( ୫ )

ଏତେ ବୋଲି ରଘୁନାଥ ପ୍ରଦୀପ ଛୁଇଁଲେ
ବୀଣାଜିଣା ବାଣୀ କଣା ବଚନ ଭାଷିଲେ
କାନ୍ତ କରେ ଗୋ
କର ନିବେଶିଲେ ପ୍ରଦୀପରେ ଗୋ ।

( ୬ )

କାମ କାମିନୀରେ ଭାବ ସଖୀ ସଙ୍ଗେ ମିଳି
ଛୁରତ ରସରେ ରସି ରସିଲେ ଦୁଲ୍ଲଳି
ରଘୁନାଥ ହେ
କୋଡ଼େ ଘେନି ଜନକ ଦୁହିତ ହେ ।

( ୭ )

ସୀତାୟା ଶ୍ରୀଭୁଜେ ଭୁଜ ଲଦି ରଘୁମଣି
ଅଚିନ୍ତା ହୋଇଣ ନିଦ୍ରା ଗଲେ ବେନି ପ୍ରାଣୀ
ଯାମି ଶେଷ ହେ
ପୂର୍ବଦିଗେ ଉଦୟ ବିଳାସ ହେ ।

( ୮ )

ନିଶି ଶେଷେ ପ୍ରଦୀପ ଯେ ହୋଇଲା ମଳିନ
ନିଦ୍ରା ତେଜି ଉଠିଲେ ସୀତାୟା ରଘୁବାଣ
ବଇଦେହୀ ଗୋ
ବାହାରିଲେ ସ୍ୱାମୀ ମନ ମୋହି ଗୋ ।

( ୯ )

ଲଜ୍ୟାରେ ମଦ କମଳ ବେଶ ଅତି ଖିନ୍ନ
ହୁଂବାଲେ ଯଦି ଜାଣିବେ ଚିତ୍ତେ ଗୁରୁଜନ
ଏତେ ଭାଳି ସେ
ସଖୀଙ୍କ ସନ୍ନିଧେ ଯାଇ ମିଳି ସେ ।

( ୧୦ )

ସଖିମାନେ ତାଙ୍କୁ ଦେଖି ଆନନ୍ଦିତ ହେଲେ
ସୀତାୟାଙ୍କୁ ବେଢ଼ି କରି କଥା ପଚାରିଲେ
କହ କହ ଗୋ
ମଳିନ କପାଳି ଚମ୍ପା ଦିହ ଗୋ ।

( ୧୧ )

ଶୁଖି ଯାଇଅଛି ତୋର ସୁରଙ୍ଗ ଅଧର
ରଘୁନାଥ ଚୁମ୍ବି ନେଲେ ତହିଁକି ମଧୁର
କହ କହ ଗୋ
ମଳିନ ଦିଶୁଛି କମ୍ପା ଦିହ ଗୋ ।

ଦେବତାଙ୍କ ଅଙ୍ଗ କମ୍ପ ଶବଦ ଶୁଭିଲା
ନଟ ନାରୀ ଜାର ପୁରୁଷକୁ ବରଜିଲା
ତାମ୍ରଚୂଡ଼ ହେ
ନାଦେ ଯେଣୁ ପ୍ରମାଦ ହୃଦର ହେ ।

( ଖଣ୍ଡପଡ଼ା )

## ୩—ରାମାରତନ

୧— ଜାନକୀ, ପତିଙ୍କି ଚାହିଁ ଯେ—କୋମଳ ବଚନ କହି
ଆଜ ପରା ହେବ ଅବନୀସାଇଁ,
ହେ ରଘୁନନ୍ଦନ
ଶ୍ରୀମୁଖେ ହରଷ ନାହିଁ ?

୨— ରାଘବ ବୋଲନ୍ତି ଧୀରେ ରେ ସଖି ଜାଣି ନାହୁଁ କିରେ
ଭରତ ନୃପତି ହେବେ ରାଜ୍ୟରେ,
ରେ ରାମା ରତନ
ମୁହିଁ ଯିବି ବନ ଘୋରେ ।

୩— କି କହ କୋଦଣ୍ଡଧର ହେ ଶିରେ ଠାକିଲ ପଥର
ବଜ୍ରହୁଁ କଠିଣ ହୃଦ କାହାର
ହେ ରଘୁନନ୍ଦନ
ଏ ବୁଦ୍ଧି କଲା କାହାର ?

୪— ଦେଖ ସଖି ବିପରୀତ ରେ ରାଜା କରିବାକୁ ଭରଥ
ପୂର୍ବେ ମାଗିଥିଲେ କେକୟୀ ମାତ
ରେ ରାମାରତନ
ପିତାଙ୍କୁ କରାଇ ସତ୍ୟ ।

୫— ବଶିଷ୍ଠ ଋଷି ଯେ ଥିଲେ ହେ ତାଅର କେ ନ କହିଲେ
ମୁଖ ଦେଖିବାକୁ ଯୋଗ୍ୟ ନୋହିଲେ—
ହେ ରଘୁନନ୍ଦନ
ଭଲ ପୁନ ଜାତ କଲେ ?

୬— କାହିଁକି କହୁଲୁ ଏହା ରେ— ଶୁଣ ରେ କନକଦେହା
ବହୁ ଲହୁଥାଏ ଭାଲରେ ଯାହା—
ରେ ରାମାରତନ
କେ ଆନ କରିବ ତାହା ।

୭— କାର୍ତ୍ତିକଲେ ବୃଦ୍ଧ କାଳେ ହେ, ଯେତେ ନାରୀ ବଶ୍ୟ ହେଲେ
କରୁ ଚନ୍ତାମଣି ମୁରୁଛି ଦେଲେ
ହେ ରଘୁନନ୍ଦନ
ଧଇର୍ଯ୍ୟ କେହ୍ନେ ଧଇଲେ ?

୮— ବିବେକ ବିବେକ କର ରେ, ସତୀ ଜନପୁରେ ସାର
ଲଙ୍ଘି ଦେଲେ ହେବ ନରକେ ଘର
ରେ ରାମାରତନ,
ରଖି ଦେବ କି କୁମର ?

୯— ତୁମ୍ଭ ସଙ୍ଗେ ମୁହିଁ ଯିବି ହେ, ନାହିଁ କଲେ ନ ରହିବି
ଛାଇ ପରି ପାଦେ ସେବା କରିବି
ହେ ରଘୁନନ୍ଦନ
ମୁଖ ଶୋଭା ଦେଖୁଥିବି ।

୧୦— ସଖି ତୁ ଏହା ନ କହ ରେ, ଶାଶୁ ପାଦେ ଚିତ୍ତ ଦିଅ
ଜନନୀମାନଙ୍କ ମନକୁ ନିଅ
ରେ ରାମାରତନ
ଶଶୁରଙ୍କୁ ସେବି ଥାଅ ।

୧୧— ଯେତେ ଋଷି ପୂର୍ବେ ଥିଲେ ହେ—ଯେତେ ରାମାୟଣ କଲେ
ଜାଣ କି ଜାନକୀ ସଙ୍ଗେ ନ ନେଲେ—
ହେ ରଘୁନନ୍ଦନ
ରାମ ବନବାସ କଲେ ।

୧୨— ହଂସୂଲ ତୁଳରେ ସହି ରେ— ନିଦ୍ରା ଯେ ଆସଇ ନାହିଁ
ଫଳମୂଳ ଖାଇ ଡାଳରେ ଶୋଇ
ରେ ରାମାରତନ,
କି କାଳ ବଞ୍ଚିବୁ ତୁହି ।

୧୩— ତୁମ୍ଭଙ୍କୁ ପିନା ମୋ ଅଶ ହେ—ତୁମ୍ଭଠାରେ ପିନା ମୁହାଁସ
ତୁମ୍ଭର ଯେମନ୍ତ ଅରଣ୍ୟ ବାସ
ହେ ରଘୁନନ୍ଦନ,
ଘରେ ମୁଁ କରିବି କସ ?

୧୪— ଅତି ସୁକୁମାରୀ ତୁହି ରେ—ଲବଣୀ ପିତୁଳା ଦେହୀ
ଖିଦ୍ୟବେଳେ ବାଟ ଗୁଳବୁ କେହି
ରେ ରାମାରତନ,
ତାତଲ ପଥର ଭୂଇଁ ।

୧୫— ଅନ୍ତର କଲେ ଏ ଘାନ୍ତ ହେ ଝୁର ମରୁଥିବ ନିତ
ଅସର ହୋଇବ ବାସର ରାତି
ହେ ରଘୁନନ୍ଦନ,
ଫାଟି ଯାଉଥିବ ଛାତି ।

୧୬— ନ ପାରବୁ ଅଣକତେ ରେ ନିଷଟେ ବସିଣ ପଥେ
ଜଳଜାତ କଲେ ଜଳକି ନେବେ
ରେ ରାମାରତନ,
କି ଦୁଃଖ ନ ଦେବୁ ମୋତେ ?

୧୭— କହୁଛ ଯୋଡ଼ଣ ପାଣି ହେ—ଧେନ ମୋ ବିନୟ ବାଣୀ
ବଞ୍ଚକ ବଚନ ଶ୍ରୀମୁଖଁ ଶୁଣି
ହେ ରଘୁନନ୍ଦନ,
ହୃଦୟ ହୁଅଇ ହାଣି ।

୧୮— ଚଉଦ ବରଷ କାଳ ଗୋ ପିନ୍ଧିବ ବୃକ୍ଷ ବକଳ
ନିତି ବୁଲୁଥିବ ପର୍ବତ ମାଳ
ରେ ରାମାରତନ,
ଆହାର ମୋ ଫଳମୂଳ ?

୧୯— କହୁଚ କେତେ ଗୁଡର ହେ ତୁମେ କି ଏକା ଚତୁର ?
ତୁମ୍ଭଠାରୁ ପରା ମୁଁ ସୁକୁମାର
ହେ ରଘୁନନ୍ଦନ,
ରଖ ରଖ ପ୍ରେମ ବଗୁର ।

୨୦— ଲହୁଲ ବୟସ ତୋର ଗୋ ଲତା ତରୁ ବନ ଘୋର
ଲଙ୍ଘି ପାରିବୁ କି ଗିରି ଶିଖର
ରେ ରାମାରତନ,
ନୋହେଁ ସେ ଅଯୋଧ୍ୟାପୁର ।

୨୧— କାଉଁ ସଖିଙ୍କୁ ରହିବ ହେ କାହାକୁ ଦୁଃଖ କହିବ
କେକୟୀ ଗୁମାନ ମୁଁ କି ସହିବ
ହେ ରଘୁନନ୍ଦନ,
ପ୍ରାଣ ସିନା ହରାଇବ ।

୨୨— ଆପଣା ଛାଇକି ଡରୁ ରେ ଧାଇଁ ମୋତେ କୋଳ କରୁ
କେଉଁ ଦମ୍ଭ ପଣେ ସଙ୍ଗେ ବାହାରୁ
ରେ ରାମାରତନ,
କମ୍ପା ମୋ ସଂସାର ସାରୁ ?

୨୩— ନଷ୍ଟେ ଯେବେ ଛାଡ଼ି ଯିବ ହେ— ଏହି ଯଶ ଅରଜିବ
ଶୁଣ ଏ ନିକର ଗିର ମୋହର
ହେ ରଘୁନନ୍ଦନ,
ଆସି ଆଉ ନ ଦେଖିବ ।

୨୪— କୁଳକୁ ଦେବୁ ଅପଖ୍ୟାତି ରେ ରାଜାଏ ନିନ୍ଦିବେ ନିତି
ଗାଇବ କି ତୋର ବର ଯୁବତୀ
ରେ ରାମାରତନ,
ଆମ୍ଭେ କି ଇତର ଜାତି ?

୨୫— ନ ଦେଖିଲେ ମୁହିଁ ଦଣ୍ଡେ ହେ ପଡ଼ି ଥାଇ ଘୋର ଦଣ୍ଡେ
ଆଖି ରଖିଥାଇ ଆସିବା ଦାଣ୍ଡେ
ହେ ରଘୁନନ୍ଦନ,
ପରାଣ ନ ଥାଏ ପିଣ୍ଡେ ।

୨୬— ଚତୁର୍ଦ୍ଦଶ ଚନ୍ଦ୍ରମାମୁଖୀ ରେ ଚନ୍ଦ୍ରସୂର୍ଯ୍ୟ ନାହିଁ ଦେଖି
ଚରଣ କଣ୍ଟାରେ ହୋଇବୁ ଦୁଃଖୀ
ରେ ରାମାରତନ,
ଶ୍ରୀଅଙ୍ଗ ଯିବ ତ ଶୁଖି ।

୨୭— ଅଣ୍ଟିଲା ନାହିଁ କି ଏବେ ହେ କାହାକୁ ମୋ ଧାଳା ନେବେ
ଯାହାର ବୋଲରେ ବାହାର ତୁମ୍ଭେ
ହେ ରଘୁନନ୍ଦନ,
ଅପ୍ରାଧ ନ କର ଲବେ ।

୨୮— ଦୁଷ୍ଟ ଦାଇତଙ୍କ ସ୍ଥାନ ରେ ବ୍ୟାଘ୍ର ଭଲ୍ଲୁକଙ୍କ ସ୍ଥାନ
ପଡ଼ିଲେ କର୍ଣ୍ଣରେ ବୁଡ଼ିବ ଜ୍ଞାନ
ରେ ରାମାରତନ,
ନ ଅସ ମୋ ବୋଲ ମାନ ।

୨୯— ଘଞ୍ଚାଳ ନ କର ମୋରେ ହେ ଅଛୁ କେ ତୁମ୍ଭ ବାହାରେ
ରବିଙ୍କ ଉଦୟ ପଶ୍ଚିମେ ହେଲେ
ହେ ରଘୁନନ୍ଦନ,
ମୋତେ କେ ରଖିବ ପୁରେ ?

୩୦— ଜାଣି ନାରୀମଣି ମନ ଯେ ବୋଇଲେ ଅସ ହେ ଧନ
ଲବେ ଦେଖୁ ଯେବେ ପାଶରୁ ଭିନ୍ନ
ରେ ରାମାରତନ,
ସରଇ କି ମୋର ଧନ ?

( ନରସିଂହପୁର )

## ୪—ଦୁଷ୍ଟ କାକ

୧— ଏଥୁ ଅନନ୍ତରେ ଯେ ପରମ ରସ ଶୁଣ
ଯେତେକ ମାଏଁସ ସବୁ ଅରନ୍ଧା ରହଣ ।

୨— ଆର ଦନକୁ ଜାନକୀ ଶୁଖାଇ ରଖନ୍ତି
ପ୍ରାଣରୁ ଅଧିକ କରି ଜଗି ବସିଥାନ୍ତି ।

୩— ଏକ ଦନେ ଅସିଣ ମିଳିଲା ଦୁଷ୍ଟ କାକ
ମାଏଁସ ନଗରେ ଅସି ହେଲା ପାଖ ପାଖ ।

୪— ତାହା ଦେଖି ଜାନକୀ ଯେ ଉଡ଼ାଉ ନଥନ୍ତି
ବିରସ ମନରେ ଯାଇ କୁଅକୁ କହନ୍ତି ।

୫— "ଅରେ ଅରେ ଦୁଷ୍ଟ କାକ
ଆୟୁଷ ତୋ ସରୁ
"ବିରକତ କେଲେ ତୁ
ଝଙ୍କା ମୋତେ କରୁ ।
୬— "ସ୍ୱାମୀ ଯେ ଦେଅର ମୋର
ଅରଣ୍ୟକୁ ଯାନ୍ତି
"ବହୁତ କଷ୍ଟରେ ମୃଗ
ମାରି ଆଣିଚନ୍ତି
୭— "ସେ ମାଂସ ଖାଇବାକୁ
କରୁଅଛୁ ମନ
"ଅକାରଣ କାଣ୍ଡି
ପଡ଼ିବଟି ତୋ ନୟନ ?"
୮— ତେଣୀ ଦୋହଲାଇ କାକ ଘୋର ଧାପ ଦେଲା
ଜାନକୀର ଓଷ୍ଠ ତନୁ ବିଦାରଣ କଲା ।
୯— ବିଦାରଣ କରୁଁ ସୀତା ରାମଙ୍କୁ ଡାକିଲେ
ରାମଙ୍କୁ ଡାକନ୍ତେ କାକ ପଳାଇଣ ଗଲେ ।
୧୦— ମନ୍ଦାର ଗଛ ଉପରେ ଯାଇଣ ବସିଲେ
ସଦାଶିବ ବୋଲେ ବଡ଼ ମନ୍ଦ ବୁଦ୍ଧି କଲେ ।
ଜୟ ରାମ ହେ
ଜୟ ରାମ ହେ
କୌଶଲ୍ୟାନନ୍ଦନ ଘନଶ୍ୟାମ ହେ ।
( ନରସିଂହପୁର ).

## ୫—ମାୟାମୃଗ

ଜୟ ରଘୁପତି ଅଯୋଧ୍ୟା ନୃପତି ତୁମ ପାଦେ ମୋର ସେବା
କିଛି ନ ଜାଣଇ ମୂର୍ଖପଣେ ଆଇ ପ୍ରସନ୍ନ ମୋତେ ହୋଇବା.
ରାମ ସୁଦୟା କର
କଣ୍ଠେ ବସି ମୋ ପଦ ଉଦ୍ଧର । ୧ ।

ଦଶରଥ ରାଜା ରାମଙ୍କୁ ହକାରି ବୋଇଲେ ତୁ ବନ ଯା' ଯା'
ତୁହି ବନ ଗଲେ ଭରଥ ସୁତ ମୋର ଅଯୋଧ୍ୟାରେ ହେବ ରାଜା
ବାବୁ କର ଗମନ
ଭରଥ ରାଜ୍ୟ କରୁ ରାଜପଣ । ୨ ।

ପିତାର ସନ୍ଦେଶ ପାଇ ରଘୁନାଥ ବନକୁ କଲେ ଗମନ
କରେ ଧନୁଶର ଧରଣି ଲକ୍ଷଣ ବାଟେ କଲେ ଦରଶନ
ବୀର ନ ଯାଅ ତୁମ୍ଭେ
ବନବାସ ଯାଉଅଛୁ ଆମ୍ଭେ । ୩ ।

ସୀତାୟା ଲକ୍ଷଣ ଘେନିଣ ଶ୍ରୀରାମ ବନକୁ କଲେ ଗମନ
ପଞ୍ଚବଟୀ ବନେ ଗୋଦାବରୀ କୂଳେ ବିଶ୍ରାମ କଲେ ସେ ଦିନ
ଦେଖି ନିର୍ମଳ ସ୍ଥାନ
ବସା ନିର୍ମା କଲେ ଲକ୍ଷଣ । ୪ ।

ତହିଁ କଛୁଦନ ରହିଣ ଶ୍ରୀରାମ ଫଳମୂଳ କଲେ ଗ୍ରାସ
ଅପୂର୍ବ କୁରଙ୍ଗୀ ଦେଖିବା ତ ନାହିଁ ଚରୁଛି ମଢ଼ିଆ ପାଶ
ମାୟା ସ୍ୱରୂପ ଧରି
ସୀତା ଦେଖି ତାକୁ ଲୋଭେ କରି । ୫ ।

ବୋଲନ୍ତି ସୀତାୟା ଶୁଣ ହେ ଶ୍ରୀରାମ ଏ କୁରଙ୍ଗୀ ଦିଅ ମାରି
ଦିଅ ରଘୁନାଥ କୁରଙ୍ଗୀକି ମାରି ଲଞ୍ଜ କରିବି ଚଉଁରୀ
ପ୍ରଭୁ ମୋହରେ କାର୍ଯ୍ୟ
ମୃଗ ମାରିଦିଅ ଦେବରାଜ । ୬ ।

କହନ୍ତି ଶ୍ରୀରାମ ଶୁଣ ରେ ଲକ୍ଷ୍ମଣ ଶରଧା କଲା ମୋ ସଖୀ
ଏହିକ୍ଷଣି ମୃଗ ମାରି ଆଣିଦେବି ଦଣ୍ଡେ ରହ ବସା ରଖି
ମୁଁ ଯେ ଯାଉଛି ଧାଇଁ
ମୃଗ ଘେନି ଆସିବି ଚଳାଇ । ୭ ।

ତତକ୍ଷ ନାରାଜ ଘେନି ଦେବରାଜ ମୃଗପଛେ ଗୋଡ଼ାଇଲେ
ତେଣୁ କେତେ ଦୂର ପଳାଇ ଯାଆନ୍ତେ ତୀକ୍ଷ ନାରାଜ ବାନ୍ଧିଲେ
ମୃଗ ଦିଏ କୁହାଟ
ସୀତା ଶ୍ରବଣେ ଶୁଭିଲା ଡାକ । ୮ ।

ବୋଲନ୍ତି ସୀତପ୍ରା ଶୁଣ ହେ ଲକ୍ଷ୍ମଣ ବନେ ଉପତ୍ତି ପଡ଼ିଲା
ଏହୁଷଣି ରାମ ଡାକକ ଡାକିଲେ "ରଖ ଲକ୍ଷ୍ମଣ" ଶୁଭିଲା
ବାବୁ ଯାଅ ତୁରିତ
ଯାଇ ଦେଖି ଅସ ବନ ପଥ । ୯ ।

କହନ୍ତି ଲକ୍ଷ୍ମଣ ଶୁଣ ଠାକୁରାଣୀ କି ବାଇ କଥା ତୁ କହୁ
ଇନ୍ଦ୍ରଚନ୍ଦ୍ର ସୂର୍ଯ୍ୟ ଜିଣି ନ ପାରିବେ ସେ ଯେଉଁ ଶ୍ରୀରାମ ରାହୁ
ତୁ କି ବଗୃରୁ ଏହା
ଶୁଣି ଲକ୍ଷ୍ମଣର ଉଡ଼େ ସାହା । ୧୦ ।

ବୋଲନ୍ତି ସୀତପ୍ରା ଶୁଣ ରେ ଲକ୍ଷ୍ମଣ ବନେ ଅଇଲୁ ଗୋଡ଼ାଇ
ରାମ ମଲେ ମୋତେ ଘରଣୀ କରିବୁ ଭ୍ରାଥ ଅଛୁ ତୋତେ କହୁ
ତୁ କି ବଗୃରୁ ଏହା
ଶୁଣି ଲକ୍ଷ୍ମଣର ଉଡ଼େ ସାହା । ୧୧ ।

କରେ ଧନୁଶର ଘେନାଣ ଲକ୍ଷ୍ମଣ ମଢ଼ିଆ ଦୁଆରେ ଯାଇ
ଧନୁ ମୂନେ ତିନି ଗାର କାଟି ଅଛୁ ନ ଡେଇଁବୁ ବଇଦେହୀ
ମୁଁ ତ ଯାଉଛି ଧାଇଁ
ମୃଗ ଘେନି ଅସିବି ଚଳାଇ । ୧୨ ।

ଲକ୍ଷ୍ମଣ ଯାଅନ୍ତେ ରାବଣ ଅସନ୍ତେ ଭିକ୍ଷା ମାଗିବାର ପାଇଁ
ପଣ କୁଡ଼ିଆରୁ କି ଭିକ୍ଷା ଦେବି ମୁଁ ମୋର ପାଶେ କାନ୍ତ ନାହିଁ
ଅହେ ଯୋଗୀ ଅଗୃର
ଅଉ ମତେ ନ କର ଜଞ୍ଜାଳ । ୧୩ ।

ତରବର ହୋଇ ଫଳମୂଳ ନେଇ ସୀତାଙ୍କୁ ରଥେ ବସାଇ
ଅକାଶ ମାର୍ଗରେ ରଥ ବାହୁଅଛୁ ସୁଗ୍ରୀବର ଦେଲା ଗୃହିଁ
ରଥ ଯାଉଛି ଉଡ଼ି
ସୀତା ପକାଇଲେ ରତ୍ନଚୂଡ଼ା । ୧୪ ।

'ଜଟା ବନସ୍ତରେ ପାଡ଼ିଲେ ବୋବାଳି ମୃତିଏ ହରାଇ ନୀର'
ପକ୍ଷୀଜଟା ଧ୍ବର କେତେହେଁ ମାତର ବାଟେକ କଲା ସମର
ସେ ଯେ ପକ୍ଷୀଙ୍କ ରାଜା
ଭାଙ୍ଗି ପକାଇଲା ରଥ ଧ୍ଵଜ । ୧୫ ।

'ଅସହ୍ୟ ସମର କଲା ପକ୍ଷୀବର ରାବଣ ହୋଇଲା ବଣା'
ଖଡ଼ଗ ଘେନିଣ ବିଶବାର ବାଲ ଛେଦିଦେଲା ଦୁଇ ଡେଣା
ପକ୍ଷୀ ତଳେ ପଡ଼ି
ହୃଦେ ରାମନାମ ଘୋଷୁଅଛି । ୧୬ ।
( ନରସିଂହପୁର )

## ୭ । ସୀତା କୋଇଲି

୧— କୋଇଲି ଲୋ କାନ୍ତ ମୋର ଗଲେ ମୃଗମାରି
କପଟେ ରାବଣ ମୋତେ ନେଉଅଛି ଧରି ଲୋ
କୋଇଲି ।

୨— କୋଇଲି ଲୋ ଖଳ ବୋଲି ଜାଣି ନ ପାରିଲି
ଖଳ ଯେ କନକ ମୃଗ ଦେଖି ଶ୍ରଦ୍ଧା କଲି ଲୋ
କୋଇଲି ।

୩— କୋଇଲି ଲୋ ଗୁରୁ ଶ୍ରଦ୍ଧା ବଳିଲା ମୋହର
ଗେଲରେ ବୋଇଲି ରାମ କୁରଙ୍ଗକୁ ମାର ଲୋ
କୋଇଲି ।

୪— କୋଇଲି ଲୋ ଘଟଣା ଯା କରନ୍ତି ବିଧାତା
ଘୋର ବନେ ମୃଗମାରି ଗଲେ ମୋ ଭରତା ଲୋ
କୋଇଲି ।

୫— କୋଇଲି ଲୋ ଲକ୍ଷ୍ମଣଙ୍କୁ ଜଗାଇ ଦୁଆର
ନାରାଚରେ ମୃଗ ବନ୍ଧ ଗଲେ ରଘୁବୀର ଲୋ
କୋଇଲି ।

୬— କୋଇଲି ଲୋ ଗୁପ ଧରି ଗଲେ ରଘୁନାଥ
ଗୁପତେ ନାରାଚ ବନ୍ଧ ମୃଗ କଲେ ହତ ଲୋ
କୋଇଲି ।

୭— କୋଇଲି ଲୋ ଛାଡ଼ିବାର ବେଳେ ମୃଗ ପ୍ରାଣ
ଛଦ୍ମେ ଡାକିଲା ମତେ ରଖ ଲକ୍ଷ୍ମଣ ଲୋ
କୋଇଲି ।

୮— କୋଇଲି ଲୋ ଜାଣି ନ ପାରିଲି ଛନ୍ଦ ବୋଲି
ଯାଅ ବୋଲି ଲକ୍ଷ୍ମଣଙ୍କୁ ପଠାଇ ଦେଲି ଲୋ
କୋଇଲି ।

୯— କୋଇଲି ଲୋ ଝଂଟିତରେ ଗଲେ ଟି ଲକ୍ଷ୍ମଣ
ଝାଡ଼ର ଭିତରେ ଲୁଚି ଥିଲାଟି ରାବଣ ଲୋ
କୋଇଲି ।

୧୦— କୋଇଲି ଲୋ କାର୍ପଟିକ ତପସ୍ୱୀ ରୂପ ଧରି
ନିର୍ଭୟେ ବସିଲା ମୋର ଦୁଆର ଅବୋରି ଲୋ
କୋଇଲି ।

୧୧— କୋଇଲି ଲୋ ଟେକି ଯେ ଗୁହାଁଳା ମାୟା ଯତି
ଟେକି ଫଳ ଭିକ୍ଷା ମୋରେ ଦିଅ ମହାସତୀ ଲୋ
କୋଇଲି ।

୧୨— କୋଇଲି ଲୋ ଠକ ବୋଲି ଜାଣି ନ ପାରିଲି
ଠକ ଯତି ବୋଲି ଶୁଣି ଟେକି ଭିକ୍ଷା ଦେଲି ଲୋ
କୋଇଲି ।

୧୩— କୋଇଲି ଲୋ ଉଙ୍ଗର ରାବଣ ମାୟା କଲା
ଡାହାଣ ଭୁଜକୁ ମୋର ଅକୋଶି ଧଇଲା ଲୋ
କୋଇଲି ।

୧୪— କୋଇଲି ଲୋ ଟଳା ଯେ ଗୁହାଁଳା ଆକାଶକୁ
ଢାଳେ ରଥ ଶୂନ୍ୟ ଅପି ମିଳିଲା ତାହାକୁ ଲୋ
କୋଇଲି ।

୧୫— କୋଇଲି ଲୋ ଆଣି ମତେ ରଥରେ ବସାଇ
ଆକାଶ ମାର୍ଗରେ ରଥ ନେଉଅଛି ବାହି ଲୋ
କୋଇଲି ।

୧୬— କୋଇଲି ଲୋ ତୁରିତେ ଯେ ରାଜ୍ୟରେ ମିଳିଲା
ତହୁଁ ଯେ ଅଶୋକ ବନେ ନେଇ ଲୁଚାଇଲା ଲୋ
କୋଇଲି ।

୧୭— କୋଇଲି ଲୋ ଆମ୍ର ଜାତି ସନ୍ନତ୍ର ଅସ୍ତ୍ରୀ
ଥାନ୍ତି ନିରନ୍ତରେ ମୋର ପାଞ୍ଚଶତେ ବେଢ଼ି ଲୋ
କୋଇଲି ।

୧୮— କୋଇଲି ଲୋ ଦେବାଙ୍ଗନା ଦୁଇ ମୋର ଏକ
ଧନ ନ ଘରଲେ ମୋର ନିରନ୍ତରେ ଶୋକ ଲୋ
କୋଇଲି ।

୧୯— କୋଇଲି ଲୋ ଧାତା ମୋତେ ଏଡ଼େ କଷ୍ଟ ଦେଲା
ଧରାଇ ଅସୁର ଘରେ ବନ୍ଦୀ କରାଇଲା ଲୋ
କୋଇଲି ।

୨୦— କୋଇଲି ଲୋ ନାରାଜ ଧରଣ ରଘୁନାଥ
ନାରାଜରେ ମୃଗ ମାରି ଆସିବେ ତୁରିତ ଲୋ
କୋଇଲି ।

୨୧— କୋଇଲି ଲୋ ପର୍ଣ୍ଣକୁଟୀ ଦ୍ୱାରେ ଡାକୁଥିବେ
ପଦ୍ମର ପଟାଳି ହାଁଡ଼ା ପାଣିଦିଅ ତେବେ ଲୋ
କୋଇଲି ।

୨୨— କୋଇଲି ଲୋ ଫୁଟି ଡାକୁଥିବେ ବେନି ଭାଇ
ପୂର୍ଣ୍ଣକୁ ତୃଷାରେ ନୀର ଦିଅ ବଇଦେହୀ ଲୋ
କୋଇଲି ।

୨୩— କୋଇଲି ଲୋ ବାରେ ଯହୁଁ ନ ଶୁଣିବେ ବାଣୀ
ବୋଲିବେ ସୀତାକୁ କିଏ ଗୁହେଇ ନେଲାଣି ଲୋ
କୋଇଲି ।

୨୪— କୋଇଲି ଲୋ ଭାଇ ବେନି ବନେ ବୁଲୁଥିବେ
ଭଲ ଲୋକ ଦେଖିଲେ ବାରତା ପଚାରିବେ ଲୋ
କୋଇଲି ।

୨୫— କୋଇଲି ଲୋ ମହା ଘୋର ବନେ ବେନି ଭାଇ
ମତେ ଲୋଡ଼ୁଥିବେ ତହିଁ ଆହାର ନ ପାଇ ଲୋ
କୋଇଲି ।

୨୬— କୋଇଲି ଲୋ ଜୀବ ଯିବା ପ୍ରାୟ ହେଉଥିବେ
ଯାମକ ଯେ ଯୁଗ ଲକ୍ଷ ପରାୟେ ମଣିବେ ଲୋ
କୋଇଲି ।

୨୭— କୋଇଲି ଲୋ ରାଉଥିବେ ମୋର ନାମ ଧରି
ରାତ୍ର ଦିବସ ନେତ୍ରୁ ବହୁଥିବ ବାରି ଲୋ
କୋଇଲି ।

୨୮— କୋଇଲି ଲୋ ଲଙ୍କାର ରାବଣ ଆଣିବାର
ଲକ୍ଷ୍ମଣ ସହିତେ କାହେଁ ନୋହିଲ ଗୋଚର ଲୋ
କୋଇଲି ।

୩୯— କୋଇଲି ଲୋ ବାରତା ପାଇଣ ରଘୁନାଥ
ବାରିନିଧି ଜିଣି ରାମ ଆସିବେ ତୁରିତ ଲୋ
କୋଇଲି ।

୩୦— କୋଇଲି ଲୋ ଶୀଘ୍ରେ ବାର୍ତ୍ତା ପାଇବେ କି କହ
ବାରତା ପାଇ ଆସିବେ ଦଶରଥ ପୁଅ ଲୋ
କୋଇଲି ।

୩୧— କୋଇଲି ଲୋ ଶୀଘେ ରାମ ମାରିବେ କି ଦୁଷ୍ଟ
ଏଠାରୁ ସରିବ ମୋର ବନବାସ କଷ୍ଟ ଲୋ
କୋଇଲି ।

୩୨— କୋଇଲି ଲୋ ଶୀଘ୍ରେ ରାମ ଲଙ୍କାରେ ପ୍ରବେଶ
ମତେ ଘେନି ଚଳି ଯିବେ ଅଯୋଧ୍ୟାପ୍ରଦେଶ ଲୋ
କୋଇଲି ।

୩୩— କୋଇଲି ଲୋ ହେବେ ମୋତେ ଘେନି ଅଭିଷେକ
ହରଷେ ଖଟିବେ ପାତ୍ର ମନ୍ତ୍ରୀ ଯେ ସେବକ ଲୋ
କୋଇଲି ।

୩୪— କୋଇଲି ଲୋ ଝଟେ ରାମ ଅଯୋଧ୍ୟା ପ୍ରବେଶ
ଝଟକେ ଭଣିଲେ ଏହା ବଳରାମ ଦାସ ଲୋ
କୋଇଲି ।

( ନରସିଂହପୁର )

## ୭—ରାମଙ୍କ ବିରହ ଶୋକ

( ୧ )

ମାଲ୍ୟବନ୍ତ ଶିଖେ ରଘୁମଣି
ବିକଳେ ଜାନକୀ ରୂପ ଗୁଣି
କେହି ତୋ ରୂପକୁ ସମାନ ନୋହିଲେ
ରହିଲୁ ସପତ ସିନ୍ଧୁ କିଣି,
ଅଗୋ ବଇଦେହୀ
ତୋର ମୁଖକୁ ଚନ୍ଦ୍ରମା ସରି ନୋହି ।

( ୨ )

କେତେ କାଳ ବସି ବିଶ୍ୱକର୍ମା
ଗଢ଼ିଥିବେ ତୋର ରୂପ ବାମା ।
ତାକୁତ ତ ଶିର ପାଦ ପରିଯନ୍ତେ
ବର୍ଣ୍ଣି ନ ପାରିବେ ବେଦ ବ୍ରହ୍ମା
ଅଗୋ ବଇଦେହୀ
ତୋର ମୁଖକୁ ଚନ୍ଦ୍ରମା ସରି ନୋହି ।

( ୩ )

ଅନେକ ଦେଶର ଦଣ୍ଡଧାରୀ
ଆସିଥିଲେ ତୋତେ ଆଶେ କରି
କେହି ତୋ ରୂପକୁ ସମାନ ନୋହିଲେ
ବନମାଳା ଦେଇ ନେଲୁ ବରି
ଅଗୋ ବଇଦେହୀ
ତୋର ମୁଖକୁ ଚନ୍ଦ୍ରମା ସରି ନୋହି ।

( ୪ )

ବିଭା ହେଲୁ ପଞ୍ଚଗ୍ରାସୀ ବେଳେ
ଭୁଞ୍ଜି ବସିଥିଲୁ ପିତା କୋଳେ

ତୋ ହସ୍ତ କଙ୍କଣେ ମୋ ମୁଖ ଦର୍ଶିଲ
ନ ଖାଇ ରହିଲୁ ଲଜ୍ୟାଭରେ
ଅଗୋ ବଇଦେହୀ
ତୋର ମୁଖକୁ ଚନ୍ଦ୍ରମା ସର ନୋହି ।

( ୪ )

ଅଇଲା ବେଳେ କହିଲ ଯେତେ
ବୋଲ ନ ଧେନାଲୁ କଦାଚତେ
ପତିବ୍ରତା ପଣେ ଗୋଡ଼ାଇ ଅଇଲୁ
ବନସ୍ତେ ଅନାସ୍ତ କଲୁ ମୋତେ
ଅଗୋ ବଇଦେହୀ
ତୋର ମୁଖକୁ ଚନ୍ଦ୍ରମା ସର ନୋହି ।

( ୬ )

ଚହନ ଲଠା ଅନାର ପକ୍ଷ
ପାଣି ବରଷଇ ଗିରଶିଖ
ମେଘ ଘଡ଼ଘଡ଼ି—ଛଟକ ବିଜୁଲି
ନ ଦଶଇ ସଖି ବାଟ—ପନ୍ଥ
ଅଗୋ ବଇଦେହୀ
ଅମେ ଅନାସ୍ତ ହୋଇଲୁ ବେନି ଭାଇ ।

( ୭ )

ମେଘମାଳାମାନେ ତୁମେ ଯାଅ
ଦେଶ ମାନଙ୍କରେ ଭ୍ରମୁଥାଅ
ସୀତାରୂପ ଗୁଣ ବାହୁନିବ କସ
ଝଟକ ବିଜୁଳି ପ୍ରାଯ୍ୟେ ଦହ
ଗୋ ବଇଦେହୀ
ତୋର ମୁଖକୁ ଚନ୍ଦ୍ରମା ସର ନୋହି ।

( ନରସିଂହପୁର )

## ୮—ବାଘ ଗୀତ

ସର୍ବ ଗୋପୀମାନେ   ବିଚାରନ୍ତି ମନେ
ଆଜ ଯିବା ବୃନ୍ଦାବନେ
ହୋଇବା ସୁବେଶ   ତୋଳି ଦିବ୍ୟ ପୁଷ୍ପ
ମଙ୍ଗଳା ଓଷା ବିଧାନେ,
ଅଗୋ ଶୁଣ ସଙ୍ଗାତ
ବନେ ପୂଜିବା ପାର୍ବତୀ କାନ୍ତ । ୧ ।

ସର୍ବ ଗୋପନାରୀ   ହସ୍ତ ଧରାଧରି
ନିକୁଞ୍ଜ ବନେ ମିଳିଲେ
ଚମ୍ପା ଜାଇ ଯୁଈ   ଦଅଣା ମରୁଆ
ନାନା କୁସୁମ ତୋଳିଲେ
କିଆ କେତକୀ ପୁଷ୍ପ
ମଲ୍ଲୀ ମାଳତୀ ମାଧବୀ କଳ୍ପ । ୨ ।

ବିବିଧ ପ୍ରକାରେ   ନାମ ପଚାଲନ୍ତେ
ତୋଳୁଛନ୍ତି ବ୍ରଜନାରୀ
କାହିଁ ଲୁଚି ଥିଲେ,   ନନ୍ଦର ନନ୍ଦନ
ବ୍ୟାଘ୍ର ରୂପ ଧରି କରି
ବ୍ୟାଘ୍ର ବଚନ ମୋଟା
ରୋଷେ କରନ୍ତି ଲାଞ୍ଜ ଚଦ୍ଧଟା । ୩ ।

କଳା ପଟାକେ କି   ଧଳା ପଟାକେ ସେ
ରଙ୍ଗ ପଟାକେ ଛ'ଜାଡ଼
ଆଖି ମିଟି ମିଟି   ଦାନ୍ତ କଟି କଟି
ଭୟେ କମ୍ପିଲେ ଗୋପ ଯୁବତୀ
ଗୋପ ନାରୀ ରତନ
ଛାଡ଼ି ପଳାଇଲେ ବୃନ୍ଦାବନ । ୪ ।

କେହୁ ପିନ୍ଧଥିଲା ଡାଳମ୍ବ ପଢଣୀ
କେ ପିନ୍ଧଚ୍ଛି 'ଝିଲ' ଶାଢ଼ୀ
କେହୁ ପିନ୍ଧଥିଲା ପାଟ, ପାଟ ଠେଣା
କେ ପିନ୍ଧିଲା 'ଜାନ୍ତ ପଢ଼ି'
ବସ୍ତ୍ର ଚିଚ ଅଇଲା
ବାସେ ଖୁନ୍ଦଣା କାହ୍ନୁଁ ଲଗିଲା । ୫ ।

କାର ହଜିଗଲା କମ ନୁଆ ଚୁଡ଼ି
କାର ହଜିଲା ଝୁଣ୍ଟିଆ
କାର ହଜିଗଲା ବାଜେଣି ନୂପୁର
କାର ହଜିଲା ବନ୍ଦିଆ
ସେ ଗୋ ମଥାର ମଣି
ହଜିଗଲା କେ ନ ପାରେ ଜାଣି । ୬ ।

ବ୍ୟାଘ୍ର ଚରଣରେ ନୂପୁର ଗୋଟିଏ
ଦିଶୁଅଛି କେଡ଼େ ଶୋଭା
ଶ୍ରୀବୃନ୍ଦାବନରେ ଦେଖା ତ ନ ଥିଲା
କାହା ପୋଷା ଜନ୍ତୁ ଅବା
ଦେଖି ବ୍ୟାଘ୍ର ରୂପକୁ
ବ୍ୟାଘ୍ର ହଟ କରେ ଆମ୍ଭଙ୍କୁ । ୭ ।

ରାଧିକା ମୁଖକୁ ଦୂତିକା ଚାହିଁଲେ
କୃଷ୍ଣ ଠାର ଦେଲେ ହସ୍ତ
ରାଧିକାକୁ ଚାହିଁ ଦୂତିକା ବୋଲଇ
ଏଇଟି ନନ୍ଦର ସୁତ
ଆଗୋ ଶୁଣ ସୁନ୍ଦରୀ
ଏହି ନନ୍ଦ ପୁଅ ବନମାଳୀ । ୮ ।

( ନରସିଂହପୁର )

## ୯—କାହ୍ନୁ

କାହ୍ନ କହେ ନନ୍ଦରାଣୀ
କାହିଁ ଛାଡ଼ି ଗଲୁ ମୁରଲୀପାଣି ରେ
କରିଥିଲି ମଥାମଣି, ମୋ କାହ୍ନୁ ରେ । ୧ ।
ଖିରି ଦହି ଦୁଧସର
ଖାଇବାକୁ ଦେବି କାହା ଅଧର ରେ
ଖେଳି ବହି କଲୁ ଦୂର, ମୋ କାହ୍ନୁରେ । ୨ ।
ଗୁଣମଣି ବେଣୁପାଣି
ଗୁଣିଗୁଣି ତନୁ କ୍ଷୀଣ ହେଲିଣି ରେ
ଗୋପପୁର ଜଣାମଣି, ମୋ କାହ୍ନୁ ରେ । ୩ ।
ଘର କଲୁ ଘୋର ବନ
ଘନଶ୍ୟାମ ବିନା ନ ଦିଶେ ଆନ ରେ
ଘରେ ରହୁ ନାହିଁ ମନ ମୋ, କାହ୍ନୁ ରେ । ୪ ।
ଉଦୟ ମୁଖ ଚନ୍ଦ୍ରମା
ଉଇଁଥିଲୁ ଗୋପ ମଣ୍ଡଳ ସୀମାରେ
ଉଆଁସ ହେଲା ପୂର୍ଣ୍ଣିମା, ମୋ କାହ୍ନୁ ରେ । ୫ ।
ଚିନ୍ତା ଜଳରେ ଭସାଇ
ଚିନ୍ତାମଣି ଗଲୁ ଅନ୍ତର ହୋଇ ରେ
ଚିତ୍ତ ଥୟ ହେଉ ନାହିଁ, ମୋ କାହ୍ନୁ ରେ । ୬ ।
ଛାତି ହୁଏ ଦକ ଦକ
ଛାଡ଼ିଗଲୁ ଧନୁଁ କଳାମାଣିକ ରେ
କ୍ଷଣେ ନ ରହେ ଲୋତକ, ମୋ କାହ୍ନୁ ରେ । ୭ ।
ଯିବାକୁ ଯମୁନା ଯାଏ,
ଜାନୁ ଥରେ ରମ୍ଭା ଦଳ ପରାଏ ରେ
ଜୀବନ ନ ଥାଏ ଦେହେ; ମୋ କାହ୍ନୁ ରେ । ୮ ।
ଝୁରି ଝୁରି ତନୁ କ୍ଷୀଣ,
ଝିମିଟେ ନ ଦିଶେ ଚନ୍ଦ୍ରବଦନ ରେ
ଝୁରି ନ ସରଇ ଦିନ, ମୋ କାହ୍ନୁ ରେ । ୯ ।

ନବଘନ ଜିଣି ତନୁ
ନୀପ ମୂଳେ ବସି ବଜାଏ ବେଣୁ ରେ
ନ ଯାଏ ପାସୋର ମନୁ, ମୋ କାହ୍ନୁ ରେ । ୧୦ ।

ଟେକ ମୋ ରଖିଲୁ ନାହିଁ
ଟାଣି ପଣଯାକ ଭାଙ୍ଗିଲୁ ବହୁ ରେ
କା ଆଗେ କହିବି ଯାଇ, ମୋ କାହ୍ନୁ ରେ । ୧୧ ।

ଠକଇ ଯାହାକୁ ବହି
ଠିକେ ଅପରାଧୀ କରୁଣା ଦେହି ରେ
ଠକ ଘନଶ୍ୟାମ କହି, ମୋ କାହ୍ନୁରେ । ୧୨ ।

ଡଙ୍ଗର ଅକ୍ରୁର ହେଲା
ଡୋଳା ପ୍ରତିମାକୁ ମୋ ହରି ନେଲା ରେ
ଡାକ ବଜା ଦୁଃଖ ଦେଲା, ମୋ କାହ୍ନୁରେ । ୧୩ ।

ଢଳଢଳ ମୁଖ ଗୋଟି
ଢଳ ଢଳ ଅସୁ ଭୂମିରେ ଲୋଟି ରେ
ଢଳୁଥାଇ ନବ ସୃଷ୍ଟି, ମୋ କାହ୍ନୁରେ । ୧୪ ।

ଅଣହେଲା ପଣ କଲି
ଅକ୍ରୂର ହସ୍ତରେ ପଠାଇ ଦେଲି ରେ
ଅଖିଥାଉ ଅନ୍ଧ ହେଲି, ମୋ କାହ୍ନୁ ରେ । ୧୫ ।

ତୁ ମୋର ଜୀବଜୀବନ
ତତେ ନ ଦେଖିଲି ପାପ ନୟନ ରେ
ସ୍ତ୍ରିଷ ଜନ୍ମ ଅକାରଣ, ମୋ କାହ୍ନୁ ରେ । ୧୬ ।

ଥନୁ ଭାଙ୍ଗି ଖୀର ଦେଲି
ଥରେ କାଳକୁ ଏହା ଦେଖିଲି ରେ
ଥପ୍ପ କଷ୍ଟ ନ ଜାଣିଲି, ମୋ କାହ୍ନୁ ରେ । ୧୭ ।

ଦୁଃଖୀ ମୋହପରି ନାହିଁ
ଦୁଷ୍କୃତ ଭୁବନେ ନରେଖ ମୁହିଁ ରେ
ଦରିଦ୍ର ସଙ୍ଖାଳି ତୁହି, ମୋ କାହ୍ନୁ ରେ । ୧୮ ।

ଧରମ ସହିଲ ନାହିଁ
ଧନକୁ ମୋହର ନେଲ ଶ୍ରୀହରି ରେ
ଧିକ ନ ମଲି କପାଇଁ, ମୋ କାହ୍ନୁ ରେ । ୧୯ ।

ପିତା ହୋଇଲେଣି ବାଇ
ପରମ ପଦାର୍ଥ ପରକୁ ଦେଇ ରେ
ଭଲ ଧନ ସରୁ ନାହିଁ, ମୋ କାହ୍ନୁ ରେ । ୨୦ ।

ନଟବର ବେଶ ତୋର
ନୟନେ ନ ଦେଖି ହୁଏ କାତର ରେ
ନ ଯାଏ ମନୁ ପାଶୋର, ମୋ କାହ୍ନୁ ରେ । ୨୧ ।

ଫାଟି ଯାଉଥାଏ ହୃଦ
ଫନ୍ଦା କରିଥିଲି ତୋ ପଦ୍ମପାଦ ରେ
ଫଟା କପାଳ ମୋ ମନ୍ଦ, ମୋ କାହ୍ନୁ ରେ । ୨୨ ।

ବଂଶୀରେ କେହୁ ବାଇବ
ବ୍ରଜବାଳିକା କେ ବାଣ୍ଟି କରିବ ରେ
ବଛା କେ ଚରାଇ ନେବ, ମୋ କାହ୍ନୁ ରେ । ୨୩ ।

ଭାଇ ତୋର ବଳରାମ
ଭଣ୍ଡି ଘେନିଗଲ ମଥୁରା ଗ୍ରାମ ରେ
ଭଣେ ହୀନ ଘନଶ୍ୟାମ, ମୋ କାହ୍ନୁ ରେ ।୨୪ ।

ମୋହ ପରି ଅଭାଗିନୀ
ମହୀ ମଣ୍ଡଳେ ନଥିବେ କାମିନୀ ରେ
ମରିବା ଯୋଗ ହେଲଣି, ମୋ କାହ୍ନୁ ରେ । ୨୫ ।

ଜଗତେ ବୋଲନ୍ତି ଜନ
ଯଶୋଦାନନ୍ଦନ ଶ୍ରୀଘନଶ୍ୟାମ ରେ
ଜୀବ ଥାଉ ହେଲି ହୀନ, ମୋ କାହ୍ନୁ ରେ । ୨୬ ।

ରଙ୍ଗ ରାଜୀବଲୋଚନ
ରଙ୍କ ପ୍ରାୟେ ଦେଉଥାଏ ଚୁମ୍ବନ ରେ
ରଖିଲୁ ନାହିଁ ସେ ମାନ, ମୋ କାହ୍ନୁ ରେ । ୨୭ ।

ନ୍‌ବଣୀ ସର ଅଧାମ
ଲୁଚୁଇ କା ପାଇଁ ରଖିବ ଶ୍ୟାମ ରେ
ଲୁଚିଲୁ କାହିଁ ମୋ ଧନ, ମୋ କାହ୍ନୁ ରେ । ୨୮ ।
ବୃଢ଼ି କାଳକୁ ଯଂଗୋଳି
ବସି କରଥିଲି ଗଳାର ମାଳ ରେ
ବସି ମରୁଅଛି ଭାଳି, ମୋ କାହ୍ନୁ ରେ । ୨୯ ।
ସଖାକୁ ସଙ୍ଗତେ ଧରି
ଶ୍ରୀବୃନ୍ଦାବନେ କେ•ଖେଳିବ ହୁରି ରେ
ସରିଲା ଯେ ଗୋପ ଶିରୀ, ମୋ କାହ୍ନୁ ରେ । ୩୦ ।
ସତେ କି ବହ୍ନ କରିବ
ଶ୍ୟାମ ବନ୍ଧୁ ମୋର ଫେର ଆସିବ ରେ
ସୁଭାଗ୍ୟ ମୋର ଦଶିବ, ମୋ କାହ୍ନୁ ରେ । ୩୧ ।
ହେଉ ନାହିଁ ଚିତେ ପ୍ରତେ
ହରିଙ୍କି ଦେଖିବ ଏ ପାପ ନେନେ ରେ
ହେବ କି ସୁଭାଗ୍ୟ ସତେ, ମୋ କାହ୍ନୁ ରେ । ୩୨ ।
(ନରସିଂହପୁର)

## ୧୦—ଅଳଙ୍କାର ବୋଲି

ଦିନେ ଦୂତୀଙ୍କ ଡାକି ବେଣୁପାଣି
ହସି ବୋଲନ୍ତି ବରଜତରୁଣୀ । ୧ ।
ଆଜ ରାଧାଙ୍କୁ ଆଣି ଦେବୁ ମୋତେ
କର ଧରି ମୁଁ ମାଗୁଅଛି ତୋତେ । ୨ ।
ଦୂତୀ ବୋଇଲେ ଶୁଣ ହୋ କେଶବ
ରାଧା ତୁମ୍ଭଲାଗି ନଷ୍ଟେ ମରିବ । ୩ ।
ଯେଣେ ଗଲେ ତୁମ୍ଭର ଅପବାଦ
ତାଙ୍କୁ ରସରେ ନ ମାଡ଼ଇ ନିଦ । ୪ ।
ସାଇ ପଡ଼ଶା ଦେଖି ନ ପାରନ୍ତି
ତାଙ୍କୁ ଦେଖିଲେ ଡଗ ମେଲୁଥାନ୍ତି । ୫ ।

କାଲି ନଣନ୍ଦ ବୋଇଲା ରାଧାକୁ
ତୁ ଗୋ ନ ଯିବୁ ଯମୁନା କୂଳକୁ । ୬ ।
ଶାଶୁ ବଚନ ଅତି ଅଗୋଚର
ଏହି ରୂପେ ଶାସ୍ତ୍ର କହେ ଉତ୍ତର । ୭ ।
ତୁ ଲୋ ଅସତୀଙ୍କ ସଙ୍ଗେ ପଡ଼ିଲୁ
ନିତି ଶ୍ରୀକୃଷ୍ଣ ସହିତେ ମାତିଲୁ । ୮ ।
ଘର ଭିତରେ ଟିକିଏ ନ ରହୁ
ଦାଣ୍ଡେ ପହଣ୍ଡେ କି କି ଦେଖୁଥାଉ । ୯ ।

ଡର ନ ମାଉ ଅନ୍ଧାର ଘରକୁ
ରାତ ହେଲେ ଯାଉ ବୃନ୍ଦାବନକୁ । ୧୦ ।
ଭୁଆସୁଣୀ ହୋଇ ଲାଜ ନ ପାଉ
ବେକେ ଦଉଡ଼ି ଖଣ୍ଡେ ତୁ ନ ଦେଉ । ୧୧ ।
ନିତି ପନ୍ଦର ଥର ଖୋଷା ଖୋମ୍ପ
କଥା ପଦେ କହିଲେ କେତେ ରୁଷୁ । ୧୨ ।

କେତେ ଯୁଇକୁ ଅନାଉ ବାଟରେ
ତୁ କି ସୁନ୍ଦର ଏକା ଗୋପ ପୁରେ । ୧୩ ।
କାଲି ରାଧିକା ମୋଠାକୁ ଅଇଲା
କାହ୍ନ ଏହିମତି ମୋରେ କହିଲା । ୧୪ ।
ଏବେ ବୁଦ୍ଧି ଦିଶୁ ନାହିଁ ମୋହର
ତୁମ୍ଭ ଉପାୟ ଥିଲେ ତୁମ୍ଭେ କର । ୧୫ ।
ତହୁଁ ବିଚାର କରନ୍ତି ମାଧୋଇ
ଆଜ ରାଧାକୁ କେହ୍ନେ ଭେଟିବଇଁ । ୧୬ ।
ଏତେ ବିଚାରି ମନରେ ଶ୍ରୀପତି
ରଙ୍ଗେ ହୋଇଲେ ସୁନାର ମୁରତି । ୧୭ ।
ବଳା କେତପା ମୁଣିଏ ସଜାଡ଼ି
ସଜ ପୁରାଇ ବାନ୍ଧିଲେ ଦଉଡ଼ି । ୧୮ ।
ବେଶ ହୋଇ ବନ୍ତୁ ହେଲେ ବାହାର
ସଜ ମୁଣିକି ପକାଇ କାନ୍ଧର । ୧୯ ।

ଘେନ୍ତେ ଦୃହୁଁ ବୃନ୍ଦାବନ୍ନୁ ଅଇଲେ
ସବୁ ଗୋପୀଙ୍କି ବାଟରେ ଦେଖିଲେ । ୨୦ ।
ଉଭା ହୋଇଣ ବୋଲନ୍ତି ଶ୍ରୀପତି
ମୋର ବୋଲ ଶୁଣ ବ୍ରଜ ଯୁବତୀ । ୨୧ ।
ଅମ୍ଭେ ଅଣିଚୁଁ ଅଷ୍ଟ ଅଲଙ୍କାର
ବିକା ଦିବ କି ନଗରେ ତୁମ୍ଭର । ୨୨ ।
ଗୋପୀ ବୋଲନ୍ତି କୃଷ୍ଣଙ୍କୁ ବଚନ
ବାବୁ ଶୁଣ ରେ ବାନ୍ଧାଣି ନନ୍ଦନ । ୨୩ ।
ମୂଲ୍ୟ ବହୁତ କର ନ କହିବୁ
ତୋର ଯଥାର୍ଥ ଗଣ୍ଡା ଗଣି ନେବୁ । ୨୪ ।
ତୁ ତ ମହାଜନ ପୁଅ ବୋଲାଉ
ମିଛ କର କହିବୁ ନାହିଁ ଆଉ । ୨୫ ।
ମୂଲ୍ୟ ସବୁର ମନକୁ ଆସିବ
ଦାଣ୍ଡ ମୂଲରୁ ଅଧିକ ନୋହିବ । ୨୬ ।
କୃଷ୍ଣ ବୋଲନ୍ତି ଶୁଣ ଗୋ ସୁନ୍ଦରୀ
ଲାଭ ନ ଥିଲେ ବଣିଜ ନ କରି । ୨୭ ।
ତୁମ୍ଭେ ମଥୁରା ଦଧି ବିକି ଯାଅ
ଲାଭ ନ ଥାଇ କି ବିକିଛ କହ ? ୨୮ ।
ରାଧା ବୋଇଲେ ଯଥାର୍ଥ କହିଲ
ବୟସରେ ସାନ ହେଲେ କି ହେଲା । ୨୯ ।
ବିକା କିଣାରେ ଏହୁ ଧୁରନ୍ଧର
କହ ଅଣିଛ କି କି ଅଲଙ୍କାର । ୩୦ ।
କୃଷ୍ଣ ବୋଇଲେ କହିଲେ କି ହେବ
ନ ଦେଖିଲେ କି ମନକୁ ଆସିବ । ୩୧ ।
ତୁମ୍ଭେ ଗୋପପୁରେ ଏକହିଁ ନାରୀ
ତୁମ୍ଭ ପଦରଜକୁ କେବା ସରି ? ୩୨ ।
ଦୂତୀ କହିଲା ବାଳୁତ ବାନ୍ଧାଣି
ଯୁବା ନ ହେଉଁ ଚିହ୍ନୁ ଭୁଆସୁଣୀ ? ୩୩ ।

କୃଷ୍ଣ ବୋଇଲେ ଅଳଙ୍କାର ପେଷା
ଆମ୍ଭେ ନ ଜାଣୁ କି ଉତ୍ତମ ଯୋଷା । ୩୪ ।
ଶୁଣ ମୁଁ ଯେତେ ଦ୍ରବ୍ୟ ଆଣିଅଛୁ
ବାହୁନିବାକୁ ତହିଁ ନାହିଁ କିଛୁ । ୩୫ ।
ଅଛୁ ବାଜେଣି ନୂପୁର ଅପାର
ପାଦେ ଥିଲେ ମୋହୁଥିବ ସଂସାର । ୩୬ ।
ଅଛୁ ଓଡ଼ିଆଣି ଗୃହ୍ମ କିଙ୍କିଣୀ
ବାନ୍ଧୁ ଯେନ ତୋ ବରଜ ତରୁଣୀ । ୩୭ ।
ଅଛୁ ବହୁତ କମ ନୂଆ ଚୁଡ଼ି
ହୀରା ବସିଛୁ ତହିଁ ଧାଡ଼ି ଧାଡ଼ି । ୩୮ ।
ଅଛୁ ଅପାର କମ ନୂଆ ତାଡ଼
ରସବତୀ ଧଇର୍ଯ୍ୟ ବନ୍ଧ ଗଡ଼ । ୩୯ ।
ଅଛୁ ପୋଢ଼ ମାଳୀ ଅତି ଯତନ
ସାନ ବଡ଼ ନାହିଁ ସବୁ ସମାନ । ୪୦ ।
କମ ଗଢ଼ା ଗଣ୍ଡି ମାଳୀ ଅପାର
କୁଚ ମୂଳକୁ ଦିଶିବ ସୁନ୍ଦର । ୪୧ ।
ଅଛୁ ଦକ୍ଷିଣୀ ହୀରା କାନଫୁଲ
ବାର ସୁନଆ ତେର ଅଣା ମୂଲ । ୪୨ ।
କମ ପଦ୍ମକେଶର ଚତା ଅଛୁ
ବାହୁନିବାକୁ ତହିଁ ନାହିଁ କିଛୁ । ୪୩ ।
ଅଛୁ ଅହୁର ହାତ ସୁନା ମୁଦ
ତାକୁ ଦେଖିଲେ ହଜିପିବ ବୁଦ୍ଧି । ୪୪ ।
ଅଛୁ କମ କାମ ଗହଣାମାନ
ଲାବଣ୍ୟ ଅଙ୍ଗ ଦିଶିବ ଯତନ । ୪୫ ।
ଏତେ କହୁ କୃଷ୍ଣ ତୁନ୍ତୀ ହୋଇଲେ
ସବୁ ଅଳଙ୍କାର କାଢ଼ି ଥୋଇଲେ । ୪୬ ।
ଦ୍ୱେ ବୋଲଇ ମୁଁ ଯେନି ରତ୍ନ ମୁଦ
ଗୋପ ନଗ୍ରେ ନନ୍ଦସୁତ ମୋହିବ । ୪୭ ।

କେ ବୋଲଇ ଘେନିବି ମଥାମଣି
ମୋତେ ମୂଲ୍ୟ ଦେବଟି ମିତଣି । ୪୮ ।
କେ ବୋଲଇ ମୁଁ ନେବି ଯୋଡ଼ମାଳୀ
ଶାଶୁ ଦେଲେ ଦଅନ୍ତୁ ପଛେ ଗାଳି । ୪୯ ।
ରାଧା ବୋଲନ୍ତି ମୁଁ ନେବି ନେପୁର
ଦୂତୀ ଶୁଣି ହୋଇଲା ଅଗୁସାର । ୫୦ ।

ସେ ଯେ ବୋଇଲା ଶୁଣ ବ୍ରଜବଧୂ
ପଦ ପଙ୍କଜେ ଗୁଞ୍ଜିବାଅ ମଧୁ । ୫୧ ।
ଆମ ବଣିଆଣି ସୁତଟି ହଟିଆ
ଅଲଙ୍କାରକୁ ହାତ ତାର ନୂଆ । ୫୨ ।
ଦୂତୀ କହେ ବାଛୁ ଲଗାଇ ଦିଅ
ମୂଲ କେତେ କହ ବଣିଆଣି ପୁଅ । ୫୩ ।

କୃଷ୍ଣ ବୋଇଲେ ତୁମ୍ଭେ ବାଛୁ ନିଅ
ସବୁ ଅଲଙ୍କାର ତୁମ୍ଭେ ମୂଲ୍ୟ । ୫୪ ।
ଶୁଣି ଦୂତିକା ଅଳପ ହସିଲା
ଅଲଙ୍କାର ବାଛୁ ମୂଲ୍ୟ ଦେଲା । ୫୫ ।
ଗୋପ ଯୁବତୀ ସକଳ ସୁନ୍ଦରୀ
ସବୁ ହଜ ଘେନିଲେ ମୂଲ କରି । ୫୬ ।
ସଜ ସବୁର ମନକୁ ମୋହିଲା
ସଜ ସେହିକ୍ଷଣି ଶେଷ ହୋଇଲା । ୫୭ ।
ରାଧାପଦେ ହସ୍ତ ଦେଇ ମୁରାରି
ପିନ୍ଧାଇଲେ ନୂପୁର ଯତ୍ନ କରି । ୫୮ ।
ପ୍ରିୟା ଗୁମାନ ଅଭିମାନ ବନ୍ଧ
ଅଜାଣତେ ଛେଦିଲେ ଅଦକନ୍ଦ । ୫୯ ।

କେହି ନ ଜାଣିଲେ ଗୁପତ କଥା
ପ୍ରେମେ ଉନ୍ମାଦିନୀ ହେଲା ରାଧିକା । ୬୦ ।
ଗୋପୀ କହନ୍ତି ମହାଜନ ପୁଅ
ଏଥେଁ ବସା କରି ରାତକ ରହ । ୬୧ ।

କାଲି ଶୁଝିବୁ ଅଳଙ୍କାର ଧନ
ସଞ୍ଜ ହେଲାଣି ଯାଉଛୁ ବହନ । ୬୨ ।
କୃଷ୍ଣ ବୋଇଲେ ବେଗ ଆଣ ଯାଇ
ବିକା କଉଡ଼ି କାଲି ନ ରହିଲ । ୬୩ ।
ତେମନ୍ତ ଜୀବକା ନାହିଁ ଆମ୍ଭର
ଅଣ କଉଡ଼ି ନୋହୁ ହରବର । ୬୪ ।
ଯେବେ କଉଡ଼ି ନ ଦେବ ଆମ୍ଭକୁ
ଜଣେ ବନ୍ଧା ଦେଇ ଯାଅ ଘରକୁ । ୬୫ ।
ଆମ୍ଭ କଉଡ଼ି ଯେତେବେଳେ ଦେବ
ତୁମ୍ଭ ସଖିକି ତୁମ୍ଭେ ନେଇଯିବ । ୬୬ ।
ଗୋପୀ ବୋଇଲେ ଶୁଣ ମହାଜନ
ବାବୁ କେଉଁଠାରେ ଅଛୁ ଏମାନ । ୬୭ ।
ଧନେ କିଣି ନାହୁଁ କି ଅଳଙ୍କାର
ତୋହ କଥା ଯାକ ଉତେ ସୁନ୍ଦର । ୬୮ ।
କୃଷ୍ଣ ବୋଇଲେ ଧୋର ଯିବ ନାହିଁ
ଅମ୍ଭେ ଧେନୁ ତ ନ ଯିବୁ ପଳାଇ । ୬୯ ।
ବିକା କିଣାର ଏହାହିଁ ଉଚିତ
ବିଶ୍ୱାସ ରହିବ ସବୁ ଦିନେ ତ । ୭୦ ।
ସବୁ ଗୋପୀ ବୋଇଲେ ହେଉ ହେଉ
ଆମ୍ଭ ମିତଣୀ ରାଧା ବନ୍ଧା ଥାଉ । ୭୧ ।
ଗୋପୀ ଗୋପରେ ହୋଇଲେ ପ୍ରବେଶ
କୃଷ୍ଣ ଶରଣ ଦୀନକୃଷ୍ଣ ଦାସ । ୭୨ ।

( ନରସିଂହପୁର )

# ଦାରିଦ୍ର୍ୟ ଗୀତିକା

## ୧୧—ଚକୁଳିଆ ପଣ୍ଡା ଗୀତ (୧)

ଅହେ ଆପଣେ

ଅନ୍ନ ଦାତା କର୍ଣ୍ଣଦାତା ଦାତା ଜୀମୂତ ବାହାନ
ହର ଚନ୍ଦନ ଶିବ ଦାତା ମୋକ୍ଷ ଦାତା ଜନାର୍ଦ୍ଦନ ହେ ।
ବଳୀ ବେଣୁ ମାନଧାତା ଷଡ଼ ଚକ୍ରବର୍ତ୍ତୀ
ଏମାନେ ତରିଗଲେ ହେ ଆପଣେ
ସଂସାରେ ରହିଅଛି କୀର୍ତ୍ତି ହେ ।

ଅହେ ଆପଣେ

ଦେଇଥିଲେ ପାଇ
ବୁଣିଥିଲେ ଦାସ୍ୟି
ପଡ଼ିଆ ଭୂଇଁରେ ଗୋଧନ ଚରାଇ ହେ ।

ଅହେ ଆପଣେ

ଧର୍ମରୁ ରାମଚନ୍ଦ୍ର ଲଙ୍କା କଲେ ଜୟେ
ଅଧର୍ମରୁ ରାବଣର ହେ ବଂଶ ଚଳେ କ୍ଷୟେ ।
ଧର୍ମରୁ ଜୟେ, ପାପରୁ କ୍ଷୟେ
ଧର୍ମକଲା ପ୍ରାଣୀଙ୍କି ନ ପଡ଼େ ଅପ୍ରମୟେ ହେ ।

ଅହେ ଆପଣେ

ସୀତସ୍ତ୍ରୀ ସମାନେ ସତୀ ଥିବ
କଇଁତା ସମାନେ ପୁତ୍ରବତୀ ଥିବ
ରଘୁନାଥ ସମାନେ ପତି ଥିବ
ଲକ୍ଷ୍ମଣ ସମାନେ କ୍ଷତ୍ରି ଥିବ ହେ ।

ଅହେ ଆପଣେ

ରାମନାମ ପଦଟି ଯେ ସଂସାରେ ହିଁ ସାର
ଶ୍ରୀରାମ ନାମକୁ ଘୋଷି ହୋଇବ ଉଦ୍ଧାର ହେ
ଯହୁଁ ରାମନାମ ପଦକୁ ଯେ ଭଜିଲେ ଅହଲ୍ୟା
ଶ୍ରୀରାମର ପାଦଲାଗି ମୁକତି ଲଭିଲା ହେ ।

ଯହୁଁ ରାମ ନାମ ପଦକୁ ଯେ ଭଜିଲେ ଅର୍ଜୁନ
ଧନୁହୁଲେ ପୃଥିବୀକି ଧଇଲେ ନବଦନ ହେ ।

ଅହେ ଅପଣେ

ଯହୁଁ ରାମନାମ ପଦକୁ ଭଜିଲେ ଶଙ୍କର
ଯୁଗେ ଯୁଗେ ବୋଲନ୍ତି ଯୋଗାଧି ଯୋଗେଶ୍ୱର ହେ ।
ଯହୁଁ ରାମନାମ ପଦକୁ ଯେ ଭଜିଲେକ କାଳୀ
କଠୋଉର ଚନ୍ଦ୍ର ତାକୁ ଦେଲେକ ବନମାଳୀ ହେ ।

ଅପଣେ—

ଯେଣୁ ରାମ ନାମ ପଦକୁ ଭଜିଲେକ ଯୁଧିଷ୍ଠି
ସ୍ୱଦେହ ଘେନିଣ ସେହୁ ସ୍ୱର୍ଗକୁ ଗଲେ ଉଠି ହେ ।
ଯହୁଁ ରାମ ନାମ ପଦକୁ ଭଜିଲେକ କୁନ୍ତୀ
ପାଞ୍ଚଗୋଟି ପୁତ୍ର ତାର ହେଲେ ବଳବନ୍ତୀ ହେ ।
ଯହୁଁ ରାମନାମ ପଦକୁ ଭଜିଲେକ ନକୁଳ
କୁନ୍ତହୁଲେ ପୃଥିବୀକି ଯେ କଲେ ଝଲମଲ ହେ ।

( ପଦାମାଳ, ନରସିଂହପୁର )

## ୧୬—ନଈବଢ଼ି ଗୀତ ( ୨ )

୧ । ଅହେ ଚକାଡୋଳା ଜଗତ ନାଥ — ହେ ମହାପ୍ରଭୁ
ତୁମେ ଥାଉଁ ଅମେ ହେଲୁ ଅନାଥ — ହେ ମହାପ୍ରଭୁ
୨ । ଡେଙ୍ଗୁଲି ପଡର ସପନ ହେଲା — ହେ ମହାପ୍ରଭୁ
କିଏ ବା ପାଣିରେ ବୁଡ଼ିମଲା — ହେ ମହାପ୍ରଭୁ
୩ । ପେଟ ପିଲକୁ ତା ମାଆ ଛାଡ଼ିଲା — ହେ ମହାପ୍ରଭୁ
ବାଛୁରୀ ଛାଡ଼ିତ ଗାଈ ଭାସିଲା — ହେ ମହାପ୍ରଭୁ
୪ । ଘରବୁଡ଼ି ପାଣି ଅଣ୍ଟୁଏ ହେଲା — ହେ ମହାପ୍ରଭୁ
କଲବଲେ କେହୁ ଗଛେ ଚଢ଼ିଲା — ହେ ମହାପ୍ରଭୁ
୫ । କେହୁ ଅବା ଯୁଏ ଭାସିଣ ଗଲା — ହେ ମହାପ୍ରଭୁ
ଘରଦ୍ୱାର ସବୁ ଭାଙ୍ଗି ପଡ଼ିଲା — ହେ ମହାପ୍ରଭୁ

## ୧୩—ଶ୍ରୀମତୀ ନାନୀ ଗୀତ (୬)

ମୁଁ ଅଛେ ଯେଜମାନ ରଜା
ମୁଁ ଅଛେ ଯେଜମାନ ରଜା
ଅରେ ଚେଡ଼ପ ଯା ଯା ।
ଅରେ ଚେଡ଼ପ ଯା ଯା ।

ତୁ ଖାଉଥା କାନ୍ଧିଆ ଭଜା
କଦଳୀ ଭଜା
ନାରଙ୍ଗ ଭଜା
ଅରେ ଚେଡ଼ପ ଯା ଯା ।
ମୁଁ ଅଛେ ଯେଜମାନ ରଜା ।

---

ନୋଃ— ନରସିଂହପୁରର ପାଙ୍ଗାପୁର ଶାସନର ବାଲ ଶ୍ରୀ ବିଧବା ବଧୂ ଶ୍ରୀମତୀ ତାର ସମସ୍ତ ଜୀବନ କଠୋର ଦାରିଦ୍ର୍ୟ ମଧ୍ୟରେ ଅତିବାହିତ କରି ଏବେ କେତେବର୍ଷ ତଳେ ଅତି ନିଃସହାୟ ଭାବରେ ମୃତ୍ୟୁ ପାଇଅଛି । ଶୋଷକ ଧନବନ୍ତମାନେ ତାର ମୃତ୍ୟୁ ସମ୍ବାଦରେ କହୁଥିଲେ ବଗୃହ ଶ୍ରୀମତୀ ସତୁରିବର୍ଷରେ ତରିଗଲା ।

ଉପର୍ଯ୍ୟୁକ୍ତ କବିତାଟି ସେ ଗାଇ ଶିଶୁମାନଙ୍କୁ ମୁଗ୍ଧ କରେ । ତା ବାଡ଼ିରେ ଥିବା କଣ୍ଟାଳିଆ ଫଳ ଦିଓଟି, ଫୁଲ ଦିଓଟି ଦେଇ ଶିଶୁର ମନ ହରଣ କରିବାରୁ ଜନନୀମାନେ ତାକୁ ଗୃଜଲ ମାଣେ, ପଲକା ଦିଅା—ଏପରି ଦିଅନ୍ତି । ଶ୍ରୀମତୀ ବାଟରେ ଯାଇ ଯାଇ ଭଟାଇଲୁ ଦେଖିଲେ ସେଥିରୁ ଦୋଟି ମଧ୍ୟ ଦେଇ ଦିଏ ।

ଏ ଗୀତଟି ତାର ଦେଢ଼ଶୁର ଗାଇ ତାକୁ ଚଢ଼ାନ୍ତି । ତାର ଦେଢ଼ଶୁର ଜଣେ ପୁରୋହିତ । ସେ କୁଶପାବି ହାତରେ ଧରି ନିଜ ଅଗଣାରେ ଉତ୍ତୁ ଉପରକୁ ଉପରୁ ତଳକୁ ନୃତ୍ୟ ଭଙ୍ଗିରେ ପାଦ ପକାଇ ଏ ଗୀତ ଗାଆନ୍ତି । ଏ ଗୀତର ଭାବାର୍ଥ ଶେଷ ଟୀକାରେ ଦିଆ ଯାଇଛି ।

## ୯୪—ଜାଗେରଆ ଗୀତ (୪)

ଯୋଡ଼ ଯୋଡ଼ ପାଣି କେ ଦେବ ଆଣି ମାଗଁ ଭଉଣୀ
ଅଳପ କଥାରେ ଦେଲ୍ ମେଲାଣି ମୋ ମା ରାଣୀ । ୧ ।

ଭଉଣୀକୁ କରଥିଲ କେମନ୍ତେ ଦାଦା ସାମନ୍ତେ
ପୋଷିବା ଚିନ୍ତାରେ କଲ୍ ଏମନ୍ତେ ଦାଦା ସାମନ୍ତେ । ୨ ।

ଖିର କାଞ୍ଚୁଲ୍ ମୋ ବେଙ୍ଗୁଲ୍ ଆଖି
ଯାଇ ପଡ଼ଶାଏ ଅଇଲେ ଦେଖି ମୋ
ଚନ୍ଦ୍ରମାମୁଖି । ୩ ।

( ନରସିଂହପୁର )

---

ନୋଟ— ନରସିଂହପୁର ରଣସିଂହପୁର ଗ୍ରାମର ଜାଗେରଆ ଏକ ଅତି ଦରିଦ୍ର ନିରାଶ୍ରୟ ବ୍ୟକ୍ତି । ଶରୀରରେ ତାର ବଳ ନ ଥିବାରୁ ସେ ଜନ୍ମବୋଲି ଗୀତ ଛନ୍ଦପଦ ଗାଇ ଭିକ୍ଷା ମାଗେ । କଞ୍ଚା, ସିଝା, ପୋଡ଼ା ଫଳମୂଳ ଓ ତେଲ ଲୁଣ ଯେ ଯାହା ଦଏ ତାହା ସେ ଗର୍ଭକୁ ଫେପିଦଏ ।

ଘରେ ଘରେ ଏହା ଶୁଣାଯାଏ ବାଇଗଣଟା ପୋଡ଼ିଗଲା, ଛାଞ୍ଚି ଭୁଲୁର କି ଭୁଆ ଛୁଇଁ ଦେଲା, ଭାତ ଅଇଣ୍ଠା କଲା—ଏସବୁ ଜାଗେରଆ ପାଇଁ ରଖି ଦଅ । ଯାହା ଖାଦ୍ୟ ମଧ୍ୟରେ ଦୂଷିତ ତାହା ହିଁ ଜାଗେରଆର ପ୍ରାପ୍ୟ । ସେ ଏତେ ଦରିଦ୍ର ଯା ନିଉଛାଣ ଥିଲା ଯେ ତେଲ ଟିକିଏ କେହୁ ଦେଲେ ତା ମଧ୍ୟ ସେ ପିଇ ଦେଉଥିଲା ।

ଏହି ହତଭାଗ୍ୟ ପ୍ରାଣୀଟିର ଥିଲା ଏକ ଦରିଦ୍ର ବ୍ରାହ୍ମଣୀର ପିଣ୍ଡା କଡ଼ ଅସ୍ଥାୟୀ କୁଟୀ । ସେ ଦିନେ ଦିନେ ଉପବାସ ମଧ୍ୟ ରହୁଥିଲା । ଗ୍ରାମକୁ ଗୋରୁ ଗଲେ, ତାହାର କେଉଁ ଜିନିଷ ହଜିଗଲେ ଜାଗେରଆ ଅଳ ଦଣ୍ଡିତ ହେଉଥିଲା । ତଥାପି ସେ ସ୍ଥାନ ତ୍ୟାଗ କରୁ ନ ଥିଲା । ଏ ଦୁର୍ଭିକ୍ଷଗ୍ରସ୍ତ ୧୯୧୬ ମସିହାରେ ଘୋର ଶୀତ ଜାଡ଼ରେ ଛିଣ୍ଡା ଲୁଗା ବସ୍ତା ଦିଖଣ୍ଡି ଘୋଡ଼େଇ ହୋଇ ନରସିଂହପୁରର ହରିଚନ୍ଦନପୁର ଗ୍ରାମରେ ସେ ଶେଷ ନିଶ୍ୱାସ ତ୍ୟାଗ କଲା । ତାର ଶବ ହାଡ଼ିମାନେ ଅରଣ୍ୟ ତଳେ ଫିଙ୍ଗି ଦେଇଥିଲେ ।

## ୧୪—ବାଠୀ ପାଣ ଗୀତ ( ୪ )

ଏ ବୋପା ମଲା, ମା' ଘଇତା ଘେନ କଲା
ଭାତ ଗୁଣ୍ଡିଏ ଦିଅ ହେ ସାଆନ୍ତାଣିଏଁ ।
ବା'ଡ଼ିଅଡ଼େ ଲୁହ କାନ୍ଦେ ଦା'ଣ୍ଡିଅଡ଼େ ଲୁହ
କଣିଦେବ ଦରପଣ ପିଲେ ରେ ଦେଖୁଥିବ ମୁହଁ କି ଗୁହୁଁ ଥିବ ମୁହଁ

ଯାଇଥିଲି ମାମୁଁ ଘର
ତୋଲ ଖଣ୍ଡି ନେଲା ଚୋର

ସାଆନ୍ତେ ହେ—ଗୁରଦନ ଉପାସିଆ
କାହିଁକି ଉକରା ମୋତେ ସାଆନ୍ତେ ହେ

ବଣିଆ—ପୋକ,
ସାହୁଘର ଲୋକ—ହାଉଁ ।
( ନରସିଂହପୁର )

---

ନୋଟ—  ଗୋଟିଏ ପିତୃମାତୃହୀନ ପାଣ ଶିଶୁର ନାମ ଥିଲା ବାଠୀ । ୧୮୯୭ ମସିହା ଦୁର୍ଭିକ୍ଷରେ ସେ ଜଣାଣବନ୍ତ ଗୀତଟିକୁ ନିଜେ ରଚନା କରି ଭିକ୍ଷା ମାଗି ବୁଲୁଥିଲା । ତାର ଘର ଥିଲା ନରସିଂହପୁରର ଉଗଡ଼ାସାହି ନାମକ ହରିଜନ ବସ୍ତିରେ । ଏବେ ଗୋଟିଏ କଇଁଅଟଛ ସେ ଗ୍ରାମର ସ୍ମୃତି ରଖିଛି । ଜମିର ମାଲିକ ହେଲେଣି ଅନ୍ୟ ଲୋକେ ।

ବାଠି ଗ୍ରାମେ ଗ୍ରାମେ ଗୀତ ଗାଏ । ଧନବନ୍ତ ଘର ଲୋକେ ବାଲିରେ ରେଖାକାଟି ଏହା କାକରା, ଏହା ମଣ୍ଡା, ଏହା ଜାଉ ବୋଲି କହିଲେ ସେ ତାହା ସତ ସ୍ୱାଦ ଜିଭରେ ଗୃହି ଦଏ । ତାର ବୋପା ମରିଯିବାରୁ ମାଆ ଜଣେ ବିଦେଶୀ ସାଥିରେ ଗୃଲିଗଲା । ତାର ନିଜ ଜୀବନର କାହାଣୀ ସେ ନିଜେ ରଚନା କରିଥିବା ଏକାନ୍ତ ସତ୍ୟ ଅଟେ ।

ଏହି କବିତା ଶୌଖ ଦେବୀ ତାହାଙ୍କୁ ଯେପରି ଶୁଣିଥିଲେ ଅବିକଳ ସେପରି ଗାଇ କାଳି କଲମକୁ ଦେଇଥିଲେ ।

# ମନ୍ତୁରା ଗୀତ

## ୧ । ଘର ସମ୍ଭାର—

ଓଁ ପାଣି ତ ପାଣି,
ସତ୍ୟ ତ୍ରେତା ଦ୍ୱାପର କଳି ଚାରି ଯୁଗ ପାଣି
ଶ୍ରୀରାମ ଅବତାର ପାଣି
କୂର୍ମ ଅବତାର ପାଣି
ବଉଧ ଅବତାର ପାଣି
ପରଶୁରାମ ଅବତାର ପାଣି
ମଛ ଅବତାର ପାଣି
କଚ୍ଛ ଅବତାର ପାଣି
ବରାହ ଅବତାର ପାଣି
ଏ ପାଣି ଦେଲେ ବିଶ୍ୱାମିତ୍ର ଅଗସ୍ତି ମହାମୁନି ଜାଣି
ହନୁମନ୍ତ ଆଣିଲେକ ସାତ ସମୁଦ୍ର ପାଣି
ଏ ପାଣି ବ୍ରହ୍ମାଙ୍କ କମଣ୍ଡଳ ପାଣି
ମହାଦେବଙ୍କ ତ୍ରିଶୂଳ ଡମରୁ ପାଣି
ବିଶ୍ୱନାଥଙ୍କ ଡମରୁ ପାଣି
ପାର୍ବତୀଙ୍କ ଶ୍ରୀଅଙ୍ଗ ପାଣି
କାର୍ତ୍ତିକେଶ୍ୱରଙ୍କର ଚତୁର୍ଭୁଜ ପାଣି
ଅର୍ଜୁନଙ୍କର ଗାଣ୍ଡିବ ଧନୁ ପାଣି
ହରିଙ୍କ ସୁଦର୍ଶନ ଚକ୍ର ପାଣି
ଶ୍ରୀ ଜଗନ୍ନାଥଙ୍କର ଶ୍ରୀଅଙ୍ଗ ପାଣି
ସୁଭଦ୍ରାଙ୍କର ଦୁଇଭୁଜ ପାଣି
ବଳଭଦ୍ରଙ୍କର ଚତୁର୍ଭୁଜ ପାଣି,
ନାଗାର୍ଜୁନଙ୍କର ବଜ୍ର ଶକ୍ତି ପାଣି
ଭୀମସେନ ଠାକୁରଙ୍କର ବାନଭାର ଗଦା ପାଣି
ଯୁଧିଷ୍ଠି ଦେବଙ୍କର କଣ୍ଠାର ପାଣି
ସହଦେବଙ୍କର କୋନ୍ତମୁନ ପାଣି

ଦୁର୍ଗା ଦେଲେ ପଣତରେ ଛାଣି
ଶ୍ରୀକୃଷ୍ଣଙ୍କର ବେନୁ ସ୍ୱନ ପାଣି
ଗୋପୀ ଗୋବଚ୍ଛାଙ୍କ ସମସ୍ତଙ୍କର ପାଣି
ରାମଚନ୍ଦ୍ରଙ୍କର ବ୍ରହ୍ମଶର ପାଣି
କାଉଁରିମଣ୍ଡଳ ନେତାଇ ଧୋବଣୀ ପାଣି
କାଉଁରିପାଟଣା ମାଧବ ବେଟହରା ମା
ସାତ ଝଅଣିଆ ପାଣି
ହନୁମାନଙ୍କର ସ୍ନାନ ପାଣି
ଏ ପାଣି ଦେଲେ ନଳୀନାଶଣି ଲେଉଟଇ
ଘାଇ ଗୁହାଳ ଲେଉଟଇ
ମଇଁଷି ଘୋଠ ଲେଉଟଇ
ବାଇଗଣ ଗଛ ଲେଉଟଇ
ସ୍ୱଣି ଗଛ ଲେଉଟଇ
ଗାଈ ମଇଁଷି ଗର୍ଭରୁ ଥିଲେ ଫଳ ରହଇ
ଦଧି ଦୁଧ ନାଶଣା ଖୁଆ ଲେଉଟଇ
କାକ ମଢ଼ଙ୍କୁ ଭଲ ହୁଅଇ ।

## ୨—ପାଣି ମନ୍ତ୍ର

ଲକ୍ଷ୍ମଣଙ୍କର ମନଭେଦ ପାଣି
ସୀତାଙ୍କର ଶ୍ରୀ ଅଙ୍ଗ ପାଣି
ଭରଥଙ୍କର ବଜ୍ର ବାହୁଳି ପାଣି
ଶତ୍ରୁଘନଙ୍କର ତ୍ରିଶୂଳ ପାଣି
ପ୍ରଶୁରାମଙ୍କର କୁଠାର ପାଣି
ସହସ୍ରାର୍ଜ୍ଜୁନଙ୍କର ତକ୍ଷଣର ପାଣି
ସୁମନ୍ତଙ୍କର ହଂସବାହନ ପାଣି
ଚନ୍ଦ୍ରଙ୍କର ବଜ୍ରଶୂଳି ପାଣି
ଅଇରାବତ ଗଜର ସ୍ତମ୍ଭର ପାଣି
ରୁଦ୍ରକପିଳାସ କନ୍ଦର ପାଣି

ଏ ପାଣି ଦେଲେ ନାଶଣା କାଟଇ
ଭଲ ହୁଅଇ
ଲେଉଠ କାଟଇ
ଚଉଦଗର ପାଣି
ମୁଁ ଦେଉଛୁ ଭାର ସମ୍ଭାର ପାଣି
ଅଷ୍ଟ ଯୂଥପତ ପାଣି
ବିଶ୍ୱାମିତ୍ର ଅଗସ୍ତି ମହାଋଷି ପାଣି
ମୁଁ ଦେଉଛୁ ଲେଉଠ ପାଣି
ଚଉଦଗର ପାଣି
ତଳ ପିହାଣିଆ କାଟଇ
ଉପର ପିହାଣିଆ କାଟଇ
ଅଢ଼ାଇ ଗରିଆ କାଟଇ
ଡାଳ ଭଙ୍ଗା କାଟଇ
ଅକଳିତ ବ୍ରହ୍ମ କାଟଇ
ଘୁଇ କାଟଇ
ଘାଇ କାଟଇ
ପରଦୃଷ୍ଟି କାଟଇ
ପାରୁସ କାଟଇ
ଚଉଷଠି ପାଙ୍ଗଣ କାଟଇ
ଭେଳିକା କାଟଇ
ନବକୋଟି ସିଙ୍ଗାର କାଟଇ
କଣୁ ପକା କାଟଇ
ହୃଦବ୍ୟଥା କାଟଇ
ଗଣ୍ଡଦୋଷ କାଟଇ
ଅସି ପ୍ରକାରେ ନାଶକୁ କାଟଇ
ପାଣି କାଟେ
ଲେଉଠ ପାଣି ପାଳଟି କାଟେ
ପଖା କାଟେ
ଅଖା କାଟେ

ଖୋସିଲ କାଟେ
ପୋଡଲ କାଟେ
ଭୂମି କଲଲେ ଭୂମି ଲେଉଟଇ
ଅଣମୃତ୍ରଷାକୁ ଦେଲେ
ଅଣମୃତ୍ରଷା ଲେଉଟଇ
ଘାକୁ ଦେଲେ ଘା ଶୁଖଇ
ପୃଥିବୀକି ଦେଲେ ପୃଥିବୀ ଲେଉଟଇ
ବାରକୁ ଦେଲେ ବାର ଲେଉଟଇ
ବୃଷକୁ ଦେଲେ ବୃଷ ଲେଉଟଇ
ଅଖୁଶାଳକୁ ଦେଲେ ଶାଳ ଲେଉଟଇ
କୁମ୍ଭାର ଶାଳ ଲେଉଟଇ
କମାର ଶାଳ ଲେଉଟଇ
ଅଯନ୍ତ୍ରୀକି ଦେଲେ ଅଯନ୍ତ୍ରୀମାନ ଲେଉଟଇ
ଶୁଣ୍ଡିଶାଳକୁ ଦେଲେ ଶୁଣ୍ଡିଶାଳ ଲେଉଟଇ
ବାରଖଣ୍ଡି ବାଉଳ କାଟଇ
ତେରଖଣ୍ଡି ମଶାଣି କାଟଇ
ଅଜୀବ ଜୀବ କରଇ
ପଡ଼ିଆ ଭୂଇଁ ଜଠିଆ କରଇ
କର ନ କର ବୋଲି କାହାର ଆଜ୍ଞା
ଅଯୋଧ୍ୟା ଠାକୁର ଦଶରଥଙ୍କ ପୁଅ
ଜାନକୀ ବଲ୍ଲଭଙ୍କର କୋଟିଏ ଆଜ୍ଞା ।
ଏ ଗ୍ରଣ ଯେବେ ମେଣ୍ଟୁ
ବନଦୁର୍ଗାଙ୍କର ଭୁଜ କାଟୁ
ରାମ ଲକ୍ଷ୍ମଣଙ୍କ ଶିର କାଟୁ
ସୀତାଙ୍କର ସ୍ତନ କାଟୁ
ଭରଥ ଶତ୍ରୁଘନଙ୍କର ହସ୍ତ କାଟୁ
ଈଶ୍ବରଙ୍କର ଜଟା କାଟୁ
ପାର୍ବତୀଙ୍କର ସ୍ତନ କାଟୁ
ବ୍ରହ୍ମାବିଷ୍ଣୁଙ୍କର ଚରଣ କାଟୁ

ବଡ଼ଠାକୁରଙ୍କର ଭୁଜ କାଟୁ
ସୁଭଦ୍ରାଙ୍କର ଶିର କାଟୁ
ବଳଭଦ୍ରଙ୍କର ଭୁଜ କାଟୁ
ଯୁଧିଷ୍ଠି ଦେବଙ୍କର ଜଠା କାଟୁ
ଦ୍ରୋପଦିଙ୍କର ସ୍ତନ କାଟୁ
ନ କାଟୁ ବୋଲି କାହାର ଗ୍ରଣେ
ଅଗସ୍ତି ମହାମୁନିଙ୍କର କୋଟିଏ ଗ୍ରଣେ ।
ଏ ଗ୍ରଣ ଯେବେ ମେଣ୍ଟୁ
ଅର୍ଜୁନଙ୍କର ବୃକ୍ଷ ଫାଟୁ
ନକୁଳଙ୍କର ଶିର କାଟୁ
ସହଦେବଙ୍କର ହସ୍ତ କାଟୁ
ନ କାଟୁ ବୋଲି କାହାର ଗ୍ରଣେ
ଭୀମସେନ ଠାକୁରଙ୍କର କୋଟିଏ ଗ୍ରଣେ ।
ଏ ଗ୍ରଣ ଯେବେ ମେଣ୍ଟୁ
ପର୍ଶୁରାମଙ୍କର ଜଠା କାଟୁ
ସହସ୍ରାର୍ଜୁନଙ୍କର ଶିର କାଟୁ
ଇନ୍ଦ୍ରଙ୍କର ଚରଣ କାଟୁ
ବ୍ରହ୍ମାଙ୍କର କମଣ୍ଡଳୁ କାଟୁ
କୃଷ୍ଣଚନ୍ଦ୍ରଙ୍କର ଗ୍ରଣ ।
ଯେବେ ମେଣ୍ଟୁ
ବିଶ୍ୱାମିତ୍ରଙ୍କର ଜଠା କାଟୁ
ହନୁମନ୍ତଙ୍କର କଉଟି କାଟୁ
ବାଲମିକ ମୁନିଙ୍କର ଦେହ କାଟୁ
ଚନ୍ଦ୍ରଙ୍କର ତପ କାଟୁ
ସୂର୍ଯ୍ୟଙ୍କର ହୃଦୟ କାଟୁ
ନ କାଟୁ ବୋଲି କାହାର ଗ୍ରଣେ
ସ୍ୱର୍ଗେ ଇନ୍ଦ୍ରଙ୍କର କୋଟିଏ ଗ୍ରଣେ
ଅଷ୍ଟ ଶମ୍ଭୁଙ୍କର କୋଟିଏ ଗ୍ରଣେ

ଅଷ୍ଟ ଦିଗପାଳଙ୍କର କୋଟିଏ ସ୍ୱର୍ଣେ
ପାତାଳେ ବାସୁକିଙ୍କର କୋଟିଏ ସ୍ୱର୍ଣେ
ତେତିଶ କୋଟି ଦେବତାଙ୍କର କୋଟିଏ ସ୍ୱର୍ଣେ
ସିଦ୍ଧ ଗୁରୁଙ୍କର କୋଟିଏ ସ୍ୱର୍ଣେ ।
ନୂଆ ଠେକରେ ପାଣି ଠେକଏ ଆଣିବ
ଧୋବା ଗଣ୍ଡି ପାଣି ଧୋବା ହାଣ୍ଡି ପାଣି
କୁମ୍ଭାର ଶାଳ ପାଣି କମାର ଶାଳ ପାଣି
ବଣିଆ ଶାଳ ପାଣି ଶୁଣ୍ଡିଶାଳ ପାଣି
ଏତେକଠାରୁ ପାଣି ଠେକରେ ପୂରାଇ ଆଣି
ଏହା ମନ୍ତ୍ରରେ ମନ୍ତ୍ରିଦେବ ।
ଯେତେ ଅସାର ହୋଇଥିଲେ ଭଲ ହୁଅଇ ।
ଅଣଚୋଟରୁ ପାଣି ଠେକଏ ଆଣିବ
ତହିଁରେ ସ୍ୱର୍ଣ୍ଣିଆ ମୂଳ
ପହିଁରୀ ବଜା ଲେଜୁଟିଆ ମୂଳ ତହିଁରେ ପକାଇବ
ସେ ପାଣି ଦେହରେ ପକାଇଲେ
କାଳ ମଡ଼କରୁ ସକଳ କଥା ଅସାର ଥିଲେ ଭଲ ହୁଅଇ ।

୩ । **ଅଲତ—**

ଓଁ ଅଲତ ଅଲତ ସାତ ଜଣ ଜାଣନ୍ତି
ଓଁ ଅଲତ ପୂଜା ଉଠିଲା କଣାଭ୍ରମ ସ୍ୱତ
ସପ୍ତଋଷି ଦେଲେ ବର
ରେ ରେ ଅଲତ ଅତ ବେଗେ ମର
କମରୁ ବୋଲ କାହାର ଆଜ୍ଞା
ଈଶ୍ୱର ପାର୍ବତୀଙ୍କର କୋଟିଏ ଆଜ୍ଞା ।
ବ୍ରହ୍ମା ବିଷ୍ଣୁ ଅଇଲେ ଧାଇଁ
ଦେଖିଲେ ଅଲତ ପାତାଳେ ନାହିଁ
କାରେ ଅଲତ ମଣିଷକୁ କମା ଅଇଲୁ
ପାତାଳକୁ ଯା ଯା

ନ ଯାଉ ବୋଲ୍ କାହାର ଅଜ୍ଞା
ବ୍ରହ୍ମା ବିଷ୍ଣୁ ମହେଶ୍ବରଙ୍କର କୋଟିଏ ଅଜ୍ଞା ।

**୪ । ଫୁଲ ପଢ଼ିବାକୁ ମନ୍ତ୍ର—**

ଓଁ ପେଟ ବ୍ୟଥା ବ୍ୟାଧି କାଟେ
ଭବ ସୁନ୍ଦରୀ କାଟେ
ମୋ ଇଚ୍ଛା କାଳ ବାଞ୍ଛା କାଟେ
ଜ୍ଞାନକୁ ଜ୍ଞାନ କାଟେ
ବାଧ ଖଳବଳ କାଟେ
ଛାଲୁପା ଖୋଷା କାଟେ
ମୋହର ବାବୁ ବ୍ରହ୍ମ କଲୁଷ ଶର
ନ କାଟୁ ବୋଲ୍ କାହାର ଅଜ୍ଞା
ଶ୍ରୀରାମ ଠାକୁରଙ୍କର କୋଟିଏ ଅଜ୍ଞା



# ଟୀକା

ଏ ଗ୍ରନ୍ଥର ସାମ୍ୟକ ଟୀକା ଲେଖାଗଲେ ଠିକ୍ ଏହାପରି ଗୋଟିଏ ଗ୍ରନ୍ଥ ହେବ । ତେଣୁ ପାଠକମାନେ ନିଜ ରୁଚିରେ ନିଜ ବିଚାରରେ ଯେପରି ହେଉ ଧାରଣା ଆଣିବେ । ଯେଉଁମାନ ନିତାନ୍ତ ଅବୋଧ ଜଣାଯିବ, ତାହା ସଂଗ୍ରାହକଙ୍କ ସହିତ ସମ୍ପର୍କ ରଖି ଗବେଷକମାନେ ବୁଝିପାରିବେ ।

ସଂଗ୍ରାହକ

# ଟୀକା

ପୃ ୧—ଗଡ଼ାଣ୍ଟର—ବାଣପୁର ଠାରୁ ଦେଢ଼କୋଶ ଦୂରରେ ଥିବା ଦୁଲଣି ଗ୍ରାମର ଶିବ ମନ୍ଦର । ଓଡ଼ଳ—ଓଡ଼ ନାମକ ନାରସ ଶାଢ଼ୀ ।

ପୃ ୬—୭—ଯିବାଖଣ୍ଡି—ଯିବା'ର ନାଷ୍ଟଓ । ଗଜପଲଙ୍କେ—ଗଜପଲଙ୍କରେ ଥାଇ ।

ପୃ ୮—କୋକଳ—କବିଙ୍କ ନାମ ।

ପୃ ୧୧—ପିଞ୍ଛ ନ ପଡ଼ିବ ବାଟେ—ପଖା ପବନରେ ମୋ ଅଣିର ପିଚ୍ଛୁଳା ସୁଦ୍ଧା ପଡ଼ିବ ନାହିଁ । ମୁଁ ନାଗ୍ରହି ଅନାଇଁ ଥିବ ।

ପୃ ୧୪—ଅଡ଼ଙ୍ଗ—ପିଣ୍ଡା । ପିଢ଼ାପାଣି—ଗୋଡ଼ ଧୋଇବାକୁ ପାଣି, ବସିବାକୁ ପିଢ଼ା ।

ପୃ ୧୮—ଦ କାହାଣେ କନା—ଅସଂଖ୍ୟ ଡାଳପକା ଲୁଗା । କାହାଣଙ୍କ ସଂଖ୍ୟାରେ ୧୨୮୦ । ଡେଗ୍—ଠିଅରେ ଅଉଜାଇ ରଖିବା । ଲଠି—ତୁଳାଭଣାର ଧନୁ ଅକୃତ ଲଠି ।

ପୃ ୧୯—ଅଗୁର ( ଏ କ୍ଷେତ୍ରରେ ) ଦୁର୍ବିଗୁର । ତୁନକା—ନୀରବ । ଠକ ଅର—ସ୍ୱତନ୍ତ୍ର ରୂପ ।

ପୃ ୨୧—ଉଚ୍ଛେଦନ—ଗାଢ଼ । ଗଙ୍ଗ—ଭଲକୁ ମନ୍ଦ ବିଗୁରିବା ।

ପୃ ୩୦—ଲୋଥ—ଢଳି ପଡ଼ିବା । (ଅନ୍ୟାୟ ଯୁଦ୍ଧରେ ମୃତ୍ୟୁ ବରଣ କରିବା) ମାଉଁ—ଜନନୀ । ବଲ୍ଲଭ—ବିଶେଷ ଭୂଷଣ ।

ପୃ ୩୧—ମୁକୁତା ତରୁଣୀ ଲହ—ତରୁଣୀ ଏଠାରେ ଏକାନ୍ତ ନୂଆ ବୋଲି କୁହାଯାଇଛି । ପ୍ରଥମ ମୁକ୍ତା ବିନ୍ଦୁ ସଦୃଶ ଲହ ।

ପୃ ୩୫—ନାମଦୋହ୍ନ—ପରଭ୍ୟକ୍ତା । ଘୋଡ଼ା ପାଇକା—ଘୋଡ଼ାଶାଳ ।

ପୃ ୩୬—କଉଡ଼ି ପଣକ—ଏକଅଣା ମାନ । ସେରକଇ—ସେରକ । କୋଠ କଲେ—ସରକାରୀ କଲେ । କୋଠ—ଗଭର୍ଣ୍ଣମେଣ୍ଟ-ଟ୍ରେଜରୀ । ମାଢ଼—ଅର୍ଦ୍ଧଭର ଓଜନ ।

ପୃ ୩୭—ଦାନ୍ତୁଅଣି—ଦାନ୍ତ ଘଷିବା । ନାଉଡ଼—ଛୁଆଁଇବା ।

ପୃ ୫୩—ଭୁଭୁର ଖାର—ଭରଭର—ଫୁଲ୍ଲ ଫୁଲ୍ଲଅ ଖାର । ପନ୍ଦ ପୋଛଗଲେ ତା ପାଉଁଶ ଉଜ୍ଜ୍ୱା ଉଜ୍ଜ୍ୱା ଦେଖାଯାଏ । କାନ୍ତୁ ହାଣ୍ଡିରେ

ଧଇଲେ ମେଞ୍ଚାଏ ମାନ । ପତ୍ରୁଲ—କ୍ଷୁଦ୍ର ଅଲ୍ପ ଭଇର ମୁଣ୍ଡିଆ ପାନ । ଜଜାଙ୍ଗି—ଏକ ବର୍ଣ୍ୟ କ୍ଷୁଦ୍ର ବୃକ୍ଷ (ଅନାବଶ୍ୟକୀୟ) ହେଥେରେ—ତହିଁରେ । କୁଢ଼—ଉନଚଣୀଆ ଘରର ତ୍ରିକୋଣ ବାଡ଼ର ନିମ୍ନ ଅଂଶ ।

ପୃ ୮୨—ଏନୁର—ଏନୁଡ଼ । ଓସ୍ଥଇ—ସଜାଡ଼ିବା, ଫୋପାଡ଼ିବା । ଅତରା—ଏନୁଡ଼ । ଡ଼ଠିଅର—ଅଷ୍ଟମ ଦିନ ।

ପୃ ୮୩—ଅଭଙ୍ଗ—ଚେମେଡ଼ ଲଇ ବଠା । ଭସ୍ମୀଚଲ—ପୋଛିଲେ । ଘଟି—ମଳଛଡ଼ାଇବା ଲେପ । ନିହୁଡ଼ଲେ—ଗାଳିଲେ ।

ପୃ ୮୪—ପାରୁଆ—ପାରା ।

ପୃ ୮୬—ମୁହଁବୁହାଁ—ଯାହା ଶିଶୁକୁ ଦେଖାଇ ଦାନ କରାଯାଏ । ନାଉଳ—କର୍ଣ୍ଣବେଧ । ନାଉ—ଭଣ୍ଡାର । ନାଉଲ—ଫମ୍ପା ନୋଳ ।

ପୃ ୮୭—ମାଧବନ—ଧଳା ଓ ହଳଦିଆ ରଙ୍ଗର ।

ପୃ ୮୯—ସଙ୍ଗୋଇଣ—ସଜାଡ଼ଣ । ତ୍ରିମୁଣ୍ଡି—ତ୍ରିଶାଖା ବିଶିଷ୍ଟ ଫୁଲ ଛୋଡ଼ା ।

ପୃ ୯୦—ପାହାଡ଼—ପାଦ ସ୍ଥାପନର ନୂତନ ବସ୍ତ୍ର । ମହୁର—ମୁକୁଟ । ସାଉର—ସାଉଁଳି, ଚକ୍‌କଣ କର । ବର୍ଣ୍ଣମାଳା—ଜାଇଫୁଲ ମାଳା ।

ପୃ ୯୧—କୋଇଲି ବୁଡ଼—କୋଇଲି ଅତି ପ୍ରତ୍ୟୁଷରୁ ସ୍ନାନ କରଥାଏ; ସେହି ସମୟ ।

ପୃ ୯୫—ଫନ୍ଦା—କୁଟ କୌଶଳ । ମୁରୁଚ୍ଛ—ପାଚେରି କାନ୍ଥରେ ଥିବା ସୈନ୍ୟମାନଙ୍କ ଗୁପ୍ତଗୃହ ।

ପୃ ୯୭—ପା'ଫିଠା—ପାଦର ନଖ କଟାଇବା । ଇନ୍ଦ୍ରଗୋପ—ସାଧବାଣୀ ପୋକ ।

ପୃ ୧୦୦-୧୦୧—ପନ୍ନଅର ଲଗି—ସୁବାସିତ ଜଳ ଲଗାଇ କ୍ଷୌର କରିବା ବିଧି । ପନ୍ନଅର—ସୁବାସିତ ଜଳ । ଚଞ୍ଚରିକ—ଭ୍ରମର । ଗାଲମୋଚ୍ଛ—କାନଠାରୁ ଗାଲ ଯାଏ ରଖାଯିବା ଦାଢ଼ି । ମୁଗୁର—ଗାଲ ମଧ୍ୟକୁ ମୁଗୁର ଆକୃତିର ଦାଢ଼ି । ଲୁଲ୍ଫି—ଝିଲ୍‌ଫି ବାଳ; କାନମୂଳ ପାଖେ ବଙ୍କା କେଶଗୁଚ୍ଛ । ନବଗୃହ ଗନ୍ଧ—ନଅଘରୁ ଆସିଥିବା ସୁଗନ୍ଧ ଅତର ।

ପୃ ୧୦୩—ଦେବାଙ୍ଗ ପତନ—ଉତ୍କୃଷ୍ଟ ପାଟବସ୍ତ୍ର ।

ପୃ ୧୦୫—ପରମ୍ପରା ଯାଇ—ଅତିପ୍ରଶଂସା କରିବା ।

ପୃ ୧୦୬-୧୦୭—ଗଜିତ—ଅଶ୍ୱାରୋହୀ ସୈନ୍ୟ । ଚଉଳ—ପତାକା ।
ଦମାଲୁ—ବଡ଼ ନାଗରା । ଆଳମ୍ବ—ଫୁଲ । ବିଖୁର—ସଙ୍କୋଚ-
କରଣ ବିଶେଷ । ସୁରାଟ—ସୁନ୍ଦର ଓ ଉଚିତମ ।

ପୃ ୧୦୮—ପଟାଳ—ଅଦାଲୁଆ ଖଣ୍ଡାର ଖେଳ ଧ୍ୱନି । ମୁଛ—ଅରଣ୍ୟଜାତ
ଫଳର ହାର ।

ପୃ ୧୦୯-୧୧୦—ମୃଦୂସ୍ଥଳ—ମୃଦୁଶୀଳା ନାରୀ; ଶାନ୍ତ ଦାସୀ । ଅତଣ୍ଡୁଳ—
ଅରୁଅଚାଉଳ । ଶିଗ୍ରଫଳ—ନଡ଼ିଆ । ବଲ୍ଲେଦ୍ରଲେ—ବାଣ୍ଟିଲେ ।

ପୃ ୧୧୧—ନଟିକାଳ—ନଡ଼ିଆ । କୁରୁମ—ବାଘୁଙ୍କ ଆସନ କଚ୍ଛପ ।

ପୃ ୧୧୩—ତୁର୍ଣ୍ଣାଟ—(ତୁଣ୍ଡାଟ)—ଓଳିପାଖ ଚୁଅରେ ଯେଉଁ ପଟା ଦିଆ
ଯାଏ, ପାଣି-ପାଟିଆ । ଉଢ଼ଣି—ଅଚ୍ଛାଦନ ।

ପୃ ୨୧୪—ସିନ୍ଧୁଫଳ—ମୁକ୍ତା ।

ପୃ ୨୧୫—ଚକ—କୁମ୍ଭାର ଚକ ।

ପୃ ୧୨୦—ତେଲଜଣି—ମାଟିତିଆରି କରେଇ ବା ପଲମ । ଝୋଟି—
କାନ୍ଥରେ ଲେଖିବା ନାନା ବର୍ଣ୍ଣର ଚିତ୍ର । ସରସ୍ୱତୀଅ—ଗୁଉଳ
ଚୁନା, ଦୁଂସର, ଏକ ବୃକ୍ଷ ତାଙ୍ଗର ଫେଣରେ ତିଆରି ପିଷ୍ଟକ ।
ଛପ୍ପର—ତନି ପୁରଦିଆ ପିଠା । ଓଳିପଣା—ଦୁଆର ବନ୍ଧ
ଉପରେ ଚିତା ଦେଲେ ଯେଉଁ ଧାର ଲମ୍ବି ଅସେ । ମୁଗୁର—ମୁଗ
ବଟାରେ ମିଠେଇ ଦାନା ମର ଖଜା । ପାଚୁଡ଼—ସରଭଜା ।

ପୃ ୧୨୩—କମ—ଏକପ୍ରକାର ସପ୍ତସ୍ୱର ବାଦ୍ୟ ।

ପୃ ୧୨୫—ଖେଟପନି—ପତ୍ର ଥିବା ଫୁଲ ତୋଡ଼ା ।
ମାଳିଆ—ସେବତୀ ଫୁଲର ଗଭା ।
ମକରୀ—ଚନ୍ଦନ କସ୍ତୁରୀରେ ମକରାକୃତ ଅଙ୍କିତ ଠୋପି ।

ପୃ ୧୨୭—ଗରୁହସ—ଅତ୍ୟଧିକ ।

ପୃ ୧୩୨—ଅପାଚୁଆ ସୂତା—ଅଭିଅଢ଼ ସୂତା ।

ପୃ ୧୪୦—ହଂସି—ତନ୍ତ୍ର ବିଶେଷ ।

ପୃ ୧୪୮—ମହଣିଆ—ଯେଉଁ ନାରୀମାନେ ବିବାହ ଗହଣରେ
ଅସିଥାନ୍ତି ।

ପୃ ୧୫୨—ଉଚ୍ଛୁଣା—ଘର ଗୁଳର ଓଳି ।

ପୃ ୧୫୩—ଓଡ଼ଅଣି—ଅଣ୍ଟାସୂତା । ଏହା ଉତ୍କଳର ଉଦ୍ଭାବନ । ଏଥିରେ ଏକ ତରବାରି ଥାଏ ।

ପୃ ୧୬୯—ଦେଓଝର—ଏକ ଅସ୍ଥାୟୀ ଜଳ ପ୍ରପାତ । ନରସିଂହପୁରରେ ଅବସ୍ଥିତ ।

ପୃ ୧୭୧—ଶିତେଣ୍ଟିଇ ନାହାକାଣୀ—ଏକ ବୀର ରମଣୀ । (ନରସିଂହପୁର)

ପୃ ୨୩୬—କାଉରି ବାଉରି—ଖଣ୍ଡପଡ଼ା ଓ ନୂଆଗଡ଼ର ଇଷ୍ଟ ଦେବୀ ।

ପୃ ୨୪୩—ନୀଷାଣେ—କୁନ୍ଧି କାର୍ଯ୍ୟରେ ।

ପୃ ୨୪୪—ଲଡ଼ୁବାବା—ସ୍ୱନାମ ପ୍ରସିଦ୍ଧ ଶିବ । ରାଉତ—ବଡ଼ଲୋକ । ଲମ୍ବହତା—ଲମ୍ବ ଲମ୍ବ ପାଦ ପକାଇ ପଛରେ ଗୁଳବା । ଶନିବାର ଗଣ୍ଡା—ପ୍ରତି ଶନିବାର ପଢ଼ାପିଲେ ଗଣ୍ଡାଏ କଉଡ଼ି ଦରମା ଦଅନ୍ତି । କେସୁର—କସେରୁ—ମୁଥା । ଚଉଠି ବୋଡ଼ି—ପ୍ରତି ଚତୁର୍ଥୀରେ ବୋଢ଼ଏ, ପାଞ୍ଚକଡ଼ା ଦରମା ଦଅନ୍ତି । ତନ କଉଡ଼ି—ମାସିକ ବେତନ ଯାହା ଧାର୍ଯ୍ୟ ଥାଏ ।

ପୃ ୨୫୦—ତାରଣୀ—କେନ୍ଦୁଝରର ଅଧିଷ୍ଠାତ୍ରୀ ଦେବୀ ।

ପୃ ୩୨୫—ହାଇ ଫଡ଼ଫଡ଼—ବାରମ୍ବାର ହାଇ ମାରିବା । ପକାଡୋଳା—ଆଖି ବୁଜିବା । ଜୀଉନ୍ତୁ—ଯାହାର ସନ୍ତାନ ଜୀବିତ । ଜୀଉନ୍ତୁନାସି ( ଜିଉନ୍ତୁ )

ପୃ ୩୦୭—ଗଣଗଣା — ଏକଗ୍ରାମର ନାମ ( ନରସିଂହପୁର )
ପଦାମାଳ— „ „
ଗୋପାଳପୁର— „ „

ପୃ ୩୫୯—ବଅଳ—ବଳଦ ।

ପୃ ୩୭୧—ଲଖିଆ-ଲଖ ( ଲକ୍ଷ ) ପଡ଼ା ଗହ୍ୱର । ଯେଉଁଠାରେ ଗଜପତି ୨ୟ ରାମଚନ୍ଦ୍ରଦେବଙ୍କର ମୃତ୍ୟୁହେଲା । ୧୭୪୩ ରେ ( ନରସିଂହ ପୁର ) ବାଙ୍କିଆ—ବାଙ୍କସର ଗହ୍ୱର । ନରସିଂହପୁର ଚମ୍ପେଶ୍ୱର ଗ୍ରାମ ହରହର ଏବଂ ବୌଦ୍ଧପୀଠର ଶମାର ଗୃଷ ଭୂମି । ପିଠାଖିଆ—ନରସିଂହପୁର ଟାଉନ ସନ୍ନିକଟବର୍ତ୍ତୀ ଜମି ( ଅତି ମୂଲ୍ୟବାନ । )

ପୃ ୪୬୧—ପରଞ୍ଜ—ଖଣ୍ଡା ମୂଠାର ଉପର ତ୍ରିକୋଣ ଅଂଶ ।
ପୃ ୪୯୫—ଅଗ୍ରଳ—ପ୍ରଶ୍ନ ।
ପୃ ୬୦୩—ବ୍ରଗସିଲେ—ବକସିଲେ । ଚକନେ—ଚଉପଦ ଏ ।
ପୃ ୬୦୬—କନ୍ଦଗ୍ର—କନଗ୍ର ।
ପୃ ୬୦୭—ସେନ୍ଦୁର—ଣିଅଳ । ପିଅଲ—ପାଲଖେଜ, ଭୁଣଶଯ୍ୟା ।
ଫୁଠାଣେ—ଭୋମୁଣ୍ଡାହୃଡ଼ । ଦନା—ଚଉପଗ୍ର ।
ପୃ ୬୦୯—ହିଁପାସିନ୍ଧ—ଖଜୁଗ୍ର, ଧୁଣ୍ଡି—ପାଗଆ; ମାଣ୍ଡ୍ରିଲ—ଦଲାଲ ।
ପୃ ୬୧୧—ଗର୍‌ଧନ—ଜୀବନ ଧନ; କକେ—ସନ୍ଧରେ ।
ପୃ ୬୬୪—କାନ୍ଧଅ—ଖଠା କମଲା ।
ଭାବାର୍ଥ—(ମୁଁ ଯଜମାନମାନଙ୍କର ରାଜା ଅଟେ । ମୁଁ ପୁରୋହିତ କର ସବୁ ରୋଜଗାର କରବ । ତୁ ବଧବାଠାଏ । ତୁ ଦାସୀର ପିଲ ( ଅସମ୍ମାନରେ ) । ତୋ ମାଅ ବାଡ଼ରେ ଯେତେ ଫଳମୂଳ ଅଛୁ ତାକୁ ଭାଜ ଖାଉଥା । ମୁଁ କଛୁ ତତେ ଦେବ ନାହିଁ ।
ପୃ ୬୬୫—ଜାଗେରଅ—ଜାଗର ଦନ ଜନ୍ମିବାରୁ ।
ପୃ ୬୬୬—କୁହ—କୁଅ । ବଣିଆ ପୋକ—ବ୍ୟବସାୟୀମାନଙ୍କୁ ପୋକ ସହିତ ତୁଳନା ସେ କରୁଛୁ । ସାହୁଘର ଲୋକ—ସାହୁକାରର ଗୃହକର । ହାଉଁ—ପେଟ ପୂରେଇ ଖାଉଛନ୍ତ ।

---

# ଅକ୍ଷରାନୁକ୍ରମିକ ଗୀତର ଆଦ୍ୟପାଦ ସୂଚୀ

— ଆ —

| ବିଷୟ | ପୃଷ୍ଠା |
|---|---|



—ଇ—



—ଉ—

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
|---|---|

| ବିଷୟ | | ପୃଷ୍ଠା |
|---|---|---|

ବିଷୟ ପୃଷ୍ଠା

—ମ—

—ଯ—

ବିଷୟ ପୃଷ୍ଠା

---

ମୁଦ୍ରାକର—ଶ୍ରୀ ଉମାଚରଣ ମହାନ୍ତି, କଟକ ପବ୍ଲିଶିଂ ପ୍ରେସ,
କଟକ—୧୯୫୯

ଏ ସଙ୍କଳନରେ ଏ ଜାତିର ଏ ସମାଜର ଯେଉଁ ନିଖୁଣ ଖାଣ୍ଟି ଗୀତ ନୀତ ଓ ମନୋଭାବ ଫୁଟି ଉଠିଛି ତାହା ଅତ୍ୟନ୍ତ ଦୁର୍ଲ୍ଲଭ । ଶ୍ରୀମାନ୍ ଚକ୍ରଧର ଏ କ୍ଷେତ୍ରରେ ପ୍ରଥମ ଉଦ୍ୟମ କରିଅଛନ୍ତି ।

ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜ

ଏହି ସରଳ ଗୀତ ଗୁଡ଼ିକ ଓଡ଼ିଆର ଖାଣ୍ଟି ଭାଷା । ଏଥିରେ ଓଡ଼ିଆ ଜାତୀୟ ଜୀବନର ଛବି ପ୍ରତିଫଳିତ ହୋଇଥାଏ ।

ସ୍ୱର୍ଗତ ବାଳକୃଷ୍ଣ କର

ଚକ୍ରଧରଙ୍କ ସଂଗୃହୀତ ଏହି ଗୀତ ଗୁଡ଼ିକ ସାହିତ୍ୟର ମୂଳଦୁଆ ।

ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର

ବାବୁ ଚକ୍ରଧର ଗ୍ରାମ୍ୟଜୀବନର ସରଳ ମଧୁର ଭାବପୂର୍ଣ୍ଣ ଲୁପ୍ତ ପ୍ରାଚୀନ ଗ୍ରାମ୍ୟଗୀତ ଗୁଡ଼ିକ ବହୁ ଯତ୍ନ ଏବଂ ଧୈର୍ଯ୍ୟର ସହିତ ଏଥିରେ ସଂଗ୍ରହ କରିଅଛନ୍ତି ।

ସ୍ୱର୍ଗତ ପଣ୍ଡିତ ଲିଙ୍ଗରାଜ ମିଶ୍ର

ପରମ ଶ୍ରଦ୍ଧାସ୍ପଦ ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ରଙ୍କର ଉତ୍କଳ ଗାଉଁଲି ଗୀତ ଉତ୍କଳ ସାହିତ୍ୟ ଭଣ୍ଡାରର ଅପରୂପ ରତ୍ନ ।

ସ୍ୱର୍ଗତ ଶଶିଭୂଷଣ [illegible]

ତୁମର ସଂଗୃହୀତ ଗ୍ରାମ୍ୟରଚନା ପରି ରଚନା ମୁଁ ହିନ୍ଦିରେ ଅଳ୍ପ ଦେଖିଛି ।

ସ୍ୱର୍ଗତା କୁନ୍ତଳା କୁମାରୀ ଦେବୀ

ଏ ସବୁ ରଚନା ପ୍ରତି ଦେଶରେ ନିଶ୍ଚୟ ଖୁବ୍ ଆଦର ଅଛି । ଏ ସବୁ ଛପା ହେବା ନିଶ୍ଚୟ ଦରକାର ।

ସ୍ୱର୍ଗତ ଶାରଙ୍ଗଧର ଦାସ

ଜାତି ସ୍ୱାର୍ଥ ରକ୍ଷା ପାଇଁ, ଓଡ଼ିଆ ସାହିତ୍ୟର ସ୍ୱାର୍ଥ ରକ୍ଷା ପାଇଁ ଏଗୁଡ଼ିକ ଅତ୍ୟନ୍ତ ପ୍ରୟୋଜନ ।

ସ୍ୱର୍ଗତ ଜଗବନ୍ଧୁ ସିଂହ

ଏ ସଂଗ୍ରହ ଅତ୍ୟନ୍ତ ପ୍ରୟୋଜନରେ ଆସିବ । କାରଣ ଗ୍ରାମ୍ୟ ସଙ୍ଗୀତ ଲୋକର ଜାତୀୟ ଜୀବନକୁ ଚିତ୍ରିତ କରିଥାଏ ।

ସ୍ୱର୍ଗତ ଶ୍ୟାମଚରଣ ତ୍ରିପାଠୀ
ଶିକ୍ଷା ବିଭାଗୀୟ ଉପଦେଷ୍ଟା

---

ପ୍ରଚ୍ଛଦପଟ ମୁଦ୍ରଣ : ମନମୋହନ ପ୍ରେସ, କଟକ-

ଏ ଦେଶର ପ୍ରତି ଘରେ ଘରେ ଯେଉଁ ନିରକ୍ଷର ନିଷ୍କଳଙ୍କ ଗୀତ, ଏହି ଜାତିକୁ ନିରନ୍ତର ଉପବନ୍ତ କରି ରଖିଅଛି, ତାହା ଅତ୍ୟନ୍ତ ମଧୁର । ତେଣୁ ଅମ୍ଭମାନଙ୍କର ଗୃହେ ଗୃହେ ଦୈନନ୍ଦିନ ଜୀବନର ସୁଖ ଦୁଃଖ, ଜୟ ପରାଜୟ, ନୃତ୍ୟ-ଉତ୍ସବ ମଧ୍ୟରେ ସେହି ଅକୃତ୍ରିମ କାବ୍ୟର ଉପାଦାନ ଯଥେଷ୍ଟ ଥାଏ ବୋଲି ଆଶା କରିବା ଧୃଷ୍ଟତା ହେବ ନାହିଁ ।

ମୋର ବନ୍ଧୁ ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ର ଅମ୍ଭମାନଙ୍କର ସେ ଆଶାକୁ ସତ୍ୟ କରିଅଛନ୍ତି । ତାଙ୍କର ଓଡ଼ିଆ ପଲ୍ଲୀ କବିତାର ଅପୂର୍ବ ସଂଗ୍ରହ ଆଜି ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥିତ । × × × ×

ଶ୍ରୀଯୁକ୍ତ ମହାପାତ୍ରଙ୍କର ଏହି ସଂଗ୍ରହ ଅମ୍ଭମାନଙ୍କୁ ସେହି ସ୍ୱର୍ଣ୍ଣ ଯୁଗର [illegible] ଫେରାଇଦେଇଛି । ଏ ସଂଗ୍ରହ ପାଠ କଲା ପରେ ପାଠକ ଜାଣି ପାରିବେ ପଲ୍ଲୀ ଜୀବନକୁ କବିତା କିପରି ଓତପ୍ରୋତ ଭାବରେ ଅନୁରଞ୍ଜିତ କରି ରଖିଥିଲା । ଲଘୁ ଛନ୍ଦାବଳୀ ମଧ୍ୟରେ ଏଥିରେ ଥିବା [illegible] ମୁକ୍ତାମାଳା ପରି ଫୁଟି ଉଠିଛି ।

ଏ ସବୁ ଅନାବିଲ ମାନବ ପ୍ରାଣର ପ୍ରକାଶ । ଏସବୁ ଦେଶର ସ୍ୱୟଂ ମୃତ୍ତିକା ଦେହର ଭାଷା । ଏଥିଯୋଗୁଁ ସବୁ ସାହିତ୍ୟରେ ଏହାର ଆଦର ବଢ଼ିଛି ।

ଏ ସଂଗ୍ରହ ତଥାପି ଅସମ୍ପୂର୍ଣ୍ଣ । ନିଜ ମାଟିର କଥା ନିଜ ଭାଷାରେ ଲେଖିବା ଲାଗି ଏବଂ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ଲାଗି ଆହୁରି ଅଧିକ ସଂଗ୍ରହ ଆଶା କରାଯାଏ ।

ଡକ୍ଟର ମାୟାଧର ମାନସିଂହ